ସୋମଦେବଙ୍କ

# କଥାସରିତ୍ ସାଗର

ଅନୁବାଦ

ସୁଦର୍ଶନ ଆଚାର୍ଯ୍ୟ



ସମଗ୍ର ବିଶ୍ୱ ସାହିତ୍ୟରେ ଗୁଣାଢ୍ୟ ଲୋକକଥା ସଂଗ୍ରହ ଓ ସଂକଳନ କ୍ଷେତ୍ରରେ ଆଦି ପଥପ୍ରଦର୍ଶକ । ସାତବାହନ ହାଲ ଯେପରି ଲୋକଗୀତି ସଂଗ୍ରହ କରି 'ଗାଥାସପ୍ତଶତୀ' ସଂକଳନ କରିଯାଇଛନ୍ତି, ତାଙ୍କ ସମସାମୟିକଭାବେ ଗୁଣାଢ୍ୟ ସେହିପରି ସମଗ୍ର ଭାରତବର୍ଷରୁ ଅସଂଖ୍ୟ ଲୋକକଥା ସଂଗ୍ରହ ପୂର୍ବକ ସୃଷ୍ଟି କରିଛନ୍ତି ତାଙ୍କର ଅପୂର୍ବ କଥାଗ୍ରନ୍ଥ 'ବଡ୍‌ଡ଼କହା' । ଏଥିରେ ସଂକଳିତ କଥାଗୁଡ଼ିକ ପୁରାଣପ୍ରଣେତାମାନଙ୍କ ଦ୍ୱାରା ସଂଗୃହୀତ ଦିବ୍ୟକଥା ନୁହନ୍ତି, ନୁହନ୍ତି ମଧ୍ୟ ସାଧାରଣ ମଣିଷର ବାସ୍ତବ ଅନୁଭୂତି ପ୍ରସୂତ ଦିନଚର୍ଯ୍ୟାର ନୀରସ କାହାଣୀ; ଦିବ୍ୟ ଓ ମାନୁଷୀ କଥାର ଏହା ଏକ ବିଚିତ୍ର ସମନ୍ୱୟ । 'କଥାସରିତ ସାଗର' ଏହି ଅମର ମହାକଥାର ସଂକ୍ଷିପ୍ତ, ସୁସଜ୍ଜିତ ଓ ସଂସ୍କୃତ କାବ୍ୟ ରୂପ । ଲୋକକଥାକୁ ବିଦଗ୍ଧ ପଦ୍ୟ ମହାକାବ୍ୟର ଗୌରବ ପ୍ରଦାନ କରିବାରେ ସୋମଦେବଙ୍କ କୃତିତ୍ୱ ଅବିସ୍ମରଣୀୟ ।

କଥାସରିତ ସାଗର
Kathasarita Sagar

ଅନୁବାଦ : ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
Translated by : Dr. Sudarsana Acharya



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari
Cuttack-753 002, Orissa (India)

ପ୍ରଥମ ପ୍ରକାଶ : ୨୦୦୪
First Edition : 2004

ପ୍ରଚ୍ଛଦ : ରଂଜିତ୍ ପରିଜା
Artist : Ranjit Parija

ଅକ୍ଷରସଜ୍ଜା : ୟୁନିଟେକ୍, କଟକ
Typeset : Unitech, Cuttack

ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍ ପ୍ରେସ୍, କଟକ
Printer : Laxmi Offset Press, Cuttack

ISBN 81-7401-542-6

Price : **Rs. 100**

# କୃତଜ୍ଞତା

'କଥାସରିତ ସାଗର'ର ପ୍ରଥମ ଭାଗପରେ ଦ୍ୱିତୀୟ ଭାଗଟିକୁ ପାଠକମାନଙ୍କ ହାତରେ ଟେକି ଦେବାପାଇଁ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ ସାଧୁ ଉଦ୍ୟମ କରିଛନ୍ତି ଏଥିପାଇଁ ମୁଁ ବନ୍ଧୁ ସହଦେବ ପ୍ରଧାନ ଏବଂ କଲ୍ୟାଣୀୟ ହିମାଂଶୁ ଓ ସୁଧାଂଶୁଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପ୍ରଥମ ଭାଗର ମୁଖବନ୍ଧରେ ମୂଳଗ୍ରନ୍ଥ ସଂପର୍କରେ ସ୍ଥୂଳ ଆଲୋଚନା କରାଯାଇଥିଲା । ଗୁଣାଢ୍ୟଙ୍କଠାରୁ ପ୍ରାୟ ଏକ ହଜାର ବର୍ଷ ବ୍ୟବଧାନରେ ସୋମଦେବ 'ବୃହତ୍ କଥା'ର ଏହି ନବୀନ ଓ ସଂକ୍ଷିପ୍ତ ସଂସ୍କରଣ ପ୍ରସ୍ତୁତ କରିଛନ୍ତି । ଏଣୁ ମୂଳଗ୍ରନ୍ଥଠାରୁ ଦୂରେଇ ଯାଇ ଏହାର ବିଷୟବସ୍ତୁ ଓ ସ୍ଥାପତ୍ୟରେ ସେ କିଛି ପରିବର୍ତ୍ତନ କରିଥିବା ଅସ୍ୱାଭାବିକ ନୁହେଁ । ସଂସ୍କରଣଟିର ବିଶ୍ୱସ୍ତତା ସଂପର୍କରେ ଆଲୋଚକମାନଙ୍କ ସନ୍ଦେହ ବୃଦ୍ଧିପାଇ ଚାଲିଛି । କିନ୍ତୁ 'ବୃହତ୍ କଥା'ର ମୂଳ ରୂପ ଆଜି ଉପଲବ୍ଧ ନଥିବା ଯୋଗୁଁ ଏସବୁ କଳ୍ପିତ ସନ୍ଦେହ ଦୂର କରିବା ସମ୍ଭବ ନୁହେ । ଏଥିପାଇଁ ଦ୍ୱିତୀୟ ଭାଗର ମୁଖବନ୍ଧରେ ଏସବୁ ସନ୍ଦେହ ସଂପର୍କରେ ଓଡ଼ିଆ ପାଠକମାନଙ୍କୁ ଅବଗତ କରାଇବାପାଇଁ ଯତ୍‌କିଞ୍ଚିତ୍ ଉଦ୍ୟମ କରାଯାଇଛି । ପାଠକମାନେ ନିଜ ନିଜ ଦୃଷ୍ଟିକୋଣରୁ ତା'ର ବିଚାର କରିବେ । ଏହି ମୁଖବନ୍ଧ ପ୍ରସ୍ତୁତିପାଇଁ ମୁଁ ଏସ୍. ଉଇଣ୍ଟରନିକ୍, ଏସ୍. କେ. ଦେ ଏବଂ ଏ. କେ. ୱାଡର୍‌ଙ୍କଠାରେ ଋଣ ସ୍ୱୀକାର କରୁଛି ।

— ଅନୁବାଦକ

# କଥାସୂଚୀ

# ଲୋକକଥା ପରମ୍ପରାରେ କଥାସରିତ୍‌ସାଗର

ଲୋକକଥା ଯେପରି ପ୍ରାଚୀନ, ସେଗୁଡ଼ିକର ଆବେଦନ ସେହିପରି ବିଶ୍ୱବ୍ୟାପୀ । କେବଳ କାଳିଦାସଙ୍କ ସମକାଳୀନ ଉଜ୍ଜୟିନୀରେ ନୁହେ, ବିଶ୍ୱର ଯେଉଁଠି ଜନବସତି ଅଛି ସେଠାର ଗ୍ରାମ ବୃଦ୍ଧମାନେ ଉଦୟନ କଥାପରି ବହୁ ଛୋଟବଡ଼ କଥା କହି କନିଷ୍ଠମାନଙ୍କ ମନୋରଞ୍ଜନ କରିଥାନ୍ତି । ସମୟର ପରିବର୍ତ୍ତନରେ, ସଭ୍ୟତାର ଉଦ୍‌ବର୍ତ୍ତନରେ, ଭୌଗୋଳିକ ପରିବେଶର ପାର୍ଥକ୍ୟରେ ଏସବୁର ଆଙ୍ଗିକ ରୂପ ଓ ପରିଚ୍ଛଦ ଭିନ୍ନ ହେଲେ ସୁଦ୍ଧା ଏହାର ଅନ୍ତରାଳରେ ବିଶ୍ୱମାନବର ଅନ୍ତରାତ୍ମା ଉଜ୍ଜୀବିତ । ବାସ୍ତବ ଅନୁଭୂତି ହେଉ କିମ୍ୱା ତାହା ଉପରେ ଆଧାରିତ କଳ୍ପିତ କାହାଣୀ ହେଉ, ପ୍ରତ୍ୟେକଟି ଭିତରେ ମଣିଷର—କେବଳ ମଣିଷର—ସଚେତନ ଓ ଅବଦମିତ ଆଶା-ଆକାଙ୍‌କ୍ଷା, ସୁଖ-ଦୁଃଖ, ବିଶ୍ୱାସ-ବୈରାଗ୍ୟ ପ୍ରତିଫଳିତ । ଏଥିପାଇଁ ଲୋକକଥାର ଆବେଦନ ସାର୍ବଜନୀନ ଓ ସାର୍ବକାଳିକ, ଏହାର ବିଶ୍ୱ ପରିକ୍ରମା ଅବ୍ୟାହତ ।

ଗୋଟିଏ ଗୋଟିଏ ଗଳ୍ପ କିପରି ବିଭିନ୍ନ ରାଷ୍ଟ୍ର ଓ ଭାଷାରେ ରୂପାନ୍ତରିତ ଓ ଭାଷାନ୍ତରିତ ହୋଇ ପୁଣି ନିଜ ଉତ୍ସଭୂମିକୁ ଫେରିଆସେ, ତା'ର ଏକ କୌତୂହଳୋଦ୍ଦୀପକ ବିବରଣୀ ଏଚ୍.ଟି. କୋଲବ୍ରୁକ୍ ତାଙ୍କ ସଙ୍କଳିତ 'ହିତୋପଦେଶ'ର ମୁଖବନ୍ଧରେ ଆମକୁ ଦେଇଛନ୍ତି । 'କଥାସରିତ୍‌ସାଗର'ର ଦଶମ ଲମ୍ବକ ଚତୁର୍ଥ ତରଙ୍ଗରେ 'ଦମନକ କରଟକୟୋଃ ସମ୍ବାଦଃ' ନାମକ ଗୋଟିଏ ଗଳ୍ପ ଦେଖିବାକୁ ମିଳେ । ଗଳ୍ପଟି 'କଥାସରିତ୍ ସାଗର'ର ମୂଳଗ୍ରନ୍ଥ ଗୁଣାଢ଼୍ୟଙ୍କ ବଡ୍ଡକହାରେ ସନ୍ନିବିଷ୍ଟ ଥିବା ଅବିଶ୍ୱାସ୍ୟ ନୁହେ, ବରଂ ଅଧିକ ବିଶ୍ୱାସ୍ୟ । ଗୁଣାଢ଼୍ୟ ପୁଣି ଏହାକୁ ତାଙ୍କ ସମୟରେ—ତାଙ୍କ ପୂର୍ବରୁ—ପ୍ରଚଳିତ ଥିବା ମୌଖିକ ଲୋକଗଳ୍ପରୁ ସଂଗ୍ରହ କରିଥିବା ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ । ପରବର୍ତ୍ତୀ ସମୟରେ ବିଷ୍ଣୁଶର୍ମା ଏହାକୁ ସ୍ୱୀୟ 'ପଞ୍ଚତନ୍ତ୍ର' ଗ୍ରନ୍ଥରେ ସଙ୍କଳନ କରିଛନ୍ତି । ଏହାର ଅନୁସରଣରେ ନାରାୟଣଙ୍କ 'ହିତୋପଦେଶ'ରେ ଏହା ଅନ୍ତର୍ଭୁକ୍ତ । ଗଳ୍ପଟି କେବଳ ଭାରତବର୍ଷରେ ନୁହେଁ ଯାଯାବର, ବଣିକ, ପର୍ଯ୍ୟଟକ ଏବଂ ସୈନିକମାନଙ୍କ ଦ୍ୱାରା ଦୂରଦୂରାନ୍ତର ଦେଶରେ ପ୍ରଚାରିତ ହୋଇ ଲୋକପ୍ରିୟତା ଅର୍ଜ୍ଜନ କରିଥିଲା । ପାରସ୍ୟର

ଶାସକ ଅନୁଶିର୍‌ବାନ୍ ଗଳ୍ପଟି ଦ୍ୱାରା ଏତେ ପ୍ରଭାବିତ ହୋଇଥିଲେ ଯେ ସେ ବରଜୁଆ ନାମକ ତାଙ୍କ ରାଜସଭାର ଜଣେ ପ୍ରସିଦ୍ଧ ବିଦ୍ୱାନ୍ ଓ ଚିକିତ୍ସକଙ୍କୁ ଏହାର ମୂଳରଚନା ସଂଗ୍ରହ ପାଇଁ ଭାରତବର୍ଷକୁ ପ୍ରେରଣ କରିଥିଲେ । ସେତେବେଳେ ଏହା ଭାରତର କୌଣସି ରାଜଗ୍ରନ୍ଥାଗାରରେ ସୁରକ୍ଷିତ ଥିଲା । ବରଜୁଆ ଏହାକୁ ସଂଗ୍ରହ କରି ଏହାର ଏକ ପ୍ରତିଲିପି ପାରସ୍ୟ ନେଇଯାଇଥିଲେ । ଏହା ଷଷ୍ଠ ଶତାବ୍ଦୀର ଘଟଣା । ସେଠାରେ ବୁଜେର୍ ଚୁମିର୍‌ଙ୍କ ତତ୍ତ୍ୱାବଧାନରେ ଏହାର ଏକ ପହ୍ଲବୀ ଅନୁବାଦ ପ୍ରସ୍ତୁତ ହେଲା; ନାମ ହେଲା 'କଲିଲହ୍ ଉ ଦମନହ୍' (Calilah u Damnah) ।

ପହ୍ଲବୀ ଅନୁବାଦରୁ ଏହା ତୁର୍କୀ ଭାଷାରେ ରୂପାନ୍ତରିତ ହେଲା । ଏହା 'ହୁମାୟୁନ୍ ନାମା' ଭାବେ ପରିଚିତ । ଖଲିଫା ଆବୁଲ୍‌ଜଫର୍ ମନ୍‌ସୁର୍‌ଙ୍କ ଆଦେଶରେ ଇମାମ୍ ଆବୁଲ୍‌ହାସାନ୍ ଆବ୍‌ଦୁଲ୍ଲା ଏହାକୁ ଆରବୀ ଭାଷାରେ ଅନୁବାଦ କଲେ । ଆରବୀ ଅନୁବାଦରୁ ଏହା ପୁଣି ପାର୍ସୀ ଭାଷାକୁ ଫେରିଆସିଲା । ସୁଲ୍‌ତାନ୍ ମାମୁଦ୍ ସବୁକ୍ତଗିନ୍‌ଙ୍କ ପୃଷ୍ଠପୋଷକତାରେ ତାଙ୍କ ସଭାକବି ରୁଦାଗୀ ଏହାର ଏକ ପଦ୍ୟାନୁବାଦ ପ୍ରସ୍ତୁତ କଲେ । ରୁଦାଗୀଙ୍କ ଲେଖନୀରେ ଏହା ତାଜମହଲ ପରି ଏକ ପ୍ରଣୟ ସ୍ମାରକୀର ସମ୍ମାନ ଆହରଣ କଲା ।

କଥିତ ଅଛି, ରୁଦାଗୀ ଉଜୀର ମନସୁର୍‌ଙ୍କ କ୍ରୀତଦାସୀ ନାଗିନାର ପ୍ରେମରେ ପାଗଳ ଥିଲେ । ରାଜଦଣ୍ଡ ଭୟରେ ସେ ପ୍ରଣୟିନୀ ସହିତ ଅନ୍ୟତ୍ର ପଳାୟନ କରୁଥିଲାବେଳେ ରାଜକର୍ମଚାରୀମାନଙ୍କ ଦ୍ୱାରା ବନ୍ଦୀ ହେଲେ । କ୍ରୁଦ୍ଧ ଉଜୀର୍‌ଙ୍କ ଆଦେଶରେ ନାଗିନାକୁ ପ୍ରାଣଦଣ୍ଡ ଦିଆଗଲା । କିନ୍ତୁ ଜଣେ ପ୍ରତିଭାଧର କବିଙ୍କୁ ହତ୍ୟା କରିବାପାଇଁ ଉଜୀର୍ ଆଦେଶ ଦେଇପାରିଲେ ନାହିଁ । ରୁଦାଗୀଙ୍କ ଚକ୍ଷୁ ଯୁଗଳକୁ ଉତ୍ପାଟନ କରାଗଲା । ମୃତ୍ୟୁବରଣ କରିବା ପୂର୍ବରୁ ନାଗିନାର ଶେଷ ଇଚ୍ଛା ଥିଲା ବଡ଼ ବିଚିତ୍ର । ସେ ଚାହିଥିଲା ରୁଦାଗୀ ତାର ସ୍ମୃତିକୁ ଜାଗ୍ରତ ରଖିବାପାଇଁ 'କଲିଲହ ଉ ଦମନହ୍'ର ପଦ୍ୟାନୁବାଦ କରିବେ । ଅନ୍ଧକବି ରୁଦାଗୀ ଏହି ଗଳ୍ପକୁ ପଦ୍ୟରେ ରୂପାନ୍ତରିତ କରି ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି ।

ଏହି ଆରବୀ ଓ ପାର୍ସୀ ଅନୁବାଦରୁ ଦମନକ ଓ କରଟକ କଥା ବିଭିନ୍ନ ଭାଷାରେ 'Chalila u Damnah', 'Chalila u Damna', 'Calila u Dimna', 'Calaileg and Damnag', 'Kalilok va Dimanaka', ଅଥବା 'Galland Car Donne' ନାମରେ ରୂପାନ୍ତରିତ ହୋଇ ପାଠକ ଓ ଶ୍ରୋତାମାନଙ୍କ ମନୋରଞ୍ଜନ କରିଚାଲିଛି । ପଞ୍ଚଦଶ ଶତାବ୍ଦୀର ଶେଷ ପାଦରେ ହାଇସାୟାନ୍ ୱାଲ୍‌ଧି କାଶିଫି ଏହାର ଯେଉଁ ବିଶିଷ୍ଟ ପାର୍ସୀ ଅନୁବାଦ ପ୍ରସ୍ତୁତ କରିଥିଲେ, ତା' ମାଧ୍ୟମରେ ଏହା ପୁଣି ଭାରତବର୍ଷକୁ ଫେରିଆସିଥିଲା । ଆକବରଙ୍କ ରାଜସଭାର ବିଦଗ୍ଧ ଐତିହାସିକ ଆବୁଲ୍‌ଫଜଲ୍ ଏହାକୁ 'ଆଇୟାର-ଇ-

ଦାନିସ୍' ବା 'ଜ୍ଞାନର ସ୍ୱର୍ଣ୍ଣମଣି' ରୂପେ ଅନୁବାଦ କରିଥିଲେ । ଏଥିରୁ ପ୍ରସ୍ତୁତ ହୋଇଥିଲା ପ୍ରଥମ ସୁଲେମାନଙ୍କ ମନୋରଞ୍ଜନ ପାଇଁ ଆଲିଚେଲେବୀଙ୍କ ତୁର୍କୀ ଅନୁବାଦ 'ହୁମାୟୁନ୍ ନାମା' । ଗଳ୍ପଟି ଆଜି ଇଂରେଜୀ ଭାଷାରେ ରୂପାନ୍ତରିତ ହୋଇ ଭାରତୀୟ ଶିଶୁମାନଙ୍କ ନିକଟରେ ପହଞ୍ଚିପାରିଛି ।

ଲୋକଗଳ୍ପର ଏହି ବିଶ୍ୱ ପରିକ୍ରମା ଯେପରି ବିଚିତ୍ର ସେହିପରି କୌତୂହଳୋଦ୍ଦୀପକ । ଏହାଦ୍ୱାରା ଆକୃଷ୍ଟ ହୋଇ ଊନବିଂଶ ଶତାବ୍ଦୀରୁ ଭ୍ଲାଦିମିର୍ ପ୍ରପ୍, ଲେଭି ଷ୍ଟ୍ରସ୍, ଆଲାନ୍ ଦାଣ୍ଡିସ୍, ଏସ. ଜେଡ୍. ହେରିସ୍, ଏମ୍. ଏ. କେ. ହାଲିଡ଼େ, ନୋୟମ୍ ଚମ୍ସ୍କି, ଲାଜେ ଫୋଗେଡ୍, ପଲ ରିପାରସ୍କି, ରୋଜେନ୍ ବର୍ଗ, ଏଲିକ୍ଙ୍ଗସ୍ ମାରାଣ୍ଡା, ପିଏରା ମାରାଣ୍ଡା, ହେଣ୍ଡରିକସ୍, ଜେ. ଲିୟନସ୍ ପ୍ରମୁଖ ବହୁ ପାଶ୍ଚାତ୍ୟ ପଣ୍ଡିତ, ଭାଷାବିଜ୍ଞାନୀ, ନୃତତ୍ତ୍ୱବିତ୍, ସମାଜବିଜ୍ଞାନୀ ଲୋକଗଳ୍ପର ସଂଗ୍ରହ, ସଙ୍କଳନ ଏବଂ ବିଶ୍ଳେଷଣ ପାଇଁ ଆଗ୍ରହୀ ହୋଇଉଠିଛନ୍ତି । ଫଳରେ ବିଭିନ୍ନ ଦେଶର ଲୋକକଥାଗୁଡ଼ିକ ସଙ୍କଳନ କରିବାର ପ୍ରୟାସ ଆରମ୍ଭ ହୋଇଛି । ଆଞ୍ଚଳିକ ବିଶେଷତ୍ୱ, ସାମାଜିକ ସ୍ୱାଭିମାନ ଏବଂ ଜାତୀୟତା ବୋଧ ଏ ପ୍ରକାର ସଙ୍କଳନଗୁଡ଼ିକର ଆବଶ୍ୟକତା ଓ ଉପାଦେୟତାକୁ ଅଧିକ ପ୍ରୋତ୍ସାହିତ କରୁଛନ୍ତି । ଗୋଟିଏ ସଭ୍ୟତାରୁ ଅନ୍ୟ ଏକ ସଭ୍ୟତା ମଧ୍ୟକୁ ଅନୁପ୍ରବେଶ କଲାବେଳେ ଏସବୁ ସଙ୍କଳନର ମହତ୍ତ୍ୱ ବିଶେଷ ଭାବେ ଉପଲବ୍ଧି କରାଯାଉଛି । ଧର୍ମୀୟ ତଥା କୃଷିଭିତ୍ତିକ ପଲ୍ଲୀ ସଭ୍ୟତାରୁ ଶିଳ୍ପସମୃଦ୍ଧ ସହରୀ ସଭ୍ୟତା ମଧ୍ୟକୁ ପାଦ ବଢ଼ାଇଲାବେଳେ ଚିନ୍ତାଶୀଳ ବିଦ୍ୱାନ୍‌ମାନେ ଲୋକମୁଖ ପ୍ରଚଳିତ କଥା ଓ କାହାଣୀଗୁଡ଼ିକର ସଙ୍କଳନ ପାଇଁ ତୀବ୍ର ଉଦ୍ୟମ ଆରମ୍ଭ କରିଛନ୍ତି । ସଂଗ୍ରହଶାଳା ଓ ପ୍ରୟୋଗଶାଳାମାନ ଗଢ଼ିଉଠୁଛି । ଗବେଷଣା ପତ୍ରିକାମାନଙ୍କରେ ସଂଗୃହୀତ ଲୋକକାହାଣୀ ସବୁ ପ୍ରକାଶ ପାଉଛି । ସଂଗ୍ରାହକମାନେ ସମ୍ମାନିତ ହେଉଛନ୍ତି । ଏହି ପରିପ୍ରେକ୍ଷୀରେ ବିଚାର କଲେ ଗୁଣାଢ଼୍ୟ ହିଁ ଲୋକକଥା ସମୂହର ଆଦି ସଂଗ୍ରାହକ ରୂପେ ସର୍ବୋଚ୍ଚ ସମ୍ମାନର ଅଧିକାରୀ ହେବେ ।

ଗୁଣାଢ଼୍ୟଙ୍କ ସମୟକୁ (ଖ୍ରୀ.ପୂ. ବା ଖ୍ରୀ: ପ୍ରଥମ ଶତାବ୍ଦୀ) ବାଲ୍ମୀକି ଓ ବ୍ୟାସଙ୍କ ରାମାୟଣ, ମହାଭାରତ ଓ କେତେକ ପୁରାଣ ସୃଷ୍ଟି ଲାଭ କରିସାରିଥିଲା । ଏଥିପାଇଁ ବୋଧହୁଏ ପରବର୍ତ୍ତୀ ସାହିତ୍ୟ ସାଧକମାନେ ପୂର୍ବସୂରୀମାନଙ୍କୁ ସ୍ମରଣ କଲାବେଳେ ଗୁଣାଢ଼୍ୟଙ୍କୁ ତୃତୀୟ ସ୍ଥାନରେ ରଖିଛନ୍ତି । ରାମାୟଣରେ ପ୍ରଚଳିତ ରାମକଥାକୁ କାବ୍ୟରୂପ ପ୍ରଦାନ କରାଯାଇଥିବା ବେଳେ ମହାଭାରତ ଓ ପୁରାଣ ସମୂହରେ ଦେବଦେବୀ, ରାଜବଂଶ, ରାଜପୁରୁଷ ଏବଂ ଆନୁଷଙ୍ଗିକ ବୀରତ୍ୱବ୍ୟଞ୍ଜକ କଥା ଓ କିମ୍ବଦନ୍ତୀଗୁଡ଼ିକୁ ସଂଗ୍ରହ କରାଯାଇଛି । ଏସବୁର ଲକ୍ଷ୍ୟ ଥିଲା ଜନସମାଜକୁ ଧର୍ମ ମାର୍ଗରେ ପରିଚାଳନା

କରିବା; ସେମାନଙ୍କ ମନରେ ଧର୍ମଭାବ ଜାଗ୍ରତ କରାଇ ମୁକ୍ତିର ପଥ ପୁଷ୍ପିତ କରିବା । ଏଣୁ ଏହି ପୁରାଣ ପ୍ରଣେତାମାନେ ସ୍ୱୀୟ ଲକ୍ଷ୍ୟ ସାଧନ ପାଇଁ କେତେକ ଆବଶ୍ୟକୀୟ ଧର୍ମକଥାକୁ ଏଥିରେ ସ୍ଥାନିତ କରିଛନ୍ତି, ନୀତି ଓ ଆଦର୍ଶଜୀବନର ବାର୍ତ୍ତା ପ୍ରଚାର କରିଛନ୍ତି ।

ଗୁଣାଢ଼୍ୟ ଲକ୍ଷ୍ୟ କରିଛନ୍ତି ଏସବୁ ବ୍ୟତୀତ ଲୋକମୁଖରେ ରହିଛି ଅଜସ୍ର କାହାଣୀ । ସେ ରାଜ୍ୟ ତ୍ୟାଗ କରି ବୁଲିଛନ୍ତି ବହୁ ଦେଶ ବିଦେଶ; ଅତିକ୍ରମ କରିଛନ୍ତି ବିଭିନ୍ନ ସହର ଓ ଜନପଦ, ପର୍ବତ ଓ ଅରଣ୍ୟ; ସଂସ୍ପର୍ଶରେ ଆସିଛନ୍ତି ରାଜା, ମହାରାଜା, ସଚିବ, ସେନାପତି, ନାଗରକ, ଗ୍ରାମ୍ୟଜନତା, ଶବର ଓ ଭୀଲ୍‌ମାନଙ୍କର ଏବଂ ସେମାନଙ୍କଠାରୁ ଶୁଣିଛନ୍ତି ସଂଖ୍ୟାହୀନ ମୌଖିକ କଥା ଓ ଆଖ୍ୟାୟିକା । ସେ ଏସବୁକୁ ସାତଲକ୍ଷ ଶ୍ଳୋକରେ ଲିପିବଦ୍ଧ କରିଥିବା କଥା ଯାହା କୁହାଯାଉଛି, ତାହା ଏକ କାଳ୍ପନିକ ସଂଖ୍ୟା ମାତ୍ର; ଅନନ୍ତ–ତାର ଦ୍ୟୋତକ । ଗିରି ନିର୍ଝରିଣୀର ସ୍ୱାଭାବିକ ସୌନ୍ଦର୍ଯ୍ୟ ବହନ କରି ଏହି କଥାଗୁଡ଼ିକ ତାଙ୍କ ଅଭିଶପ୍ତ ଜୀବନକୁ ଆନନ୍ଦମୟ କରିଛି, ଭ୍ରମଣଜନିତ କ୍ଳାନ୍ତି ଦୂର କରିଛି, ରାଜ୍ୟ ତ୍ୟାଗର ଦୁଃଖକୁ ସ୍ମରଣ କରାଇଛି ଏବଂ ସର୍ବୋପରି ଭାରତୀୟ ସଭ୍ୟତା ଓ ସଂସ୍କୃତି ତଥା ଭାରତର ଅନ୍ତରାତ୍ମାକୁ ଚିହ୍ନିବାରେ ସାହାଯ୍ୟ କରିଛି ।

ସେ ଆହୁରି ମଧ୍ୟ ଲକ୍ଷ୍ୟ କରିଥିଲେ ଏହି ଲୋକକଥାଗୁଡ଼ିକର ବିଲୁପ୍ତି ଓ ବିକୃତି । ଖ୍ରୀଷ୍ଟ ଅବ୍ଦର ଆରମ୍ଭ ବେଳକୁ ଭାରତ ବର୍ଷରେ ବୌଦ୍ଧ ଓ ଜୈନଧର୍ମ ରାଜ ପୃଷ୍ଠପୋଷକତା ଲାଭ କରି ନିଜ ନିଜର ସ୍ଥିତିକୁ ସୁଦୃଢ଼ କରିସାରିଥିଲେ । ସେମାନଙ୍କ ଧର୍ମୀୟ ମତବାଦର ପରିପ୍ରଚାରପାଇଁ ଏବଂ ଏହାକୁ ସାଧାରଣ ଜନତା ନିକଟରେ ପହଞ୍ଚାଇବାପାଇଁ ସେମାନେ ପ୍ରଚଳିତ ଲୋକକଥାଗୁଡ଼ିକର ସାହାଯ୍ୟ ନେଉଥିଲେ । ଫଳରେ ସହଜ, ସୁନ୍ଦର, ସରସ ଓ ରୋମାଞ୍ଚକର ପ୍ରାଚୀନ କଥା ଓ ଆଖ୍ୟାନଗୁଡ଼ିକର ଧର୍ମାନ୍ତରୀକରଣ ଓ ରୂପାନ୍ତରୀକରଣ କରାଯାଉଥିଲା । ସେଗୁଡ଼ିକ ନିର୍ଝରିଣୀର ନିସର୍ଗ ସୁନ୍ଦର ରୂପ ପରିହାର କରି ଧମ୍ମକଥାର ଅବରୁଦ୍ଧ ପଲ୍ୱଲରେ ପରିଣତ ହେଉଥିଲେ ।

ଗୁଣାଢ଼୍ୟଙ୍କ ସମୟକୁ ବୌଦ୍ଧଜାତକ କଥା ସମୂହ ଲିପିବଦ୍ଧ ହୋଇସାରିଥିଲା । ଅଶୋକଙ୍କ ସମକାଳରେ ମହେନ୍ଦ୍ର ଏହାର ପ୍ରତିଲିପି ଧରି ସିଂହଳ ଯାତ୍ରା କରିଥିଲେ । ବୁଦ୍ଧଦେବଙ୍କ ପୂର୍ବ ପାଞ୍ଚଶହ (ପାଞ୍ଚଶହ ପଚାଶ ହୋଇପାରେ) ଜନ୍ମର ବିବରଣୀ ଏଥିରେ ସଂଗୃହୀତ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରଚଳିତ ଆର୍ଯ୍ୟ କଥାବଳୀର ନବୀକୃତ ରୂପ ମାତ୍ର । ଗୁଣାଢ଼୍ୟଙ୍କ 'ବଡ୍‌ଡ଼ କହା' ମଧ୍ୟରେ ଏହି ଗଳ୍ପଗୁଡ଼ିକର ସନ୍ଧାନ କରିବା କଷ୍ଟକର ନୁହେ । ସୀହଚମ୍ମ ଜାତକ, କଚ୍ଛପ ଜାତକ, ବକ ଜାତକ, ସୁଂସୁମାର ଜାତକ, ଅନ୍ଧଭୂତ ଜାତକ, ଚୁଲ୍ଲକ ଶେଟ୍‌ଠି ଜାତକ ଇତ୍ୟାଦି ଉଭୟତ୍ର ଦେଖିବାକୁ ମିଳେ । କିନ୍ତୁ ଏଥିରୁ 'ବୃହତ୍ କଥା' ଜାତକ ଗଳ୍ପ ଦ୍ୱାରା ପ୍ରଭାବିତ ବୋଲି କହିବା ଯୁକ୍ତିଯୁକ୍ତ ବୋଲି ମନେହୁଏ

ନାହିଁ । ଉଭୟ ସଙ୍କଳନ ପୂର୍ବରୁ ଏଗୁଡ଼ିକ ଲୋକମୁଖରେ ପ୍ରଚଳିତ ଥିଲା । ଜାତକ ରଚୟିତା ବୋଧିସତ୍ତ୍ୱଙ୍କ ପୂର୍ବଜନ୍ମମାନଙ୍କର ମହତ୍ତ୍ୱ ପ୍ରତିପାଦନପାଇଁ ଏଗୁଡ଼ିକୁ ବିନିଯୋଗ କରିଥିବା ବେଳେ ଗୁଣାଢ଼୍ୟ ସେସବୁକୁ ଅବିକୃତ ଭାବେ ନିଜ ସଂଗ୍ରହରେ ସ୍ଥାନ ଦେଇଛନ୍ତି । ପ୍ରଚଳିତ ଲୋକଗଳ୍ପ ବୌଦ୍ଧ ଭିକ୍ଷୁମାନଙ୍କ ଦ୍ୱାରା କିପରି ଧାର୍ମିକ ରୂପ ଲାଭ କରିଛି ତାର ଏକ ସୁସ୍ପଷ୍ଟ ନିଦର୍ଶନ ରୂପେ 'ମହାଜନକ ଜାତକ'କୁ ଗ୍ରହଣ କରାଯାଇପାରେ ।

ଜାତକ ସଙ୍କଳୟିତା ଗଳ୍ପଟିର ପ୍ରଥମାର୍ଦ୍ଧକୁ ଅବିକଳ ଭାବେ ଗ୍ରହଣ କରିଛନ୍ତି । ମିଥିଳାରେ ଅରିଷ୍ଟଜନକ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ପୋଲଜନକ ତାଙ୍କ କନିଷ୍ଠ ଭ୍ରାତା । ବିଦ୍ୱେଷ ପରାୟଣ ହୋଇ ପୋଲଜନକ ଜ୍ୟେଷ୍ଠଭ୍ରାତାଙ୍କୁ ହତ୍ୟାକରି ତାଙ୍କ ରାଜ୍ୟ ଅପହରଣ କଲେ । ଏ ସମୟରେ ଅରିଷ୍ଟଜନକଙ୍କ ମହାରାଣୀ ଥିଲେ ଅନ୍ତଃସତ୍ତ୍ୱା । ସେ ନିଜକୁ ଏବଂ ଗର୍ଭସ୍ଥ ସନ୍ତାନକୁ ରକ୍ଷା କରିବାପାଇଁ ଗୋପନରେ ରାଜଧାନୀ ପରିତ୍ୟାଗ କଲେ । ଗର୍ଭସ୍ଥ ସନ୍ତାନଟି ସ୍ୱୟଂ ବୋଧିସତ୍ତ୍ୱ ଥିବା ଯୋଗୁଁ ଦେବରାଜ ଇନ୍ଦ୍ର ତାଙ୍କର ରକ୍ଷା କରୁଥାନ୍ତି । ରାଣୀ ବହୁଦୂର ପଥ ଅତିକ୍ରମ କରି ଶେଷରେ ଚମ୍ପାନଗରୀରେ ଆସି ପହଞ୍ଚିଲେ । ଆଶ୍ରୟ ପାଇଁ ଇତସ୍ତତଃ ଭ୍ରମଣ କରୁଥିଲାବେଳେ ଜଣେ ନୈଷ୍ଠିକ ବ୍ରାହ୍ମଣ ଆଚାର୍ଯ୍ୟ ମହାସାରଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ମହାରାଣୀଙ୍କ ପରିଚୟ ଲାଭ କରି ଏବଂ ନିଜର ବିଦ୍ୟା ପ୍ରଭାବରେ ଗର୍ଭସ୍ଥ ସନ୍ତାନଟିର ପରିଚୟ ପାଇ ଆଚାର୍ଯ୍ୟ ତାଙ୍କୁ ଭଗିନୀର ସ୍ନେହ ଓ ମର୍ଯ୍ୟାଦା ପ୍ରଦାନ ପୂର୍ବକ ସ୍ୱଗୃହରେ ଆଶ୍ରୟ ଦେଲେ । କିଛିଦିନ ମଧ୍ୟରେ ବୋଧିସତ୍ତ୍ୱ ମହାରାଣୀଙ୍କ ପୁତ୍ର ରୂପେ ଭୂମିଷ୍ଠ ହେଲେ । ତାଙ୍କର ନାମକରଣ କରାଗଲା ମହାଜନକକୁମାର ।

ମହାଜନକକୁମାର ଯୌବନରେ ପଦାର୍ପଣ କରି ମାତାଙ୍କ ଠାରୁ ପିତାଙ୍କ ପରିଚୟ ଲାଭ କରିବା ସହିତ ସେମାନଙ୍କ ଦୁର୍ଦ୍ଦଶାର କାହାଣୀ ଅବଗତ ହେଲେ । ପିତୃହନ୍ତାର ପ୍ରତିଶୋଧ ଏବଂ ରାଜ୍ୟର ପୁନରୁଦ୍ଧାରପାଇଁ ସେ ମାତାଙ୍କର ଅନୁଜ୍ଞାକ୍ରମେ ବ୍ରାହ୍ମଣ ଗୃହରୁ ନିଷ୍କ୍ରାନ୍ତ ହେଲେ ।

କିଛିଦିନ ମଧ୍ୟରେ ସେ ଯାଇ ସମୁଦ୍ର କୂଳରେ ଉପସ୍ଥିତ ହେଲେ । ସେଠାରେ ଜଣେ ସାଧବଙ୍କ ସହିତ ତାଙ୍କର ମିତ୍ରତା ହେଲା । ସେ ତାଙ୍କ ଜାହାଜରେ ଜଳଯାତ୍ରା ଆରମ୍ଭ କଲେ । ଜାହାଜଟି ଦ୍ରୁତ ବେଗରେ ସମୁଦ୍ରବକ୍ଷ ଅତିକ୍ରମ କରିବାକୁ ଲାଗିଲା । ଦୁର୍ଭାଗ୍ୟବଶତଃ ଗତିବେଗ ସମ୍ଭାଳି ନପାରି ଜାହାଜର କାଷ୍ଠ ଫଳକଗୁଡ଼ିକ ଖୋଲିଯିବା ଫଳରେ ଜାହାଜଟି ଜଳମଗ୍ନ ହେଲା । କିନ୍ତୁ ମହାଜନକକୁମାର ସୌଭାଗ୍ୟ କ୍ରମେ ଜୀବନଧାରଣ କରି ଜଣେ ଦେବକନ୍ୟାର ସହାୟତାରେ ଚମ୍ପାନଗରୀରେ ଆସି ପହଞ୍ଚିଲେ ।

ଚମ୍ପାନଗରୀ ସେତେବେଳେ ଥିଲା ବିଷାଦଗ୍ରସ୍ତ । ପୋଲଜନକ ବାର୍ଦ୍ଧକ୍ୟରେ ଉପନୀତ ହୋଇ ମୃତ୍ୟୁର ଅପେକ୍ଷା କରୁଥିଲେ । ସେ ପୁତ୍ରହୀନ ଥିବାଯୋଗୁଁ ମିଥିଳାର ଉତ୍ତରାଧିକାରୀ ପାଇଁ ସଚିବମାନେ ଥିଲେ ଚିନ୍ତାଗ୍ରସ୍ତ । ରାଜାଙ୍କର ଏକମାତ୍ର କନ୍ୟା ସୀବଳି ତଥାପି ଥିଲେ ଅବିବାହିତା । ରାଜା ମନ୍ତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ଯେଉଁ ବ୍ୟକ୍ତି ଷୋଳଟି ସ୍ଥାନରେ ଥିବା ଗୁପ୍ତ ରତ୍ନକୁ ଉଦ୍ଧାର କରି, ସହସ୍ର ମଲ୍ଲଦ୍ୱାରା ଉଠାଯାଇପାରୁନଥିବା ଧନୁରେ ଗୁଣଯୁକ୍ତ କରି, ପାଲଙ୍କିର ରହସ୍ୟ ଉଦ୍‌ଘାଟନ ପୂର୍ବକ ସୀବଳିଙ୍କ ମନସ୍ତୁଷ୍ଟି କରିପାରିବ, ସେହି ବ୍ୟକ୍ତି ତାଙ୍କର ଜାମାତା ରୂପେ ରାଜ୍ୟର ଉତ୍ତରାଧିକାରୀ ହେବ ।

ରୂପସୀ ଓ ବିଦୁଷୀ ପତ୍ନୀ ସହିତ ରାଜ୍ୟଲାଭ ଆଶାରେ ବହୁ ବ୍ୟକ୍ତି ଆଗେଇ ଆସିଲେ । ସେନାପତି, କୋଷାଧ୍ୟକ୍ଷ, ଶ୍ରେଷ୍ଠୀ, ଅସିଗ୍ରାହକ, ସୂତ୍ରଧର ପ୍ରମୁଖ ନିଜନିଜ ପ୍ରୟାସରେ ବ୍ୟର୍ଥ ମନୋରଥ ହେଲେ । ଶେଷରେ ଆସିଲେ ମହାଜନକକୁମାର । ସେ ନିଜର ପ୍ରଚଣ୍ଡ ବିଦ୍‌ବତ୍ତା ଦ୍ୱାରା ଷୋଳଟି ସ୍ଥାନରେ ଥିବା ଗୁପ୍ତ ରତ୍ନକୁ ଆବିଷ୍କାର କଲେ । ତାଙ୍କଦ୍ୱାରା ସେହି ଅବିଜିତ ଧନୁରେ ଗୁଣସନ୍ଧାନ କରାଗଲା । ନିଜର ସୂକ୍ଷ୍ମ ଓ ତୀକ୍ଷ୍ଣ ଦୃଷ୍ଟିରେ ସେ ପାଲଙ୍କିର ରହସ୍ୟ ଉଦ୍‌ଘାଟନ କଲେ । ସୀବଳି ମହାଜନକକୁମାରଙ୍କ ବୁଦ୍ଧିମତ୍ତା, ବୀରତ୍ୱ ଓ ସୂକ୍ଷ୍ମ ଦୃଷ୍ଟିରେ ପ୍ରୀତ ହୋଇ ତାଙ୍କୁ ପତିପଦରେ ବରଣ କଲେ । ମହାଜନକକୁମାରଙ୍କ ପିତୃରାଜ୍ୟ ଉଦ୍ଧାର ହେଲା । ସେ ପୋଲଜନକଙ୍କ କନ୍ୟାକୁ ବିବାହ କରି ପିତୃହତ୍ୟାର ପ୍ରତିଶୋଧ ନେଲେ ।

କିନ୍ତୁ ହଠାତ୍ ରାଜା ମହାଜନକକୁମାରଙ୍କ ଚିତ୍ତରେ ବୈରାଗ୍ୟ ଭାବ ଜାଗ୍ରତ ହେଲା । ସେ ପ୍ରବ୍ରଜ୍ୟା ଗ୍ରହଣ କରିବାପାଇଁ ନିଷ୍ପତ୍ତି ନେଲେ । ରାଣୀ ସୀବଳି ତାଙ୍କୁ ଏଥିରୁ ନିବୃତ୍ତ କରିବାପାଇଁ ଚେଷ୍ଟାକରି ବିଫଳ ମନୋରଥ ହେଲେ । ବୋଧିସତ୍ତ୍ୱଙ୍କ ଅଂଶରେ ଜନ୍ମଗ୍ରହଣ କରିଥିବା ମହାଜନକକୁମାର ଶେଷରେ ପ୍ରବ୍ରଜ୍ୟା ଗ୍ରହଣ କରି ବୁଦ୍ଧତ୍ୱ ପ୍ରାପ୍ତି ଦିଗରେ ଅଗ୍ରସର ହେଲେ ।

ଗଳ୍ପଟିର ଶେଷାଂଶ ଅର୍ଥାତ୍ ମହାଜନକକୁମାରଙ୍କ ବୈରାଗ୍ୟ ଓ ପ୍ରବ୍ରଜ୍ୟା ଗ୍ରହଣ ମୂଳଗଳ୍ପ ସହିତ ସଂଯୋଗ ରକ୍ଷା କରିପାରୁନାହିଁ । ବୌଦ୍ଧଭିକ୍ଷୁ ଆହୃତ ଲୋକଗଳ୍ପଟିକୁ ଧର୍ମକଥାରେ ପରିଣତ କରିବାପାଇଁ ଏ ପ୍ରକାର ପ୍ରୟାସ କରିଛନ୍ତି ।

ସେହିପରି, କେବଳ ବୌଦ୍ଧଭିକ୍ଷୁମାନେ ନୁହଁନ୍ତି, ଜୈନସୂରୀମାନେ ମଧ୍ୟ ପ୍ରଚଳିତ ଲୋକକଥାଗୁଡ଼ିକୁ ନିଜ ଧର୍ମର ପରିପ୍ରଚାର ଓ ମହତ୍ତ୍ୱ ବୃଦ୍ଧି ନିମିତ୍ତ ବିନିଯୋଗ କରିଥିବା ଲକ୍ଷ୍ୟ କରାଯାଏ । ସେମାନଙ୍କ ଦ୍ୱାରା ସାଧାରଣ ଲୋକକଥା କାହିଁକି ବାଲ୍ମୀକି ଓ ବ୍ୟାସଙ୍କ ରାମାୟଣ ଓ ମହାଭାରତ ମଧ୍ୟ ପରିବର୍ତ୍ତିତ ହୋଇଅଛି । ଗୁଣାଢ଼୍ୟଙ୍କ ଠିକ୍ ପରବର୍ତ୍ତୀ

ସମୟରେ (ସମସାମୟିକ ବି ହୋଇପାରନ୍ତି) ବିମଳସୂରୀ ରଚନା କରିଥିଲେ 'ପଉମଚରୀୟ' । ଏହା ବାଲ୍ମୀକି ରାମାୟଣର ଏକ ଜୈନ ସଂସ୍କରଣ । ବାଲ୍ମୀକିଙ୍କ ରାମ ଏଥିରେ ପଦ୍ମରୂପେ ଅଭିହିତ । ସେ ରାବଣକୁ ଜଣେ ଜୈନଧର୍ମାବଲମ୍ବୀ ବିଦ୍ୟାଧର ରୂପେ ଚିତ୍ରଣ କରିଛନ୍ତି । ରାମଙ୍କ ବାଳୀବଧ, ମୃଗ ଶିକାର, ସେତୁବନ୍ଧ ବନ୍ଧନ, ବାନରମାନଙ୍କ ମର୍କଟତ୍ୱକୁ ସ୍ୱୀକୃତି ଦେଇନାହାଁନ୍ତି । ରାମଙ୍କୁ ଶେଷରେ ସେ ଜୈନଧର୍ମରେ ଦୀକ୍ଷିତ କରାଇ 'କେବଳ' ଜ୍ଞାନ ବଳରେ ନିର୍ବାଣ ପ୍ରଦାନ କରିଛନ୍ତି ।

ବିମଳସୂରୀଙ୍କ କାବ୍ୟରେ ଥିବା ହିନ୍ଦୁଧର୍ମ ତଥା ବ୍ରାହ୍ମଣମାନଙ୍କ ପ୍ରତି ଅଭିଯୋଗ ଓ ଆକ୍ଷେପ ସବୁ ତାଙ୍କ ନିଜର ବୋଲି କହିବା ଯୁକ୍ତିଯୁକ୍ତ ମନେହୁଏ ନାହିଁ । ଦୀର୍ଘସମୟ ଧରି ଆର୍ଷ ପରମ୍ପରାରେ ପ୍ରଚଳିତ ଲୋକକଥାଗୁଡ଼ିକୁ ଜୈନଧର୍ମର ଆବରଣ ଦେବାପାଇଁ ଯେଉଁ ଉଦ୍ୟମ ଚାଲିଥିଲା ବିମଳସୂରୀଙ୍କ ଏହି ପ୍ରାକୃତ ମହାକାବ୍ୟ ତା'ର ଫଳଶ୍ରୁତି ମାତ୍ର । ପରବର୍ତ୍ତୀ ସମୟରେ ଏମାନେ ମହାଭାରତ, ହରିବଂଶ, ଏପରିକି ଉଦୟନ ଓ ନରବାହନଦତ୍ତ କଥାକୁ ନିଜ ଧର୍ମପ୍ରଚାର ପାଇଁ ବ୍ୟବହାର କରିଥିବା ଏକାନ୍ତ ଲକ୍ଷଣୀୟ ।

ପ୍ରଚଳିତ ଲୋକକଥାଗୁଡ଼ିକର ଏପରି ବିକୃତି ଓ ବିପରିଣାମ ଦେଖି ଗୁଣାଢ଼୍ୟଙ୍କ ମନରେ ଏସବୁକୁ ଲୋକମୁଖରୁ ଅବିକଳ ଭାବେ ସଂଗ୍ରହ କରିବାର ଆକାଂକ୍ଷା ଜାଗ୍ରତ ହୋଇଥିବା ଅସ୍ୱାଭାବିକ ନଥିଲା । 'କଥାସରିତ୍‌ସାଗର'ରୁ ଗୁଣାଢ଼୍ୟଙ୍କ ସମ୍ପର୍କରେ ଯେଉଁ ବିବରଣୀ ମିଳେ ସେଥିରୁ ଦୁଇଟି ବିଷୟ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ହେଲା ସେ ସାତଲକ୍ଷ ପୃଷ୍ଠା/ଶ୍ଳୋକରେ ନିଜ ଗ୍ରନ୍ଥଟି ରଚନା କରି ରାଜା ଓ ରାଜପରିଷଦ ଦ୍ୱାରା ଗୃହୀତ ନହେବାରୁ ସେଗୁଡ଼ିକୁ ଅଗ୍ନିକୁଣ୍ଡରେ ନିକ୍ଷେପ କରି ନଷ୍ଟ କରିଥିଲେ । ରାଜସ୍ୱୀକୃତି ପାଇ ମାତ୍ର ଏକଲକ୍ଷ ଶ୍ଳୋକ ଅବଶିଷ୍ଟ ରହିଲା । ଏଥିରୁ ମନେହୁଏ ଗୁଣାଢ଼୍ୟ ଭାରତବର୍ଷ ଏବଂ ଭାରତବର୍ଷକୁ ଆସୁଥିବା ବିଭିନ୍ନ ବ୍ୟକ୍ତିଙ୍କଠାରୁ ଯେଉଁସବୁ ଗଳ୍ପ ଶ୍ରବଣ କରିଥିଲେ ସେସବୁ ମଧ୍ୟରୁ ନିର୍ବାଚନ କରି ଏହି ଏକଲକ୍ଷ ଶ୍ଳୋକ ବିଶିଷ୍ଟ 'ବୃହତ୍ କଥା' ସଙ୍କଳନ କରିଥିଲେ ।

ଏ ପ୍ରସଙ୍ଗରେ ହାଳଙ୍କ 'ଗାଥାସପ୍ତଶତୀ'ର ଉଲ୍ଲେଖ କରାଯାଇପାରେ । ଗୁଣାଢ଼୍ୟଙ୍କ ପରି ହାଳଙ୍କ ସମୟ ମଧ୍ୟ ଅମୀମାଂସିତ । କେହି କେହି ତାଙ୍କୁ ଗୁଣାଢ଼୍ୟଙ୍କ ପୃଷ୍ଠପୋଷକ ସାତବାହନଙ୍କ ସହିତ ଚିହ୍ନିତ କରିଥାନ୍ତି । କବି ହାଳ ମଧ୍ୟ ଗୁଣାଢ଼୍ୟଙ୍କ ପରି ଥିଲେ ଜଣେ ଲୋକଗୀତି, ଲୋକପ୍ରବାଦ ଓ ପ୍ରବଚନର ସଂଗ୍ରହକର୍ତ୍ତା । ସେ ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ଏକକୋଟି ଲୋକପ୍ରିୟ ଗାଥା ସଂଗ୍ରହ କରିଥିଲେ । ତା' ମଧ୍ୟରୁ ନିର୍ବାଚନ କରି ସେ ଆମକୁ ସାତଶହ ଗାଥା ପ୍ରଦାନ କରିଛନ୍ତି । ସେ ଲୋକମୁଖରୁ ଯେଉଁ ସଦୁକ୍ତି, ସୁଭାଷଣ, ପ୍ରବଚନ ତଥା କାବ୍ୟିକ ଉଚ୍ଚାରଣ ସବୁ ଅବିକଳ ସଂଗ୍ରହ କରିଥିଲେ ସେଗୁଡ଼ିକ ପରବର୍ତ୍ତୀ ସମୟରେ ପରିମାର୍ଜିତ ହୋଇ ମହାରାଷ୍ଟ୍ରୀ ପ୍ରାକୃତ ମାଧ୍ୟମରେ ଆମ ନିକଟରେ

ଆସି ପହଞ୍ଚିଛି । ଗୁଣାଢ଼୍ୟଙ୍କ ସାତଲକ୍ଷ ପରି ହାଳଙ୍କ ଏକକୋଟି ଶ୍ଳୋକ ମଧ ପ୍ରଚଳିତ ଗଳ୍ପ ଓ ଲୋକୋକ୍ତିର ଅସୀମତା ହିଁ ସୂଚିତ କରିଥାନ୍ତି । ଖ୍ରୀଷ୍ଟୀୟ ଶତାବ୍ଦୀର ଆରମ୍ଭ ବେଳକୁ ଏହି ଉଭୟ କବି ମନୀଷୀଙ୍କ ଲୋକକଥା ଓ ଲୋକଗୀତି ସଂଗ୍ରହ ଉଦ୍ୟମ ନିଶ୍ଚିତ ଭାବେ ବିସ୍ମୟକର ।

ଗୁଣାଢ଼୍ୟ ସମ୍ପର୍କୀୟ ଅନ୍ୟତମ ବିବରଣୀ ହେଲା, ସେ ପୈଶାଚୀ ଭାଷାରେ ପଶୁଚର୍ମ ଓ ନିଜ ରକ୍ତରେ 'ବୃହତ୍‌କଥା'କୁ ଲିପିବଦ୍ଧ କରିଥିଲେ । ଏହାର ସତ୍ୟତା ଉପରେ ସନ୍ଦେହ କରିବାର ଯଥେଷ୍ଟ ଅବକାଶ ଅଛି । କିନ୍ତୁ ଆଜିର ଲୋକସାହିତ୍ୟ ସଂଗ୍ରାହକମାନଙ୍କ ଅନୁଭୂତି ଶୁଣିଲେ (ଉତ୍କଳ ଗାଉଁଲି ଗୀତି, ମୁଖବନ୍ଧ—ଚକ୍ରଧର ମହାପାତ୍ର) ଏହାର ସତ୍ୟତା ଉପରେ ଅବିଶ୍ୱାସ କରିହେବ ନାହିଁ । ଅବଶ୍ୟ ସୋମଦେବ ଅତିଶୟୋକ୍ତି ମାଧ୍ୟମରେ ଏହାକୁ ପ୍ରକାଶ କରିଛନ୍ତି । ଗୁଣାଢ଼୍ୟ ପୁରପଲ୍ଲୀ ଓ ଆଦିବାସୀ ଅଞ୍ଚଳରୁ ବହୁ ଲୋକକଥା ସଂଗ୍ରହ କରିଛନ୍ତି । ସେତେବେଳେ ଆଜପରି ଫାଉନ୍‌ଟେନ୍ ପେନ୍ କିମ୍ବା କାଗଜର ବ୍ୟବହାର ନଥିଲା । ତେଣୁ ଜଣେ ପରିବ୍ରାଜକ ବା ଭ୍ରମଣକାରୀ ପକ୍ଷରେ ଗୋଛାଏ ତାଳପତ୍ର କିମ୍ବା ଭୂର୍ଜପତ୍ର ବହନ କରିଯିବା ସମ୍ଭବ ନୁହେଁ । ପୁଣି ଜଣେ ନିଷ୍ଠାପର ଲୋକସାହିତ୍ୟ ସଂଗ୍ରାହକଙ୍କ ନୀତି ହେଲା ସେ ଲୋକମୁଖରୁ ଯେଉଁଠାରୁ ଯାହା ଶୁଣିବେ ତାକୁ ସେଠାରେ ସଙ୍ଗେସଙ୍ଗେ ଅବିକଳ ଲିପିବଦ୍ଧ କରିବେ । ଗୁଣାଢ଼୍ୟ ବୋଧହୁଏ ତାହାହିଁ କରୁଥିଲେ । ଯେଉଁଠି ଯେଉଁ ଲିଖନ ଉପାଦାନ ମିଳିଲା ସେ ତାହାର ସଦ୍‌ବିନିଯୋଗ କରିଛନ୍ତି । କେଉଁଠି ଭୂର୍ଜପତ୍ର, କେଉଁଠି ତାଳପତ୍ର ଏବଂ ଅନ୍ୟ କେଉଁଠି ମୃଗ, ବ୍ୟାଘ୍ର, ହସ୍ତୀ, ଭଲ୍ଲୁକ ଚର୍ମ, ଲେଖିବା ପାଇଁ ଲେଖନୀ ବା କାଳୀର ଅଭାବ ହେଲେ ପଶୁପକ୍ଷୀଙ୍କ ରକ୍ତ, ତାହା ମଧ ଯଦି ନ ମିଳେ ନିଜ ରକ୍ତରେ କୁଟାକାଠିରେ ସେ କାହାଣୀଗୁଡ଼ିକୁ ଲିପିବଦ୍ଧ କରୁଥିଲେ । ଏହି ଅସଂଖ୍ୟ କାହାଣୀର ପାଣ୍ଡୁଲିପିକୁ ଧରି ପଦବ୍ରଜରେ ଭ୍ରମଣ କରିବା ସମ୍ଭବ ନହେଲେ ସେ ଯେଉଁଗୁଡ଼ିକ ଶୁଷ୍କ, ନୀରସ ଓ ସଂରକ୍ଷଣର ଅନାବଶ୍ୟକ ମନେ କରିଛନ୍ତି, ସେସବୁକୁ ନଷ୍ଟ କରିଦେଇଛନ୍ତି । କିମ୍ବା ଏହା ବି ହୋଇଥାଇପାରେ ଯେ, ହେବା ବି ଅସମ୍ଭବ ନୁହେ, ଗୋଟିଏ ଗୋଟିଏ କଥା ଅବିକଳ ବା କିଞ୍ଚିତ୍ ଭିନ୍ନ ରୂପରେ ତାଙ୍କର ହସ୍ତଗତ ହୋଇଛି । ସମ୍ପାଦନା ବେଳେ ସେ ସେସବୁର ଉପାଦେୟତା ଉପଲବ୍ଧି ନ କରି ନଷ୍ଟ କରିଦେଇଛନ୍ତି । ସେହିପରି ଏ ସମ୍ପର୍କରେ ଅନ୍ୟ ଏକ ସମ୍ଭାବନାକୁ ମଧ ଏଡ଼ାଇ ଦିଆଯାଇ ନପାରେ । ଗୁଣାଢ଼୍ୟ ସଂଗୃହୀତ ଗଳ୍ପଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ଆବରଣ-ଗଳ୍ପ ମଧ୍ୟରେ ସଜ୍ଜିତ କରି ରଖିବାପାଇଁ ଯେଉଁ ସୂତ୍ରଟି କଳ୍ପନା କରିଥିଲେ, ତା' ମଧ୍ୟକୁ ଆସିପାରୁ ନଥିବା ଗଳ୍ପଗୁଡ଼ିକୁ ସେ ପରିତ୍ୟାଗ ବା ନଷ୍ଟ କରି ଦେଇଛନ୍ତି । ଏହାହିଁ ବୋଧହୁଏ ସାତଲକ୍ଷ ଓ ଏକଲକ୍ଷ ଶ୍ଳୋକ ବିଶିଷ୍ଟ ନରରକ୍ତରେ ଲିଖିତ ଚର୍ମପାଣ୍ଡୁଲିପିର ଦ୍ୟୋତନା ।

ସେହିପରି ଗୁଣାଢ଼୍ୟଙ୍କ 'ବଡ଼ଡ଼କହା' ପୈଶାଚୀ ଭାଷାରେ ଲିଖିତ । ସଂସ୍କୃତ ଓ ପ୍ରାକୃତ ଭାଷା ବ୍ୟବହାରକୁ ପରିତ୍ୟାଗ କରିବାପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିବା ଯୋଗୁଁ ସେ ଏହାକୁ ପୈଶାଚୀ ଭାଷାରେ ଲିପିବଦ୍ଧ କରିଥିଲେ । ଏ ଭାଷା ସମ୍ପର୍କରେ ମଧ୍ୟ ଆଲୋଚକମାନଙ୍କ ମଧ୍ୟରେ ଏକମତ ପ୍ରକାଶ ପାଇପାରୁ ନାହିଁ । ପ୍ରାକୃତ ବ୍ୟାକରଣକାରମାନଙ୍କ ଅନୁଯାୟୀ ଚତୁର୍ବିଧ ପ୍ରାକୃତ ଭାଷା ମଧ୍ୟରୁ ପୈଶାଚୀ ଅନ୍ୟତମ– ମହାରାଷ୍ଟ୍ରୀ, ସୌରସେନୀ, ମାଗଧୀ ଓ ପୈଶାଚୀ । ଏଗୁଡ଼ିକର ପୁଣି ବହୁ ଆଞ୍ଚଳିକ ରୂପ ବିଦ୍ୟମାନ । ସାଧାରଣତଃ ପୈଶାଚୀ ଭାଷା ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ ଅର୍ଥାତ୍ କାଶ୍ମୀର, ବେଲୁଚିସ୍ତାନ୍ ପ୍ରଭୃତି ସ୍ଥାନରେ ବ୍ୟବହୃତ ହେଉଥିଲା ବୋଲି କୁହାଯାଏ । କିନ୍ତୁ କାଶ୍ମୀର ସହିତ ଗୁଣାଢ଼୍ୟଙ୍କ ସମ୍ପର୍କ ବିଷୟରେ ଆଲୋଚକମାନେ ସନ୍ଦିହାନ୍ । ସେ ହୁଏତ ସାତବାହନ ରାଜାମାନଙ୍କ ରାଜ୍ୟ ଦାକ୍ଷିଣାତ୍ୟ କିମ୍ବା ଉଜ୍ଜୟିନୀର ଅଧିବାସୀ ବୋଲି ବିବେଚିତ ହୋଇଥାନ୍ତି । ଏହାକୁ ଆଧାର କରି ପୈଶାଚୀକୁ କେହି କେହି ବିନ୍ଧ୍ୟାଞ୍ଚଳରେ ବାସ କରୁଥିବା ଜନସମାଜର ଭାଷା ବୋଲି ନିରୂପଣ କରିଥାନ୍ତି । କିନ୍ତୁ ମନେହୁଏ ଗୁଣାଢ଼୍ୟ ବିଭିନ୍ନ ଅଞ୍ଚଳର ଲୋକମୁଖର ଭାଷାରେ ଏଗୁଡ଼ିକୁ ସଂଗ୍ରହ ପୂର୍ବକ ସଙ୍କଳନ କରିଥିବା ଯୋଗୁଁ ଗ୍ରନ୍ଥଟିର ଭାଷା ସାଧାରଣ ବିଦ୍ୱାନ୍‌ମାନଙ୍କ ପାଇଁ ଥିଲା ଦୁର୍ବୋଧ ଓ ଅବୋଧ । ତେଣୁ ସେମାନେ ତାକୁ ସ୍ୱୀକୃତି ଦେଇପାରି ନଥିଲେ । ଅଧିକନ୍ତୁ ସେମାନେ ଏହାକୁ ପିଶାଚମାନଙ୍କ ଭାଷା କହି ଗ୍ରନ୍ଥଟିର ଅବମାନନା କରିଥିଲେ ।

କିନ୍ତୁ ଗୁଣାଢ଼୍ୟ ଯେଉଁପରି ଭାବେ ପ୍ରଚଳିତ ଲୋକକଥାଗୁଡ଼ିକୁ ସଂଗ୍ରହ କରିଛନ୍ତି ତାହା ଆଜିର ବୈଜ୍ଞାନିକ ପଦ୍ଧତିଠାରୁ ଭିନ୍ନ ବୋଲି ମନେହୁଏ ନାହିଁ । ଦୁଇହଜାର ବର୍ଷ ପୂର୍ବେ ଗୁଣାଢ଼୍ୟଙ୍କ ଦୂରଦୃଷ୍ଟି ଏବଂ ଲୋକସାହିତ୍ୟ ସଂଗ୍ରହଣରେ ବୈଜ୍ଞାନିକ ପଦ୍ଧତି ଆଜିର ଗବେଷକମାନଙ୍କ ପାଇଁ ନିଶ୍ଚିତ ଭାବେ ବିସ୍ମୟକର । ମହାକବି ହାଳ ଗୁଣାଢ଼୍ୟଙ୍କ ପଦାଙ୍କ ହିଁ ଅନୁସରଣ କରିଥିବା ଏଠାରେ ଉଲ୍ଲେଖନୀୟ ।

ଗୁଣାଢ଼୍ୟଙ୍କ 'ବଡ଼ଡ଼କହା'ଠାରୁ ସୋମଦେବଙ୍କ 'କଥାସରିତ୍ ସାଗର'ର କାଳ ବ୍ୟବଧାନ ପ୍ରାୟ ଏକହଜାର ବର୍ଷ ବା ତତୋଽଧିକ । ଏହି ଦୀର୍ଘସମୟ ମଧ୍ୟରେ ଗୁଣାଢ଼୍ୟଙ୍କ କବିକୀର୍ତ୍ତି ଯେ ଦିଗନ୍ତ ବିସ୍ତୃତି ଲାଭ କରିଛି ତା' ନୁହେଁ, ତାଙ୍କ ଗ୍ରନ୍ଥର ଲୋକପ୍ରିୟତା ବହୁଳଭାବେ ବୃଦ୍ଧିପ୍ରାପ୍ତ ହୋଇଛି । ଏହାକୁ ସୁବୋଧ କରିବାପାଇଁ ବିଦ୍ୱାନ୍‌ମାନେ ତା'ର ଭାଷାକୁ ମାର୍ଜନା କରିଛନ୍ତି, ତା'କୁ ବିଭିନ୍ନ ଭାଷାରେ ଅନୁବାଦ କରିଛନ୍ତି, ତା'ର ସାର ସଂଗ୍ରହ ପ୍ରସ୍ତୁତ କରିଛନ୍ତି ଏବଂ କେହି କେହି ତା'ର କଥାବସ୍ତୁ ଆଧାରରେ ବିଦଗ୍ଧ ସାହିତ୍ୟ ସୃଷ୍ଟି କରିଛନ୍ତି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ 'ଉଦୟନନ୍ କଡ଼ାଇ' ବା 'ପେରୁନ୍‌ଗଢ଼େ' ନାମରେ ଏହାର ଏକ ଅସମ୍ପୂର୍ଣ୍ଣ ତାମିଲ୍ ଅନୁବାଦ ପ୍ରସ୍ତୁତ କରାଯାଇଥିବା ଜଣାଯାଏ । ବୁଦ୍ଧସ୍ୱାମୀଙ୍କ ସମୟ ସଠିକ୍ ଭାବେ ନିରୂପିତ ହୋଇପାରୁନଥିଲେ ସୁଦ୍ଧା ପଞ୍ଚମ କିମ୍ବା

ଷଷ୍ଠ ଶତାବ୍ଦୀ ବେଳକୁ ସେ 'ବୃହତ୍ କଥାଶ୍ଳୋକ ସଂଗ୍ରହ' ନାମରେ ଏକ ଅସମ୍ପୂର୍ଣ୍ଣ ସାର ସଂଗ୍ରହାତ୍ମକ ଗ୍ରନ୍ଥ ରଚନା କରିଥିବା ଦେଖିବାକୁ ମିଳେ । ଏହାକୁ ବିଭିନ୍ନ ପାଶ୍ଚାତ୍ୟ ବିଦ୍ୱାନ୍ ମୂଳ ବୃହତ୍ କଥାର ନିକଟତର ବୋଲି ମନେ କରନ୍ତି । ଆର୍. ନରସିଂହାଚାରିଅର୍ ଗଙ୍ଗାବଂଶର ଶାସକ ଦୁର୍ବିନୀତ ଷଷ୍ଠ ଶତାବ୍ଦୀରେ ଏହାର ଏକ ସଂସ୍କୃତ ଅନୁବାଦ ପ୍ରସ୍ତୁତ କରିଥିବା ସମ୍ପର୍କରେ ଆମକୁ ସୂଚନା ଦିଅନ୍ତି । ପ୍ରାୟ ଖ୍ରୀଷ୍ଟାବ୍ଦ ୧୦୩୭ ବେଳକୁ କ୍ଷେମେନ୍ଦ୍ର ବୃହତ୍ କଥାର ଏକ ସଂକ୍ଷିପ୍ତ ସଂସ୍କରଣ ପ୍ରସ୍ତୁତ କରିଥିଲେ, କିନ୍ତୁ ସେ ସଂକ୍ଷିପ୍ତ କରିବାକୁ ଯାଇ 'ବୃହତ୍‌କଥା ମଞ୍ଜରୀ'କୁ ଅଧିକାଂଶ ସ୍ଥଳରେ ଦୁର୍ବୋଧ କରିଦେଇଛନ୍ତି । ବର୍ତ୍ତମାନ କେବଳ ସୋମଦେବଙ୍କ 'କଥାସରିତ ସାଗର'କୁ ଭିତ୍ତିକରି ହିଁ ଗୁଣାଢ଼୍ୟଙ୍କ ଅମରକୃତି ବୃହତ୍ କଥା ସମ୍ପର୍କରେ ଏକ ଧାରଣା କରାଯାଉଅଛି ।

ବୃହତ୍‌କଥା ସମ୍ପର୍କରେ ଯେଉଁମାନେ ଆଲୋଚନା କରିଛନ୍ତି, ସେହି ସମସ୍ତ ପାଶ୍ଚାତ୍ୟ ଆଲୋଚକଙ୍କ ମତରେ ବୃହତ୍‌କଥାର ମୂଳରୂପ ବହୁଦିନରୁ ବିଲୁପ୍ତ । କାଶ୍ମୀରୀୟ ପଣ୍ଡିତମାନେ ଏହାର ଯେଉଁ ପୈଶାଚୀ ପ୍ରତିଲିପି ପ୍ରସ୍ତୁତ କରିଥିଲେ ତାହାହିଁ ପରବର୍ତ୍ତୀ ସମସ୍ତ ସମ୍ପର୍କିତ ଗ୍ରନ୍ଥର ଆଧାର । ଏପରିକି ଉତ୍ତର ଏକାଦଶ ଶତାବ୍ଦୀରେ 'ଶୃଙ୍ଗାର ପ୍ରକାଶ' ପ୍ରଣେତା ଭୋଜ ଏବଂ ସପ୍ତଦଶ ଶତାବ୍ଦୀରେ ଉତ୍କଳୀୟ ପ୍ରାକୃତ ବ୍ୟାକରଣ ପ୍ରଣେତା ମାର୍କଣ୍ଡେୟ ଯେଉଁ ପୈଶାଚୀ 'ବୃହତ୍‌କଥା' ଦେଖିଥିଲେ, ତାହା ମଧ୍ୟ ସେହି କାଶ୍ମୀରୀୟ ସଂସ୍କରଣ ବୋଲି ସେମାନଙ୍କ ମତ । ସେ ଯାହାହେଉ କାଶ୍ମୀର ପଣ୍ଡିତମାନେ ବୃହତ୍‌କଥାର ଯେଉଁ ପୈଶାଚୀ ସଂସ୍କରଣ ପ୍ରସ୍ତୁତ କରିଥିବେ, ତାହା ଯେ ମୂଳର ଅବିକଳ ଅନୁରୂପ ହୋଇଥିବ, ଏଥିରେ ବିଶେଷ ସନ୍ଦେହର ଅବକାଶ ନାହିଁ ।

ଖ୍ରୀଷ୍ଟଜନ୍ମର ପୂର୍ବ ଶତାବ୍ଦୀରୁ ଖ୍ରୀଷ୍ଟପର ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତବର୍ଷର ରାଜନୈତିକ ଇତିହାସ ଯେପରି ବୀରତ୍ୱବ୍ୟଞ୍ଜକ ସେହିପରି ସାଂସ୍କୃତିକ ଓ ସାରସ୍ୱତ ଇତିହାସ ମଧ୍ୟ ସମୃଦ୍ଧ ଓ ଜ୍ଞାନଦୀପ୍ତ । ଭାରତୀୟ ମନୀଷୀମାନେ ଜ୍ଞାନରାଜ୍ୟର ବିଭିନ୍ନ ପରିସରରେ ଯେଉଁ ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ତାହା ଆଜିର ବୈଜ୍ଞାନିକ ଯୁଗରେ ସୁଦ୍ଧା ଦେଶ ବିଦେଶର ତତ୍ତ୍ୱବିଦ ଓ ଗବେଷକମାନଙ୍କୁ ବିସ୍ମିତ କରୁଛି । ବେଦ, ଉପନିଷଦ୍ ପ୍ରଭୃତିରେ ଯେଉଁ ଗୂଢ଼ତତ୍ତ୍ୱ ସମୂହ ସାଧାରଣ ଜନତା ପାଇଁ ଥିଲା ଦୁରଧିଗମ୍ୟ, ଏ ସମୟରେ ସେ ସବୁର ବିଶ୍ଳେଷିତ ରୂପ ଜନସମାଜର କଲ୍ୟାଣ ପାଇଁ ବିଭିନ୍ନ ରୂପରେ ପ୍ରକାଶଲାଭ କରିଛି । ରାମାୟଣ ଓ ମହାଭାରତର ଯେଉଁ ରୂପ ଆଜି ଆମ ପାଇଁ ସୁଲଭ, ତାହା ଏହି ସମୟରେ ହିଁ ରୂପଲାଭ କରିଥିଲା ବୋଲି ଗବେଷକମାନେ ନିର୍ଦ୍ଧାରଣ କରିଛନ୍ତି । ହିନ୍ଦୁ ଅଷ୍ଟାଦଶ ମହାପୁରାଣ ଓ ଅଷ୍ଟାଦଶ ଉପପୁରାଣରୁ ଅଧିକାଂଶ ସହିତ ଜୈନ ଓ ବୌଦ୍ଧ ପୁରାଣଗୁଡ଼ିକ ମଧ୍ୟ ଏହି ହଜାର ବର୍ଷ ମଧ୍ୟରେ ହିଁ ସଙ୍କଳିତ ହୋଇଥିଲା । ରାଜଶକ୍ତିର ପୃଷ୍ଠପୋଷକତା ଲାଭକରି ପୂର୍ବୋତ୍ତର ଭାରତବର୍ଷରେ ବୌଦ୍ଧଧର୍ମ ଏବଂ

ଦକ୍ଷିଣ-ପଶ୍ଚିମ ବିଶେଷକରି ରାଜସ୍ଥାନ, ଗୁର୍ଜର, ମହାରାଷ୍ଟ୍ର ଇତ୍ୟାଦି ଅଞ୍ଚଳରେ ଜୈନଧର୍ମ ତା'ର ପକ୍ଷ ବିସ୍ତାର କରିଥିଲା । ଏମାନଙ୍କ ମଧ୍ୟରେ ପରସ୍ପର ବିରୋଧ ଥିବା ସତ୍ତ୍ୱେ ଭାରତୀୟ ସଂସ୍କୃତିର ସୁରକ୍ଷା ଓ ସମୃଦ୍ଧିପାଇଁ ଏ ସମସ୍ତଙ୍କର ଅବଦାନ ସ୍ୱଳ୍ପ ନୁହେଁ । ଭାରତୀୟ ଜନତା ଏ ସମସ୍ତ ମତବାଦକୁ ସମାନ ସହୃଦୟତାର ସହ ଗ୍ରହଣ କରିଆସିଛନ୍ତି ।

କେବଳ ପୁରାଣ ନୁହେଁ ଧର୍ମଶାସ୍ତ୍ର, ଦର୍ଶନ ଓ ଅର୍ଥଶାସ୍ତ୍ର କ୍ଷେତ୍ରରେ ମଧ୍ୟ ଏ ସମୟର ପ୍ରସିଦ୍ଧ ପଣ୍ଡିତମାନେ ନିଜ ନିଜ ଜ୍ଞାନବତ୍ତାର ପରିଚୟ ଦେଇଯାଇଛନ୍ତି । ଖ୍ରୀଷ୍ଟପୂର୍ବ ଶତାବ୍ଦୀମାନଙ୍କରେ ରଚିତ ମାନବ, ଆପସ୍ତମ୍ଭ, ବୌଦ୍ଧାୟନ, ଗୌତମ, ବାଶିଷ୍ଠ ପ୍ରଭୃତି ଧର୍ମଶାସ୍ତ୍ରଗୁଡ଼ିକର ବ୍ୟାଖ୍ୟା ରଚିତ ହେବା ସହିତ ଏ ସମୟରେ ଯାଜ୍ଞ୍ୟବଲ୍‌କ୍ୟ, କାତ୍ୟାୟନ ପ୍ରଭୃତି ବହୁ ନୂତନ ଧର୍ମଶାସ୍ତ୍ର ପ୍ରଣୟନ କରାଯାଇ ମାନବର ଦୈନନ୍ଦିନ ଜୀବନ ଏବଂ ସାମାଜିକ ଜୀବନକୁ ସୁପରିଚାଳନା କରିବାପାଇଁ ପ୍ରୟାସ କରାଯାଇଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରକୁ ମଧ୍ୟ ଏହି ସମୟର ଏକ ଅପୂର୍ବ ଓ କାଳଜୟୀ ଗ୍ରନ୍ଥରୂପେ ବିବେଚନା କରାଯାଏ । ରାଜନୀତି ସମ୍ପର୍କୀୟ କୌଟିଲ୍ୟଙ୍କ ଦିଗ୍‌ଦର୍ଶନ ଆଜି ମଧ୍ୟ ରାଜନୈତିକ ନେତାମାନଙ୍କ ଦିଗ୍‌ଦର୍ଶକ ହେବାପାଇଁ ଏକାନ୍ତ ସମର୍ଥ ।

ଦର୍ଶନ କ୍ଷେତ୍ରରେ ଭାରତୀୟ ମନୀଷାର ପଟାନ୍ତର ନାହିଁ । ବୈଦିକ ସାହିତ୍ୟର ପୃଷ୍ଠଭୂମିରେ ଭାରତୀୟ ଜ୍ଞାନସାଧକମାନେ ମାନବ ଜୀବନକୁ ଯେଉଁସବୁ ଦୃଷ୍ଟିରେ ଦେଖିବାପାଇଁ ଚେଷ୍ଟା କରିଛନ୍ତି ତାହାହିଁ ଦର୍ଶନଶାସ୍ତ୍ରର ମୌଳିକ ବିଷୟ । ହିନ୍ଦୁଦର୍ଶନର ଛ'ଟି ଶାଖା—ସାଂଖ୍ୟ, ଯୋଗ, ନ୍ୟାୟ, ବୈଶେଷିକ, ପୂର୍ବମୀମାଂସା ଓ ଉତ୍ତର ମୀମାଂସା ସହିତ ଭାରତବର୍ଷରେ ଲୋକାୟତ, ଜୈନ, ବୌଦ୍ଧ ଦର୍ଶନ (ମାଧ୍ୟମିକ, ଯୋଗାଚାର, ସୌତାନ୍ତ୍ରିକ ଓ ବୈଭାଷିକ) ଗୁଡ଼ିକ ମଧ୍ୟ ସମାନ୍ତରାଳ ଭାବରେ ବିକାଶଲାଭ କରିଥିଲା । ଆଲୋଚ୍ୟ ସହସ୍ରାବ୍ଦୀମଧ୍ୟରେ ଏହିସବୁ ଦର୍ଶନଶାସ୍ତ୍ରର ଯେଉଁ ଆଲୋଚନା, ପ୍ରତି-ଆଲୋଚନା, ଖଣ୍ଡନ-ମଣ୍ଡନ ସବୁ କରାଯାଇଛି, ତାହା ଭାରତୀୟ ଜନତାଙ୍କୁ କମ୍ ପ୍ରଭାବିତ କରିନାହିଁ ।

ଅନୁରୂପ ଭାବେ ଏଠାରେ ନୀତି ଓ ପ୍ରୀତି ଶାସ୍ତ୍ରର କଥା ମଧ୍ୟ ଉଲ୍ଲେଖ କରାଯାଇପାରେ । ଭାରତୀୟମାନେ କେବଳ ପରଲୋକର ସ୍ୱପ୍ନରେ ବିହ୍ୱଳ ନୁହଁନ୍ତି, ଇହଲୋକର ବାସ୍ତବ ଜୀବନକୁ ସହଜ ସୁଗମ ଓ ଆନନ୍ଦମୟ କରିବାପାଇଁ ସେମାନଙ୍କ ପ୍ରୟାସ ମଧ୍ୟ କମ୍ ନୁହେଁ । କିନ୍ତୁ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ଶୃଙ୍ଖଳିତ କରିବାରେ ସେମାନେ ବିଶ୍ୱାସୀ । ସେଥିପାଇଁ ଏହି ସହସ୍ର ବର୍ଷ ମଧ୍ୟରେ ସୃଷ୍ଟିଲାଭ କରିଥିବା ପୁରାଣମାନଙ୍କରେ ଆମେ ସ୍ୱର୍ଗର ଦେବତାମାନଙ୍କୁ ମର୍ତ୍ତ୍ୟଲୋକର ବାସ୍ତବ ମଣିଷ ପରି

ଚଳପ୍ରଚଳ ହେଉଥିବା ଲକ୍ଷ୍ୟ କରୁ । ଏ ଦୃଷ୍ଟିରୁ ଭାରତବର୍ଷର ଐଶ୍ୱର୍ଯ୍ୟମୟ ଯୁଗରେ ରାଜା ଓ ପ୍ରଜା ଉଭୟଙ୍କ ରାଜନୈତିକ, ସାମାଜିକ, ଧାର୍ମିକ ଓ ଯୌନଜୀବନକୁ ଶୃଙ୍ଖଳିତ କରିବାପାଇଁ ଶୁକ୍ରନୀତି, କାମନ୍ଦକି ନୀତି ପରି ନୀତିଶାସ୍ତ୍ର ସହିତ କାମସୂତ୍ର ପରି ବାତ୍ସାୟନଙ୍କ କାମଶାସ୍ତ୍ର ମଧ୍ୟ ରଚିତ ହୋଇଅଛି । ଏଗୁଡ଼ିକ ସାଧାରଣ ମନୁଷ୍ୟର ଧର୍ମ, କାମ ଓ ଅର୍ଥ– ତ୍ରିବର୍ଗ ଲାଭର ଏକାନ୍ତ ସହାୟକ ।

ଶାସ୍ତ୍ର ଓ ଜ୍ଞାନ ଚର୍ଚ୍ଚାର ଏହି ସମୃଦ୍ଧ ପରମ୍ପରାରେ ସୃଷ୍ଟିଲାଭ କରିଛନ୍ତି ମାନବୀୟ ଆବଶ୍ୟକତାର ପରିପୂରଣ ପାଇଁ ବହୁବିଧ ଶାସ୍ତ୍ରୀୟ ରଚନା । ଆୟୁର୍ବେଦ, ବୃକ୍ଷାୟୁର୍ବେଦ, ଗଜ ଓ ଅଶ୍ୱଶାସ୍ତ୍ର, ରତ୍ନଶାସ୍ତ୍ର, ସମରନୀତି, ଶିଳ୍ପଶାସ୍ତ୍ର, ବାସ୍ତୁଶାସ୍ତ୍ର ସହିତ ତନ୍ତ୍ରଶାସ୍ତ୍ର ଏଗୁଡ଼ିକ ମଧ୍ୟରୁ ଅନ୍ୟତମ ।

ଏଠାରେ ଏସବୁର ଉଲ୍ଲେଖ କରିବାର ଲକ୍ଷ୍ୟ ହେଲା, ଏହି ହଜାରଟି ବର୍ଷ ମଧ୍ୟରେ ଜ୍ଞାନଭଣ୍ଡାରର ଯେଉଁସବୁ ଦିଗ ଉନ୍ମୋଚିତ ହୋଇଥିଲା ତାହା ସେ ସମୟର କବି, ଲେଖକ ଏବଂ ସେମାନଙ୍କ ସାହିତ୍ୟକୃତିକୁ କେବଳ ଯେ ପ୍ରଭାବିତ କରିଥିଲା ତା' ନୁହେଁ, ସାଧାରଣ ଜନଜୀବନରେ ଅନୁପ୍ରବେଶ କରି ସେମାନଙ୍କ କଳ୍ପନାଶକ୍ତିକୁ ଉଦ୍‌ବୋଧିତ କରିବା ସଙ୍ଗେସଙ୍ଗେ ବହୁ କଳ୍ପିତ କଥା ସୃଷ୍ଟି କରିବାପାଇଁ ମଧ୍ୟ ସହାୟକ ହୋଇଥିଲା । ଫଳରେ ଗୁଣାଢ଼୍ୟଙ୍କ ପରବର୍ତ୍ତୀ ସମୟରେ କେବଳ ତାଙ୍କ ଗ୍ରଥିତ କଥାବଳୀ ନୁହେଁ ଅନ୍ୟ ବହୁ ନୂତନ ଲୋକକଥା ମଧ୍ୟ ସୃଷ୍ଟି ଲାଭ କରିଥିବା ସମସାମୟିକ ଓ ପରବର୍ତ୍ତୀ କଥା ସଙ୍କଳନମାନଙ୍କରୁ ଅନୁମିତ ହୁଏ ।

ଏକାଦଶ ଶତାବ୍ଦୀ ବେଳକୁ କାଶ୍ମୀର ଥିଲା ଶାସ୍ତ୍ରଚର୍ଚ୍ଚା ଓ ଜ୍ଞାନ ପରୀକ୍ଷାର ପୀଠସ୍ଥଳୀ; କ୍ଷେମେନ୍ଦ୍ର, ଅଭିନବଗୁପ୍ତ, କଲ୍ହଣ, ବିଲ୍‌ହଣ, ମମ୍ମଟ, ଶ୍ରୀହର୍ଷ ପ୍ରମୁଖ ସମକାଳରେ କିମ୍ବା ଠିକ୍ ପରବର୍ତ୍ତୀ ସମୟରେ ଏହି ସାରସ୍ୱତ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଅକ୍ଷୟ ସାରସ୍ୱତ କୀର୍ତ୍ତି ରଖିଯାଇଛନ୍ତି । ଏ ପର୍ଯ୍ୟନ୍ତ ସୋମଦେବଙ୍କ ଅନ୍ୟ କୌଣସି ରଚନା ଆମର ହସ୍ତଗତ ହୋଇନଥିଲେ ସୁଦ୍ଧା ସେ ଯେ କାଶ୍ମୀରରେ ଜନ୍ମଗ୍ରହଣ କରି ପୂର୍ବ ଏକ ସହସ୍ର ବର୍ଷର ଏହି ଭାରତୀୟ ଜ୍ଞାନଭଣ୍ଡାର ସହ ପରିଚିତ ଥିବେ ଏହା ନିଃସନ୍ଦେହରେ କୁହାଯାଇପାରେ । 'ବୃହତ୍ କଥା' ରୂପକ ବିଶାଳ ଗ୍ରନ୍ଥର ସଂକ୍ଷିପ୍ତ ସଂସ୍କରଣ ପ୍ରସ୍ତୁତ କଲାବେଳେ ଏସବୁ ପ୍ରତ୍ୟକ୍ଷ ଭାବରେ ନହେଲେ ସୁଦ୍ଧା ପରୋକ୍ଷ ଭାବରେ ତାଙ୍କୁ ପ୍ରଭାବିତ କରିଥିବାରେ ସନ୍ଦେହ କ'ଣ ଅଛି ?

ଗୁଣାଢ଼୍ୟଙ୍କ ଠାରୁ ସୋମଦେବଙ୍କ ମଧ୍ୟରେ ଭାରତୀୟ ସାହିତ୍ୟର ବିପୁଳ ବିକାଶ ମଧ୍ୟ ଏଠାରେ ବିଚାରକୁ ନିଆଯାଇପାରେ । ଏହି ସମୟଟି ହେଉଛି ସଂସ୍କୃତ ଓ ପ୍ରାକୃତ ସାହିତ୍ୟର ସୁବର୍ଣ୍ଣଯୁଗ । କବି ଓ ନାଟ୍ୟକାରମାନେ ନିଜ ନିଜ ପ୍ରତିଭା ଅନୁଯାୟୀ କାବ୍ୟ

ଓ ନାଟକ କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ପଦ୍ୟକ୍ଷେତ୍ରରେ ଯେପରି ମହାକାବ୍ୟ, ଖଣ୍ଡକାବ୍ୟ, ଦୂତକାବ୍ୟ, ଶତକ, ପଞ୍ଚାଶିକା ଇତ୍ୟାଦି ସୃଷ୍ଟିଲାଭ କରିଛି ସେହିପରି ନାଟକ, ଭାଣ, ପ୍ରକରଣ, ବୀଥି, ଇହାମୃଗ, ପ୍ରହସନ ଇତ୍ୟାଦି ଦୃଶ୍ୟକାବ୍ୟକୁ ବହୁବର୍ଣ୍ଣରେ ଅନୁରଞ୍ଜନ କରି ଭାସ୍ୱର କରିପାରିଛନ୍ତି । ନୈଷଧ ବ୍ୟତୀତ ସଂସ୍କୃତ ବାଙ୍‌ମୟର ଶିରୋଭୂଷା ପଞ୍ଚକାବ୍ୟ–କୁମାରସମ୍ଭବ, ରଘୁବଂଶ, ମେଘଦୂତ, କିରାତାର୍ଜୁନୀୟ ଏହି ସମୟର ହିଁ ଅମ୍ଳାନ ସୃଷ୍ଟି । ଅନୁରୂପ ଭାବେ ଭାସଙ୍କ ସ୍ୱପ୍ନବାସବଦତ୍ତା, ପ୍ରତିଜ୍ଞାଯୌଗନ୍ଧରାୟଣ, ମଧ୍ୟମବ୍ୟାୟୋଗ ପ୍ରଭୃତି; କାଳିଦାସଙ୍କ ଅଭିଜ୍ଞାନଶାକୁନ୍ତଳମ୍, ବିକ୍ରମୋର୍ବଶୀୟ, ମାଳବିକାଗ୍ନିମିତ୍ର; ଶୂଦ୍ରକଙ୍କ ମୃଚ୍ଛକଟିକ; ଭବଭୂତିଙ୍କ ଉତ୍ତରରାମଚରିତ, ମାଳତୀମାଧବ; ବିଶାଖଦତ୍ତଙ୍କ ମୁଦ୍ରାରାକ୍ଷସ ଇତ୍ୟାଦି ନାଟକୀୟ ଶିଳ୍ପ ଓ ଆବେଦନକୁ ଶୀର୍ଷ ସୀମାରେ ଉପନୀତ କରିଥିଲା । କବି ଓ ନାଟ୍ୟକାରମାନେ ଧୀରେଧୀରେ ବିଷୟବସ୍ତୁ ଅପେକ୍ଷା ବର୍ଣ୍ଣନାବିଳାସ ପ୍ରତି ଅଧିକ ମୋହଗ୍ରସ୍ତ ହୋଇପଡ଼ିଥିଲେ । କାବ୍ୟକୁ ମହାକାବ୍ୟକୋଟିରେ ପହଞ୍ଚାଇବା ପାଇଁ ବସ୍ତୁବର୍ଣ୍ଣନା ହିଁ ଥିଲା ଏକମାତ୍ର ମାଧ୍ୟମ । ତେଣୁ ଦିବାରାତ୍ରି, ସୂର୍ଯ୍ୟୋଦୟ, ଚନ୍ଦ୍ରୋଦୟ, ବନଉପବନ, ଋତୁ, ଜଳକ୍ରୀଡ଼ା ଇତ୍ୟାଦିର ବର୍ଣ୍ଣାଢ଼୍ୟ ବର୍ଣ୍ଣନା ପାଇଁ କବିମାନେ ନିଜ ନିଜ କଳ୍ପନାକୁ ସୁଦୂରବିସ୍ତାରୀ କରିଦେଇଛନ୍ତି । ବସ୍ତୁ ବର୍ଣ୍ଣନାହୀନ କାବ୍ୟ ସମ୍ଭବ ବୋଲି ମନେ ହୋଇନାହିଁ । ତା' ସହିତ ଯୋଗ ଦେଇଛନ୍ତି କାବ୍ୟ ସମାଲୋଚକ ଆଳଙ୍କାରିକମାନେ ।

ଭରତଙ୍କ ରସବାଦ, ଭାମହ ଓ ରୁଦ୍ରଟଙ୍କ ଅଳଙ୍କାରବାଦ, ବାମନଙ୍କ ରୀତିବାଦ, ଆନନ୍ଦବର୍ଦ୍ଧନଙ୍କ ଧ୍ୱନିବାଦ, ଅଭିନବଗୁପ୍ତଙ୍କ ରସଧ୍ୱନିବାଦ, କୁନ୍ତକଙ୍କ ବକ୍ରୋକ୍ତିବାଦ ଏବଂ କ୍ଷେମେନ୍ଦ୍ରଙ୍କ ଔଚିତ୍ୟବାଦ ଆଲୋଚ୍ୟ ସମୟରେ ହିଁ ପ୍ରଖ୍ୟାପିତ ହୋଇଥିଲା । କାବ୍ୟ ମଧ୍ୟରେ ଏହାର ସଦୁପଯୋଗ ପାଇଁ କବିମାନଙ୍କ ପ୍ରୟାସ ଅବ୍ୟାହତ ଥିଲେ ସୁଦ୍ଧା ସେମାନେ ଧୀରେଧୀରେ ବର୍ଣ୍ଣନାର ମୋହରେ ଛନ୍ଦି ହୋଇପଡୁଥିଲେ । ସେଥିପାଇଁ କବି ଶିକ୍ଷାତ୍ମକ ଗ୍ରନ୍ଥର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ଗୋଟିଏ ଗୋଟିଏ ବସ୍ତୁ କେତେ ବିଭିନ୍ନ ଭାବରେ ବର୍ଣ୍ଣିତ ହୋଇପାରେ ଏବଂ ତା'ର ବର୍ଣ୍ଣନା ବେଳେ କବି କେଉଁସବୁ ବିଷୟ ପ୍ରତି ଅବହିତ ରହିବା ଆବଶ୍ୟକ, ସେ ସମ୍ପର୍କରେ ବିଧାନମାନ ପ୍ରଣୀତ ହେଲା ।

ଏହି ସାରସ୍ୱତ ପୃଷ୍ଠପୀଠିକାରେ ସୋମଦେବଙ୍କ କଥାସରିତ ସାଗରର ପରିକଳ୍ପନା । ସେ ମୂଳକଥା ଗ୍ରନ୍ଥ ଗୁଣାଢ଼୍ୟଙ୍କ ବୃହତ୍‌କଥାକୁ ଦୃଷ୍ଟି ସମ୍ମୁଖରେ ରଖିଥିଲେ ସୁଦ୍ଧା କାବ୍ୟିକ ବର୍ଣ୍ଣନାର ମୋହ ପରିତ୍ୟାଗ କରିପାରି ନାହାଁନ୍ତି । ଏ ସମ୍ପର୍କରେ ସେ ଯେ ସଚେତନ ନଥିଲେ ତା' ନୁହେଁ, କିନ୍ତୁ ସମୟର ଅପ୍ରତିହତ ଗତିକୁ ଅତିକ୍ରମ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇପାରି ନାହିଁ । ତେଣୁ ନିଜ ଗ୍ରନ୍ଥର ଉପକ୍ରମରେ ସେ ପାଠକ ଓ

ଶ୍ରୋତାମାନଙ୍କୁ ବିନମ୍ର ଭାବେ ଜଣାଇ ଦେଇଛନ୍ତି, 'କଥାରସା ବିଘାତେନ କାବ୍ୟାଂଶସ୍ୟ ଚ ଯୋଜନା' ଅର୍ଥାତ୍ କଥାରସକୁ ବ୍ୟାହତ ନକରି ସେ କିଛି କାବ୍ୟିକ ବର୍ଣ୍ଣନା ଦେବାପାଇଁ ପ୍ରୟାସ କରିଛନ୍ତି । ବିଶେଷକରି ଋତୁ, ସୂର୍ଯ୍ୟୋଦୟ ଓ ଚନ୍ଦ୍ରୋଦୟ, ଉପବନ ଓ ଜଳାଶୟ ଇତ୍ୟାଦି ବର୍ଣ୍ଣନାରେ ତାଙ୍କ ଆଳଙ୍କାରିକତା, କଳ୍ପନାବିଳାସ, ବିଦ୍ଗ୍ଧତା ଓ ବ୍ୟଞ୍ଜନାତ୍ମକ ବାଣୀ ଅନୁସନ୍ଧାନ କରାଯାଇପାରେ । ଏଠାରେ ତା'ର କେତୋଟି ମାତ୍ର ଦୃଷ୍ଟାନ୍ତ· ଉପସ୍ଥାପନା କରାଯାଉଛି—

ଲାବାଣକରୁ କୌଶାମ୍ବୀ ପ୍ରତ୍ୟାବର୍ତ୍ତନ କରୁଛନ୍ତି ଉଦୟନ ଉଭୟ ମହାରାଣୀ ବାସବଦତ୍ତା ଏବଂ ପଦ୍ମାବତୀଙ୍କ ସହିତ । ପ୍ରଜାବୃନ୍ଦ ଓ ନଗରବାସୀ ଆନନ୍ଦିତ, ରାଜଧାନୀ ଆନନ୍ଦମୁଖର । ସୋମଦେବ ଏହାର ସୂଚନା ଦେବାକୁ ଯାଇ ଲେଖିଛନ୍ତି—

ଧ୍ୱଜରକ୍ତାଂଶୁକଚ୍ଛନ୍ନା ଗବାକ୍ଷୋତ୍ଫୁଲ୍ଲ-ଲୋଚନା
ପ୍ରଦ୍ୱାରଦର୍ଶିତୋତ୍ତୁଙ୍ଗପୂର୍ଣ୍ଣକୁମ୍ଭକୁଚଦ୍ୱୟା ।
ଜନକୋଳାହଳାନନ୍ଦ ସଂଳାପା ସୌଧହାସିନୀ
ସା ପ୍ରବାସାଗତେ ପତ୍ୟୌ ତତ୍କାଳଂ ଶୁଶୁଭେ ପୁରୀ ।

ଏ ସମୟରେ ନଗରବାସୀମାନଙ୍କ ନବବଧୂ ଦର୍ଶନୌତ୍ସୁକ୍ୟ ମଧ୍ୟ ଅନୁରୂପ ଭାବେ କାବ୍ୟିକ ।

ବାତାୟନଗତାଶ୍ଚାନ୍ୟାଃ ପଶ୍ୟନ୍ତ୍ୟୋଽନିମିପେକ୍ଷଣାଃ
ଚକ୍ରୁଃ ସକୌତୁକାୟାତବିମାନସ୍ଥାପ୍ସରୋଭ୍ରମମ୍ ।
କାଶ୍ଚିଦ୍ ଗବାକ୍ଷଜାଳାଗ୍ରଲଗ୍ନପକ୍ଷ୍ମଲଲୋଚନାଃ
ଅସୃଜନ୍ନିବ ନାରାଚପଞ୍ଜରାଣି ମନୋଭୁବଃ ।
ଏକସ୍ୟାଃ ସୋତ୍ସୁକା ଦୃଷ୍ଟିର୍ନୃପାଲୋକବିକସ୍ୱରା
ଶ୍ରୁତେଃ ପାର୍ଶ୍ୱମପଶ୍ୟନ୍ତ୍ୟାସ୍ତଦାଖ୍ୟାତୁମିବାୟଯୌ ।
ଦ୍ରୁତାଗତାୟାଃ କସ୍ୟାଶ୍ଚିନ୍ମୁହୁରୁଚ୍ଛ୍ୱାସିତୌ ସ୍ତନୌ
କଞ୍ଚୁକାଦିବ ନିର୍ଗନ୍ତୁମୀଷତୁସ୍ତଦ୍ଦିଦୃକ୍ଷୟା ।
ଅନ୍ୟସ୍ୟାଃ ସଂଭ୍ରମଚ୍ଛିନ୍ନହାରମୁକ୍ତାକଣା ବଭୁଃ
ଗଳନ୍ତୋ ହୃଦୟସ୍ୟେବ ହର୍ଷବାଷ୍ପାମ୍ବୁସୀକରାଃ ।

ବାଣଭଟ୍ଟଙ୍କ 'କାଦମ୍ବରୀ' ରଚନା ପରେ ବସ୍ତୁବର୍ଣ୍ଣନାର ଏକ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି ହୋଇଥିଲା । ପରବର୍ତ୍ତୀ ଗଦ୍ୟ ଓ ପଦ୍ୟରଚନାରେ ଏହାର ପ୍ରଭାବ ଦୁର୍ଲକ୍ଷ୍ୟ ନୁହେ ।

ସୋମଦେବ ମଧ୍ୟ ଏହି ମୋହରୁ ମୁକ୍ତ ନୁହନ୍ତି । ଏଠାରେ କନକପୁର ନଗରୀ ଓ ରାଜା କନକବର୍ଷଙ୍କ ବର୍ଣ୍ଣନା ଲକ୍ଷ୍ୟ କରାଯାଇପାରେ—

ଆସୀତ୍ ଗଂଗାତଟେ ପୂର୍ବଂ ପୂତ ପୌରଂ ତଦମ୍ବୁଭିଃ
ସୋରାଜ୍ୟରମ୍ୟଂ କନକପୁରାଖ୍ୟଂ ନଗରୋତ୍ତମମ୍ ।
ଯତ୍ର ବନ୍ଧଃ କବିଗିରାଂ ଛେଦଃ ପତ୍ରେଷ୍ୱଦୃଶ୍ୟତ
ଭଙ୍ଗୋଽଳକେଷୁ ନାରୀଣାଂ ସସ୍ୟସଂଗ୍ରହଣେ ଖଳଃ ।

× × ×

ଆସୀତ୍ କନକବର୍ଷାଖ୍ୟୋ ନଗରେ ନୃପତିଃ ପୁରା
କୃଷ୍ଣଭୂଭାର ବୋଢ଼ାପି ଯୋଽଶେଷଗୁଣଭୂଷିତଃ ।
ଲୁବ୍ଧୋ ଯଶସି ନତ୍ୱର୍ଥେ ଭୀତଃ ପାପାନ୍ନ ଶତ୍ରୁତଃ
ମୂର୍ଖଃ ପରାପବାଦେଷୁ ନ ଚ ଶାସ୍ତ୍ରେଷୁ ଯୋଽଭବତ୍ ।
ଅକ୍ଷତ୍ୱଂ ଯସ୍ୟ କୋପେଽଭୂନ୍ନ ପ୍ରସାଦେ ମହାତ୍ମନଃ
ଚାପେ ଚ ବଦ୍ଧମୁଷ୍ଟିତ୍ୱଂ ନ ଦାନେ ଧୀରଚେତସଃ ।
ଯେନାତ୍ୟଦ୍‌ଭୁତରୂପେଣ ରକ୍ଷତା ଚାଖିଳଂ ଜଗତ୍
ମାରବ୍ୟଥାକୁଳଶ୍ଚକ୍ରେ ଦୁଷ୍ଟେନୈବାବଳାଜନାଃ ।

ସେହିପରି ବସନ୍ତ ଋତୁ ବର୍ଣ୍ଣନା ଅବସରରେ କବି ମାଘ ଲେଖିଛନ୍ତି—

ତ୍ୟଜତ ମାନମଳଂ ବତ ! ବିଗ୍ରହୈର୍ନ ପୁନରେତି ଗତଂ ଚତୁରଂ ବୟଃ
ପରଭୃତାଭିରତୀବ ସମୀରିତେ ସ୍ମରମତେ ରମତେ ସ୍ମ ବଧୂଜନଃ ॥

ତାର ପ୍ରତିଧ୍ୱନି କଥାସରିତସାଗରରେ ଶୁଣନ୍ତୁ—

ଏକଦା ଚାଜଗାମାତ୍ର ବିକସତ୍‌କେଶରାବଳିଃ
ଦଳୟନ୍ ମାନିନୀମାନମାତଂଗଂ ମଧୁକେଶରୀ ।
ଲଗ୍ନାଳିମାଳାମୌର୍ବିକାଃ ପୁଷ୍ପେଷୋଃ କୁସୁମାକରଃ
ସଜ୍ଜୀଚକାର ଚୋତ୍‌ଫୁଲ୍ଲଚୂତବଲ୍ଲୀଧନୁର୍ଲତାଃ ।
ବବୌ ଚୋପବନାନୀବ ଚେତାଂସ୍ୟଧ୍ୱଗଯୋଷିତାମ୍
ସମୁଦ୍ଦୀପିତ କାମାନି କଂପୟନ୍ ମଳୟାନିଳଃ ।

ପୂରା ନଦୀନାଂ ପୁଷ୍ପାଣି ତରୂଣାଂ ଶଶିନଃ କଳାଃ
କ୍ଷୀଣାନି ପୁନରାୟାନ୍ତି ଯୌବନାନି ଚ ଦେହିନାମ୍ ।
ଭୋ ମୁକ୍ତମାନକଳହା ରମଧ୍ୱଂ ଦୟିତାନ୍ୱିତାଃ
ଇତୀବ ମଧୁରାଳାପାଃ କୋକିଳା ଜଗଦୁର୍ଜନାନ୍ ।

ଏଠାରେ ଉଜ୍ଜୟିନୀ ପ୍ରତ୍ୟାବର୍ତ୍ତନ କରୁଥିବା ବିକ୍ରମାଦିତ୍ୟଙ୍କ ବର୍ଣ୍ଣନା ବେଳେ ସୋମଦେବଙ୍କ ଏକ କାବ୍ୟିକ ଅଭିବ୍ୟକ୍ତି ମଧ ଲକ୍ଷ୍ୟ କରନ୍ତୁ—

ଭୂମିଃ ସୈନ୍ୟମୟୀ ତଦୁତ୍‌ଥିତ ମହାଶବ୍ଦୈକମୟ୍ୟୋ ଦିଶଃ
ସଂସର୍ପତ୍‌ଧ୍ୱଜିନୀବିମର୍ଦ୍ଦବିଲସତ୍‌ଧୂଳିମୟୀ ଦ୍ୟୌରପି ।
ସର୍ବସ୍ୟାଦ୍‌ଭୁତତ୍‌ପ୍ରଭାବମହିମ ବ୍ୟାହାର ମୟୋ ଗିର
ସ୍ତସ୍ମିନ୍‌ରାଜ୍ଞ ପଥି ପ୍ରୟାତି ସକଳଦ୍ୱୀପାଧିନାଥେଽଭବନ୍ । ଇତ୍ୟାଦି

ଏହିପରି ବହୁ ଉଦାହରଣ ଉଦ୍ଧାର କରାଯାଇପାରେ ।

ବର୍ତ୍ତମାନ ମୂଳ ବୃହତ୍‌କଥା ଏବଂ ସଂକ୍ଷିପ୍ତ କଥାସରିତ୍‌ସାଗର ମଧ୍ୟବର୍ତ୍ତୀ କାଳରେ ସୃଷ୍ଟିଲାଭ କରିଥିବା ବିଭିନ୍ନ କଥାଗ୍ରନ୍ଥ ଉପରେ ଆଲୋକପାତ କରାଯାଉ ।

ଗୁଣାଢ଼୍ୟଙ୍କ ସହିତ ଲୋକକଥା ସୃଷ୍ଟି, ସଂଗ୍ରହଣ ଏବଂ ଆବଶ୍ୟକତା ଅନୁଯାୟୀ ସେଗୁଡ଼ିକର ବିନିଯୋଗର ଅବସାନ ଘଟିନଥିଲା । ବିଦଗ୍ଧ ସଂସ୍କୃତ କଥାକାରମାନେ ଗୁଣାଢ଼୍ୟଙ୍କ ବୃହତ୍‌କଥା କିମ୍ବା ଲୋକମୁଖର ରସପୂର୍ଣ୍ଣ କଥାସବୁକୁ ଆଧାର କରି କଥାଗ୍ରନ୍ଥମାନ ସୃଷ୍ଟି କରୁଥିଲାବେଳେ, ବୌଦ୍ଧ ଭିକ୍ଷୁ ଓ ଜୈନ ଶ୍ରମଣମାନେ ନିଜନିଜର ଧର୍ମ ପ୍ରଚାର ପାଇଁ ଲୋକକଥା ଉପରେ ଗୁରୁତ୍ୱ ଆରୋପ କରୁଥିଲେ; ନିଜେ ମଧ ତା'ରି ଛାୟାରେ ଗଳ୍ପମାନ ସୃଷ୍ଟି କରୁଥିଲେ । କିନ୍ତୁ ରାଜ ସ୍ୱୀକୃତି ଲାଭ କରୁଥିବା କାବ୍ୟ ଓ ନାଟକ ରୂପ ବିଦଗ୍ଧ ସାହିତ୍ୟର ଛତ୍ରଚ୍ଛାୟା ତଳେ ଏଗୁଡ଼ିକ ନିଷ୍ପ୍ରଭ ଓ ବିଲୁପ୍ତ ହୋଇପଡୁଥିଲେ । ବିଭିନ୍ନ ଅଳଙ୍କାର ଗ୍ରନ୍ଥର ଉଦାହରଣଗୁଡ଼ିକୁ ଭିତ୍ତିକରି ଆଲୋଚକମାନେ ଆଲୋଚ୍ୟ ସମୟ ମଧ୍ୟରେ ମାତ୍ର ଊଣତିରିଶଟି କଥାଗ୍ରନ୍ଥ ରଚିତ ହୋଇଥିବା ନିର୍ଦ୍ଧାରଣ କରନ୍ତି । ଏଗୁଡ଼ିକ ମଧ୍ୟରୁ ପୁଣି ଅଧିକାଂଶ ନାମତଃ ଜ୍ଞାତ । ମାତ୍ର ଦଶ ବାରଟି କଥାଗ୍ରନ୍ଥ ଆଜି ପୂର୍ଣ୍ଣତଃ ବା ଖଣ୍ଡିତଭାବେ ଆମ ନିକଟରେ ପହଞ୍ଚିପାରିଛି । ତା' ମଧ୍ୟରୁ ବାଣଭଟ୍ଟଙ୍କ କାଦମ୍ବରୀ ଓ ହର୍ଷଚରିତ, ଦଣ୍ଡୀଙ୍କ ଦଶକୁମାର ଚରିତ (ଅବନ୍ତୀ ସୁନ୍ଦରୀ କଥା), ସୁବନ୍ଧୁଙ୍କ ବାସବଦତ୍ତା (ଗୁଣାଢ଼୍ୟଙ୍କ ଉଦୟନ ଓ ବାସବଦତ୍ତାଠାରୁ ସ୍ୱତନ୍ତ୍ର), ବିବଦମାନ ଲେଖକମାନଙ୍କ ବେତାଳ ପଞ୍ଚବିଂଶତି ଓ ସିଂହାସନ ଦ୍ୱାତ୍ରିଂଶିକା, ବିଷ୍ଣୁଶର୍ମାଙ୍କ ପଞ୍ଚତନ୍ତ୍ର, ପାଦଲିପ୍ତ ସୂରିଙ୍କ ସଂକ୍ଷିପ୍ତ ପ୍ରାକୃତ ତରଙ୍ଗବତୀ ବା ତରଙ୍ଗଲୋଳା, ସଂଘଦାସଗଣି ଏବଂ

ଧର୍ମଦାସଗଣିଙ୍କ ବସୁଦେବହିଣ୍ଡୀ, ହରିଭଦ୍ର ସୂରିଙ୍କ ସମରାଇଚ୍ଚ କହା ଏବଂ ଧୂର୍ତ୍ତାକ୍ଖାନ, ଜିନେଶ୍ୱର ସୂରିଙ୍କ କଥାକୋଷପ୍ରକରଣ ଇତ୍ୟାଦି କେତୋଟିର ନାମ ଉଲ୍ଲେଖଯୋଗ୍ୟ ।

କିନ୍ତୁ ଏହି ସ୍ୱଳ୍ପ କେତୋଟି କଥାଗ୍ରନ୍ଥ ଯେ ଭାରତୀୟ କଥା ସାହିତ୍ୟକୁ ଏହି ଦୀର୍ଘ ହଜାରେ ବର୍ଷର ଅବଦାନ, ଏହା କୁହାଯାଇ ନପାରେ । ଶଂସିତ ସମୟରେ ବିଭିନ୍ନ ସଂସ୍କୃତ ଅଳଙ୍କାରଶାସ୍ତ୍ର ଏବଂ ପ୍ରାକୃତ କଥାଗ୍ରନ୍ଥ ମଧ୍ୟରେ କଥା ସାହିତ୍ୟ ସମ୍ପର୍କରେ ଯେଉଁ ବିସ୍ତୃତ ଆଲୋଚନା, ପ୍ରତିଆଲୋଚନା ଓ ବିଭାଗୀକରଣ ଦେଖିବାକୁ ମିଳେ ସେଥିରୁ ଅନୁମିତ ହୁଏ ଯେ କାବ୍ୟନାଟକ ପରି କଥାସାହିତ୍ୟର ମଧ୍ୟ ଏ ସମୟରେ ବିପୁଳ ବିକାଶ ସଂଘଟିତ ହୋଇଥିଲା । ଆଳଙ୍କାରିକ ଭାମହଙ୍କ ଠାରୁ ଆରମ୍ଭ କରି ଭୋଜ ଓ ହେମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକେ କଥାରୂପର ସଂଖ୍ୟା ବୃଦ୍ଧି କରିଚାଲିଛନ୍ତି । ସେହିପରି ପ୍ରାକୃତ କଥାଗ୍ରନ୍ଥ ଗୁଡ଼ିକରେ ମଧ୍ୟ ଏହାର ବିଭିନ୍ନ ରୂପ ଓ ବିଶେଷତ୍ୱ ସମ୍ପର୍କରେ ଆଲୋଚନା କରାଯାଇଛି । ବିଭିନ୍ନ ଦୃଷ୍ଟିକୋଣରୁ ସେମାନେ କଥା ସୃଷ୍ଟିର ବିଭାଗୀକରଣ କରିବା ପାଇଁ ପ୍ରୟାସ କରିଛନ୍ତି ।

ପ୍ରାକୃତ କବି କୌତୂହଳ ନିଜର ଲୀଳାବତୀ କାବ୍ୟରେ ଉପଲବ୍ଧ କଥାଗୁଡ଼ିକୁ ଭାଷାଭିତ୍ତିରେ ତ୍ରିବିଧ ବୋଲି କହିଛନ୍ତି– ସଂସ୍କୃତ, ପ୍ରାକୃତ ଓ ମିଶ୍ର । କାଦମ୍ବରୀ, ସମରାଦିତ୍ୟ କଥା, କଥାକୋଷ ପ୍ରକରଣକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ବୃହତ୍‌କଥା ପ୍ରାକୃତକଥାର ଅନ୍ତର୍ଭୁକ୍ତ ହେଲାବେଳେ କଥାସରିତ ସାଗର ଏକ ପଦ୍ୟବଦ୍ଧ ସଂସ୍କୃତ କଥା ସଂଗ୍ରହ ।

ସେହିପରି ସମରାଦିତ୍ୟ କଥାରେ କଥାଗୁଡ଼ିକୁ ପାତ୍ର ଦୃଷ୍ଟିରୁ ତିନିଭାଗରେ ବିଭକ୍ତ କରାଯାଇଛି, ଯଥା–ଦିବ୍ୟ, ମାନୁଷୀ ଏବଂ ଦିବ୍ୟମାନୁଷୀ । ରାମ, କୃଷ୍ଣ, ଇନ୍ଦ୍ର, ଚନ୍ଦ୍ର ପ୍ରଭୃତି ଦେବପୁରୁଷଙ୍କୁ ନାୟକରୂପେ ଗ୍ରହଣ କରି ଯେଉଁ କଥାର କଳ୍ପନା କରାଯାଇଥାଏ, ତାହା ଦିବ୍ୟକଥା । ମର୍ତ୍ତ୍ୟବାସୀ ରାଜା ମହାରାଜା, ଖଳଧୂର୍ତ୍ତ, ବିଟ ବେଶ୍ୟା ପ୍ରଭୃତିଙ୍କୁ ଆଧାର କରି ଯେଉଁ କଥା ସୃଷ୍ଟି କରାଯାଏ ତାହା ମାନୁଷୀ କଥା । କିନ୍ତୁ ଏ ଉଭୟ ଅପେକ୍ଷା ଦିବ୍ୟମାନୁଷୀ କଥା ହିଁ ଶ୍ରେଷ୍ଠତର ବୋଲି କୁହାଯାଇଥାଏ । ଏଥିରେ ଦେବ ଓ ମନୁଷ୍ୟ ଉଭୟେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ସମୟେ ସମୟେ ଦେବତାମାନେ ମର୍ତ୍ତ୍ୟଲୋକରେ ଅବତରଣ କରିଥିଲା ବେଳେ ମନୁଷ୍ୟମାନେ ଦେବତ୍ୱଲାଭ କରିଥାନ୍ତି । ଅଭିଶପ୍ତ ଗନ୍ଧର୍ବ, ଅପ୍‌ସରା, ଯକ୍ଷ କିନ୍ନରଙ୍କ ମର୍ତ୍ତ୍ୟବିଳାସ ଏହି କଥାଗୁଡ଼ିକରେ ଚମତ୍କାରିତା ସୃଷ୍ଟି କରିଥିବା ଲକ୍ଷ୍ୟ କରାଯାଏ । ଗୁଣାଢ଼୍ୟଙ୍କ ବୃହତ୍‌କଥା ଏହାର ସର୍ବଶ୍ରେଷ୍ଠ ନିଦର୍ଶନ । ବାଣଭଟ୍ଟ ମଧ୍ୟ ତାଙ୍କ କାଦମ୍ବରୀକୁ ଏପରି ଏକ ଦିବ୍ୟମାନୁଷୀ

କଥାର ରୂପ ଦେବାପାଇଁ ପ୍ରୟାସ କରିଛନ୍ତି । ବୃହତ୍ କଥାର ଆବରଣ ଗଳ୍ପରେ ଦେବୀ ପାର୍ବତୀ ପୂର୍ବରୁ ଶୁଣାନଥିବା ଏପରି ଏକ ଦିବ୍ୟମାନୁଷୀ କଥା ହିଁ ଶୁଣାଇବାପାଇଁ ପତିଦେବ ମହାଦେବଙ୍କୁ ସପ୍ରେମ ଅନୁରୋଧ ଜଣାଇଛନ୍ତି । ଦୈବୀ ଓ ମାନୁଷୀ କଥାରେ ଦେବୀ ସନ୍ତୁଷ୍ଟ ନଥିବା ଦେଖି କୈଳାସପତି ଆରମ୍ଭ କରିଛନ୍ତି ବସ୍ତରାଜ ଉଦୟନଙ୍କ ଅମିତ ବିକ୍ରମଶାଳୀ ପୁତ୍ର ନରବାହନଦତ୍ତଙ୍କ ବିଦ୍ୟାଧର ଚକ୍ରବର୍ତ୍ତିତ୍ୱ ଲାଭର ଅପୂର୍ବ କାହାଣୀ । ଏହି କଥାଗ୍ରନ୍ଥକୁ ଦୃଷ୍ଟିରେ ରଖି ବୋଧହୁଏ କବି କୌତୂହଳ ଦିବ୍ୟମାନୁଷୀ କଥା ସମ୍ପର୍କରେ କହିଛନ୍ତି–

‘ଏମେୟ ମୁଧା-ଜୁୟଇ-ମଣୋହରଂ ପାୟୟାଏ ଭାଷାଏ
ପବିରଳ-ଦେଶୀ-ସୁଲକ୍ଖଂ କହସୁ କହଂ ଦିବମାଣୁଷୀୟଂ ।।
ତଂ ତହ ସୋଉଣ ପୁଣୋ ଭଣିୟଂ ଉଜ୍‌ଜିବ-ବାଲ-ହରିଣାଚ୍ଛି
ଜୟୀ ଏବଂ ତା ସୁବଉ ସୁସନ୍ଧି-ବନ୍ଧଂ କହା-ବତ୍‌ଥୁଂ ।।

ଅର୍ଥାତ୍ ଦିବ୍ୟମାନୁଷୀ କଥା ଯୁବତୀମାନଙ୍କର ଅତ୍ୟନ୍ତ ପ୍ରିୟ । ଏଥିରେ ଦେଶୀ ଶବ୍ଦ ଓ ଲଳିତ ପଦାବଳୀ ରହିଥାଏ । ଦେବତା ଓ ମନୁଷ୍ୟ ଉଭୟଙ୍କ ଘଟଣାବଳୀ ଏଥିରେ ସ୍ଥାନ ପାଇଥିବା ଯୋଗୁଁ ଦିବ୍ୟମାନୁଷୀ କଥା ପ୍ରତି ସମସ୍ତେ ଆକୃଷ୍ଟ ହୋଇଥାନ୍ତି । ପରିସ୍ଥିତିର ମାର୍ମିକ ଚିତ୍ରଣ, ଘାତ ପ୍ରତିଘାତ ମଧ୍ୟରେ ଚରିତ୍ରମାନଙ୍କ ଜୀବନାୟନ ଏବଂ ଦେବତା ଓ ମନୁଷ୍ୟମାନଙ୍କ ବିଭିନ୍ନ ଆଚରଣ ଓ ସଂସ୍କାରର ଉଲ୍ଲେଖ ଏଗୁଡ଼ିକୁ ସାଧାରଣ ପାଠକର ନିକଟତର କରିଥାଏ । ପ୍ରଣୟ କାହାଣୀ ଏହାର ଅନ୍ତରାତ୍ମା ।

ବିଷୟବସ୍ତୁ ଦୃଷ୍ଟିରୁ ପ୍ରାକୃତ ଭାଷ୍ୟକାରମାନେ ପ୍ରଚଳିତ କଥାଗୁଡ଼ିକୁ ଚାରିଭାଗରେ ବିଭକ୍ତ କରିଛନ୍ତି, ଯଥା– ଅର୍ଥକଥା, କାମକଥା, ଧର୍ମକଥା ଓ ମିଶ୍ରିତ କଥା । କେହି କେହି ମୋକ୍ଷ କଥାକୁ ମଧ୍ୟ ଏଥିରେ ସଂଯୋଗ କରିଥାନ୍ତି । ଚତୁର୍ବର୍ଗ ଫଳପ୍ରାପ୍ତି ମନୁଷ୍ୟ ଜୀବନର ଲକ୍ଷ୍ୟ । ଭାରତୀୟ ସଂସ୍କୃତିରେ ଏଥିପାଇଁ ହିଁ ବର୍ଣ୍ଣାଶ୍ରମ ବ୍ୟବସ୍ଥାକୁ ଏତେ ଗୁରୁତ୍ୱ ଦିଆଯାଇଛି । ବିଦଗ୍ଧ ସାହିତ୍ୟ ପାଠକର ଗୋଟିଏ ମାତ୍ର ବର୍ଗର ଫଳପ୍ରଦାନ କରିପାରେ । କିନ୍ତୁ କଥାସାହିତ୍ୟ ଚତୁର୍ବର୍ଗ ଫଳପ୍ରାପ୍ତିର ପ୍ରକୃଷ୍ଟ ମାଧ୍ୟମ । ଯାହା ମନୁଷ୍ୟର ଆତ୍ମକଲ୍ୟାଣକାରୀ, ଯେଉଁଥିରେ ମନୁଷ୍ୟର ଧାର୍ମିକ ଭାବନାକୁ ଉଜ୍ଜୀବିତ କରିବା ପାଇଁ ପ୍ରୟାସ କରାଯାଇଥାଏ ସେଗୁଡ଼ିକ ହିଁ ଧର୍ମକଥା । ଏଥିରେ କ୍ଷମା, ଆର୍ଜବ, ତପଃ, ସଂଯମ, ସତ୍ୟ, ଶୌଚ, ଶୀଳ, ଧର୍ମସାଧନ ଇତ୍ୟାଦିର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରାଯାଇଥାଏ । ସରସ ଲୌକିକ କଥା ମାଧ୍ୟମରେ ଧାର୍ମିକ ଉପଦେଶ ପ୍ରଦାନ କରାଯାଉଥିବାରୁ ଏଗୁଡ଼ିକ ଦ୍ରାକ୍ଷା ତୁଲ୍ୟ ସୁମିଷ୍ଟ ଓ ପୁଷ୍ଟିକାରକ ।

ସେହିପରି ଜୀବନକୁ ସରସ ସୁନ୍ଦର କରିବା ସହିତ ଧର୍ମଉପାର୍ଜ୍ଜନକୁ ସହଜ ସୁଗମ କରିବାପାଇଁ ଅର୍ଥର ଆବଶ୍ୟକତାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଯେଉଁ କଥା ଗୁଡ଼ିକରେ ଅସି, ମସି, କୃଷି, ସେବା, ଶିଳ୍ପ, ବାଣିଜ୍ୟ କିମ୍ବା ଧାତୁବାଦ ଦ୍ୱାରା ଅର୍ଥ ଉପାର୍ଜନର ସୂଚନା ଦିଆଯାଇଥାଏ ତାହା ଅର୍ଥକଥା । ମଲାମୂଷାକୁ ନେଇ ବାଣିଜ୍ୟ କରିଥିବା ଗଳ୍ପଟି ଏହାର ଏକ ସୁନ୍ଦର ଉଦାହରଣ ।

ଅନୁରୂପ ଭାବେ ମାନବ ଜୀବନରେ ଜୈବିକ ଆବଶ୍ୟକତାକୁ ଦୂରେଇ ଦେଇ ହବ ନାହିଁ । ସଫଳ ଯୌନଜୀବନ ହିଁ ଇହଲୋକରେ ମନୁଷ୍ୟକୁ ଶାନ୍ତି ପ୍ରଦାନ କରିବା ସହିତ ପରଲୋକ ପାଇଁ ଧର୍ମରୂପକ ପାଥେୟ ଅର୍ଜ୍ଜନ କରିବାରେ ସହାୟତା କରିଥାଏ । ପ୍ରେମିକ ପ୍ରେମିକାଙ୍କ ପ୍ରଣୟ କାହାଣୀ ଉପରେ ଆଧାରିତ ଶୃଙ୍ଗାରୀ କଥା ହିଁ କାମକଥା । କଥାସରିତ ସାଗରର ଅଧିକାଂଶ କଥା କାମକଥା ରୂପେ ହିଁ ବିବେଚିତ ହୋଇପାରେ । ସଫଳ ଓ ବିଫଳ ପ୍ରଣୟ କାହାଣୀର ଏହା ଏକ ସମୃଦ୍ଧ ଗନ୍ତାଘର !

ସଂକୀର୍ଣ୍ଣ କଥା ମଧ୍ୟରେ ଉଲ୍ଲିଖିତ ତ୍ରିବିଧ କଥାର ସମନ୍ୱୟ ଘଟିଥିବା ଯୋଗୁଁ ଏଗୁଡ଼ିକର ବିଶେଷ ପ୍ରଶଂସା କରାଯାଇଛି । ମନୋରଞ୍ଜନ, କୌତୂହଳ ଉତ୍ପାଦନ ସହିତ ଯୁଦ୍ଧ ଓ ରାଜ୍ୟଲାଭ, ଦାନ ଓ ଶୀଳ, ବାଣିଜ୍ୟ ଓ ସମୁଦ୍ର ଯାତ୍ରା, ମିଳନ ଓ ବିରହ ବର୍ଣ୍ଣନାରେ ଏଗୁଡ଼ିକ ବୈଚିତ୍ର୍ୟମଣ୍ଡିତ । ବୃହତ୍‌କଥା ଅପେକ୍ଷା ଏହାର ଅଧିକ ମନୋଜ୍ଞ ନିଦର୍ଶନ ଆଉ କ'ଣ ବା ହୋଇପାରେ ?

ସେହିପରି ପ୍ରାକୃତ ଭାଷାର କଥାପ୍ରିୟ କବିମାନେ ଶୈଳୀ ଓ ଉପସ୍ଥାପନା କୌଶଳ ଦୃଷ୍ଟିରୁ ସମକାଳରେ ପ୍ରଚଳିତ କଥାଗୁଡ଼ିକୁ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି । ଉଦ୍ୟୋତନ ସୂରିଙ୍କ 'କୁବଳୟ ମାଳା' କଥାଗ୍ରନ୍ଥରେ ଏଗୁଡ଼ିକୁ ସକଳ କଥା, ଖଣ୍ଡକଥା, ଉଲ୍ଲାପକଥା, ପରିହାସ କଥା ଓ ସଂକୀର୍ଣ୍ଣ କଥା ରୂପେ ନିର୍ଣ୍ଣୟ କରାଯାଇଛି ।

ସକଳ କଥାର ନାମରୁ ହିଁ ମନେହୁଏ ଏହା ଏକ ଦୀର୍ଘ, ତ୍ରିବର୍ଗଦାୟକ ମନୋରଞ୍ଜନାତ୍ମକ କଥା । ଏଥିରେ ନାୟକ ନାୟିକାଙ୍କ ବିସ୍ତୃତ ଜୀବନବୃତ୍ତାନ୍ତ ଏବଂ ସମୟେ ସମୟେ ସେମାନଙ୍କର ବିଭିନ୍ନ ଜନ୍ମର କଥା ମନୋଜ୍ଞ ଶୈଳୀରେ ଉପସ୍ଥାପିତ ହୋଇଥାଏ । ଶେଷରେ ନାୟକର ସକଳ ମନୋକାମନା ସିଦ୍ଧ ହୋଇଥାଏ ବୋଲି ଏଗୁଡ଼ିକୁ ସକଳ କଥା କୁହାଯାଉଥିବା ସମ୍ଭବପର । ନରବାହନଦତ୍ତ କିମ୍ବା ଉଦୟନଙ୍କ ସକଳ ମନୋରଥ ସିଦ୍ଧ ହୋଇଥିବା ଯୋଗୁଁ କଥାସରିତସାଗରକୁ ଏକ ସାର୍ଥକ ସକଳ କଥା କୁହାଯାଇପାରେ ।

ଖଣ୍ଡକଥା ଏହି ସକଳ କଥାର ଅଂଶବିଶେଷ । ଗୋଟିଏ ଦୀର୍ଘକଥା ମଧ୍ୟରେ ଯେଉଁ ଆନୁଷଙ୍ଗିକ କ୍ଷୁଦ୍ର କଥାଗୁଡ଼ିକୁ ସଂଯୋଜନା କରାଯାଇଥାଏ, ତାହାହିଁ ଖଣ୍ଡକଥା । ଏ ପ୍ରକାର ବହୁ ଖଣ୍ଡକଥାର ସମନ୍ୱୟରେ କଥାସରିତସାଗରର କଳେବର ପରିପୁଷ୍ଟ ।

ଉଲ୍ଲାପ କଥା ମୁଖ୍ୟତଃ ଏକ ସାହସିକ କଥା । ନାୟକର ଅପୂର୍ବ ବସ୍ତୁଲାଭ, ନୌଯାତ୍ରା, ଦୁଃସାଧ୍ୟ କର୍ମ ସମ୍ପାଦନ ପୂର୍ବକ ସୁନ୍ଦରୀ କନ୍ୟାପ୍ରାପ୍ତି ଇତ୍ୟାଦି ଏଥିରେ ବର୍ଣ୍ଣିତ ହୋଇଥାଏ । କଥାସରିତସାଗର ଏ ପ୍ରକାର ବିବିଧ ଉଲ୍ଲାପ କଥାର ଏକ ବିଚିତ୍ର ସମାହାର ।

ସେହିପରି ପରିହାସ କଥାର ନାମକରଣରୁ ହିଁ ଏହାର ବିଶେଷତ୍ୱ ସୁସ୍ପଷ୍ଟ । ଏଗୁଡ଼ିକ ମୁଖ୍ୟତଃ ହାସ୍ୟରସାତ୍ମକ ଏବଂ ଉପଦେଶାତ୍ମକ । ବିଭିନ୍ନ ମୂର୍ଖ ଓ ଧୂର୍ତ୍ତଙ୍କ ସମ୍ପର୍କରେ କଥାସରିତସାଗରରେ ଥିବା ଗଳ୍ପଗୁଡ଼ିକ ଏହାର ଉଦାହରଣ ।

ମିଶ୍ରକଥା ଏ ସମସ୍ତର ଏକ ସମନ୍ୱୟ । ଏହା ଗଦ୍ୟ, ପଦ୍ୟ, ସଂସ୍କୃତ, ପ୍ରାକୃତର ସମନ୍ୱୟରେ ରଚିତ ହୋଇପାରେ । ବହୁବିଧ କଥାର ସମନ୍ୱୟରେ ଏହାର ପରିକଳ୍ପନା କରାଯାଇଥିବାରୁ ଏହାକୁ ସଂକୀର୍ଣ୍ଣ ବା ମିଶ୍ରକଥା କୁହାଯାଏ । ଏହା ବ୍ୟତୀତ ପ୍ରାକୃତ କଥାଗ୍ରନ୍ଥରେ ସାଂସାରିକ ଜୀବନର ସୁଖଦୁଃଖକୁ ନେଇ ରଚିତ କଥାଗୁଡ଼ିକୁ ଅକଥା, ଧର୍ମ ଉପଦେଶାତ୍ମକ କାହାଣୀକୁ କଥା ଏବଂ ବ୍ୟକ୍ତି ବା ସମାଜକୁ ଅସତ୍ ମାର୍ଗରେ ପରିଚାଳନା କରୁଥିବା କଥାଗୁଡ଼ିକୁ ବିକଥା ବୋଲି ଉଲ୍ଲେଖ କରାଯାଇଛି । କଥାସରିତସାଗରରେ ଦେବ ଦେବ ମହାଦେବ ଦେବୀ ପାର୍ବତୀଙ୍କ ମନୋରଞ୍ଜନ ନିମିତ୍ତ ଶୁଣାଇଥିବା କଥାଗୁଡ଼ିକ ଜଗତର କଲ୍ୟାଣକାରୀ ହେବା ସ୍ୱାଭାବିକ; ଏଣୁ କଥାର ଅନ୍ତର୍ଭୁକ୍ତ ।

ପ୍ରାକୃତ କଥାକାରମାନଙ୍କ ପରି ସଂସ୍କୃତ ଆଳଙ୍କାରିକମାନେ ମଧ୍ୟ ଉପଲବ୍ଧ କଥାଗ୍ରନ୍ଥଗୁଡ଼ିକୁ ଦୃଷ୍ଟିରେ ରଖି କଥାର ବିଭିନ୍ନ ରୂପ ସମ୍ପର୍କରେ ବିଚାର ଆଲୋଚନା କରିଛନ୍ତି । ଏମାନଙ୍କ ମତରେ କଥା ମୁଖ୍ୟତଃ କଳ୍ପନାତ୍ମକ ଏବଂ କବି କଳ୍ପନାରୁ ଉତ୍ପାଦିତ । 'ପ୍ରବନ୍ଧଃ କଳ୍ପନା କଥା', ଭାମହଙ୍କ କାବ୍ୟାଳଙ୍କାର, ଦଣ୍ଡୀଙ୍କ କାବ୍ୟାଦର୍ଶ, ରୁଦ୍ରଟଙ୍କ କାବ୍ୟାଳଙ୍କାର, ଆନନ୍ଦବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ, ହେମଚନ୍ଦ୍ରଙ୍କ କାବ୍ୟାନୁଶାସନ, ଭୋଜଙ୍କ ଶୃଙ୍ଗାର ପ୍ରକାଶ ଇତ୍ୟାଦି ଅଳଙ୍କାର ଗ୍ରନ୍ଥରେ କଥାର ବିଭିନ୍ନ ଭେଦ ନିରୂପଣ ପାଇଁ ପ୍ରୟାସ କରାଯାଇଛି ।

କଥା ଆଖ୍ୟାୟିକାଠାରୁ ଭିନ୍ନ । ଉଭୟର ବିଷୟ ନିର୍ବାଚନ ଓ ଉପସ୍ଥାପନା କୌଶଳ ସ୍ୱତନ୍ତ୍ର । ପ୍ରଥମଟି କଳ୍ପିତ ଚରିତ୍ର ଉପରେ ଆଧାରିତ ହେଲାବେଳେ ଦ୍ୱିତୀୟଟି ସତ୍ୟ ଚରିତ୍ର ବା ଐତିହାସିକ ନାୟକଙ୍କୁ ନେଇ ରଚିତ । ଦଣ୍ଡୀ ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ

ନଥିବା କଥା ଉଲ୍ଲେଖ କରିଥିଲେ ସୁଦ୍ଧା ପରବର୍ତ୍ତୀ ସମୟରେ ବାଣଭଟ୍ଟଙ୍କ କାଦମ୍ବରୀ ଓ ହର୍ଷଚରିତକୁ ଆଧାର କରି ଏ ଉଭୟର ପାର୍ଥକ୍ୟ ନିରୂପଣ କରାଯାଇଛି । ଅବଶ୍ୟ ଆଖ୍ୟାୟିକାଗୁଡ଼ିକରେ ଉପସ୍ଥାପିତ ଶ୍ରୀହର୍ଷ, ଉଦୟନ, ବିକ୍ରମାଦିତ୍ୟ କେତେ ବାସ୍ତବ ଓ କେତେ କଳ୍ପିତ ତାହା ନିର୍ଣ୍ଣୟ କରିବା କଷ୍ଟସାଧ୍ୟ । ଏପରିକି ସାତବାହନ କଥା ମଧ୍ୟ ବାସ୍ତବତାଠାରୁ ଦୂରେଇଯାଇଥିବା ସମ୍ଭବପର । ଆଖ୍ୟାୟିକାରେ କବିର ବଂଶାବଳୀ, ଅନ୍ୟ କବିମାନଙ୍କର ପରିଚୟ ଓ ମହତ୍ତ୍ୱ ପ୍ରତିପାଦନ ପୂର୍ବକ ମୂଳ ବିଷୟବସ୍ତୁର ଅବତାରଣା କରାଯାଇଥାଏ; କିନ୍ତୁ କଥାର ଆରମ୍ଭରେ ମଙ୍ଗଳାଚରଣ ଓ ସାଧୁସ୍ତୁତି ଓ ଖଳନିନ୍ଦା ରହିବା ଆବଶ୍ୟକ । ମନେହୁଏ ବାଣଙ୍କ ଦୁଇଟି ଅକ୍ଷୟକୀର୍ତ୍ତିକୁ ଦୃଷ୍ଟିରେ ରଖି ଏ ଉଭୟର ପାର୍ଥକ୍ୟ ପରବର୍ତ୍ତୀ କାଳରେ ନିରୂପିତ ହୋଇଅଛି । ଏ ଦୃଷ୍ଟିରୁ କଥାସରିତ ସାଗରର କଥା ପୀଠ ଓ ଉଦୟନ ବୃତ୍ତାନ୍ତ ଆଖ୍ୟାୟିକାର ଲକ୍ଷଣ ବହନ କରୁଥିବା ବେଳେ ନରବାହନଦତ୍ତ ବୃତ୍ତାନ୍ତ ଏକ କଥାର ରୂପ ଲାଭକରିଛି । ସୋମଦେବ ଉଭୟର ଏକ ସମନ୍ୱୟ କରିବାପାଇଁ ପ୍ରୟାସ କରିଛନ୍ତି ।

ରୁଦ୍ରଟଙ୍କ ପାଇଁ କଥା ଦ୍ୱିବିଧ— ମହାକଥା ଓ ଖଣ୍ଡକଥା । ମହାକଥା ପ୍ରାକୃତ କଥା ସମାଲୋଚକମାନଙ୍କ ସକଳ କଥାର ଅନୁରୂପ । ଏହା ଏକ ଦୀର୍ଘକଥା, ପୁରାଣର ଛାୟାରେ କଳ୍ପିତ । ଏହା ମଧ୍ୟରେ ଅନେକ କ୍ଷୁଦ୍ରକଥା ଗର୍ଭିତ ହୋଇପାରେ । ଦେବତା, ଗୁରୁ କିମ୍ବା ପୂର୍ବସୂରିମାନଙ୍କୁ ସ୍ମରଣ ପୂର୍ବକ ନିଜବଂଶର ପରିଚୟ ଦେଇ ରଚୟିତା ଏହାକୁ ଆରମ୍ଭ କରିଥାନ୍ତି । ବାଣଭଟ୍ଟଙ୍କ କାଦମ୍ବରୀ ହିଁ ଏହାର ନିଦର୍ଶନରୂପେ ଗୃହୀତ ହୋଇଥାଏ । ମହାକଥାର ସଂରଚନା ଜଟିଳ ଓ ନାଟକୀୟ ସନ୍ଦେହଯୁକ୍ତ ହେବା ଉଚିତ ବୋଲି ରୁଦ୍ରଟ ମତ ପ୍ରଦାନ କରିଛନ୍ତି । ନାୟକ ନାୟିକାଙ୍କ ଜୀବନର ମଧ୍ୟବିନ୍ଦୁରୁ ଆରମ୍ଭ ହୋଇ ଏହା ସେମାନଙ୍କ ଅତୀତ ଓ ଭବିଷ୍ୟତ ଜୀବନର ବୃତ୍ତାନ୍ତ କ୍ରମଶଃ ଉନ୍ମୋଚନ କରିବ । କନ୍ୟାଲାଭରେ, ରାଜ୍ୟଲାଭ ମଧ୍ୟ ହୋଇପାରେ, ଏହାର ପରିସମାପ୍ତି ଘଟିବା ଉଚିତ । କଥାସରିତସାଗର ମହାକଥାର ସମସ୍ତ ଲକ୍ଷଣ ବହନ କରିଥିବା ଏକ ସାର୍ଥକ ସୃଷ୍ଟି ।

ଖଣ୍ଡକଥା ଅପେକ୍ଷାକୃତ ଏକ କ୍ଷୁଦ୍ରକଥା । ଏହା ନିଜ ମଧ୍ୟରେ ସ୍ୱୟଂସମ୍ପୂର୍ଣ୍ଣ । ନାୟକର ଜୀବନବୃତ୍ତ ଏଠାରେ ଋଜୁ ଓ ସରଳ । ବିଭିନ୍ନ ବିଷମ ପରିସ୍ଥିତି ଦେଇ ସେ ପରିଶେଷରେ ସଫଳତା ଲାଭ କରିଥାଏ । ସମୟେ ସମୟେ ଗୋଟିଏ ଆବରଣ ଗଳ୍ପ ସୃଷ୍ଟିକରି ଏହିପରି କେତେକ ଖଣ୍ଡକଥାକୁ କଥାଶିଳ୍ପୀମାନେ ଗୋଟିଏ ସୂତ୍ରରେ ଗୁମ୍ଫନ କରିବାପାଇଁ ଚେଷ୍ଟା କରିଥାନ୍ତି । କଥାସରିତସାଗରରେ ଥିବା ବେତାଳ ପଞ୍ଚବିଂଶତି କିମ୍ବା ପାରମିତା କଥାଗୁଡ଼ିକ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ।

ସେହିପରି କଥାର ଅନ୍ୟଦୁଇଟି ରୂପ ହେଉଛି ଆଖ୍ୟାନ ଓ ଉପାଖ୍ୟାନ । ଆଖ୍ୟାନଗୁଡ଼ିକ ମୁଖ୍ୟତଃ ପୌରାଣିକ ଚରିତ୍ରମାନଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥାଏ । ସେମାନଙ୍କ ଚାରିତ୍ରିକ ମହତ୍ତ୍ୱ କିମ୍ବା ବୀରତ୍ୱର ପରିଚୟ ଦେବାପାଇଁ ଉପାଖ୍ୟାନର ପରିକଳ୍ପନା.। ଉପାଖ୍ୟାନ ଆଖ୍ୟାନର ଏକ ସହାୟକ ତଥା ପରିପୂରକ ଉପକଥା । ପାଣ୍ଡବମାନଙ୍କ ବନବାସ ଏକ ଆଖ୍ୟାନ ହେଲେ ନଳଚରିତ ଏକ ଉପାଖ୍ୟାନ ।

ସେହିପରି କଥାର ଅନ୍ୟତମ ରୂପ ହେଲା ପରିକଥା । ଏହାର ସ୍ୱରୂପ ସମ୍ପର୍କରେ ସ୍ପଷ୍ଟଧାରଣା କରାଯାଇପାରୁନଥିଲେ ସୁଦ୍ଧା ଏହା ବୌଦ୍ଧଧର୍ମର ନୀତିକଥାଗୁଡ଼ିକୁ ଦୃଷ୍ଟିରେ ରଖି କଳ୍ପିତ ବୋଲି ମନେହୁଏ । ପରିକଥା ମୁଖ୍ୟତଃ ଇତିବୃତ୍ତାତ୍ମକ; ତେଣୁ ଏଥିରେ ବର୍ଣ୍ଣନା ବା ରସ ପ୍ରସାରର ସ୍ଥାନ ନଥାଏ । କେହି କେହି ନିଦର୍ଶନ କଥା ମଧ୍ୟରେ ଏହାକୁ ଅନ୍ତର୍ଭୁକ୍ତ କରିଥାନ୍ତି ।

ଗୋଟିଏ ଗୋଟିଏ ନାୟକର ବହୁଜନ୍ମର ବୃତ୍ତାନ୍ତକୁ ଭିତ୍ତିକରି ଯେଉଁ କଥା ଗ୍ରନ୍ଥ-ଗୁଡ଼ିକ ସୃଷ୍ଟିଲାଭ କରିଛି, ସେଗୁଡ଼ିକୁ ଆନନ୍ଦବର୍ଦ୍ଧନ, ହେମଚନ୍ଦ୍ର ପ୍ରମୁଖ ସକଳ କଥାର ଅନ୍ତର୍ଭୁକ୍ତ କରିଛନ୍ତି । ବସୁଦେବ ହୀଣ୍ଡି ବା ସମରାଦିତ୍ୟ କଥା ଏହାର ଉଦାହରଣ ରୂପେ ଉପସ୍ଥାପିତ । କଥାସରିତସାଗର ମଧ୍ୟରେ ଏପ୍ରକାର କଥାର ଅଭାବ ନାହିଁ ।

ବିଭିନ୍ନ ଉଦାହରଣ ମାଧ୍ୟମରେ ନୀତି ଉପଦେଶ ପ୍ରଦାନ କରିବାପାଇଁ ଯେଉଁ ଦୀର୍ଘ ଓ କ୍ଷୁଦ୍ର କଥାଗୁଡ଼ିକର ପରିକଳ୍ପନା ସେଗୁଡ଼ିକ ହେମଚନ୍ଦ୍ରଙ୍କ ଦ୍ୱାରା ନିଦର୍ଶନ କଥା ରୂପେ ଅଭିହିତ । ଏହା ରସଦୃଷ୍ଟିରୁ ମନୋଜ୍ଞ ନହେଲେ ସୁଦ୍ଧା ନୀତିଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । 'ପଞ୍ଚତନ୍ତ୍ର'କୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇଥାଏ । ଏଗୁଡ଼ିକ ବ୍ୟଙ୍ଗାତ୍ମକ ହେଲେ ଅଧିକ ମନୋଜ୍ଞ ହୋଇଥାନ୍ତି । ବ୍ୟକ୍ତିର ମୂର୍ଖତା, ଗଣିକାମାନଙ୍କ ଛଦ୍ମ ପ୍ରଣୟ ପ୍ରଭୃତି ପ୍ରତି ବ୍ୟଙ୍ଗ କରାଯାଇଥିବା ଯୋଗୁଁ ହରିଭଦ୍ରଙ୍କ ଧୂର୍ତ୍ତାଖ୍ୟାନ, ଦାମୋଦର ଗୁପ୍ତଙ୍କ କୁଟ୍ଟନୀମତର ଲୋକପ୍ରିୟତା । କଥାସରିତସାଗରର ମୂଷିକକଥା ଓ କୁଟ୍ଟନୀମାନଙ୍କ ଚାତୁର୍ଯ୍ୟ କଥା ସବୁକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ ।

କଥାର ଏକ ଉପବିଭାଗ ରୂପେ ମଣିକୁଲ୍ୟାକୁ ମଧ୍ୟ ଗ୍ରହଣ କରାଯାଇଛି । ଏହା ଏକପ୍ରକାର ରହସ୍ୟାତ୍ମକ ଗଳ୍ପ । ରହସ୍ୟଟି ଗଳ୍ପଶେଷରେ ଉଦ୍‌ଘାଟିତ ହୋଇଥାଏ । କଥାସରିତସାଗରର ମୃତ ମତ୍ସ୍ୟର ହାସ୍ୟ କଥାକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇଛି ।

ଏହିପରି ସାମାଜିକ ବ୍ୟଙ୍ଗର ଆଧାରରେ କଳ୍ପିତ କଥା ମତଲ୍ଲିକା, ସମସ୍ୟା ସମାଧାନ, ପ୍ରଶ୍ନୋତ୍ତର, କୂଟ ସଂଳାପ ଇତ୍ୟାଦିକୁ ନେଇ ରଚିତ କଥା ପ୍ରବହ୍ଲିକା ଇତ୍ୟାଦି କଥାର ଅନ୍ୟ କେତୋଟି ବିଭାଗ ।

ଲୋକ ଉପାଦାନ ଭିତ୍ତିରେ କଲ୍ୟାଣକାରୀ ଗ୍ରନ୍ଥ ପ୍ରଣୟନ ପାଇଁ ଶାସ୍ତ୍ରକାରମାନଙ୍କ ଉଦ୍ୟମ, ଲୋକମୁଖର କାହାଣୀକୁ ବିଦଗ୍ଧ ଗଦ୍ୟ ମହାକାବ୍ୟର ରୂପ ଦେବାପାଇଁ ବାଣଭଟ୍ଟ, ସୁବନ୍ଧୁ ପ୍ରମୁଖଙ୍କ ପ୍ରଚେଷ୍ଟା, ବୌଦ୍ଧ ଓ ଜୈନ ଧର୍ମର ପ୍ରଚାର କ୍ଷେତ୍ରରେ ସାଧାରଣ ଲୋକକଥାର ବିନିଯୋଗ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ଏଗୁଡ଼ିକର ସଂଗ୍ରହ ଓ ସୁରକ୍ଷା ପାଇଁ ଏକ ଅଭିନବ ଆଗ୍ରହ ସୃଷ୍ଟି କରିଥିଲା । ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭାଷାର ଲେଖକମାନେ ପୁଣି କଥା ସଂଗ୍ରହ ବା କଥାକୋଷମାନ ସଂକଳନ କରିବା ଆରମ୍ଭ କଲେ । ସ୍ମୃତି ସୌକର୍ଯ୍ୟ ପାଇଁ ଆବରଣ ଗଳ୍ପ, ଛନ୍ଦ, ଦୋହା ପ୍ରଭୃତିର ଆଶ୍ରୟ ଗ୍ରହଣ କରାଗଲା । ସୋମଦେବ ଏ ପରମ୍ପରାର ଜଣେ ସାର୍ଥକ ଶିଳ୍ପୀ ଏବଂ ତାଙ୍କ କଥାସରିତସାଗର ଏହି ଅଭିନବ ପୁନଃକଥନ କୌଶଳର ସର୍ବଶ୍ରେଷ୍ଠ ନିଦର୍ଶନ ।

ସୋମଦେବଙ୍କ ଆତ୍ମବିବୃତିରୁ ଜଣାଯାଏ ଯେ ସେ ମୂଳ 'ବୃହତ୍‌କଥା'ର ବିଶ୍ୱସ୍ତ ଅନୁସରଣ କରିଛନ୍ତି, ଏହାର ଗଳ୍ପଗୁଡ଼ିକୁ ରସାଳ ଓ ମନୋଜ୍ଞ କରି କାବ୍ୟରୂପ ଦେବା ନିମିତ୍ତ ମୂଳ କଥାରସକୁ ଅବିକୃତ ରଖି ମଝେ ମଝେ କେତେକ ବର୍ଣ୍ଣନାତ୍ମକ ଶ୍ଳୋକାବଳୀ ସଂଯୋଗ କରିଛନ୍ତି ଏବଂ ପାଠକମାନଙ୍କ ସ୍ମୃତିରେ କଥାଗୁଡ଼ିକୁ ଜାଗ୍ରତ ରଖିବାପାଇଁ କଥାଗୁଡ଼ିକୁ ନୂତନ ଭାବେ ସଜ୍ଜୀକୃତ କରିଛନ୍ତି ।

ବୃହତ୍‌କଥା ତୁଲ୍ୟ କଥାସରିତସାଗରର ମଧ୍ୟ ମୂଳରସ ଅଦ୍ଭୁତ ହେବା ସ୍ୱାଭାବିକ । କିନ୍ତୁ ନରବାହନଦତ୍ତଙ୍କ କଥା ଅଦ୍ଭୁତ ରସର ଦ୍ୟୋତକ ହେଲେ ସୁଦ୍ଧା ଏହା ମଧ୍ୟରେ ଗର୍ଭିତ ଅନ୍ୟାନ୍ୟ କଥାରେ ଶୃଙ୍ଗାର, ବୀର, ହାସ୍ୟ, ଶାନ୍ତ ଇତ୍ୟାଦି ନବରସର ଅଭାବ ନାହିଁ । ଉପଯୁକ୍ତ ବିଭାବ, ଅନୁଭାବ ଓ ସଞ୍ଚାରୀ ଭାବର ସହାୟତାରେ ଏହି ରସସବୁକୁ ପାଠକ ଚିତ୍ତରେ ସଞ୍ଚାରଣ କରାଇବାପାଇଁ ସୋମଦେବଙ୍କ ପ୍ରୟାସ ବ୍ୟର୍ଥ ହୋଇନାହିଁ । ଏହି ଲକ୍ଷ୍ୟ ସିଦ୍ଧିପାଇଁ ସେ ବସ୍ତୁବର୍ଣ୍ଣନା ଓ ସରଳ ଅଳଙ୍କାର ସଂଯୋଜନାର ସାହାଯ୍ୟ ନେଇଛନ୍ତି । ଏ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଥିବାରୁ, ଅଧିକ ଆଲୋଚନାର ଆବଶ୍ୟକତା ନାହିଁ ।

ବର୍ତ୍ତମାନ ମୂଳ ରଚନା ପ୍ରତି ସୋମଦେବଙ୍କ ବିଶ୍ୱସ୍ତତା ସମ୍ପର୍କରେ ବିଚାର କରାଯାଉ । କଥାସରିତସାଗରର କଳେବର ମଧ୍ୟରେ ଅନ୍ତର୍ଭୁକ୍ତ କଥାସମୂହର ଶିଳ୍ପ କୌଶଳ ଆଧାରରେ କେହି କେହି ସମାଲୋଚକ ଏହାର ବିଶ୍ୱସ୍ତତା ପ୍ରତି ସନ୍ଦେହ ପ୍ରକାଶ କରୁଥିଲା ବେଳେ ଅନ୍ୟ କେହି ସୋମଦେବଙ୍କ ଆତ୍ମବିବୃତିରେ ସର୍ତ୍ତମୂଳକ ଆସ୍ଥା ସ୍ଥାପନ କରିଛନ୍ତି । ଏ ପ୍ରକାର ସନ୍ଦେହର ମୂଳ କାରଣ ହେଉଛି 'ବୃହତ୍ କଥା ଶ୍ଳୋକ ସଂଗ୍ରହ' ଏବଂ 'କଥାସରିତସାଗର'ର ଆବରଣ ଗଳ୍ପ ଓ କଥା ଉପସ୍ଥାପନା ଶୈଳୀ ମଧ୍ୟରେ ଥିବା ପାର୍ଥକ୍ୟ । ପ୍ରଥମଟିରେ ଶିବଙ୍କ ସ୍ଥାନରେ କୁବେର ହେଉଛନ୍ତି ବକ୍ତା ଏବଂ ନରବାହନଦତ୍ତ

ତାଙ୍କ ବିଦ୍ୟାଧର ଚକ୍ରବର୍ତ୍ତିତ୍ୱ ଲାଭର କଥା ନିଜେ କହିଛନ୍ତି । ପୁଣି ଏଥିରେ ଗୁଣାଢ଼୍ୟଙ୍କ ବିବରଣୀ ଅନୁପସ୍ଥିତ ଏବଂ ନରବାହନଦତ୍ତଙ୍କ ପିତା ବତ୍ସରାଜ ଉଦୟନଙ୍କ ବୃତ୍ତାନ୍ତ ଗୌଣ ।

ଉଭୟ ରଚନାର ତୁଳନାତ୍ମକ ଅଧ୍ୟୟନରୁ ଏ ପ୍ରକାର ସନ୍ଦେହ ଅମୂଳକ ବୋଲି ମନେହୁଏ ନାହିଁ । କିନ୍ତୁ ଏହା ମଧ୍ୟ ମନେରଖିବା ଉଚିତ ଯେ ଏ ସମସ୍ତ ସମାଲୋଚକ ଗୋଟିଏ ବିଷୟରେ ଏକମତ ଯେ ଉଭୟ ବୁଦ୍ଧସ୍ୱାମୀ ଏବଂ ସୋମଦେବ କେହି ମୂଳ ବୃହତ୍‌କଥା ଦେଖିବାର ସୁଯୋଗ ପାଇ ନଥିଲେ; ସେମାନେ ଦେଖିଥିଲେ କାଶ୍ମୀରରେ ପ୍ରସ୍ତୁତ ହୋଇଥିବା କୌଣସି ଅନାମଧେୟ ଲେଖକଙ୍କ ଅଭିନବ ସଂସ୍କରଣ । ଏପରିକି ସୋମଦେବ କାଶ୍ମୀରୀ ବୃହତ୍ କଥାର ଏକ ଖଣ୍ଡିତ ଓ ଅସ୍ପଷ୍ଟ ସଂସ୍କରଣ ଦେଖିଥିବା କଥା ସେମାନେ ସମ୍ଭାବନା କରିଛନ୍ତି ।

କିନ୍ତୁ ଏସବୁ ସମ୍ଭାବନା ସହିତ ଆଉ ଏକ ସମ୍ଭାବନାକୁ ମଧ୍ୟ ଏଡ଼ାଇ ଦିଆଯାଇ ନପାରେ । ତାହା ହେଉଛି, ଉଭୟ ବୁଦ୍ଧସ୍ୱାମୀ ଓ ସୋମଦେବ ମୂଳଗ୍ରନ୍ଥ ସହିତ ପରିଚିତ ଥିଲେ ଏବଂ ଦୀର୍ଘ ସାତଶହ କି ହଜାରେ ବର୍ଷର ବ୍ୟବଧାନରେ ନିଜ ନିଜ ମନମୁତାବକ ତା'ର ପୁନଃକଥନ ପାଇଁ ପ୍ରୟାସ କରିଛନ୍ତି । ବୁଦ୍ଧସ୍ୱାମୀ ନାୟକ ନରବାହନଦତ୍ତଙ୍କ ନାମକରଣର ଯଥାର୍ଥତା ଦୃଷ୍ଟିରୁ କୁବେରଙ୍କୁ କଥାଗ୍ରନ୍ଥର ବକ୍ତା ଭାବେ ଗ୍ରହଣ କରିଛନ୍ତି ଏବଂ ଏହାକୁ ମହାକଥା ବା ସକଳକଥାର ରୂପ ଦେବାପାଇଁ କଥାବସ୍ତୁର ମଧ୍ୟଭାଗରୁ ଗ୍ରନ୍ଥାରମ୍ଭ କରି କଥାନାୟକ ନରବାହନଦତ୍ତଙ୍କ ମୁଖରେ ତାଙ୍କ ଅତୀତ ଓ ଭବିଷ୍ୟତ ଜୀବନୀ ଆମକୁ ଦେଇଛନ୍ତି । କିନ୍ତୁ ସୋମଦେବ ଚେଷ୍ଟା କରିଛନ୍ତି ତାଙ୍କ କଥାଗ୍ରନ୍ଥକୁ ଏକ କାବ୍ୟ ଓ ପୁରାଣର ସମନ୍ୱିତ ରୂପ ଦେବାପାଇଁ, ଏଥିପାଇଁ ସେ ପ୍ରତ୍ୟେକ ସରିତର ଆରମ୍ଭରେ ମୂଳ ମଙ୍ଗଳାଚରଣ ଶ୍ଳୋକ ସହିତ ସ୍ୱତନ୍ତ୍ର ମଙ୍ଗଳାଚରଣ ସଂଯୋଜନା କରିଛନ୍ତି; ଗ୍ରନ୍ଥ ଶେଷରେ ପୁରାଣ ପରି ଗ୍ରନ୍ଥ ମାହାତ୍ମ୍ୟ ଓ ଫଳପ୍ରାପ୍ତିର ଉଲ୍ଲେଖ କରିଛନ୍ତି, ଗ୍ରନ୍ଥ ମଧ୍ୟରେ ସୁଯୋଗ ସୃଷ୍ଟି କରି ବିଷ୍ଣୁ, ଶିବ, ଗଣପତି, ସୂର୍ଯ୍ୟ ପ୍ରଭୃତିଙ୍କ ସ୍ତୁତିସ୍ତୋତ୍ର ପ୍ରଦାନ କରିଛନ୍ତି ଏବଂ ପ୍ରତି ତରଙ୍ଗର ପରିସମାପ୍ତିରେ ଭିନ୍ନ ବୃତ୍ତ ବ୍ୟବହାର ସହିତ ଅଳଙ୍କାର, ବକ୍ରୋକ୍ତି, ଧ୍ୱନି ଓ ରୀତିଯୁକ୍ତ କରି ନିଜ ବକ୍ତବ୍ୟକୁ ଉପସ୍ଥାପନା କରିଛନ୍ତି ।

ଏହି ଆଭିମୁଖ୍ୟରୁ ହିଁ ଏହି ବିଶାଳ କଥାଗ୍ରନ୍ଥର ଆବରଣ ଗଳ୍ପ ରୂପେ ଶିବପାର୍ବତୀ ସମ୍ବାଦର ପରିକଳ୍ପନା । ସୋମଦେବଙ୍କ ବେଳକୁ ପୁରାଣସବୁ ସ୍ପଷ୍ଟ ରୂପ ଲାଭ କରିସାରିଥିଲେ । ଧାର୍ମିକ ଜନତାର ବିଶ୍ୱାସ ସୃଷ୍ଟି ପାଇଁ ପୁରାଣ ପ୍ରଣେତାମାନେ ଏ ପ୍ରକାର ସମ୍ବାଦ ଶୈଳୀର ଅନୁବର୍ତ୍ତନ କରି ବକ୍ତା ଓ ଶ୍ରୋତା ନିର୍ଦ୍ଦିଷ୍ଟ କରିଥିଲେ । ମୁନି, ଋଷି ଓ ଶିଷ୍ୟମଣ୍ଡଳୀ ଅଧିକାଂଶ ପୁରାଣରେ ଏଥିପାଇଁ ଉପଯୁକ୍ତ ବୋଲି ବିବେଚିତ ହୋଇଥିଲେ । କାଦମ୍ବରୀ ପ୍ରଣେତା ବାଣଭଟ୍ଟ ମଧ୍ୟ ଏହି ପରମ୍ପରାର ବ୍ୟତିକ୍ରମ ହୋଇପାରି

ନାହାନ୍ତି । ରାମାୟଣକୁ ଏକ ଧର୍ମଗ୍ରନ୍ଥର ସ୍ୱୀକୃତି ଦେବାପାଇଁ ବ୍ୟାସଦେବ ଏହାର କଥାବସ୍ତୁକୁ ଶିବ-ପାର୍ବତୀ ସମ୍ବାଦ ମାଧ୍ୟମରେ ପୁନଃକଥନ କରିବାକୁ ଯାଇ ସୃଷ୍ଟି କରିଛନ୍ତି ଅଧ୍ୟାତ୍ମ ରାମାୟଣ । ଏହି ପୃଷ୍ଠଭୂମିରେ ଶୈବପୀଠ କାଶ୍ମୀରର କବି ସୋମଦେବ ଗୁଣାଢ଼୍ୟଙ୍କ ଧର୍ମନିରପେକ୍ଷ ଗଳ୍ପଗୁଡ଼ିକୁ ଏକତ୍ର କରି ତାକୁ ଏକ ଧର୍ମଗ୍ରନ୍ଥର ମର୍ଯ୍ୟାଦା ଦେବା ନିମିତ୍ତ ଶିବ ପାର୍ବତୀଙ୍କୁ ବକ୍ତା ଓ ଶ୍ରୋତା ରୂପେ ନିର୍ବାଚନ କରିଛନ୍ତି । ତ୍ରିକାଳ ଓ ତ୍ରିଲୋକଦର୍ଶୀ ମହାଯୋଗୀଶ୍ୱର ତଥା ଅଦ୍ୱିତୀୟ ପ୍ରଣୟୀ ମହାଦେବଙ୍କ ବ୍ୟତୀତ ଏହି ମହାନ୍ ଦିବ୍ୟମାନୁଷୀ କଥାଗ୍ରନ୍ଥର ବକ୍ତା ହେବାପାଇଁ ଆଉ କିଏ ବା ଅଧିକ ଉପଯୁକ୍ତ !

ସେହିପରି ଦଶମ ଏକାଦଶ ଶତାବ୍ଦୀ ବେଳକୁ ଗୁଣାଢ଼୍ୟଙ୍କ କବିକୀର୍ତ୍ତି ଦିଗନ୍ତ ପ୍ରସାରିତ ହୋଇସାରିଥିଲା । କୀର୍ତ୍ତିମାନ୍‌ମାନଙ୍କୁ କେନ୍ଦ୍ରକରି ବିଭିନ୍ନ କିମ୍ବଦନ୍ତୀ ଗଢ଼ିଉଠିବା ଏକ ସ୍ୱାଭାବିକ ବ୍ୟାପାର । କାଳିଦାସ, ମାଘ, ଭାରବୀ, ଶ୍ରୀହର୍ଷଙ୍କ ସମ୍ପର୍କରେ ଏପରି ବହୁ କିମ୍ବଦନ୍ତୀ ପ୍ରଚଳିତ । ଗୁଣାଢ଼୍ୟଙ୍କୁ ନେଇ ମଧ୍ୟ ଏପରି କିମ୍ବଦନ୍ତୀ ସୃଷ୍ଟି ହୋଇଥିବା ଅସମ୍ଭବ ନୁହେଁ । ବୁଦ୍ଧସ୍ୱାମୀଙ୍କ ବୃହତ୍ କଥାଶ୍ଳୋକ ସଂଗ୍ରହ ଭିତ୍ତିରେ (ଯାହାର ସମୟ ଓ ପ୍ରାମାଣିକତା ସନ୍ଦେହମୁକ୍ତ ନୁହେ) ଯଦି ଗୁଣାଢ଼୍ୟ ପ୍ରସଙ୍ଗ ମୂଳ ବୃହତ୍‌କଥାରେ ନ ଥିବା ସମ୍ଭାବନା କରାଯାଏ, ତେବେ ସୋମଦେବ ନିଜ ଗ୍ରନ୍ଥର କଥାପୀଠକୁ ରମଣୀୟ ଓ ଅଧିକ ବିଶ୍ୱାସଯୋଗ୍ୟ କରିବାପାଇଁ ଲୋକମୁଖର ପ୍ରଚଳିତ କଥାକୁ ଏଥିରେ ବିନିଯୋଗ କରିଥିବା ଗ୍ରହଣ କରାଯାଇପାରେ ।

ଅନୁରୂପ ଭାବେ ଉଦୟନ ବାସବଦତ୍ତା କଥା । ଏହା ମଧ୍ୟ ବୁଦ୍ଧସ୍ୱାମୀଙ୍କ ରଚନାରେ ଦେଖିବାକୁ ମିଳେ ନାହିଁ । କେବଳ ନରବାହନଦତ୍ତ ରୂପକ ମୂଳକଥାକୁ ଶ୍ଳୋକନିବଦ୍ଧ କରିବାପାଇଁ ଚାହୁଁଥିବାରୁ ସେ ହୁଏତ ଏହାକୁ ବାଦ୍ ଦେଇପାରି ଥାଆନ୍ତି କିମ୍ବା ତାଙ୍କ ଗ୍ରନ୍ଥର ଅନୁପଲବ୍ଧ ଅଂଶରେ ଏହା ଥାଇପାରେ । କିନ୍ତୁ ଉଦୟନ କଥା ଯେ ଏକାଦଶ ଶତାବ୍ଦୀ ବେଳକୁ ଭାରତୀୟ ଜନତା ଓ ଲେଖକମାନଙ୍କ ମଧ୍ୟରେ ଅତୀବ ଲୋକପ୍ରିୟତା ଆହରଣ କରିଥିଲା, ଏଥିରେ ଦ୍ୱିମତର ଅବକାଶ ନାହିଁ । ବରଂ ସଂସ୍କୃତ ଓ ପ୍ରାକୃତ ସାହିତ୍ୟିକମାନଙ୍କ ଲେଖନୀରେ ଏହା ଅଧିକ ନାଟକୀୟ ଓ ମନୋଜ୍ଞ ହୋଇଉଠିଥିଲା । ସୋମଦେବ ଗୁଣାଢ଼୍ୟଙ୍କ ବୃତ୍ତାନ୍ତ ସହ ଏହାକୁ ମୂଳକଥାର କଥାପୀଠ ରୂପେ ବ୍ୟବହାର କରିଛନ୍ତି । କହିବା ବାହୁଲ୍ୟ, ନରବାହନଦତ୍ତଙ୍କ ପ୍ରାୟ ଛବିଶିଟି କନ୍ୟା ସହ ଉଭୟ ଦକ୍ଷିଣ ଓ ଉତ୍ତର ବିଦ୍ୟାଧର ସାମ୍ରାଜ୍ୟ ଲାଭର କାହାଣୀ ଅପେକ୍ଷା ଉଦୟନଙ୍କ ସହ ବାସବଦତ୍ତା ଓ ପଦ୍ମାବତୀଙ୍କ ପ୍ରଣୟ କାହାଣୀ ଅଧିକ ଚିତ୍ତାକର୍ଷକ ଓ ରସମଧୁର ।

ବର୍ତ୍ତମାନ ଗୁଣାଢ଼୍ୟଙ୍କ ପ୍ରତି ସୋମଦେବଙ୍କ ବିଶ୍ୱସ୍ତତାର ଅନ୍ୟ ଏକ ଦିଗ ଉପରେ ଆଲୋକପାତ କରାଯାଉ । ଭାରତୀୟ ପୁରାଣଗୁଡ଼ିକର ବିପୁଳ ପ୍ରକ୍ଷିପ୍ତାଂଶକୁ ଦୃଷ୍ଟିରେ

ରଖି ପାଶ୍ଚାତ୍ୟ ସମାଲୋଚକମାନେ ମତ ଦେଇଥାନ୍ତି ଯେ ଆତ୍ମସ୍ୱୀକୃତି ସତ୍ତ୍ୱେ ସୋମଦେବ ମୂଳ ବୃହତ୍‌କଥା ପ୍ରତି ବିଶ୍ୱସ୍ତ ନୁହନ୍ତି । କେବଳ ଗୁଣାଢ଼୍ୟ ଓ ଉଦୟନ କଥା ନୁହେଁ ବେତାଳ ପଞ୍ଚବିଂଶତି, ବିକ୍ରମାଦିତ୍ୟ କଥା, ପଞ୍ଚତନ୍ତ୍ର ଏପରିକି ପଦ୍ମାବତୀ କଥା, ପାରମିତା କଥା, ସୁନୀଥ କଥା, ଧୂର୍ତ୍ତ କଥା ଇତ୍ୟାଦି କଥାସରିତସାଗର ମଧ୍ୟରେ ଅନ୍ୟ ପୃଷ୍ଠଭୂମିରୁ ଆସି ଅନୁପ୍ରବେଶ କରିଛନ୍ତି । ଏ ପ୍ରକାର ଅଭିମତ କେତେଦୂର ଯଥାର୍ଥ କହିବା ସମ୍ଭବ ନ ହେଲେ ସୁଦ୍ଧା ଏହାକୁ ଅନ୍ୟ ଦୃଷ୍ଟିକୋଣରୁ ବିଚାର କରାଯାଇପାରେ ।

ସୋମଦେବଙ୍କ ଆତ୍ମସ୍ୱୀକୃତିରୁ ଜଣାଯାଏ ଯେ ସେ ବୃହତ୍‌କଥାର ସମସ୍ତ କଥାକୁ ସଂକ୍ଷେପରେ ପ୍ରକାଶ କରିଛନ୍ତି ଏବଂ ଔଚିତ୍ୟ ରକ୍ଷା ଦୃଷ୍ଟିରୁ ସେଗୁଡ଼ିକର ପୁନର୍ବିନ୍ୟାସ କରିଛନ୍ତି । ଏହି ପୁନର୍ବିନ୍ୟାସ ସମ୍ପୂର୍ଣ୍ଣତଃ ସୋମଦେବଙ୍କର ନିଜସ୍ୱ ମଧ୍ୟ ନ ହୋଇପାରେ । କାରଣ ଗୁଣାଢ଼୍ୟଙ୍କ ବୃହତ୍ କଥାର ଗଳ୍ପଗୁଡ଼ିକ ପରବର୍ତ୍ତୀ ସମୟରେ ବିଭିନ୍ନ ଲେଖକଙ୍କଦ୍ୱାରା ଭିନ୍ନ ଭିନ୍ନ ଭାବରେ ସଙ୍କଳିତ ହୋଇ ସ୍ୱତନ୍ତ୍ର ଆବରଣ ଗଳ୍ପ ମଧ୍ୟରେ ସନ୍ନିବେଶିତ ହୋଇଛନ୍ତି । ବିଷ୍ଣୁଶର୍ମାଙ୍କ ପଞ୍ଚତନ୍ତ୍ର, ଶିବଦାସ ଏବଂ ଜମ୍ଭଳଦତ୍ତଙ୍କ ବେତାଳ ପଞ୍ଚବିଂଶତି, ବହୁଭାବରେ ସଙ୍କଳିତ ସିଂହାସନ ଦ୍ୱାତ୍ରିଂଶିକା ଏବଂ ବାଣଭଟ୍ଟଙ୍କ କାଦମ୍ବରୀ ଏହାର କେତୋଟି ନିଦର୍ଶନ । ସୋମଦେବ ସ୍ୱୀୟ କଥାସରିତସାଗର ରଚନାବେଳେ ଏସବୁକୁ ତା' ମଧ୍ୟରେ ସଂକ୍ଷେପ ବା ଅବିକଳ ଭାବେ ଅନ୍ତର୍ଭୁକ୍ତ କରିଛନ୍ତି । ଏଣୁ ମୂଳ ବୃହତ୍‌କଥାରେ ଏସବୁ ଗଳ୍ପ ନ ଥିଲା ବୋଲି କହିବା ସର୍ବତୋଭାବେ ଯଥାର୍ଥ ବୋଲି ମନେହେଉ ନାହିଁ ।

ସେ ଯାହାହେଉ, ଗୁଣାଢ଼୍ୟଙ୍କ ପୈଶାଚୀ ଭାଷା ନିବଦ୍ଧ ମୂଳ ଗ୍ରନ୍ଥର ଅନୁପଲଭ୍ୟତା ଦୃଷ୍ଟିରୁ ଆମେ କେବଳ ସମ୍ଭାବନାର ସମୁଦ୍ର ମଧ୍ୟରେ ସନ୍ତରଣ କରିବା କଥା । ଓଡ଼ିଶାର ବିଦଗ୍ଧ ପାଠକମଣ୍ଡଳୀ ଏ ସମ୍ପର୍କରେ ଅଧିକ ଆଲୋଚନା କରିବେ ବୋଲି ଆଶା ।

ପରିଶେଷରେ ଏତିକି କୁହାଯାଇପାରେ ଯେ ଲୋକମୁଖରୁ ଲୋକଭାଷା ଓ ଲୋକ ଉପାଦାନ ସାହାଯ୍ୟରେ ଗୁଣାଢ଼୍ୟଙ୍କଦ୍ୱାରା ସଂଗୃହୀତ ଲୋକକଥାଗୁଡ଼ିକୁ ଉତ୍ତରପୁରୁଷମାନଙ୍କ ପାଇଁ ସଂରକ୍ଷଣ କରି ସୋମଦେବ ଯେଉଁ ମହନୀୟ କାର୍ଯ୍ୟ ସମ୍ପାଦନ କରିଯାଇଛନ୍ତି, ସେଥିପାଇଁ ସେ ଚିରସ୍ମରଣୀୟ । ଭିନ୍ନ ଭାଷା ଓ ଭିନ୍ନ ଆବରଣରେ ହେଉ ପଛେ ପ୍ରାଚୀନ ଭାରତୀୟ ସଭ୍ୟତା ଓ ସଂସ୍କୃତିର ପ୍ରତୀକ ଏହି ଲୋକସମ୍ପଦ ବିସ୍ମୃତିର ଅତଳ ସାଗରରେ ବିଲୁପ୍ତ ନ ହୋଇ ତାଙ୍କ କଥାସରିତସାଗରର କଳେବର ମଣ୍ଡନ କରି ଆମ ନିକଟରେ ଆସି ପହଞ୍ଚି ପାରିଛନ୍ତି । ଭାରତୀୟ ଲୋକକଥାର ସଂଗ୍ରାହକ ଓ ସଂରକ୍ଷକ ଭାବେ ଉଭୟ ଗୁଣାଢ଼୍ୟ ଓ ସୋମଦେବଙ୍କ କୃତିତ୍ୱର ପଟାନ୍ତର ନାହିଁ ।

**ସୁଦର୍ଶନ ଆଚାର୍ଯ୍ୟ**



ଇଦଂ ଗୁରୁଗିରୀନ୍ଦ୍ରଜାପ୍ରଣୟମନ୍ଦରାନ୍ଦୋଳନା-
ପୂରା କିଳ କଥାମୃତଂ ହରମୁଖାମ୍ବୁଧେରୁଦ୍‌ଗତମ୍ ।
ପ୍ରସହ୍ୟ ରସୟନ୍ତି ଯେ ବିଗତବିଘ୍ନଲବ୍ଧର୍ଦ୍ଧୟୋ
ଧୁରଂ ଦଧତି ବୈବୁଧୀଂ ଭୁବି ଭବପ୍ରସାଦେନ ତେ ॥





କେଳିକେଶଗ୍ରହବ୍ୟଗ୍ରଗୌରୀକରନଖାବୃତମ୍ ।
ଶିବାୟାନେକଚନ୍ଦ୍ରାଢ଼୍ୟମିବ ଶାର୍ବଂ ଶିରୋଽସ୍ତୁ ବଃ ॥

କରଂ ଦାନାମ୍ବୁସାର୍ଦ୍ରଂ ଯଃ କୁଞ୍ଚିତାଗ୍ରଂ ପ୍ରସାରୟନ୍ ।
ଦଦତ୍ ସିଦ୍ଧିମିବାଭାତି ସ ପାୟାଦ୍ ବୋ ଗଜାନନଃ ॥



# ପ୍ରଥମ ତରଙ୍ଗ

ଯୁବରାଜ ନରବାହନଦତ୍ତ ମଦନମଞ୍ଜୁକାଙ୍କୁ ବିବାହ କରି ଆନନ୍ଦର ସହିତ କୌଶାମ୍ବୀ ନଗରୀରେ କାଳାତିପାତ କରୁଥାଆନ୍ତି । ଗୋମୁଖ ପ୍ରଭୃତି ମନ୍ତ୍ରୀବୃନ୍ଦ ମଧ୍ୟ ରାଜକାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାପାଇଁ ସର୍ବଦା ସଜାଗ ରହିଥାଆନ୍ତି ।

ଏହିପରି କିଛି ଦିନ ବିତିଗଲା । ଋତୁରାଜ ବସନ୍ତ ପୃଥିବୀପୃଷ୍ଠରେ ଅବତରଣ କଲା । କୋକିଳମାନଙ୍କର କୁହୁତାନ, ଲତାସମୂହର ନର୍ତ୍ତନ ତଥା ମଳୟାନିଳର ମନ୍ଦ ମନ୍ଦ ପ୍ରବାହଦ୍ୱାରା ଜଡ଼ ଓ ଚେତନ ପ୍ରକୃତି ହସିଉଠିଲା । ରାଜକୁମାର ଏ ସମୟରେ ଉପବନ ବିହାର ପାଇଁ ବନ୍ଧୁମାନଙ୍କ ସହ ରାଜପ୍ରାସାଦରୁ ବହିର୍ଗତ ହେଲେ ।

ଉପବନ ମଧ୍ୟରେ ଭ୍ରମଣ କରୁଥିବା ସମୟରେ ତପନ୍ତକ ଆସି ଯୁବରାଜଙ୍କୁ ଆନନ୍ଦର ସହିତ ଜଣାଇଲେ ଯେ ଅନତି ଦୂରରେ ସେ ଜଣେ ସୁନ୍ଦରୀ କନ୍ୟାର ଦର୍ଶନ ଲାଭ କରିଅଛନ୍ତି । କନ୍ୟାଟି ସ୍ୱର୍ଗରୁ ଅବତରଣ କରି ଅଶୋକବୃକ୍ଷର ଛାୟାରେ ବିଶ୍ରାମ ନେଉଅଛି । ତା' ସହିତ ବହୁ ସଖୀ ଓ ପରିଚାରିକା ମଧ୍ୟ ଅଛନ୍ତି । କନ୍ୟାଟିର ରୂପରାଶିଦ୍ୱାରା ସ୍ଥାନଟି ଆଲୋକିତ ହୋଇ ଉଠୁଛି । ସେ ରାଜକୁମାରଙ୍କ ଦର୍ଶନାଭିଳାଷିଣୀ । ତା'ରି ଦୂତ ଭାବରେ ସେ ଏଠାକୁ ଆସିଛନ୍ତି ।

ତପନ୍ତକଙ୍କଠାରୁ ଏହା ଶୁଣି ନରବାହନଦତ୍ତ ସଖାମାନଙ୍କ ସହ ସେଠାରେ ଯାଇ ଉପସ୍ଥିତ ହେଲେ । କନ୍ୟାଟିର ଅପୂର୍ବ ରୂପଲାବଣ୍ୟ ନରବାହନଦତ୍ତଙ୍କୁ ବିସ୍ମିତ କଲା । ଅଶୋକ ବୃକ୍ଷର ଛାୟାରେ ତା'ର ଗୌରବର୍ଣ୍ଣ ଅଙ୍ଗଯଷ୍ଟି, ସୁପୁଷ୍ଟ ଶାରୀରିକ ଶୋଭା ଏବଂ ଉପବେଶନ କୌଶଳ ବନଦେବୀର ଭ୍ରମ ସୃଷ୍ଟି କରୁଥାଏ ।

ରାଜକୁମାର ନରବାହନଦତ୍ତ ତା'ର ନିକଟବର୍ତ୍ତୀ ହେଲେ । କନ୍ୟାଟି ତାଙ୍କୁ ପ୍ରଣାମ କଲା । ସେ ମଧ୍ୟ ପ୍ରତି-ପ୍ରଣାମ ଜଣାଇଲେ । କନ୍ୟାର ସୌନ୍ଦର୍ଯ୍ୟରାଶି ତାଙ୍କର ଚକ୍ଷୁଯୁଗଳକୁ ନିମେଷହୀନ କରିଦେଲା । କିଛି ସମୟପରେ ପ୍ରକୃତିସ୍ଥ ହୋଇ ସେ

ସେଠାରେ ଉପବେଶନ କଲେ ଏବଂ ତାକୁ ମଧ୍ୟ ଆସନ ଗ୍ରହଣ କରିବା ନିମିତ୍ତ ନିର୍ଦ୍ଦେଶ ଦେଲେ ।

ସମସ୍ତେ ଆସନ ଗ୍ରହଣ କରିବା ପରେ ଗୋମୁଖ କନ୍ୟାଟିର ପରିଚୟ ଏବଂ ଆଗମନର କାରଣ ଜିଜ୍ଞାସା କଲେ । ଏଥିରେ ସଲଜ୍ଜ କଟାକ୍ଷପାତ ପୂର୍ବକ କନ୍ୟାଟି ନିଜର ପରିଚୟ ପ୍ରଦାନ କରିବାକୁ ଯାଇ କହିଲା–

## ରତ୍ନପ୍ରଭା କଥା

ନଗାଧିରାଜ ହିମାଳୟ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତ୍ରିଭୁବନରେ ସୁବିଖ୍ୟାତ । ଏହାର ବିଭିନ୍ନ ଶୃଙ୍ଗ ମଧ୍ୟରୁ ଗୋଟିଏ ଶୃଙ୍ଗ ଉପରେ ଭଗବାନ ଗୌରୀପତି ବାସ କରନ୍ତି । ଏହାର ଶିଖରଗୁଡ଼ିକ ବିଭିନ୍ନ ମଣି ମୁକ୍ତାଦ୍ୱାରା ଆଚ୍ଛାଦିତ । ଏ ସବୁରୁ ବିଚ୍ଛୁରିତ ରଶ୍ମିଜାଳଦ୍ୱାରା ଏହା ସର୍ବଦା ଆଲୋକିତ । ଦୀର୍ଘତା ଓ ବିସ୍ତୃତିରେ ଏଗୁଡ଼ିକ ଆକାଶ ତୁଲ୍ୟ ଅନନ୍ତ ଓ ଅସୀମ । ଏହି ଗିରିଶୃଙ୍ଗର ବିଭିନ୍ନ ସ୍ଥାନରେ ଜରା ଓ ମୃତ୍ୟୁକୁ ଦୂର କରିପାରୁଥିବା ବିଭିନ୍ନ ଔଷଧି ବୃକ୍ଷ ମଧ୍ୟ ରହିଅଛି । ବିଦ୍ୟାଧରମାନେ ଏଠାରେ ବାସ କରୁଥିବା ଯୋଗୁଁ ଏହାର ଶୋଭା ସୁମେରୁ ପର୍ବତର ଶୋଭାକୁ ମଧ୍ୟ ପରାଭୂତ କରିଥାଏ ।

ଏହି ହିମାଳୟ ପର୍ବତର ଏକ ଶୃଙ୍ଗ ଉପରେ କାଞ୍ଚନଶୃଙ୍ଗ ନାମକ ଗୋଟିଏ ନଗର ଅଛି । ସର୍ବଦା ଏହି ନଗର ବିଭିନ୍ନ ମଣିମୁକ୍ତାଦ୍ୱାରା ଆଲୋକିତ ହେଉଥିବାଯୋଗୁଁ ଏହା ସୂର୍ଯ୍ୟଙ୍କର ବାସସ୍ଥଳୀ ବୋଲି ମନେ ହେଉଥାଏ । ଏଠାରେ ହେମପ୍ରଭ ନାମକ ବିଦ୍ୟାଧରରାଜ ରାଜତ୍ୱ କରନ୍ତି । ଦେବଦେବ ମହାଦେବଙ୍କଠାରେ ତାଙ୍କର ଅଚଳା ଭକ୍ତି । ହେମପ୍ରଭଙ୍କ ବହୁ ରାଣୀ ମଧ୍ୟରେ ଅଳଙ୍କାରପ୍ରଭା ଚନ୍ଦ୍ରଙ୍କ ନିକଟରେ ରୋହିଣୀ ପରି ଶୋଭା ପାଉଥାଆନ୍ତି । ପ୍ରତିଦିନ ରାଜା ପ୍ରାତଃସ୍ନାନ ସମାପନ ପୂର୍ବକ ରାଣୀଙ୍କ ସହ ହରଗୌରୀଙ୍କର ଯଥାବିଧି ଉପାସନା କରିଥାଆନ୍ତି । ଏହା ପରେ ସେ ପୃଥିବୀପୃଷ୍ଠରେ ଅବତରଣ କରି ବିଭିନ୍ନ ମଣିମୁକ୍ତା ସହ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ବ୍ରାହ୍ମଣମାନଙ୍କୁ ପ୍ରଦାନ କରନ୍ତି ଏବଂ ରାଜକାର୍ଯ୍ୟ ସମାପନ ପୂର୍ବକ ଜଳସ୍ପର୍ଶ କରିଥାନ୍ତି ।

ଏହିପରି ବହୁ ଦିନ ବିତିଗଲେ ସୁଦ୍ଧା ରାଜାଙ୍କର କୌଣସି ସନ୍ତାନସନ୍ତତି ଜାତ ହେଲା ନାହିଁ । ଫଳରେ ସମସ୍ତ ଐଶ୍ୱର୍ଯ୍ୟ ମଧ୍ୟରେ ସେ ସର୍ବଦା ଚିନ୍ତିତ ଥାଆନ୍ତି । ସ୍ୱାମୀଙ୍କର ଏହି ବିରସ ଭାବ ଦେଖି ଏକଦା ରାଣୀ ଅଳଙ୍କାରପ୍ରଭା ଏହାର କାରଣ ଜିଜ୍ଞାସା କରନ୍ତେ ରାଜା କହିଲେ, 'ଦେବି, ଏହି ବିସ୍ତର ଧନସମ୍ପତ୍ତି ସତ୍ତ୍ୱେ ସନ୍ତାନହୀନତା ମୋତେ ସତତ

ବ୍ୟାକୁଳ କରି ପକାଉଅଛି । ମୁଁ ପୂର୍ବେ ଜଣେ ସନ୍ତାନହୀନ ବୀରପୁରୁଷଙ୍କ କଥା ଶୁଣିଥିଲି । ତାହା ସ୍ମରଣ ହେବାରୁ ଆଜି ମୋର ମନରେ ଏ ପ୍ରକାର ବିଷାଦଭାବ ଜାଗ୍ରତ ହୋଇଅଛି ।'

ରାଣୀ ଅଳଙ୍କାରପ୍ରଭା ତାହା ଶୁଣିବା ନିମନ୍ତେ ଆଗ୍ରହ ପ୍ରକାଶ କରନ୍ତେ ରାଜା ପୂର୍ବଶ୍ରୁତ କଥା ଶୁଣାଇବା ଆରମ୍ଭ କଲେ–

## ସତ୍ତ୍ୱଶୀଳ କଥା

ଚିତ୍ରକୂଟ ନାମକ ନଗରରେ ବ୍ରାହ୍ମଣବର ବୋଲି ଜଣେ ବ୍ରାହ୍ମଣପ୍ରିୟ ରାଜା ରାଜତ୍ୱ କରୁଥିଲେ । ସତ୍ତ୍ୱଶୀଳ ତାଙ୍କର ଏକ ବିଶ୍ୱସ୍ତ ଭୃତ୍ୟ । ସେ ରାଜାଙ୍କର ସେବା କରିବା ସଙ୍ଗେ ସଙ୍ଗେ ଯୁଦ୍ଧରେ ମଧ୍ୟ ତାଙ୍କୁ ସାହାଯ୍ୟ କରୁଥିଲା । ରାଜା ତାକୁ ପ୍ରତି ମାସରେ ଏକ ଶତ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରୁଥିଲେ । କିନ୍ତୁ ଏହି ପରମ ଉଦାରଚେତା ସତ୍ତ୍ୱଶୀଳ ନିମନ୍ତେ ଏହି ଅର୍ଥ ପର୍ଯ୍ୟାପ୍ତ ନ ଥିଲା । କାରଣ ପୁତ୍ରହୀନ ଥିବାରୁ ସେ ପ୍ରାପ୍ତ ଅର୍ଥ ଅନ୍ୟମାନଙ୍କୁ ପ୍ରଦାନ କରି ଦେଉଥିଲା । ସେ ଚିନ୍ତା କରୁଥିଲା ଯେ ଭଗବାନ ତ ତା' ଭାଗ୍ୟରେ ପୁତ୍ରଟିଏ ଦେଲେ ନାହିଁ; କିନ୍ତୁ ଦରିଦ୍ରକୁ ଦାନ କରିବା ରୂପ ମନୋବୃତ୍ତି ଦେଇ ଅଧିକ ସନ୍ତପ୍ତ କରୁଛନ୍ତି ମାତ୍ର । ଦାନ କରି ଦରିଦ୍ର ଭାବରେ ଜୀବନଯାପନ କରିବା ଅପେକ୍ଷା ଶୁଷ୍କ ବୃକ୍ଷ କିମ୍ବା ପାଷାଣ ରୂପେ ଜନ୍ମଗ୍ରହଣ କରିବା ଶ୍ରେୟସ୍କର ।

ସତ୍ତ୍ୱଶୀଳ ଏହିପରି ଚିନ୍ତିତ ମନରେ ଏକଦା ନିଜର ଉଦ୍ୟାନ ମଧ୍ୟରେ ଭ୍ରମଣ କରୁଥିବା ବେଳେ ହଠାତ୍ ଗୋଟିଏ ଧନ ଭଣ୍ଡାର ଲାଭ କଲା । ସେ ତାକୁ ନିଜ ଗୃହକୁ ନେଇଯାଇ ଆନନ୍ଦରେ କାଳଯାପନ କରିବାକୁ ଲାଗିଲା । ବ୍ରାହଣମାନଙ୍କୁ ଦାନ ଏବଂ ମିତ୍ର ଓ ଭୃତ୍ୟମାନଙ୍କ ମଧ୍ୟରେ ବିତରଣ କରି ସେ ଯଥେଷ୍ଟ ସନ୍ତୋଷ ଲାଭ କରୁଥାଏ । ତାହାର ଏ ପ୍ରକାର ବିଭବ ଦର୍ଶନରେ ଅନ୍ୟାନ୍ୟ ବନ୍ଧୁ ପରିଜନ ଈର୍ଷାନ୍ୱିତ ହୋଇ ରାଜାଙ୍କ ନିକଟରେ ଏହି ସମାଚାର ଜ୍ଞାପନ କଲେ ।

ରାଜା ଭୃତ୍ୟମାନଙ୍କଦ୍ୱାରା ତାକୁ ଆସିବା ନିମନ୍ତେ ଆଦେଶ ପ୍ରଦାନ କରନ୍ତେ ସେ ଆସି ରାଜଦରବାରର ଏକ ପ୍ରାନ୍ତରେ ଦଣ୍ଡାୟମାନ ହେଲା । ସେଠାରେ ଏକାକୀ ଠିଆ ହୋଇଥିବାବେଳେ ହାତରେ ଧରିଥିବା ଯଷ୍ଟି ଦ୍ୱାରା ଧୀରେ ଧୀରେ ଭୂମି ଖନନ କରନ୍ତେ ସେଥିରୁ ଏକ ତାମ୍ରପାତ୍ର ନିର୍ଗତ ହେଲା । ଉକ୍ତ ପାତ୍ରଟି ବିଭିନ୍ନ ମଣିମୁକ୍ତାଦ୍ୱାରା ପରିପୂର୍ଣ୍ଣ ଥିବାରୁ ଏହା ରାଜାଙ୍କୁ ପ୍ରଦାନ କରି ତାଙ୍କର ସନ୍ତୋଷ ବିଧାନ କରିବ ଭାବି ତାକୁ ପୁଣି ମୃତ୍ତିକାଦ୍ୱାରା ଆବୃତ କରିଦେଇ ଭୃତ୍ୟମାନଙ୍କ ସହ ଯାଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲା ।

ରାଜାଙ୍କୁ ପ୍ରଣିପାତ କରନ୍ତେ ରାଜା ବ୍ରାହ୍ମଣବର ତାକୁ ଉଦ୍ଦେଶ୍ୟ କରି କହିଲେ, 'ମୁଁ ଶୁଣିପାରିଛି ଯେ ତୁମେ ଏକ ରତ୍ନକୋଷ ଲାଭ କରିଅଛ । ତାହା ମତେ ସମର୍ପଣ କର ।' ଏହା ଶୁଣି ସତ୍ତ୍ୱଶୀଳ ବିନମ୍ର ଭାବରେ କହିଲା, 'ମହାରାଜ, ପ୍ରଥମେ ଲାଭ କରିଥିବା ରତ୍ନକୋଷ ନା ବର୍ତ୍ତମାନ ଲାଭ କରିଥିବା ରତ୍ନକୋଷ ଆପଣଙ୍କୁ ପ୍ରଦାନ କରିବି, ନିର୍ଦ୍ଦେଶ ଦିଅନ୍ତୁ ।' ରାଜା ବର୍ତ୍ତମାନ ଲାଭ କରିଥିବା ରତ୍ନଭଣ୍ଡାରଟିକୁ ନେବାପାଇଁ ଆକାଂକ୍ଷା ପ୍ରକାଶ କରନ୍ତେ ସତ୍ତ୍ୱଶୀଳ ରାଜାଙ୍କୁ ଏକାନ୍ତରେ ପୂର୍ବଦୃଷ୍ଟ ରତ୍ନକୋଷଟି ଅର୍ପଣ କଲା । ରାଜା ଏଥିରେ ସନ୍ତୁଷ୍ଟ ହୋଇ, 'ଅତୀତରେ ପାଇଥିବା ରତ୍ନକୋଷଦ୍ୱାରା ତୁମେ ଆନନ୍ଦରେ ଜୀବନଯାପନ କର' ବୋଲି କହି ତାକୁ ବିଦାୟ ଦେଲେ ।

ସତ୍ତ୍ୱଶୀଳ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଦାନ ଓ ଭୋଗଦ୍ୱାରା ପୁତ୍ରହୀନତା ଦୁଃଖକୁ କିଞ୍ଚିତ୍ ପରିମାଣରେ ବିସ୍ମୃତ ହୋଇ ସମୟ ଅତିବାହିତ କରିବାକୁ ଲାଗିଲା ।

ଏହି କଥା ଆଜି ସ୍ମୃତିପଟରେ ଜାଗ୍ରତ ହେବାରୁ ମୋର ମନ ଚିନ୍ତାକୁଳ ହୋଇ ଉଠିଛି ।

ପତିଙ୍କ ମନୋବେଦନାର କାରଣ ଅବହିତ ହୋଇ ରାଣୀ ଅଳଙ୍କାରପ୍ରଭା କହିଲେ, 'ଏହା ସତ୍ୟ ଯେ ଉଦାରହୃଦୟ ଲୋକମାନଙ୍କୁ ଭଗବାନ ମଧ୍ୟ ସହାୟତା କରିଥାଆନ୍ତି ।

**ସତ୍ୟମେବଂ ସୁସତ୍ତ୍ୱାନାଂ ସାହାଯ୍ୟଂ ଭଜତେ ବିଧିଃ ।**

ଦ୍ୱିତୀୟ ରତ୍ନଭଣ୍ଡାର ପ୍ରଦାନ କରି ଦେବତାମାନେ ଯେପରି ସତ୍ତ୍ୱଶୀଳକୁ ସାହାଯ୍ୟ କଲେ, ସେଥିରୁ ଏହା ସ୍ପଷ୍ଟ ପ୍ରତିପାଦିତ ହେଉଅଛି । ତେଣୁ ଆପଣ ମଧ୍ୟ ନିଜର ଉଦାରତା ପାଇଁ ନିଶ୍ଚିତ ଭାବେ ଦେବତାମାନଙ୍କର ଅନୁଗ୍ରହ ଲାଭ କରିପାରିବେ ।

ଏ ସମ୍ପର୍କରେ ରାଜା ବିକ୍ରମତୁଙ୍ଗଙ୍କ ପ୍ରସଙ୍ଗ ଶ୍ରବଣ କରନ୍ତୁ—

## ରାଜା ବିକ୍ରମତୁଙ୍ଗ କଥା

ଧରଣୀ ରାଣୀର ଅଳଙ୍କାର ସ୍ୱରୂପ ପାଟଳିପୁତ୍ର ନଗର ବିଭିନ୍ନ ମଣିମୁକ୍ତାଦ୍ୱାରା ସର୍ବଦା ଜାଜ୍ୱଲ୍ୟମାନ । ପ୍ରାଚୀନ କାଳରେ ଏହି ନଗରରେ ବିକ୍ରମତୁଙ୍ଗ ନାମରେ ଜଣେ ପ୍ରବଳ ପରାକ୍ରମୀ ରାଜା ରାଜତ୍ୱ କରୁଥିଲେ । ସେ ଦାନ କରିବାରେ ଯେପରି ମୁକ୍ତହସ୍ତ ଥିଲେ, ଯୁଦ୍ଧକ୍ଷେତ୍ରରେ ଶତ୍ରୁମାନଙ୍କୁ ନିହତ କରିବାରେ ମଧ୍ୟ ସେହିପରି କ୍ଷିପ୍ରହସ୍ତ ଥିଲେ ।

ଏକଦା ବିକ୍ରମତୁଙ୍ଗ ଶିକାର କରିବାନିମନ୍ତେ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ସେଠାରେ ଭ୍ରମଣ କରୁଥିବା ସମୟରେ ବିଲ୍ୱଫଳଦ୍ୱାରା ହୋମ କରୁଥିବା କୌଣସି ବ୍ରାହ୍ମଣ ତାଙ୍କର ଦୃଷ୍ଟିଗୋଚର ହେଲା । ତାଙ୍କ ସହ ବାର୍ତ୍ତାଳାପ କରିବାପାଇଁ ରାଜାଙ୍କର ଇଚ୍ଛା ହେଲେ ସୁଦ୍ଧା ସେ ମୃଗୟା ନିମନ୍ତେ ସେନାବାହିନୀ ସହ ତାଙ୍କୁ ଅତିକ୍ରମ କରି ଅଗ୍ରସର ହେଲେ ।

ମୃଗୟାରେ ବହୁ ବନ୍ୟଜନ୍ତୁଙ୍କୁ ଅନାୟାସରେ ବଧ କରି ରାଜା ଯେତେବେଳେ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ସେ ଏହି ବ୍ରାହ୍ମଣଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଣାମ ପୂର୍ବକ ଏତାଦୃଶ ହୋମର ଫଳ ସମ୍ପର୍କରେ ଜିଜ୍ଞାସା କଲେ । ବ୍ରାହ୍ମଣ ରାଜାଙ୍କ ବ୍ୟବହାରରେ ସନ୍ତୁଷ୍ଟ ହୋଇ କହିଲେ—

'ମୁଁ ନାଗଶର୍ମା ନାମକ ବ୍ରାହ୍ମଣ । ଏହି ବିଲ୍ୱଫଳଦ୍ୱାରା ହୋମ କଲେ ସମସ୍ତ ଅଗ୍ନି ପ୍ରସନ୍ନ ହୁଅନ୍ତି । ଫଳରେ ଯଜ୍ଞକୁଣ୍ଡରୁ ଏକ ସୁବର୍ଣ୍ଣବିଲ୍ୱଫଳ ନିର୍ଗତ ହୁଏ ଏବଂ ଏହି ସମୟରେ ସ୍ୱୟଂ ଅଗ୍ନିଦେବ ଉପସ୍ଥିତ ହୋଇ ବର ପ୍ରଦାନ କରନ୍ତି । ମୁଁ ବହୁଦିନ ଧରି ଏପରି ଭାବରେ ବିଲ୍ୱଫଳଦ୍ୱାରା ହୋମ କରି ଆସୁଥିଲେ ହେଁ ଅଗ୍ନିଦେବ ମୋପରି ଅଭାଗା ପୁରୁଷ ଉପରେ ପ୍ରସନ୍ନ ହେଉ ନାହାନ୍ତି ।'

ବ୍ରାହ୍ମଣଠାରୁ ଏହା ଶୁଣି ରାଜା ବିକ୍ରମତୁଙ୍ଗ କହିଲେ, 'ତାହାହେଲେ ମୋତେ ଗୋଟିଏ ବିଲ୍ୱଫଳ ପ୍ରଦାନ କରନ୍ତୁ । ମୁଁ ତାକୁ ଅଗ୍ନିକୁଣ୍ଡରେ ନିକ୍ଷେପକରି ଆପଣଙ୍କ ଅଗ୍ନି ଦେବତାଙ୍କୁ ସନ୍ତୁଷ୍ଟ କରିବି ।'

କିନ୍ତୁ ବ୍ରାହ୍ମଣ ରାଜାଙ୍କ ବାକ୍ୟରେ ବିଶ୍ୱାସ କରି ନ ପାରି କହିଲେ, 'ମୁଁ ଶୁଦ୍ଧପୂତ ଭାବରେ ଏବଂ ନିୟମ ପୂର୍ବକ ଏତେ ଦିନ ଧରି ଯଜ୍ଞ କରି ଯାହାକୁ ସନ୍ତୁଷ୍ଟ କରିପାରି ନାହିଁ, ତୁମେ ଅପବିତ୍ର ଅବସ୍ଥାରେ ଗୋଟିଏ ମାତ୍ର ବିଲ୍ୱଦ୍ୱାରା କିପରି ତାଙ୍କୁ ସନ୍ତୁଷ୍ଟ କରିବ ! ଏହା ସମ୍ଭବପର ବୋଲି ମୋର ମନେ ହେଉ ନାହିଁ ।' ରାଜା ତଥାପି ବାଧ୍ୟ କରିବାରେ ସେ ବ୍ରାହ୍ମଣ ତାଙ୍କୁ ଗୋଟିଏ ବିଲ୍ୱଫଳ ପ୍ରଦାନ କଲେ ।

ବିକ୍ରମତୁଙ୍ଗ ତାକୁ ହସ୍ତରେ ଧାରଣ କରି ଦୃଢ଼ଚିତ୍ତରେ ମନେ ମନେ କହିଲେ, 'ଅଗ୍ନିଦେବ, ଆପଣ ଯଦି ଏହି ଗୋଟିଏ ବିଲ୍ୱଫଳଦ୍ୱାରା ସନ୍ତୁଷ୍ଟ ହୋଇ ମୋତେ ଦର୍ଶନ ପ୍ରଦାନ ନ କରନ୍ତି, ତାହାହେଲେ ମୁଁ ମୋର ମସ୍ତକ ଛେଦନ କରି ଏହି ହୋମ କୁଣ୍ଡରେ ନିକ୍ଷେପ କରିବି ।' ଏହା କହି ସେ ଫଳଟିକୁ ହୋମ କୁଣ୍ଡର ଅଗ୍ନି ମଧ୍ୟରେ ନିକ୍ଷେପ କରନ୍ତେ,

ତତ୍କ୍ଷଣାତ୍ ଅଗ୍ନିଦେବ ହସ୍ତରେ ଏକ ସୁବର୍ଣ୍ଣ ବିଲ୍ୱଫଳ ନେଇ ଯଜ୍ଞାଗ୍ନି ମଧ୍ୟରୁ ନିର୍ଗତ ହେଲେ । ମନେ ହେଲା ସତେ ଯେପରି ରାଜାଙ୍କର ଦୃଢ଼ଚିତ୍ତତାର ଫଳ ଗ୍ରହଣ କରି ସେ ଆବିର୍ଭୂତ ହୋଇଛନ୍ତି ।

ଅଗ୍ନିଦେବ ଦୃଢ଼ଚିତ୍ତ ବିକ୍ରମତୁଙ୍ଗଙ୍କୁ କହିଲେ, 'ମୁଁ ତୁମ ପ୍ରତି ପ୍ରୀତ ହେଲି । ବର ପ୍ରାର୍ଥନା କର ।'

ରାଜା ପ୍ରଣିପାତ ପୂର୍ବକ ପ୍ରକାଶ କଲେ, 'ମୋର କୌଣସି ବରର ଆବଶ୍ୟକତା ନାହିଁ । ଏହି ବ୍ରାହ୍ମଣଙ୍କର ମନୋରଥ ପ୍ରଥମେ ପୂର୍ଣ୍ଣ କରନ୍ତୁ ।'

ରାଜାଙ୍କଠାରୁ ଏ ପ୍ରକାର ଉତ୍ତର ଶୁଣି ଭଗବାନ୍ ବୈଶ୍ୱାନର ପ୍ରସନ୍ନ ଚିତ୍ତରେ ବର ପ୍ରଦାନ କଲେ ଯେ ବ୍ରାହ୍ମଣ ମହାଧନପତି ହେବେ ଏବଂ ସତ୍ତ୍ୱଶୀଳ ରାଜା ବିକ୍ରମତୁଙ୍ଗଙ୍କର ରାଜକୋଷ କଦାପି କ୍ଷୀଣ ହେବ ନାହିଁ । ବ୍ରାହ୍ମଣ ଏଥିରେ ବିସ୍ମିତ ହୋଇ ଅଗ୍ନିଙ୍କୁ, ଏହି ସ୍ୱେଚ୍ଛାବିହାରୀ ରାଜାଙ୍କ ପ୍ରତି ସେ ଏତେ ଶୀଘ୍ର କିପରି ପ୍ରସନ୍ନ ହୋଇଗଲେ, କିନ୍ତୁ ଦୃଢ଼ ବ୍ରତ ଆଚରଣ କରି ନିୟମ ପୂର୍ବକ ଉପାସନା କରୁଥିବା ତାଙ୍କ ପ୍ରତି କାହିଁକି ଏତେ ଦିନ ଧରି କଠୋର ହୋଇ ରହିଥିଲେ ବୋଲି ଜିଜ୍ଞାସା କଲେ । ବ୍ରାହ୍ମଣଙ୍କର ଏ ପ୍ରକାର ସନ୍ଦେହ ମୋଚନ କରିବା ନିମନ୍ତେ ଅଗ୍ନିଦେବ କହିଲେ, 'ମୁଁ ଯଦି ଦର୍ଶନ ପ୍ରଦାନ କରି ନ ଥାଆନ୍ତି, ତାହାହେଲେ ରାଜା ତାଙ୍କର ମସ୍ତକ ଯଜ୍ଞ କୁଣ୍ଡରେ ନିକ୍ଷେପ କରି ଥାଆନ୍ତେ । ଉତ୍କଟ ସତ୍ତ୍ୱଶୀଳ ବ୍ୟକ୍ତିମାନଙ୍କର ସିଦ୍ଧିଗୁଡ଼ିକ ଚଞ୍ଚଳ ପ୍ରାପ୍ତ ହୋଇଥାଏ; କିନ୍ତୁ ହେ ବ୍ରାହ୍ମଣ, ତୁମଭଳି ସ୍ୱଳ୍ପ ସତ୍ତ୍ୱବାନ୍ ବ୍ୟକ୍ତିମାନଙ୍କର ସିଦ୍ଧି କଷ୍ଟସାଧ୍ୟ ।'

ତୀବ୍ର ସତ୍ତ୍ୱସ୍ୟ ନଚିରାଦ୍ ଭବନ୍ତ୍ୟେବ ହି ସିଦ୍ଧୟଃ ।

ଏହା କହି ଭଗବାନ୍ ଅଗ୍ନି ଅନ୍ତର୍ହିତ ହୁଅନ୍ତେ ନାଗଶର୍ମା ରାଜାଙ୍କଠାରୁ ବିଦାୟ ଗ୍ରହଣ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ଅଳ୍ପ ସମୟ ମଧ୍ୟରେ ବହୁ ଧନ ସମ୍ପତ୍ତିର ଅଧିକାରୀ ହୋଇ ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ ।

ରାଜା ମଧ୍ୟ ଏହି ଅଦ୍ଭୁତ ସିଦ୍ଧି ଲାଭ କରିଥିବା ଯୋଗୁଁ ଭୃତ୍ୟ ଓ ପରିଜନମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇ ପାଟଳିପୁତ୍ର ନଗର ଅଭିମୁଖରେ ଯାତ୍ରା କଲେ ।

ଏକଦା ବିକ୍ରମତୁଙ୍ଗ ଏକାକୀ ବସିଥିବା ବେଳେ ଦ୍ୱାରପାଳ ଶତ୍ରୁଞ୍ଜୟ ଆସି ନିବେଦନ କଲା, 'ମହାରାଜ, ଦତ୍ତଶର୍ମା ବୋଲି ଆତ୍ମ ପରିଚୟ ପ୍ରଦାନ କରୁଥିବା କୌଣସି ବ୍ରାହ୍ମଣ ବ୍ରହ୍ମଚାରୀ ଆପଣଙ୍କ ସହିତ ଏକାନ୍ତରେ ବାର୍ତ୍ତାଳାପ କରିବାପାଇଁ

ଚାହୁଁ ଅଛନ୍ତି । ଯଦି ଆଦେଶ ହୁଏ, ତାଙ୍କୁ ଏଠାରେ ପ୍ରବେଶ କରିବାପାଇଁ ଅନୁମତି ଦେବି ।'

ରାଜା ଆଦେଶ ପ୍ରଦାନ କରନ୍ତେ ସେ ଉକ୍ତ ବ୍ରହ୍ମଚାରୀଙ୍କୁ ଆଣି ତାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲା । ଦତ୍ତଶର୍ମା ରାଜାଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ ନିକଟରେ ଆସନ ଗ୍ରହଣ କଲେ । କିଛି ସମୟ ଏଣୁତେଣୁ କଥାବାର୍ତ୍ତା କରିବା ପରେ ସେ ରାଜାଙ୍କୁ କହିଲେ, 'ମହାରାଜ, ମୁଁ ଏ ପ୍ରକାର ଏକ ଚୂର୍ଣ୍ଣର ସନ୍ଧାନ ଲାଭ କରିଛି ଯାହାଦ୍ୱାରା ତାମ୍ର ପାତ୍ରଗୁଡ଼ିକୁ ଅତିଶୀଘ୍ର ସୁବର୍ଣ୍ଣପାତ୍ରରେ ପରିଣତ କରି ଦିଆଯାଇପାରୁଛି । ଏ ବିଦ୍ୟା ମୋର ଗୁରୁ ମୋତେ ଶିକ୍ଷା ଦେଇଥିଲେ ଏବଂ ଅନେକ ସ୍ଥାନରେ ମୁଁ ତା'ର ପରୀକ୍ଷା ମଧ୍ୟ କରିସାରିଛି ।'

ବ୍ରହ୍ମଚାରୀ କଥାରେ ବିଶ୍ୱାସ କରି ରାଜା କିଛି ତମ୍ବା ପାତ୍ର ମଗାଇ ଆଣିଲେ । ବ୍ରହ୍ମଚାରୀ ସେଥିରେ ଚୂର୍ଣ୍ଣ ଲେପନ କଲେ । କିନ୍ତୁ କୌଣସି ଯକ୍ଷ ସେହି ଚୂର୍ଣ୍ଣ ଢାଳିବା ମାତ୍ରେ ତାକୁ ଅପହରଣ କରି ନେଇ ଯାଉଥାଏ । ବ୍ରହ୍ମଚାରୀ ତାକୁ ଦେଖିପାରୁ ନଥିଲେ ହେଁ ରାଜା ଅଗ୍ନିଙ୍କ ବର ପ୍ରଭାବରେ ତାକୁ ଦେଖିବାପାଇଁ ସମର୍ଥ ହେଉଥାଆନ୍ତି । ଚୂର୍ଣ୍ଣର ସଂସ୍ପର୍ଶରେ ନ ଆସିବାରୁ ପାତ୍ରଗୁଡ଼ିକ ସୁବର୍ଣ୍ଣରେ ପରିଣତ ହୋଇ ପାରୁ ନ ଥାଏ । ଦୁଇ ଚାରି ଥର ଚେଷ୍ଟା କରି ବ୍ରହ୍ମଚାରୀ ବିଫଳ ହେବାରୁ ରାଜା ନିଜେ ତାଠାରୁ ଏହି ଚୂର୍ଣ୍ଣ ନେଇ ସେହି ତମ୍ବାପାତ୍ରଗୁଡ଼ିକରେ ଢାଳିବାରୁ ତାହା ସୁବର୍ଣ୍ଣରେ ପରିଣତ ହେଲା, କାରଣ ରାଜା ଏହା କରୁଥିବା ବେଳେ ଉପରୋକ୍ତ ଅଦୃଶ୍ୟ ଯକ୍ଷ ସେହି ଚୂର୍ଣ୍ଣକୁ ଅପହରଣ କରି ନ ପାରି ମୃଦୁହାସ୍ୟ ପ୍ରକାଶ ପୂର୍ବକ ପଳାୟନ କଲା । ବ୍ରହ୍ମଚାରୀ ଏହାର କାରଣ ଜିଜ୍ଞାସା କରନ୍ତେ ରାଜା ସମସ୍ତ ଘଟଣା ତା ସମ୍ମୁଖରେ ବର୍ଣ୍ଣନା କଲେ । ଫଳରେ ବ୍ରାହ୍ମଣ ରାଜାଙ୍କୁ ଏହି ଚୂର୍ଣ୍ଣ ପ୍ରସ୍ତୁତି ପ୍ରଣାଳୀ ଶିକ୍ଷା ଦେଲେ । ରାଜା ମଧ୍ୟ ତା'ର ବୈବାହ ସମ୍ପାଦନ କରାଇ ନିଜ ରାଜ୍ୟରେ ବାସ କରିବାର ସମସ୍ତ ବ୍ୟବସ୍ଥା କରାଇ ଦେଲେ । ପରେ ସେ ନିଜେ ଏହି କୌଶଳ ପ୍ରୟୋଗ କରି ସ୍ୱୀୟ ରାଜକୋଷକୁ ସ୍ୱର୍ଣ୍ଣମୁଦ୍ରାରେ ପରିପୂର୍ଣ୍ଣ କରିଦେଲେ ।

ଏହିପରି ଭୟରେ ହେଉ ବା ପ୍ରୀତିପୂର୍ବକ ହେଉ ଭଗବାନ୍ ସତ୍ତ୍ୱଶାଳୀ ବ୍ୟକ୍ତିମାନଙ୍କର ସର୍ବଦା ସହାୟତା କରିଥାଆନ୍ତି । ତେଣୁ ମହାରାଜ, ଆପଣଙ୍କଠାରୁ ଅଧିକ ସତ୍ତ୍ୱଶାଳୀ ବ୍ୟକ୍ତି ଆଉ କିଏ ଅଛି ? ମୋର ବିଶ୍ୱାସ ଭଗବାନ୍ ଗୌରୀପତି ପୁତ୍ର ସନ୍ତାନ ପ୍ରଦାନ କରି ଆପଣଙ୍କର ମନୋରଥ ନିଶ୍ଚିତ ଭାବରେ ସିଦ୍ଧ କରିବେ । ଆପଣ ଆଉ ଅଧିକ ଚିନ୍ତିତ ହୁଅନ୍ତୁ ନାହିଁ ।

ରାଣୀ ଅଳଙ୍କାରପ୍ରଭାଙ୍କଠାରୁ ଏ ପ୍ରକାର ସାନ୍ତ୍ୱନାବାଣୀ ଶ୍ରବଣ କରି ରାଜା ହେମପ୍ରଭ ଆଶ୍ୱସ୍ତ ହେଲେ ଏବଂ ତାଙ୍କରି କଥାରେ ବିଶ୍ୱାସ କରି ଅଧିକ ନିବିଷ୍ଟ ଚିତ୍ତରେ ଶିବଙ୍କର ଆରାଧନା କରିବାପାଇଁ ସଂକଳ୍ପ କଲେ ।

ପରଦିନ ପ୍ରାତଃକାଳରୁ ନିତ୍ୟକର୍ମ ଶେଷ ପୂର୍ବକ ବ୍ରାହ୍ମଣମାନଙ୍କୁ ନଅକୋଟି ସ୍ୱର୍ଣ୍ଣମୁଦ୍ରା ଦାନ୍ କରି ରାଣୀ ଅଳଂକାରପ୍ରଭାଙ୍କ ସହ ରାଜା ହେମପ୍ରଭ ମହାଦେବଙ୍କର ଉପାସନା ଆରମ୍ଭ କଲେ । ସେ ମନେ ମନେ ନିଶ୍ଚୟ କରିଥାଆନ୍ତି ଯେ ହୁଏତ ସେ ଭଗବାନ୍ ଗିରିଜାପତିଙ୍କୁ ସନ୍ତୁଷ୍ଟ କରିବେ, ନୋଚେତ୍ ପ୍ରାଣ ବିସର୍ଜ୍ଜନ କରିବେ । ସ୍ଥିରଚିତ୍ତ ଓ ଦୃଢ଼ ମନରେ ସେ ବାରମ୍ବାର ଶିବଙ୍କର ନିମ୍ନଲିଖିତ ସ୍ତୋତ୍ରପାଠ କରୁଥାଆନ୍ତି–

ହେଳାବିତୀର୍ଣ୍ଣ ଦୁଗ୍‌ଧାବ୍‌ଧିଂ ପ୍ରପନ୍ନାୟୋପମନ୍ୟବେ ।
ନମସ୍ତେଽସ୍ତୁ ଜଗତ୍‌ସର୍ଗସ୍ଥିତିସଂହାରହେତବେ
ଗୌରୀଶ ତତ୍ତ୍ୱଦ୍‌ବ୍ୟୋମାଦିଭେଦଭିନ୍ନାଷ୍ଟମୂର୍ତ୍ତୟେ ।
ନମସ୍ତେ ସତତୋତ୍‌ଫୁଲ୍ଲ ହୃତ୍‌କୁଶେଶୟଶାୟିନେ
ବିଶୁଦ୍ଧମାନସାବାସ କଳହଂସାୟ ଶମ୍ଭବେ ।
ନମୋ ଦିବ୍ୟ ପ୍ରକାଶାୟ ନିର୍ମଳାୟ ଜଳାତ୍ମନେ
ପ୍ରକ୍ଷୀଣ ଦୋଷୈର୍ଦୃଶ୍ୟାୟ ସୋମାୟାତ୍ୟଦ୍‌ଭୁତାୟ ତେ ।
ଦେହାର୍ଦ୍ଧ ଧୃତକାନ୍ତାୟ କେବଳ ବ୍ରହ୍ମଚାରିଣେ
ଇଚ୍ଛାନିର୍ମିତବିଶ୍ୱାୟ ନମୋ ବିଶ୍ୱମୟାୟ ତେ ।

ତିନି ଦିନ ଧରି ଉପବାସ ରହି ରାଜା ହେମପ୍ରଭ ଭଗବାନ୍ ଭବାନୀପତିଙ୍କୁ ଏହିପରି ଭାବରେ ସ୍ତୁତି କରି ଚାଲିଥାଆନ୍ତି । ତୃତୀୟ ଦିନ ରାତ୍ରିରେ ତାଙ୍କର ମନୋରଥ ସିଦ୍ଧ ହେଲା । ମହାଦେବ ସ୍ୱପ୍ନରେ ତାଙ୍କୁ କହିଲେ, 'ତୁମ ବଂଶର ମୁଖ ଉଜ୍ଜଳ କରିବାପାଇଁ ତୁମ ଔରସରେ ଏକ ପୁତ୍ର ସନ୍ତାନ ଜନ୍ମ ଲାଭ କରିବ ଏବଂ ପାର୍ବତୀଙ୍କ କୃପାରୁ ତୁମର ଏକ ଉତ୍ତମ କନ୍ୟା ମଧ୍ୟ ଲାଭ ହେବ । ସେହି କନ୍ୟା ବିଦ୍ୟାଧର କୁଳର ଭବିଷ୍ୟତ ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କର ପାଣିଗ୍ରହଣ କରିବ ।'

ଏହା କହି ଶିବ ଅନ୍ତର୍ହିତ ହୁଅନ୍ତେ ବିଦ୍ୟାଧରରାଜ ହେମପ୍ରଭ ପ୍ରଭାତରୁ ଶଯ୍ୟାତ୍ୟାଗ ପୂର୍ବକ ଏହି ସୁସମ୍ବାଦ ପ୍ରଥମେ ରାଣୀ ଅଳଂକାରପ୍ରଭାଙ୍କୁ ଜଣାଇଲେ । ରାଣୀ ମଧ୍ୟ ଅନୁରୂପ ସ୍ୱପ୍ନ ଦର୍ଶନ କରିଥିବା ବ୍ୟକ୍ତ କରନ୍ତେ ରାଜାଙ୍କର ଆନନ୍ଦସାଗର ଉଦ୍‌ବେଳିତ ହେଲା ।

ଉଭୟେ ନିତ୍ୟକର୍ମ ସମାପନ ପରେ ବିଧିପୂର୍ବକ ଦେବ ଉପାସନା କରି ପାରଣା କଲେ । ନଗରରେ ଆନନ୍ଦ ଉତ୍ସବ ପାଳିତ ହେଲା । କିଛି ଦିନ ପରେ ରାଣୀ ଅଳଂକାରପ୍ରଭା ଗର୍ଭଧାରଣ କଲେ । ତାଙ୍କର ପଦ୍ମଗନ୍ଧଯୁକ୍ତ ପାଣ୍ଡୁର ମୁଖମଣ୍ଡଳ ରାଜାଙ୍କର ଆନନ୍ଦ ସଂପାଦନ କଲା । ସମୟ କ୍ରମେ, ଆକାଶ ସୂର୍ଯ୍ୟଙ୍କୁ ଜନ୍ମ ଦେବା ପରି ସେ ଏକ କମନୀୟକାନ୍ତଯୁକ୍ତ ପ୍ରଶଂସନୀୟ ପୁତ୍ର ପ୍ରସବ କଲେ । ପୁତ୍ରଟିର ଶରୀରକାନ୍ତିରେ ପ୍ରସୂତିଗୃହ ସିନ୍ଦୂର ଆଭାରେ ରଞ୍ଜିତ ହେଲା । ପିତା, ଦିବ୍ୟବାଣୀର ନିର୍ଦ୍ଦେଶକ୍ରମେ ଏହି ଶତ୍ରୁ କୁଳ-ଭୟଙ୍କର ପୁତ୍ରର ନାମ ରଖିଲେ ବଜ୍ରପ୍ରଭ । ସନ୍ତାନଟି ପିତୃକୁଳରୂପକ ସାଗରକୁ ଉତ୍‌ଫୁଲ୍ଲ କରିବା ନିମିତ୍ତ ଚନ୍ଦ୍ରମା ତୁଲ୍ୟ ବୃଦ୍ଧି ଲାଭ କଲା ।

ପୁଣି କିଛିଦିନ ପରେ ଅଳଙ୍କାରପ୍ରଭା ପୁନଶ୍ଚ ଗର୍ଭଧାରଣ କଲେ । ତାଙ୍କର ପାଣ୍ଡୁର ବର୍ଣ୍ଣ ଶରୀରକାନ୍ତି ରତ୍ନ ତୁଲ୍ୟ ବିକଶିତ ହେଲା । ଦୋହଦପୂର୍ତ୍ତି ନିମନ୍ତେ ସେ ସ୍ୱୀୟ ବିଦ୍ୟା ପ୍ରଭାବରେ ଆକାଶମାର୍ଗରେ ବିଚରଣ କରିବାକୁ ଲାଗିଲେ । ଗର୍ଭ ସମୟ ଶେଷ ହେବାରୁ ରାଣୀ ଏକ କନ୍ୟା ପ୍ରସବ କଲେ । ଏହାର ରୂପକାନ୍ତି ବର୍ଣ୍ଣନା କରିବାକୁ ଯାଇ କେବଳ ଏତିକି କୁହାଯାଇପାରେ ଯେ କନ୍ୟାଟି ପାର୍ବତୀଙ୍କ ବରପ୍ରଭାବରୁ ଜନ୍ମ ଲାଭ କରିଅଛି । ଏହାର ଜନ୍ମ ସମୟରେ ଶୂନ୍ୟବାଣୀ ଶୁଣାଗଲା ଯେ ଏ କନ୍ୟା ଭବିଷ୍ୟତରେ ବିଦ୍ୟାଧର ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କର ମନୋହାରିଣୀ ହେବ । ରାଜା ପୁତ୍ର ତୁଲ୍ୟ ଏହାର ଜନ୍ମ ଉତ୍ସବ ମଧ ମହା ଆଡ଼ମ୍ବରରେ ପାଳନ କଲେ । କନ୍ୟାର ନାମ ରହିଲା ରତ୍ନପ୍ରଭା ।

ହେମପ୍ରଭ ନିଜର ସମସ୍ତ ବିଦ୍ୟା ଏହି କନ୍ୟାଟିକୁ ଶିକ୍ଷା ଦେଲେ । କନ୍ୟାଟି ଅନ୍ତଃପୁର ମଧରେ ବଢ଼ିବାକୁ ଲାଗିଲେ ମଧ ତାର ଯଶୋରାଶି ଦିଗ୍‌ବିଦିଗରେ ପ୍ରଚାରିତ ହେଉଥାଏ ।

ଏହାପରେ ରାଜା ହେମପ୍ରଭ ସ୍ୱୀୟ ପୁତ୍ର ବଜ୍ରପ୍ରଭଙ୍କୁ ଯୁଦ୍ଧ ବିଦ୍ୟାରେ ନିପୁଣ ଦେଖି ତାହାଙ୍କର ବିବାହ କ୍ରିୟା ସମ୍ପାଦନ ପୂର୍ବକ ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ପୁତ୍ର ଉପରେ ରାଜ୍ୟଶାସନ ଭାର ନ୍ୟସ୍ତ କରି ରାଜା ଶାନ୍ତିରେ ଜୀବନ ଅତିବାହନ କରୁଥିଲେ ହେଁ କନ୍ୟାର ବିବାହ ନିମନ୍ତେ ମଧ୍ୟେ ମଧ୍ୟେ ଚିନ୍ତିତ ହୋଇ ପଡୁଥାଆନ୍ତି ।

ଦିନେ ବିବାହଯୋଗ୍ୟା କନ୍ୟାକୁ ସମ୍ମୁଖରେ ଦେଖି ରାଜା ରାଣୀଙ୍କୁ କହିଲେ, 'ଦେବି, କନ୍ୟା ତ୍ରିଲୋକର ଅଳଙ୍କାର ସ୍ୱରୂପା ହେଲେ ସୁଦ୍ଧା ମହତ୍ ଲୋକମାନଙ୍କର ଦୁଃଖର କାରଣ ହୋଇଥାଏ । ଏହି ରତ୍ନପ୍ରଭା ଶିକ୍ଷିତା, ରୂପବତୀ ଓ ଗୁଣବତୀ ହେଲେ ହେଁ ଉପଯୁକ୍ତ ବରପାତ୍ର ଅଭାବରୁ ମୋର ଚିନ୍ତାର କାରଣ ହୋଇଛି ।' ଏହା ଶୁଣି ରାଣୀ

ଅଳଙ୍କାରପ୍ରଭା କହିଲେ—'ଆପଣ ଅଯଥା ଚିନ୍ତା କରୁଅଛନ୍ତି । ଏହାର ଜନ୍ମ ସମୟରେ ତ ଏ ରାଜା ନରବାହନଦତ୍ତଙ୍କର ପତ୍ନୀ ହେବ ବୋଲି ଦୈବୀବାଣୀ ଶୁଣାଯାଇଛି । ତେଣୁ ତାଙ୍କ ସହ ଏହାର ବିବାହ ସମ୍ପାଦନ କରିବା ପାଇଁ ଉଦ୍ୟମ କଲେ ଚିନ୍ତାର ଅବକାଶ ରହିବ ନାହିଁ ।'

ରାଣୀ କଥା ଶୁଣି ରାଜା ପୁଣି କହିଲେ—'ଅବଶ୍ୟ ଏହା ଯଥାର୍ଥ । ନରବାହନଦତ୍ତଙ୍କୁ ପତିରୂପେ ଲାଭ କରିବା କନ୍ୟା ଧନ୍ୟା । ସେ କାମଦେବଙ୍କ ଅବତାର । କିନ୍ତୁ ବର୍ତ୍ତମାନ ସୁଦ୍ଧା ସେ ଦିବ୍ୟତା ଲାଭ କରି ନାହାନ୍ତି । ତେଣୁ ମୁଁ ସେହି ସୁଦିନକୁ ଅପେକ୍ଷା କରି ରହିଅଛି ।'

ପିତାଙ୍କର ଏହି ବାକ୍ୟଗୁଡ଼ିକ କନ୍ଦର୍ପର ମୋହନ ମନ୍ତ୍ର ତୁଲ୍ୟ ରତ୍ନପ୍ରଭାଙ୍କୁ ବିମୋହନ କଲା । ସେ ସେହି ସ୍ଥାନରେ ହିଁ ବିଗଳିତ ହୋଇପଡ଼ିଲେ । ତଥାପି ପିତାମାତାଙ୍କୁ ପ୍ରଣାମପୂର୍ବକ କଷ୍ଟେ କଷ୍ଟେ ସେ ସେଠାରୁ ନିଜର ପ୍ରକୋଷ୍ଠକୁ ପ୍ରତ୍ୟାବର୍ତ୍ତନ କରି ଚିନ୍ତାରେ ବ୍ୟାକୁଳ ହୋଇପଡ଼ିଲେ । ବହୁ ସମୟ ଉନ୍ନିଦ୍ର ରହି ନରବାହନଦତ୍ତଙ୍କର ବିଷୟ ଚିନ୍ତା କରୁଥିବା ସମୟରେ କେତେବେଳେ ଯେ ନିଦ୍ରାଦେବୀ ତାଙ୍କ ପ୍ରତି ଅନୁକମ୍ପା ପ୍ରକାଶ କଲେ ସେ ଜାଣି ପାରିଲେ ନାହିଁ ।

ନିଦ୍ରିତାବସ୍ଥାରେ ଦେବୀ ପାର୍ବତୀ ତାଙ୍କୁ ସ୍ୱପ୍ନରେ ନିର୍ଦ୍ଦେଶ ଦେଲେ—'ବତ୍ସେ ! କାଲି ଶୁଭଦିନ ଅଛି । ତେଣୁ ତୁ ସ୍ୱୟଂ କୌଶାମ୍ବୀ ନଗରୀକୁ ଯାଇ ତୋର ପତିଙ୍କୁ ଦର୍ଶନ କରିବୁ । ତୋର ପିତା ମଧ୍ୟ ସେଠାରେ ଉପସ୍ଥିତ ହୋଇ ତୁମର ବିବାହ ସମ୍ପାଦନ କରିବେ ।' ପରଦିନ ପ୍ରାତଃକାଳରୁ ପାର୍ବତୀଙ୍କର ଏହି ଆଦେଶ ନିଜର ମାତାଙ୍କୁ ଶୁଣାଇବାରୁ ସେ କୌଶାମ୍ବୀ ଅଭିମୁଖରେ ଯାତ୍ରା କରିବା ପାଇଁ ଅନୁମତି ପ୍ରଦାନ କଲେ । ରତ୍ନପ୍ରଭା ନିଜର ବିଦ୍ୟା ପ୍ରଭାବରେ କୌଶାମ୍ବୀର ରାଜଉଦ୍ୟାନରେ ଆସି ଉପସ୍ଥିତ ହୋଇ ସ୍ୱୀୟ ପତିଙ୍କ ଦର୍ଶନ ଲାଭ କରିଛନ୍ତି ।

'ଆର୍ଯ୍ୟପୁତ୍ର ! ଆପଣ ମୋତେ ସେହି ରତ୍ନପ୍ରଭା ବୋଲି ଜାଣନ୍ତୁ । ମୁଁ ଅତ୍ୟନ୍ତ ଉତ୍କଣ୍ଠିତା ହୋଇ ଆପଣଙ୍କୁ ଦର୍ଶନ କରିବାପାଇଁ ଚାଲି ଆସଅଛି । ଏହାପରେ ଯାହା କରଣୀୟ ଆପଣ ବିଚାର କରନ୍ତୁ ।'

ରତ୍ନପ୍ରଭାଙ୍କର ଏ ପ୍ରକାର ଅମୃତମୟୀ ବାଣୀ ଶ୍ରବଣ ଏବଂ ତାଙ୍କର ନୟନାଭିରାମ ରୂପରାଶି ଅବଲୋକନ କରି ନରବାହନଦତ୍ତ ବିଧାତା ତାଙ୍କ ଶରୀରକୁ କାହିଁକି ନେତ୍ର ଓ କର୍ଣ୍ଣମୟ ନ କଲେ ବୋଲି ନିନ୍ଦା କରିବାକୁ ଲାଗିଲେ । କିନ୍ତୁ କିଛି ସମୟ ପରେ ସେ

ପ୍ରକୃତିସ୍ଥ ହୋଇ କହିଲେ— 'ତୁମେ ମୋ ନିକଟରେ ଉପସ୍ଥିତ ହୋଇଥିବା ଯୋଗୁଁ ମୋର ଜୀବନ ଆଜି ଧନ୍ୟ ହେଲା ।'

ଆଦ୍ୟପ୍ରେମଜନିତ ଆନନ୍ଦବଶତଃ ଉଭୟେ ବହୁକ୍ଷଣ ଧରି ଏହିପରି ବାର୍ତ୍ତାଳାପ କରୁଥିବାବେଳେ ଆକାଶରେ ଅକସ୍ମାତ୍ ବିଦ୍ୟାଧର ସେନା ଦେଖାଦେଲେ । ରତ୍ନପ୍ରଭା 'ଏଇ ମୋର ପିତା ଆସିଗଲେ' କହିଲା ବେଳେ ରାଜା ହେମପ୍ରଭ ପୁତ୍ର ଓ ସେନାବାହିନୀ ସହ ସେଠାରେ ଆସି ଅବତରଣ କଲେ । ନରବାହନଦତ୍ତ ସ୍ୱାଗତ ଜଣାଇ ସେମାନଙ୍କ ସହ କଥାବାର୍ତ୍ତା କରୁଥିବା ସମୟରେ ରାଜା ଉଦୟନ ମଧ୍ୟ ଏ ସମ୍ବାଦ ଲାଭ କରି ନିଜର ମନ୍ତ୍ରୀମାନଙ୍କ ସହ ସେଠାରେ ଆସି ଉପସ୍ଥିତ ହେଲେ । ଅତିଥିସତ୍କାର ପ୍ରାପ୍ତ ହୋଇ ରାଜା ହେମପ୍ରଭ ରତ୍ନପ୍ରଭା କହିଥିବା ସମଗ୍ର ବୃତ୍ତାନ୍ତ ଉଦୟନଙ୍କ ନିକଟରେ ବ୍ୟକ୍ତ କରି କହିଲେ— 'ମୁଁ ମୋର ବିଦ୍ୟାପ୍ରଭାବରେ ମୋର କନ୍ୟା ଏଠାକୁ ଆସିଥିବା ସମ୍ପର୍କରେ ସମସ୍ତ ବୃତ୍ତାନ୍ତ ଜାଣିପାରିଲି । ବର୍ତ୍ତମାନ ଆମର ବିମାନ ସାହାଯ୍ୟରେ ନରବାହନଦତ୍ତଙ୍କୁ ନେଇ ମୁଁ ବିଦ୍ୟାଧର ପୁରୀକୁ ପ୍ରତ୍ୟାବର୍ତ୍ତନ କରିବି । ସେ ମଧ୍ୟ ବିଦ୍ୟାଧରତ୍ୱ ପ୍ରାପ୍ତି ପରେ ଏପରି ଏକ ବିମାନ ଲାଭ କରିବେ । ରତ୍ନପ୍ରଭା ସହ ଆପଣଙ୍କ ପୁତ୍ର ଅଳ୍ପ ଦିନ ପରେ ପୁଣି ଆପଣଙ୍କ ନିକଟକୁ ଫେରିଆସିବେ । ଯିବା ନିମନ୍ତେ ଅନୁମତି ପ୍ରଦାନ କଲେ କୃତାର୍ଥ ହେବୁ ।'

ମହାରାଜ ଉଦୟନଙ୍କୁ ଏହିପରି ନିବେଦନ କରି ଏବଂ ତାଙ୍କରି ଅନୁଜ୍ଞା ପ୍ରାପ୍ତ ହୋଇ ହେମପ୍ରଭ ନିଜର ବିଦ୍ୟା ପ୍ରଭାବରେ ଏକ ବିମାନ ସୃଷ୍ଟି କଲେ ଏବଂ ଲଜ୍ଜାବନତମୁଖ ନରବାହନଦତ୍ତ ଓ ଗୋମୁଖ ପ୍ରଭୃତି ତାଙ୍କ ସଚିବମାନଙ୍କ ସହିତ ଉକ୍ତ ଯାନ ଆରୋହଣପୂର୍ବକ କାଞ୍ଚନଶୃଙ୍ଗ ନଗର ଅଭିମୁଖରେ ଯାତ୍ରା କଲେ । ବତ୍ସରାଜ ଉଦୟନ ପୁତ୍ରର ମଙ୍ଗଳଦୃଷ୍ଟିରୁ ମନ୍ତ୍ରୀ ଯୌଗନ୍ଧରାୟଣଙ୍କୁ ମଧ୍ୟ ଏମାନଙ୍କ ସହ ପ୍ରେରଣ କଲେ ।

ନରବାହନଦତ୍ତ ପ୍ରକାଣ୍ଡ ସୁବର୍ଣ୍ଣ ପ୍ରାଚୀର ପରିବେଷ୍ଟିତ କାଞ୍ଚନଶୃଙ୍ଗ ନଗରୀରେ ପ୍ରବେଶ କଲେ । ପ୍ରାଚୀର ଗାତ୍ରରୁ ବିଚ୍ଛୁରିତ ହେଉଥିବା କିରଣରାଶି, ଜାମାତା ସ୍ନେହରେ ରାଜକୁମାରଙ୍କୁ ସ୍ନେହାଲିଙ୍ଗନ ପାଶରେ ଆବଦ୍ଧ କରିବାପାଇଁ ନଗରୀ ରାଣୀର ହସ୍ତ ପ୍ରସାରଣ ପରି ମନେ ହେଉଥାଏ ।

ନଗରରେ ଉପସ୍ଥିତ ହୋଇ ରାଜା ହେମପ୍ରଭ ନିଜ କନ୍ୟାର ବିବାହ ଉତ୍ସବ ସମ୍ପାଦନ କଲେ । ବରୁଣ ଭଗବାନ ବିଷ୍ଣୁଙ୍କ ହସ୍ତରେ ଲକ୍ଷ୍ମୀଙ୍କୁ ପ୍ରଦାନ କରିବା ପରି, ହେମପ୍ରଭ ନରବାହନଦତ୍ତଙ୍କ ହସ୍ତରେ ରତ୍ନପ୍ରଭାଙ୍କୁ ସମର୍ପଣ କଲେ । ଯୌତୁକ ସ୍ୱରୂପ

ହେମପ୍ରଭ ଏତେ ଜାଜ୍ଜ୍ୱଲ୍ୟମାନ ଅଳଙ୍କାର ପ୍ରଦାନ କଲେ ଯେ ସେଗୁଡ଼ିକରୁ ଉତ୍‌ଥିତ ରଶ୍ମିସମୂହ ବହୁବିବାହରେ ଏକ ସଙ୍ଗେ ପ୍ରଜ୍ଜ୍ୱଳିତ ହେଉଥିବା ହୋମାଗ୍ନିର ଭ୍ରମ ଜାତ କରୁଥିଲା । ସମସ୍ତ କାଞ୍ଚନପୁର ନଗର ଆନନ୍ଦ ଉତ୍ସବରେ ଉନ୍ମତ୍ତ ହେଲା । ନରବାହନଦତ୍ତ ବିବାହ ପରେ ରତ୍ନପ୍ରଭାଙ୍କ ସହ ଦିବ୍ୟଐଶ୍ୱର୍ଯ୍ୟ ଉପଭୋଗ କରି ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ । ସେ ଉକ୍ତ ନଗରରେ ଥିବା ଦିବ୍ୟ ଉପବନ, ପୁଷ୍କରିଣୀ ତଥା ମନ୍ଦିରରେ ବିହାର କରି ଏବଂ ରତ୍ନପ୍ରଭାଙ୍କ ଦିବ୍ୟବିଦ୍ୟା ପ୍ରଭାବରେ ଆକାଶରେ ବିଚରଣ କରି ପ୍ରଭୂତ ଆନନ୍ଦ ଲାଭ କରୁଥାନ୍ତି ।

ଏହିପରି ଦୀର୍ଘକାଳ ଶ୍ୱଶୁରାଳୟରେ ଅବସ୍ଥାନ କଲା ପରେ ଯୁବରାଜ ସ୍ୱନଗରକୁ ପ୍ରତ୍ୟାବର୍ତ୍ତନ କରିବା ନିମନ୍ତେ ଯୌଗନ୍ଧରାୟଣଙ୍କ ସହ ବିଚାର କଲେ । ଅଳଙ୍କାରପ୍ରଭାଙ୍କଦ୍ୱାରା ମଙ୍ଗଳ ବିଧାନ ସମ୍ପାଦିତ ହେଲା । ଶ୍ୱଶୁର ନିଜେ ପୁତ୍ର, କନ୍ୟା, ଜାମାତା ଏବଂ ତାଙ୍କର ମନ୍ତ୍ରୀପରିଷଦ ସହ ବିମାନ ଆରୋହଣ କରି କୌଶାମ୍ବୀ ଅଭିମୁଖରେ ଅଗ୍ରସର ହେଲେ । ଉଦୟନ ପୁତ୍ରର ଆଗମନ ବାର୍ତ୍ତା ପ୍ରାପ୍ତହୋଇ ସ୍ୱନଗରରେ ଉତ୍ସବ ପାଳନର ଆୟୋଜନ କଲେ । ଏହି ଉତ୍ସବକୁ ଆହୁରି ଆନନ୍ଦ ଓ ଚମକପ୍ରଦ କରିବା ନିମନ୍ତେ ନରବାହନଦତ୍ତ ନିଜର ଶ୍ୱଶୁର, ଶାଳକ, ପତ୍ନୀ ଓ ମନ୍ତ୍ରୀମାନଙ୍କ ସହ ଆସି ଏଥିରେ ଯୋଗଦେଲେ । ଉଦୟନ ଓ ବାସବଦତ୍ତା ଭୂମିଷ୍ଠ ପ୍ରଣାମ କରୁଥିବା ପୁତ୍ର ଓ ପୁତ୍ରବଧୂକୁ ଆଶୀର୍ବାଦ ପ୍ରଦାନ କରି ସମ୍ବନ୍ଧୀଙ୍କୁ ବହୁ ସମ୍ମାନ ପ୍ରଦର୍ଶନ କଲେ ।

କିଛିଦିନ ସେଠାରେ ଅବସ୍ଥାନ ପୂର୍ବକ ହେମପ୍ରଭ ପୁତ୍ର ବଜ୍ରପ୍ରଭ ସହ ନିଜ ନଗରକୁ ପ୍ରତ୍ୟାବର୍ତ୍ତନ କରି ଗଲେ ଏବଂ ନରବାହନଦତ୍ତ ରତ୍ନପ୍ରଭା ଓ ମଦନମଞ୍ଚୁକାଙ୍କ ସହ ଆନନ୍ଦରେ ଦିନ ଯାପନ କରିବାକୁ ଲାଗିଲେ ।



## ଦ୍ୱିତୀୟ ତରଙ୍ଗ

ଏହିପରି ବିଦ୍ୟାଧରରାଜପୁତ୍ରୀ ରତ୍ନପ୍ରଭାଙ୍କ ସହିତ ନରବାହନଦତ୍ତ ଭୋଗବିଳାସରେ ଦିନ ଯାପନ କରୁଥିବା ସମୟରେ ଦିନେ ଗୋମୁଖ ପ୍ରଭୃତି ମନ୍ତ୍ରୀମାନେ ତାଙ୍କୁ ସାକ୍ଷାତ କରିବା ନିମନ୍ତେ ଆସି ଉପସ୍ଥିତ ହେଲେ । କିନ୍ତୁ ଅନ୍ତଃପୁରର ଦ୍ୱାରପାଳିକା ସେମାନଙ୍କୁ ସଙ୍ଗେ ସଙ୍ଗେ ଭିତରେ ପ୍ରବେଶ କରିବା ନିମନ୍ତେ ଅନୁମତି ପ୍ରଦାନ ନ କରି ରତ୍ନପ୍ରଭାଙ୍କଠାରୁ ଆଦେଶ ଆଣିବା ପର୍ଯ୍ୟନ୍ତ ସେଠାରେ ଅଟକାଇ ରଖିଲା । ଏହାପରେ ସେମାନେ ଅନ୍ତଃପୁର ମଧ୍ୟରେ ପ୍ରବେଶ କରନ୍ତେ ରତ୍ନପ୍ରଭା ସେମାନଙ୍କର ସ୍ୱାଗତ ସତ୍କାର କରି ଦ୍ୱାରପାଳିକାକୁ କହିଲେ–'ସେମାନେ ଆର୍ଯ୍ୟପୁତ୍ରଙ୍କର ଅନ୍ତରଙ୍ଗ ସଖା । ଏଣୁ ମୋର ମଧ୍ୟ । ତେଣୁ ଆଜିଠାରୁ ଏମାନଙ୍କୁ ଆଉ ଦ୍ୱାର ନିକଟରେ ଅଟକାଇବ ନାହିଁ ।'

ଦ୍ୱାରପାଳିକାକୁ ଏହିପରି ଆଦେଶ ଦେଇ ବିଦାୟ କରିବା ପରେ ସେ ନରବାହନଦତ୍ତଙ୍କୁ କହିଲେ, 'ଆର୍ଯ୍ୟପୁତ୍ର ! ସ୍ତ୍ରୀମାନଙ୍କର ରକ୍ଷା ଓ ନିୟନ୍ତ୍ରଣକୁ ମୁଁ କେବଳ ଏକ ନୀତି ବୋଲି ମନେ କରେ; ତାହା ଈର୍ଷା କିମ୍ବା ଅଜ୍ଞତା ବୋଲି ହିଁ ମୋର ଧାରଣା । ତେଣୁ ଏହିପରି ଦ୍ୱାରପାଳିକା ନିଯୁକ୍ତିଦ୍ୱାରା କୌଣସି କାର୍ଯ୍ୟ ସିଦ୍ଧ ହୁଏ ନାହିଁ । ସ୍ତ୍ରୀମାନେ ସେମାନଙ୍କର ସଦାସଜାଗପ୍ରହରୀ ସଚ୍ଚରିତ୍ରତାଦ୍ୱାରା ସବୁବେଳେ ସୁରକ୍ଷିତା । ଚପଳମତି ନାରୀମାନଙ୍କର ନିୟନ୍ତ୍ରଣ ପାଇଁ ସ୍ୱୟଂ ବ୍ରହ୍ମା ମଧ୍ୟ ସମର୍ଥ ନୁହନ୍ତି । ମଦୋନ୍ମତ୍ତା ନାରୀ ଏବଂ ପ୍ରବଳ ବେଗବତୀ ନଦୀର ନିୟନ୍ତ୍ରଣ କୌଣସିମତେ ସମ୍ଭବପର ନୁହେଁ ।

ମହତ୍ତରେଣ ରକ୍ଷନ୍ତେ ଶୀଳେନୈବ କୁଳସ୍ତ୍ରୀୟଃ ।
ଧାତାପି ନ ପ୍ରଭୁଃ ପ୍ରାୟଶ୍ଚପଳାନାଂ ତୁ ରକ୍ଷଣେ ।
ମତ୍ତାନଦୀ ଚ଼ ନାରୀ ଚ଼ ନିୟନ୍ତୁଂ କେନ ପାର୍ଯ୍ୟତେ ।

ମୁଁ ଏ ସମ୍ପର୍କରେ ଆପଣଙ୍କୁ ଗୋଟିଏ ଗଳ୍ପ କହୁଛି, ଶୁଣନ୍ତୁ–

## ରାଜା ରତ୍ନାଧିପ କଥା

ସାଗର ମଧ୍ୟରେ ରତ୍ନକୂଟ ନାମକ ଏକ ବିଶାଳ ଦ୍ୱୀପ ଅଛି । ସେଠାରେ ପରମ ବିଷ୍ଣୁଭକ୍ତ ତଥା ସଦା ଉଦ୍ୟମଶାଳୀ ରାଜା ରତ୍ନାଧିପ ରାଜତ୍ୱ କରନ୍ତି । ସେ ଏକଦା ପୃଥିବୀର ସମସ୍ତ ରାଜକନ୍ୟାଙ୍କୁ ବିବାହ କରିବା ଏବଂ ସସାଗରାଧରା ଜୟ କରିବା ନିମନ୍ତେ ଭଗବାନ ବିଷ୍ଣୁଙ୍କୁ ତପସ୍ୟା କଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ବିଷ୍ଣୁ ସାକ୍ଷାତ୍ ଦର୍ଶନ ପ୍ରଦାନ ପୂର୍ବକ କହିଲେ, 'ରତ୍ନାଧିପ, ତପସ୍ୟାରୁ କ୍ଷାନ୍ତ ହୁଅ । ମୁଁ ତୋର ତପସ୍ୟାରେ ପ୍ରସନ୍ନ । ବର୍ତ୍ତମାନ ମୁଁ ଯାହା କହୁଛି, ମନଦେଇ ଶୁଣ ।

'କୌଣସି ଶାପଗ୍ରସ୍ତ ଗନ୍ଧର୍ବ କଳିଙ୍ଗ ଦେଶରେ ଶ୍ୱେତହସ୍ତୀ ରୂପେ ଜନ୍ମଗ୍ରହଣ କରିଛି । ସେ ଶ୍ୱେତରଶ୍ମୀ ନାମରେ ପ୍ରସିଦ୍ଧ । ଶ୍ୱେତରଶ୍ମୀ ପୂର୍ବଜନ୍ମରେ ମୋର ଆରାଧନା କରିଥିଲା ବୋଲି ଏ ଜନ୍ମରେ ମହାଜ୍ଞାନୀ, ଆକାଶବିହାରୀ ଏବଂ ଜାତିସ୍ମର ହୋଇ ପାରିଛି । ମୁଁ ସ୍ୱପ୍ନରେ ତାକୁ ଆଦେଶ ପ୍ରଦାନ କରିଛି ଯେ ସେ ସ୍ୱତଃ ଆସି ତୋର ବାହନ ରୂପେ ରହିବ । ଇନ୍ଦ୍ର ଐରାବତ ଆରୋହଣ କରିବା ପରି ତୁ ଯଦି ସେହି ଶ୍ୱେତହସ୍ତୀ ପୃଷ୍ଠରେ ଆରୋହଣ କରି ଆକାଶମାର୍ଗରୁ କୌଣସି ରାଜାକୁ ଯୁଦ୍ଧପାଇଁ ଆହ୍ୱାନ କରୁ ତା'ହେଲେ ସେ ଭୟଭୀତ ହୋଇ ତୋତେ ସନ୍ତୁଷ୍ଟ କରିବା ନିମିତ୍ତ ତା'ର କନ୍ୟାକୁ ତୋ ହସ୍ତରେ ଅର୍ପଣ କରିବ । ଏହିପରି ତୁ ସମଗ୍ର ପୃଥିବୀ ଜୟ କରି ସମସ୍ତ ରାଜକନ୍ୟାଙ୍କୁ ବିବାହ କରି ପାରିବୁ । ଅଶୀହଜାର ରାଜକନ୍ୟାଙ୍କ ପାଣିଗ୍ରହଣ କରି ତୁ ଏ ପୃଥିବୀପୃଷ୍ଠରେ ନିରଙ୍କୁଶ ରାଜତ୍ୱ କରିବୁ ।'

ଏହିପରି ବର ପ୍ରଦାନ କରି ଭଗବାନ୍ ଅନ୍ତର୍ହିତ ହୁଅନ୍ତେ ରାଜା ରତ୍ନାଧିପ ବିଧିପୂର୍ବକ ବ୍ରତ ପାରଣ କରି ଆଶ୍ୱସ୍ତ ହେଲେ । ପରଦିନ ପୂର୍ବୋକ୍ତ ଶ୍ୱେତହସ୍ତୀ ଆସି ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ରାଜା ସ୍ୱୀୟ ବର ପ୍ରଭାବରୁ ଉକ୍ତ ହସ୍ତୀ ଉପରେ ଆରୋହଣ କରି ସମଗ୍ର ପୃଥିବୀ ସହ ସମସ୍ତ ରାଜକନ୍ୟାଙ୍କୁ ଲାଭ କରିବାର ସୁଯୋଗ ପାଇଲେ ।

ରାଜା ରତ୍ନାଧିପ ଅଶୀହଜାର କନ୍ୟା ସହ ରତ୍ନକୂଟପୁରରେ ମହା ଆନନ୍ଦରେ ବିହାର କରୁଥାଆନ୍ତି । ସ୍ୱର୍ଗୀୟ ହସ୍ତୀ ଶ୍ୱେତରଶ୍ମୀର ଶାପଶାନ୍ତି ପାଇଁ ସେ ପ୍ରତ୍ୟହ ପାଞ୍ଚଶତ ବ୍ରାହ୍ମଣଙ୍କୁ ଭୋଜନ ପ୍ରଦାନ କରୁଥାଆନ୍ତି । ଏକଦା ସେ ହସ୍ତୀପୃଷ୍ଠରେ ବହୁ ଦ୍ୱୀପ ଭ୍ରମଣ କରି ନିଜ ରାଜ୍ୟରେ ଆସି ଉପସ୍ଥିତ ହେଲେ । ଆକାଶମାର୍ଗରୁ ଅବତରଣ କରୁଥିବା ବେଳେ ଗୋଟିଏ ବିଶାଳ ପକ୍ଷୀ ଆସି ହସ୍ତୀର ମସ୍ତକରେ ଚଞ୍ଚୁ ପ୍ରହାର କଲା । ରାଜାଙ୍କର

ଅଙ୍କୁଶ ପ୍ରହାରରେ ପକ୍ଷୀଟି ଉଡ଼ି ଚାଲିଗଲା, କିନ୍ତୁ ଆହତ ହସ୍ତୀ ପୃଥିବୀ ଉପରେ ମୂର୍ଚ୍ଛିତ ହୋଇ ପଡ଼ିଗଲା । ରାଜା ତାର ପୃଷ୍ଠରୁ ଅବତରଣ କରନ୍ତେ ହସ୍ତୀଟିର ସଂଜ୍ଞା ଫେରି ଆସିଲେ ମଧ୍ୟ ସେ ଆଉ ଭୂମିରୁ ଉଠି ପାରିଲା ନାହିଁ କି ଆହାର ମଧ୍ୟ ଗ୍ରହଣ କରିପାରିଲା ନାହିଁ । ଦୀର୍ଘ ପାଞ୍ଚଦିନ ଧରି ହସ୍ତୀଟି ନିରାହାର ରହନ୍ତେ ରାଜା ମଧ୍ୟ ଦୁଃଖରେ ଏହି ପାଞ୍ଚଦିନ ଜଳସ୍ପର୍ଶ କଲେ ନାହିଁ । ଶେଷରେ ସେ ଦିଗପାଳମାନଙ୍କୁ ପ୍ରାର୍ଥନା କରି କହିଲେ, 'ହେ ଦିକ୍‌ପାଳବୃନ୍ଦ, ମୋତେ ଏହି ସଙ୍କଟରୁ ଉଦ୍ଧାର ହେବା ନିମନ୍ତେ କିଛି ଉପାୟର ନିର୍ଦ୍ଦେଶ ଦିଅନ୍ତୁ, ନୋଚେତ୍ ମୁଁ ମୋର ମସ୍ତକ ଛେଦନ କରି ତୁମ୍ଭମାନଙ୍କୁ ବଳି ପ୍ରଦାନ କରିବି ।' ରାଜା ତରବାରି ଦ୍ୱାରା ନିଜର ମସ୍ତକ ଛିନ୍ନ କରିବାପାଇଁ ଉଦ୍ୟତ ହୁଅନ୍ତେ ଦିବ୍ୟବାଣୀ ଶୁଣାଗଲା, 'ରାଜନ୍, ଏ ପ୍ରକାର କଠୋର କର୍ମରୁ ନିବୃତ୍ତ ହୁଅନ୍ତୁ । କୌଣସି ସତୀସାଧ୍ୱୀ ପତିବ୍ରତା ନାରୀ ଯଦି ଏହାର ଶରୀରରେ କରସ୍ପର୍ଶ କରେ, ତେବେ ହସ୍ତୀଟି ଆରୋଗ୍ୟ ଲାଭ କରିବ । ଏହା ବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ ।

ଏଥିରେ ରାଜା ପ୍ରସନ୍ନ ହୋଇ ଅମୃତଲତା ନାମ୍ନୀ ନିଜର ପ୍ରିୟତମା ରାଣୀଙ୍କୁ ହସ୍ତୀର ଶରୀର ସ୍ପର୍ଶ କରିବା ନିମନ୍ତେ ଅନୁରୋଧ କଲେ । କିନ୍ତୁ ଏହାଦ୍ୱାରା ହସ୍ତୀଟିର କୌଣସି ଉପକାର ହେଲା ନାହିଁ । ରାଜା ପରେ ପରେ ଅନ୍ୟାନ୍ୟ ରାଣୀମାନଙ୍କୁ ମଧ୍ୟ ଅନୁରୂପ ନିର୍ଦ୍ଦେଶ ପ୍ରଦାନ କରନ୍ତେ ସେମାନେ ଜଣ ଜଣ କରି ହସ୍ତୀର ଶରୀର ସ୍ପର୍ଶ କଲେ । କିନ୍ତୁ ସମସ୍ତଙ୍କର ଚେଷ୍ଟା ନିଷ୍ଫଳ ହେଲା । ଏଥିରୁ ରାଜାଙ୍କର ବିଶ୍ୱାସ ଜନ୍ମିଲା ଯେ ତାଙ୍କର ଅଶୀ ସହସ୍ର ରାଣୀଙ୍କ ମଧ୍ୟରୁ ଜଣେ ହେଲେ କେହି ପତିବ୍ରତା ନୁହନ୍ତି । ଜନସମାଜରେ ମଧ୍ୟ ଏହି ରାଣୀମାନେ କୁଳଟା ବୋଲି ପରିଚିତ ହେଲେ । ରାଜା ଏଥିରେ ଲଜ୍ଜିତ ହୋଇ ନିଜ ରାଜ୍ୟର ସମସ୍ତ ନାରୀଙ୍କୁ ଆଣି ହସ୍ତୀର ଶରୀର ସ୍ପର୍ଶ କରାଇଲେ । କିନ୍ତୁ ହସ୍ତୀଟି ରୋଗମୁକ୍ତ ହେଲା ନାହିଁ । ରାଜ୍ୟରେ ଜଣେ ସୁଦ୍ଧା ପତିବ୍ରତା ରମଣୀ ନଥିବା ଦେଖି ରାଜାଙ୍କ ମୁଖ ଲଜ୍ଜାରେ ଆରକ୍ତ ହୋଇ ଉଠିଲା ।

ଏହି ସମୟରେ ତାମ୍ରଲିପ୍ତି ନଗରୀରୁ ଆସିଥିବା ହର୍ଷଗୁପ୍ତ ନାମକ ଜଣେ ବଣିକ ଏହି କୌତୂହଳପ୍ରଦ ଘଟଣା ଦେଖିବା ନିମନ୍ତେ ସେଠାରେ ଆସି ଉପସ୍ଥିତ ହେଲେ । ତାଙ୍କ ସହିତ ତାଙ୍କର ପତ୍ନୀ ଶୀଳବତୀ ମଧ୍ୟ ଆସିଥାଏ । ସେ ରାଜାଙ୍କର ଏ ପ୍ରକାର ମାନସିକ ପରିସ୍ଥିତି ଦେଖି କହିଲେ–'ମୁଁ ବର୍ତ୍ତମାନ ହସ୍ତୀର ଶରୀର ସ୍ପର୍ଶ କରୁଅଛି । ଯଦି ମୁଁ ମୋର ପତି ବ୍ୟତୀତ ଅନ୍ୟ କୌଣସି ପୁରୁଷକୁ ମନରେ ସୁଦ୍ଧା ସ୍ଥାନ ଦେଇ ନ ଥାଏ, ତେବେ ଏ ହସ୍ତୀ ଆରୋଗ୍ୟ ଲାଭ କରିବ ।' ଏହା କହି ସେ ହସ୍ତୀପୃଷ୍ଠରେ ହସ୍ତ

ସଂଚାଳନ କରିବା ମାତ୍ରେ ଶ୍ୱେତରଶ୍ମୀ ଉଠି ଠିଆ ହେଲା ଏବଂ ଆହାର କରିବାକୁ ଲାଗିଲା ।

ଶୀଳବତୀଙ୍କ ଅଖଣ୍ଡ ପାତିବ୍ରତ୍ୟ ଦେଖି ଲୋକେ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ସୃଷ୍ଟି, ସ୍ଥିତି ଓ ପାଳନକର୍ତ୍ତା ଭଗବାନଙ୍କ ସମାନ ଏ ପ୍ରକାର ସତୀସାଧ୍ୱୀ ସ୍ତ୍ରୀ ପୃଥିବୀରେ ବିରଳ ବୋଲି ସେମାନେ କଥାବାର୍ତ୍ତା ହେଲେ । ରାଜା ପ୍ରସନ୍ନ ହୋଇ ସେମାନଙ୍କୁ ବହୁ ଧନରତ୍ନ ପ୍ରଦାନ କଲେ ଏବଂ ହର୍ଷଗୁପ୍ତଙ୍କ ଭବନ ସମୀପରେ ଏକ ବିଶାଳ ଅଟ୍ଟାଳିକା ଦାନ କରି ସେଠାରେ ରହିବାପାଇଁ ସୁଯୋଗ ଦେଲେ । ସେହିଦିନଠାରୁ ରତ୍ନାଧିପ ନିଜର ଅଶୀ ସହସ୍ର ସ୍ତ୍ରୀଙ୍କୁ ସ୍ପର୍ଶ ମଧ୍ୟ କଲେ ନାହିଁ । କେବଳ ସେମାନଙ୍କର ଅନ୍ନବସ୍ତ୍ରର ସୁବିଧା କରିଦେଇ ନିଜେ ସେମାନଙ୍କଠାରୁ ଦୂରରେ ରହିଲେ ।

ଏହିପରି କିଛି ଦିନ ବିତିଗଲା । ଏକଦା ରାଜା ହର୍ଷଗୁପ୍ତ ଓ ଶୀଳବତୀଙ୍କୁ ନିଜ ସହିତ ଭୋଜନ କରିବା ନିମିତ୍ତ ନିମନ୍ତ୍ରଣ କଲେ । ଭୋଜନ ଶେଷରେ ରାଜା ଶୀଳବତୀଙ୍କୁ କହିଲେ, 'ତୁମ ପିତାଙ୍କର କଣ ଆଉ କେହି କନ୍ୟା ନାହାନ୍ତି ? ଯଦି ଥାଆନ୍ତି ତାହେଲେ ତା ସହିତ ମୋର ବିବାହର ପ୍ରସ୍ତାବ କର । କାରଣ ସେ ମଧ୍ୟ ତୁମ ପରି ପତିବ୍ରତା ଓ ସଦାଚାରିଣୀ ହୋଇଥିବ ।' ରାଜାଙ୍କଠାରୁ ଏହାଶୁଣି ଶୀଳବତୀ ନିଜର ଅନ୍ୟ ଭଗିନୀ ରାଜଦତ୍ତା ତାମ୍ରଲିପ୍ତି ନଗରୀରେ ବାସ କରୁଥିବା ଜଣାଇଲେ ଏବଂ ରାଜା ଯଦି ଚାହାଁନ୍ତି ତା'ହେଲେ ତାକୁ ବିବାହ କରି ପାରନ୍ତି ବୋଲି କହିଲେ ।

ରାଜା ଏଥିରେ ସମ୍ମତ ହୋଇ ଦ୍ୱିତୀୟ ଦିନ ହର୍ଷଗୁପ୍ତଙ୍କ ସହ ହସ୍ତୀପୃଷ୍ଠରେ ଯାଇ ତାମ୍ରଲିପ୍ତି ନଗରୀରେ ଉପସ୍ଥିତ ହେଲେ । ହର୍ଷଗୁପ୍ତଙ୍କ ଗୃହରେ ରହି ରାଜା ଜ୍ୟୋତିଷୀମାନଙ୍କୁ ଡାକି ବିବାହ ଲଗ୍ନ ନିର୍ଣ୍ଣୟ କରିବା ନିମନ୍ତେ ଅନୁରୋଧ କଲେ । ଗଣକମାନେ ବାର, ତିଥି ଓ ନକ୍ଷତ୍ର ଗଣନା କରି କହିଲେ ଯେ ତିନି ମାସ ପରେ ଯାଇ ବିବାହ ଯୋଗ ଅଛି । ପୂର୍ବରୁ ଯଦି ବିବାହ ହୁଏ, ତା' ହେଲେ କନ୍ୟାଟି ନିଶ୍ଚୟ ଦୁରାଚାରିଣୀ ହେବ ।

ଗଣକମାନେ ଏହା କହିବା ସତ୍ତ୍ୱେ, ରାଜା ରତ୍ନାଧିପ ଏହି ସୁନ୍ଦରୀ କନ୍ୟାକୁ ଲାଭ କରିବା ନିମନ୍ତେ ଅତ୍ୟଧିକ ଉତ୍ସୁକ ହୋଇ ଏବଂ ଏତେଦିନ ପର୍ଯ୍ୟନ୍ତ ଏକାକୀ ଜୀବନଯାପନ କରିବା ଅସମ୍ଭବ ମନେ କରି, ଚିନ୍ତାକଲେ ଯେ କନ୍ୟାଟି ଶୀଳବତୀର ଭଗିନୀ ହୋଇଥିବାରୁ ଦୁରାଚାରିଣୀ ହେବା ସମ୍ଭବ ନୁହେଁ; ବରଂ ଶାନ୍ତଶିଷ୍ଟା ଓ ସତୀସାଧ୍ୱୀ ହେବ । ପୁଣି ରତ୍ନଦ୍ୱୀପର ନିକଟବର୍ତ୍ତୀ ଯେଉଁ ଜନମାନବଶୂନ୍ୟ ଦ୍ୱୀପଟି ଅଛି ସେଠାରେ ଗୋଟିଏ

ଅଟ୍ଟାଳିକା ନିର୍ମାଣ କରି ସେଥିରେ ଏହାର ରହିବା ବ୍ୟବସ୍ଥା କରାଯିବ । ଏହି କ୍ଷୁଦ୍ର ଦ୍ୱୀପରେ କେବଳ ନାରୀମାନେ ହିଁ ପରିଚାରିକା ଭାବରେ ରହିବେ । ତେଣୁ ପୁରୁଷର ଦର୍ଶନ କରିବା ଯା' ପକ୍ଷରେ ଅସମ୍ଭବ ହେବ, ସେ ବା ଦୁରାଚାରିଣୀ ହେବ କିପରି ? ଏହିପରି ନିଶ୍ଚୟ କରି ରାଜା ଉକ୍ତ ଦିନ ହିଁ ଶୀଳବତୀର ଭଗିନୀ ରାଜଦତ୍ତା ସହ ବିବାହର ପ୍ରସ୍ତାବ କଲେ ।

ହର୍ଷଗୁପ୍ତଙ୍କଦ୍ୱାରା ମହାଆଡ଼ମ୍ବରରେ ବିବାହକ୍ରିୟା ସମ୍ପାଦିତ ହେଲା । ରାଜା ରତ୍ନାଧିପ ରାଜଦତ୍ତା ଓ ହର୍ଷଗୁପ୍ତଙ୍କ ସହ ହସ୍ତୀପୃଷ୍ଠ ଆରୋହଣ ପୂର୍ବକ ସ୍ୱନଗରରେ ଆସି ଉପସ୍ଥିତ ହେଲେ । ଉତ୍ସୁକତାର ସହିତ ଅପେକ୍ଷା କରିଥିବା ଜନତା ନବପରିଣୀତ ରାଜା ଓ ରାଣୀଙ୍କୁ ଅଭିନନ୍ଦନ ଜ୍ଞାପନ କଲେ । ରାଜା ପୁଣି ଶୀଳବତୀଙ୍କୁ ବହୁ ଧନରତ୍ନଦ୍ୱାରା ଆପ୍ୟାୟନ କଲେ ।

ଏହାପରେ ରାଣୀ ରାଜଦତ୍ତାଙ୍କ ସହ ରାଜା ହସ୍ତୀପୃଷ୍ଠରେ ପୂର୍ବ ନିଶ୍ଚିତ ଦ୍ୱୀପରେ ଯାଇ ଉପସ୍ଥିତ ହେଲେ । ଦ୍ୱୀପଟି ଜନମାନବ ଅଗମ୍ୟ ଥିଲା । ସେଠାରେ ନବପରିଣୀତା ରାଣୀଙ୍କ ନିମିତ୍ତ ଏକ ସୁନ୍ଦର ପ୍ରାସାଦ ନିର୍ମିତ ହେଲା । ବହୁ ଦାସୀ ସେବାକାର୍ଯ୍ୟ ନିମିତ୍ତ ନିଯୁକ୍ତ ହେଲେ । ରାଜା ପ୍ରତ୍ୟହ ଆବଶ୍ୟକୀୟ ପଦାର୍ଥ ଆକାଶଗାମୀ ହସ୍ତୀପୃଷ୍ଠରେ ସେଠାକୁ ପ୍ରେରଣ କରୁଥାଆନ୍ତି । କୌଣସି ପୁରୁଷର ସେହି ସୁରକ୍ଷିତ ଦ୍ୱୀପକୁ ଯିବା ଅଧିକାର ନଥିଲା । ପ୍ରେମବିହ୍ୱଳ ରାଜା ପ୍ରତ୍ୟହ ରାତ୍ରିରେ ଶ୍ୱେତରଶ୍ମୀ ଆରୋହଣ ପୂର୍ବକ ସେଠାରେ ଯାଇ ଉପସ୍ଥିତ ହେଉଥିଲେ ।

ଦିନେ ରାଜା ରାତ୍ରିରେ ଏକ ଭୟଙ୍କର ଦୁଃସ୍ୱପ୍ନ ଦେଖି ତା'କୁ ବିସ୍ମୃତ ହେବା ନିମିତ୍ତ ପ୍ରାତଃକାଳରୁ ହିଁ ରାଜଦତ୍ତାଙ୍କ ସହ ଯଥେଷ୍ଟ ମଦ୍ୟପାନ କଲେ । କିନ୍ତୁ ରାଜକାର୍ଯ୍ୟ ପ୍ରତି ଅବହେଳା ହେବ ବୋଲି ଆସବମତ୍ତା ରାଣୀଙ୍କ ବହୁବାରଣ ସତ୍ତ୍ୱେ ସେ ନିଜ ନଗରକୁ ତତ୍‌କ୍ଷଣାତ୍ ଫେରି ଆସିଲେ । ରାଜକାର୍ଯ୍ୟରେ ଅବଶ୍ୟ ତାଙ୍କର ମନ ଲାଗିଲା ନାହିଁ । ମଦୋନ୍ମତ୍ତା ରାଜଦତ୍ତାଙ୍କ ସ୍ମୃତି ବାରମ୍ବାର ରାଜକାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କଲା ।

ଏଣେ ଦାସୀମାନେ ଗୃହକର୍ମରେ ବ୍ୟସ୍ତଥିବା ବେଳେ ରାଜଦତ୍ତା ଏକାକିନୀ ସେହି ଦୁର୍ଗମ ଦୁର୍ଗର ଦ୍ୱାର ଉନ୍ମୁକ୍ତ କରି ନିର୍ଗତ ହେଲେ । ସେ ଦ୍ୱାର ଉନ୍ମୁକ୍ତ କରିବା ମାତ୍ରେ ଗୋଟିଏ ପୁରୁଷ ତାଙ୍କର ଦୃଷ୍ଟିଗୋଚର ହେଲା । ବୋଧହୁଏ ତାଙ୍କର ପାତିବ୍ରତ୍ୟ ଭଙ୍ଗ କରିବା ନିମିତ୍ତ ହିଁ ଏହି ପୁରୁଷଟି ଦୈବପ୍ରେରିତ ହୋଇ ଆସିଥିଲା । ପୁରୁଷଟି ମଦୋନ୍ମତ୍ତା ରାଜଦତ୍ତାଙ୍କ ସମ୍ମୁଖରେ ଉପସ୍ଥିତ ହୁଅନ୍ତେ, ରାଣୀ କିପରି ଓ କେଉଁଠାରୁ ସେ ଏହି ଦୁର୍ଗମ ଦ୍ୱୀପ ମଧ୍ୟକୁ ଆସିଲା ବୋଲି ଜିଜ୍ଞାସା କଲେ ।

ବହୁ କଷ୍ଟ ସହ୍ୟ କରିଆସିଥିବା ଉକ୍ତ ପୁରୁଷଟି ରାଣୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲା, 'ହେ ସୁନ୍ଦରି ! ମୁଁ ମଥୁରାବାସୀ ପବନସେନ ନାମକ ବଣିକଙ୍କ ପୁତ୍ର । ପିତାଙ୍କ ମୃତ୍ୟୁପରେ ଆତ୍ମୀୟ ସ୍ୱଜନମାନେ ମୋର ସମସ୍ତ ଧନରତ୍ନ ଅପହରଣ କରି ନେଲେ । ଫଳରେ ମୁଁ ବିଦେଶକୁ ଯାଇ ଦୀନହୀନ ଭାବରେ କୌଣସି ଧନିକ ପୁରୁଷର ଗୃହରେ ଦାସତ୍ୱ କରି ଜୀବନ ଧାରଣ କଲି । କିଛିଦିନ ମଧ୍ୟରେ ବହୁକଷ୍ଟ ସ୍ୱୀକାର ପୂର୍ବକ କିଛି ଧନ ସଞ୍ଚୟ କରି ମୁଁ ଅନ୍ୟ ଏକ ଦେଶକୁ ଯାଉଥିବା ବେଳେ କେତେକ ଦୁର୍ବୃତ୍ତ ତାହା ଅପହରଣ କରିନେଲେ । ଏହାପରେ ମୁଁ ବହୁ ଦୁଃଖକଷ୍ଟ ସହ୍ୟ କରି କନକକ୍ଷେତ୍ର ନାମକ ସ୍ଥାନରେ ଉପସ୍ଥିତ ହେଲି । ଏହି ସ୍ଥାନରେ ବହୁ ସୁବର୍ଣ୍ଣ ଖଣି ରହିଥିଲା । ତେଣୁ ଏ ଦେଶର ରାଜାଙ୍କ ସହ ତାଙ୍କର ପ୍ରାପ୍ୟ ଅଂଶ ନିର୍ଣ୍ଣୟ କରି ଏକବର୍ଷ ପର୍ଯ୍ୟନ୍ତ ଭୂମିକୁ ଖୋଦନ କରିବାକୁ ଲାଗିଲି । କିନ୍ତୁ ମୋର ଦୁର୍ଭାଗ୍ୟ, ସେଠାରେ କୌଣସି ରତ୍ନର ସନ୍ଧାନ ମିଳିଲା ନାହିଁ । ଶେଷରେ ଜୀବନ ଦୁର୍ବିସହ ହୋଇପଡ଼ିବାରୁ ମୁଁ ସମୁଦ୍ର କୂଳକୁ ଆସି ଆତ୍ମହତ୍ୟା କରିବା ନିମନ୍ତେ କାଷ୍ଠ ସଂଗ୍ରହ କରି ଚିତାନଳ ପ୍ରସ୍ତୁତ କଲି । ଯେତେବେଳେ ଚିତାରେ ପ୍ରବେଶ କରୁଥିଲି, ସେତେବେଳେ ଜୀବଦତ୍ତ ନାମକ ବଣିକ ଦୈବଯୋଗରେ ଆସି ସେଠାରେ ପହଞ୍ଚିଲେ । ତାଙ୍କର ଜାହାଜ ସ୍ୱର୍ଣ୍ଣଦ୍ୱୀପ ଅଭିମୁଖରେ ଯାତ୍ରା କରୁଥିଲା । ସେ ମୋତେ ମୃତ୍ୟୁମୁଖରୁ ରକ୍ଷା କରି ତାଙ୍କ ଜାହାଜରେ ସ୍ଥାନ ଦେଲେ । ମୁଁ ତାଙ୍କ ସହ ସମୁଦ୍ର ମଧ୍ୟରେ ପାଞ୍ଚ ଦିନ ଯାତ୍ରା କଲି । ଷଷ୍ଠ ଦିନ ଆକାଶର ଚତୁର୍ଦ୍ଦିଗରେ ମେଘ ଘୋଟିଯାଇ ମୂଷଳଧାରାରେ ବୃଷ୍ଟି ହେଲା । ଝଡ଼ର ପ୍ରକୋପରେ ଜାହାଜ ମତ୍ତହସ୍ତୀର ମସ୍ତକତୁଲ୍ୟ ଦୋଦୁଲ୍ୟମାନ ହେବାକୁ ଲାଗିଲା । ମୁଁ ଜାହାଜରୁ ଉତ୍ତାଳ ତରଙ୍ଗ ମଧ୍ୟକୁ ଛିଟିକି ପଡ଼ିଲି । ସେହି ତରଙ୍ଗରାଶି ମଧ୍ୟରେ ଭାସମାନ ହେଉଥିବା ବେଳେ ଖଣ୍ଡେ କାଷ୍ଠଫଳକ ମୋତେ ଆଶ୍ରୟ ଦେଲା । ଜାହାଜଟି ମଧ୍ୟ ସେଠାରେ ଜଳମଗ୍ନ ହେଲା । ଆକାଶ ନିର୍ମଳ ହେବା ପରେ ମୁଁ ସେହି କାଷ୍ଠ ଫଳକଟିର ଆଶ୍ରୟରେ ଆସି ଏହି ଦ୍ୱୀପର ତଟଦେଶରେ ଉପସ୍ଥିତ ହେଲି । ସେଠାରୁ ଏହି ଅଟ୍ଟାଳିକାଟି ଦୃଷ୍ଟିଗୋଚର ହେବାରୁ, ଏଠାକୁ ଆସି ଆପଣଙ୍କର ଅମୃତବର୍ଷିଣୀ ରୂପ ସୌନ୍ଦର୍ଯ୍ୟ ଦେଖି ସମସ୍ତ ଦୁଃଖ ବିସ୍ମୃତ ହେଉଅଛି ।

ଏହିପରି କହୁଥିବା ବେଳେ ମଦ୍ୟପାନଦ୍ୱାରା ବିହ୍ୱଳିତମନା ରାଜଦତ୍ତା ତାକୁ ପଲଙ୍କ ଉପରେ ବସାଇ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ସ୍ତ୍ରୀତ୍ୱ, ମଦ୍ୟପାନ, ନିର୍ଜନତା, ପୁରୁଷସଙ୍ଗ ଓ ସମ୍ପୂର୍ଣ୍ଣ ସ୍ୱାଧୀନତା ଏହି ପଞ୍ଚାଗ୍ନି ଏକତ୍ର ହେଲେ ଚରିତ୍ରରୂପୀ ତୃଣର ରକ୍ଷା ନାରୀ ପକ୍ଷେ ଏକାନ୍ତ ଅସମ୍ଭବ । କାମମୋହିତା ନାରୀ ବିବେଚନା ଶକ୍ତି ହରାଇ ବସେ ।

ସ୍ତ୍ରୀତ୍ୱଂ କ୍ଷୀବତ୍ୱମେକାନ୍ତଃ ପୁଂସୋ ଲାଭୋଽନିୟନ୍ତ୍ରଣା
ଯତ୍ର ପଞ୍ଚାଗ୍ନୟସ୍ତତ୍ର ବାର୍ତ୍ତା ଶୀଳତୃଣସ୍ୟ କା ।
ନ ଚୈବଂ କ୍ଷମତେ ନାରୀ ବିଚାରଂ ମାରମୋହିତା ।

ତେଣୁ ରାଣୀ ରାଜଦତ୍ତା ଏହି ବିପଦଗ୍ରସ୍ତ, ଦରିଦ୍ର ଓ କୁତ୍ସିତ ବ୍ୟକ୍ତିକୁ ମଧ୍ୟ ନିଜର କାମପିପାସା ମେଣ୍ଟାଇବାପାଇଁ ଗ୍ରହଣ କରିବାରେ ଆଶ୍ଚର୍ଯ୍ୟ କ'ଣ ଅଛି ?

ଏହି ସମୟରେ ରାଜା ରତ୍ନାଧିପ ଉତ୍ସୁକତାର ସହିତ ଆକାଶମାର୍ଗରେ ଆସି ସେଠାରେ ଉପସ୍ଥିତ ହେଲେ । ଉକ୍ତ ଦୀନ, ଦରିଦ୍ର ଓ କୁତ୍ସିତ ପୁରୁଷ ସହ ଶୟନ କରିଥିବା ରାଜଦତ୍ତାଙ୍କୁ ଦେଖି ତାଙ୍କର କ୍ରୋଧ ସୀମାଲଙ୍ଘନ କଲା । କିନ୍ତୁ ପୁରୁଷଟିକୁ ହତ୍ୟା କରିବା ନିମନ୍ତେ ଗଲାବେଳେ ସେ ବିନୀତ ପ୍ରାର୍ଥନା କରିବାରୁ ରାଜା ତାକୁ ମୁକ୍ତି ଦେଲେ । ଭୟରେ ପ୍ରକମ୍ପିତ ହୋଇ ଉଠୁଥିବା ସ୍ୱୀୟ ପତ୍ନୀକୁ ଦେଖି ସେ ଭାବିଲେ, 'କାମର ଏକମାତ୍ର ମିତ୍ର ମଦ୍ୟ । ମଦ୍ୟପାନ କରି କେଉଁ ସ୍ତ୍ରୀ ବା ନିଜର ସତୀତ୍ୱ ରକ୍ଷା କରିପାରିବ ? ଦୁଶ୍ଚରିତ୍ରା ନାରୀ ଯେତେ ସୁରକ୍ଷିତା ହେଲେ ହେଁ ତାର ସତୀତ୍ୱ ରକ୍ଷା ହୋଇପାରେ ନାହିଁ । ପ୍ରଳୟକାଳୀନ ବାତ୍ୟାକୁ କିଏ ବା ହସ୍ତଦ୍ୱାରା ଆୟତ୍ତ କରିପାରିବ !

ମଦ୍ୟେ ମାରୈକସୁହୃଦି ପ୍ରସକ୍ତା ସ୍ତ୍ରୀ ସତୀ କୁତଃ ।
ନିୟନ୍ତୁଂ ଚପଳାନାରୀ ରକ୍ଷୟାପି ନ ଶକ୍ୟତେ
କିଂ ନାମୋତ୍ପାତ ବାତାଳୀ ବାହୁଭ୍ୟାଂ ଜାତୁ ବଧ୍ୟତେ ।

ମୁଁ ଗଣକମାନଙ୍କର ଉପଦେଶ ବାକ୍ୟକୁ ଅବଜ୍ଞା କରିବାରୁ ଏହି ଫଳ ଲାଭ କଲି । ବିଶ୍ୱସ୍ତ ଓ ହିତକାମୀ ଲୋକଙ୍କର ବାକ୍ୟ ପ୍ରତି ଅନାଦର ପ୍ରକାଶ କରି କେଉଁ ପୁରୁଷ ବା ମଙ୍ଗଳ ଲାଭ କରିଅଛି !

ବିପାକ କଟୁକଂ ତସ୍ୟ ନାପ୍ତବାକ୍ୟାବଧୀରଣମ୍ ।

ଏହାକୁ ଶୀଳବତୀର ଭଗିନୀ ବୋଲି ଜାଣି ମୁଁ ଭୁଲିଗଲି ଯେ ବିଷ ମଧ୍ୟ ଅମୃତର ସହୋଦର ହୋଇପାରେ । ପୁଣି ଦୈବର କାର୍ଯ୍ୟକୁ କୌଣସି ପୁରୁଷ ନିଜର ପୁରୁଷାର୍ଥଦ୍ୱାରା ଜୟ କରିବା ସମ୍ଭବପର ନୁହେଁ ।'

ଏହିପରି ଚିନ୍ତା କରି ସେ ସେହି ପୁରୁଷଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣପୂର୍ବକ ତାକୁ ବିଦାୟ ଦେଲେ । ବଣିକପୁତ୍ର ଭୟରେ ପଥଭ୍ରଷ୍ଟ ହୋଇ ଏଣେତେଣେ ବୁଲି ଶେଷରେ ଆସି ସମୁଦ୍ରତୀରରେ ପହଞ୍ଚିଲା । ଏ ସମୟରେ କୌଣସି ଜଳଗାମୀ

ଜାହାଜ ତାର ଦୃଷ୍ଟିଗୋଚର ହୁଅନ୍ତେ ସେ ଗୋଟିଏ କାଷ୍ଠ ଫଳକର ଆଶ୍ରୟରେ ସେହି ଦିଗକୁ ଅଗ୍ରସର ହେଲା ଏବଂ 'ମୋତେ ରକ୍ଷାକର' ବୋଲି ଉଚ୍ଚସ୍ୱରରେ ଚିତ୍କାର କରିବାକୁ ଲାଗିଲା । ତାର ଏହି ବିକଳ ସ୍ୱର ଶୁଣିପାରି ଉକ୍ତ ଜାହାଜର ଅଧ୍ୟକ୍ଷ ଦୟାପରବଶ ହୋଇ ତାକୁ ତାଙ୍କରି ଜାହାଜରେ ସ୍ଥାନ ଦେଲେ । କିନ୍ତୁ ଦୈବ ଯାହାର ବିନାଶ ପାଇଁ ଯେଉଁ ବିଧାନ କରିଅଛି, ସେଥିରୁ ରକ୍ଷା ପାଇବା ତା ପକ୍ଷରେ ଅତୀବ ଦୁଷ୍କର ।

ଯସ୍ୟ ଯଦ୍‌ବିହିତଂ ଧାତ୍ରା କର୍ମ ନାଶାୟ ତସ୍ୟ ତତ୍
ପଦବୀଂ ଯତ୍ର ତତ୍ରାପି ଧାବତୋଽପ୍ୟନୁଧାବତି ।

ସେହି ଦରିଦ୍ର ବଣିକପୁତ୍ର ଜାହାଜରେ ଯାତ୍ରା କରୁଥିବା ବେଳେ ଜାହାଜର ଅଧ୍ୟକ୍ଷ କ୍ରୋଧବର୍ମାଙ୍କ ସ୍ତ୍ରୀ ସହ ଏକତ୍ର ଧରା ହେଲା । ଫଳରେ କ୍ରୋଧବର୍ମା ତାକୁ ସମୁଦ୍ର ଗର୍ଭରେ ନିକ୍ଷେପ କରନ୍ତେ ସେ ସେହି ଅତଳ ଜଳରାଶି ମଧ୍ୟରେ ପ୍ରାଣତ୍ୟାଗ କଲା ।

ଏଣେ ରାଜା ରତ୍ନାଧିପ ରାଣୀ ରାଜଦତ୍ତାଙ୍କ ଉପରେ କ୍ରୋଧ ପ୍ରକାଶ ନ କରି ସେବକ ଓ ସମସ୍ତ ସାମଗ୍ରୀ ସହ ଶ୍ୱେତରଶ୍ମୀ ଆରୋହଣପୂର୍ବକ ରତ୍ନକୂଟ ଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ରାଜଦତ୍ତାଙ୍କୁ ତାଙ୍କର ଭଗିନୀ ଶୀଳବତୀ ହସ୍ତରେ ସମର୍ପଣ କରି ସମଗ୍ର ବୃତ୍ତାନ୍ତ ବ୍ୟକ୍ତ କଲେ । ଶେଷରେ ସେ ଶୀଳବତୀଙ୍କୁ କହିଲେ—

'ଆଶ୍ଚର୍ଯ୍ୟର କଥା, ଅସାର ଓ ନୀରସ ସାଂସାରିକ ଭୋଗରେ ମଜ୍ଜିରହି ମୁଁ କେତେ ଦୁଃଖ କଷ୍ଟ ସହ୍ୟ ନ କଲି ? ବର୍ତ୍ତମାନ ମୁଁ ପୁଣି ଯାଇ ଭଗବାନ ବିଷ୍ଣୁଙ୍କର ଶରଣାପନ୍ନ ହେବି । ଏହାଦ୍ୱାରା ମୋତେ ଆଉ ଏ ଦୁଃଖ ଭୋଗ କରିବାକୁ ପଡ଼ିବ ନାହିଁ ।'

ଶୀଳବତୀ ଓ ମନ୍ତ୍ରୀମାନଙ୍କର ବହୁ ବିନମ୍ର ଅନୁରୋଧ ତାଙ୍କୁ ନିଜର ପ୍ରତିଜ୍ଞାରୁ ବିଚ୍ୟୁତ କରିପାରିଲା ନାହିଁ । ଶେଷରେ ସେ ପାପଭଞ୍ଜନ ନାମକ ଜଣେ ବ୍ରାହ୍ମଣଙ୍କୁ ସମଗ୍ର ରାଜ୍ୟ ବିଧିପୂର୍ବକ ପ୍ରଦାନ କରି ଅବଶିଷ୍ଟ ଧନ ଶୀଳବତୀ ଓ ଅନ୍ୟାନ୍ୟ ବ୍ରାହ୍ମଣଙ୍କ ମଧ୍ୟରେ ବିତରଣ କରିଦେଲେ । ସାଂସାରିକ ଭୋଗବିଳାସରୁ ସମ୍ପୂର୍ଣ୍ଣ ବିରକ୍ତ ହୋଇ ରାଜା ଶୋକାକୁଳ ରାଜ୍ୟବାସୀଙ୍କଠାରୁ ବିଦାୟ ନେଇ ବନଗମନ କରିବା ନିମିତ୍ତ ଶ୍ୱେତରଶ୍ମୀ ହସ୍ତୀ ନିକଟକୁ ଅଗ୍ରସର ହେଲେ । ଏହି ସମୟରେ ଶ୍ୱେତରଶ୍ମୀ ତାର ହସ୍ତୀରୂପ ପରିତ୍ୟାଗ କରି ହାର କେୟୂରଧାରୀ ଦିବ୍ୟ ଗନ୍ଧର୍ବରେ ପରିଣତ ହେଲା । ରାଜା ଏହି ଆଶ୍ଚର୍ଯ୍ୟଜନକ ଘଟଣା ଦେଖି ତାର ପରିଚୟ ଜିଜ୍ଞାସା କରନ୍ତେ, ସେ କହିଲା—

## ଶ୍ୱେତରଶ୍ମୀ ହସ୍ତୀର ପୂର୍ବଜନ୍ମ କଥା

ପୂର୍ବଜନ୍ମରେ ତୁମେ ଓ ମୁଁ ଗନ୍ଧର୍ବ କୁଳରେ ଦୁଇଭାଇ ରୂପେ ଜନ୍ମ ଗ୍ରହଣ କରି ମଳୟାଚଳରେ ବାସ କରୁଥିଲେ । ମୁଁ ଥିଲି କନିଷ୍ଠ ସୋମପ୍ରଭ ଏବଂ ତୁମେ ଜ୍ୟେଷ୍ଠ ଦେବପ୍ରଭ । ରାଜବତୀ ଥିଲେ ତୁମର ପ୍ରିୟତମା ପତ୍ନୀ । ଦିନେ ତୁମେ ତାଙ୍କୁ କୋଳରେ ଧରି ମୋ ସହିତ ସିଦ୍ଧବାସ ନାମକ ସ୍ଥାନକୁ ଯାଇଥିଲ । ସେଠାରେ ଭଗବାନ ବିଷ୍ଣୁଙ୍କର ଉପାସନା କରି ଆମେ ସଙ୍ଗୀତ ଗାନରେ ପ୍ରମତ୍ତ ହେଲେ । ଏହି ସମୟରେ ଜଣେ ସିଦ୍ଧ ସେହି ମନ୍ଦିର ମଧ୍ୟରେ ପ୍ରବେଶ କରି ଲଳିତ କଣ୍ଠରେ ଗାନ କରୁଥିବା ରାଜବତୀଙ୍କୁ ନିର୍ନିମେଷ ନୟନରେ ଚାହିଁ ରହିଲା । ଏଥିରେ ତୁମେ କ୍ରୋଧାନ୍ୱିତ ହୋଇ ତାକୁ କହିଲ, 'ତୁ ସିଦ୍ଧ ହୋଇ ମଧ୍ୟ ପରନାରୀକୁ ଏପରି ଚାହିଁ ରହିବା କଣ ଯଥାର୍ଥ ହୋଇଅଛି ?' ଏଥିରେ ସେ ସିଦ୍ଧ କ୍ରୋଧାନ୍ୱିତ ହୋଇ ଶାପ ପ୍ରଦାନ କରି କହିଲା, 'ରେ ମୂର୍ଖ, ମୁଁ ଗାନର ମାଧୁର୍ଯ୍ୟରେ ବଶୀଭୂତ ହୋଇ ସପ୍ରଶଂସ ଦୃଷ୍ଟିରେ କେବଳ ଚାହିଁ ରହିଥିଲି, କିନ୍ତୁ ବାସନାଯୁକ୍ତ ଦୃଷ୍ଟିରେ ନୁହେ । ତେଣୁ ମୋତେ ଅପମାନିତ କରିଥିବା ଯୋଗୁଁ ତୁମେ ଦୁହେଁ ମନୁଷ୍ୟ ଲୋକରେ ଯାଇ ଜନ୍ମଗ୍ରହଣ କରିବ ଏବଂ ତୁ ତୋର ଏହି ପତ୍ନୀ ପରପୁରୁଷ ସହ କ୍ରୀଡ଼ା କରୁଥିବା ସ୍ୱଚକ୍ଷୁରେ ଦର୍ଶନ କରିବୁ ।' ସେ ଏପରି କହୁଥିବା ସମୟରେ ମୁଁ କ୍ରୋଧାନ୍ୱିତ ହୋଇ ହାତରେ ଥିବା ମାଟିର ଏକ ଶ୍ୱେତହସ୍ତୀ କ୍ରୀଡ଼ନକଦ୍ୱାରା ତାକୁ ଆଘାତ କଲି । ସେଥିରେ ବିଚଳିତ ହୋଇ ସେ ଶାପ ଦେଲା ଯେ ମୁଁ ପରଜନ୍ମରେ ଏକ ଶ୍ୱେତହସ୍ତୀ ରୂପରେ ଜନ୍ମଗ୍ରହଣ କରିବି ।

ଏହାପରେ ତୁମେ ତାକୁ ବହୁ ଅନୁନୟ ବିନୟ କଲ । ଏଥିରେ ତାର କ୍ରୋଧ ଶାନ୍ତ ହେବାରୁ ସେ ପ୍ରସନ୍ନ ହୋଇ ଆମର ଶାପାନ୍ତ ଘୋଷଣା କରି କହିଲା, 'ଦେବପ୍ରଭ ପୃଥିବୀ ପୃଷ୍ଠରେ ଜନ୍ମଗ୍ରହଣ କଲେ ହେଁ ଭଗବାନ୍ ବିଷ୍ଣୁଙ୍କ କୃପାରୁ ଗୋଟିଏ ଦ୍ୱୀପରେ ରାଜା ହୋଇ ରହିବ ଏବଂ କନିଷ୍ଠ ଭ୍ରାତାକୁ ବାହନ ରୂପେ ପ୍ରାପ୍ତ ହେବ । ପୁଣି ତାର ଅଶୀସହସ୍ର ସ୍ତ୍ରୀ ଲାଭ ହେବ ଏବଂ ସମସ୍ତେ ଦୁଶ୍ଚରିତା ବୋଲି ଜନତା ସମ୍ମୁଖରେ ପ୍ରତିପାଦିତା ହେବେ । ଏହାପରେ ସେ ମନୁଷ୍ୟ ଯୋନିରେ ଜନ୍ମଗ୍ରହଣ କରିଥିବା ରାଜଦତ୍ତାର ପାଣିଗ୍ରହଣ କରିବ ଏବଂ ଅନ୍ୟ ପୁରୁଷ ସହ ତାକୁ ଶୟନ କରିଥିବା ସ୍ୱଚକ୍ଷୁରେ ଦର୍ଶନ କରିବ । ଫଳରେ ରାଜ୍ୟ ପରିତ୍ୟାଗ ପୂର୍ବକ, ସେ ବନକୁ ଯିବା ନିମନ୍ତେ ପ୍ରସ୍ତୁତ ହେବ । ଏହି ସମୟରେ ତୁମେ ତିନିହେଁ ମାନବଜନ୍ମରୁ ମୁକ୍ତିଲାଭ କରି ଗନ୍ଧର୍ବ ଲୋକକୁ ଫେରି ଆସିବ ।'

ବର୍ତ୍ତମାନ ଆମ୍ଭେମାନେ ଶାପରୁ ମୁକ୍ତି ଲାଭ କରିବା । ନିଜ ନିଜ କର୍ମଫଳରୁ ଆମ୍ଭେମାନେ ଭିନ୍ନ ଭିନ୍ନ ରୂପରେ ଓ ଭିନ୍ନ ଭିନ୍ନ ଯୋନିରେ ଜନ୍ମଗ୍ରହଣ କରିଥିଲେ । ଆଜି ଆମର ଶାପଗ୍ରସ୍ତ ଜୀବନର ଶେଷ ଦିବସ ।

ଏହା ଶୁଣି ରାଜା ରତ୍ନାଧିପ କହିଲେ, 'ମୁଁ ବର୍ତ୍ତମାନ ମୋର ପୂର୍ବଜନ୍ମ ସ୍ମରଣ କରିପାରୁଛି । ମୁଁ ହିଁ ସେହି ଦେବପ୍ରଭ ଥିଲି ଏବଂ ଏହି ରାଜଦତ୍ତା ରାଜବତୀ ଥିଲେ ।' ଏହା କହୁଥିବା ବେଳେ ରତ୍ନାଧିପ ଓ ରାଜଦତ୍ତା ନିଜର ମନୁଷ୍ୟ ଆବରଣ ପରିତ୍ୟାଗ କଲେ ଏବଂ ସମବେତ ଜନତାର ବିସ୍ମୟ ଉତ୍ପାଦନ କରି ତିନିଜଣ ଗନ୍ଧର୍ବ ରୂପ ଧାରଣ ପୂର୍ବକ ଆକାଶ ମାର୍ଗରେ ଅନ୍ତର୍ହିତ ହେଲେ । ଶୀଳବତୀ ମଧ୍ୟ ନିଜର ପାତିବ୍ରତ୍ୟ ଯୋଗୁଁ ପ୍ରଚୁର ସମ୍ପତ୍ତି ଲାଭକରି ତାମ୍ରଲିପ୍ତ ନଗରକୁ ପ୍ରତ୍ୟାବର୍ତ୍ତନ ପୂର୍ବକ ଧାର୍ମିକ ଜୀବନ ଯାପନ କଲେ ।

ଏହିପରି ସଂସାରରେ କେହି କେଉଁଠାରେ କୌଣସି ସ୍ତ୍ରୀକୁ ନିୟନ୍ତ୍ରଣ କରି ତାର ସତୀତ୍ୱକୁ ସୁରକ୍ଷା କରିବା ପାଇଁ ସମର୍ଥ ହୋଇନାହିଁ । କୁଳୀନ ରମଣୀମାନଙ୍କର ସୁଦୃଢ଼ ମନ ଓ ବିଶୁଦ୍ଧ ବୁଦ୍ଧି ହିଁ ସର୍ବଦା ତାଙ୍କୁ ରକ୍ଷା କରିଥାଏ । ନିୟନ୍ତ୍ରଣଦ୍ୱାରା ନାରୀମାନଙ୍କର ଉଚ୍ଛୃଙ୍ଖଳତା ବୃଦ୍ଧି ପାଇଥାଏ ମାତ୍ର ।

**ଇତି ଜଗତି ନ ରକ୍ଷିତୁଂ ସମର୍ଥଃ**
**କ୍ୱଚିଦପି କଶ୍ଚିଦପି ପ୍ରସହ୍ୟ ନାରୀମ୍**
**ଅବତି ତୁ ସତତଂ ବିଶୁଦ୍ଧ ଏକଃ**
**କୁଳଯୁବତୀଂ ନିଜସତ୍ତ୍ୱପାଶବନ୍ଧଃ ।**
**ଏବଂ ଚେର୍ଷ୍ୟା ନାମ ଦୁଃଖୈକହେତୁ**
**ର୍ଦୋଷଃ ପୁଂସାଂ ଦ୍ୱେଷଦାୟୀ ପରେଷାମ୍ ।**
**ଯୋଽୟଂ ମା ଭୂଦ୍ରକ୍ଷଣାୟାଙ୍ଗନାନା–**
**ମତ୍ୟୌତ୍ସୁକ୍ୟଂ ପ୍ରତ୍ୟୁତାସାଂ କରୋତି ॥**

ନରବାହନଦତ୍ତ ରାଣୀ ରତ୍ନପ୍ରଭାଙ୍କଠାରୁ ଏ ପ୍ରକାର ରସଯୁକ୍ତ କଥା ଶ୍ରବଣ କରି ମନ୍ତ୍ରୀମାନଙ୍କ ସହ ଯଥେଷ୍ଟ ଆନନ୍ଦ ଲାଭ କଲେ ।



# ତୃତୀୟ ତରଙ୍ଗ

ରତ୍ନପ୍ରଭାଙ୍କ କଥା ଶେଷ ହେବାରୁ ନରବାହନଦତ୍ତଙ୍କ ମନ୍ତ୍ରୀ ଗୋମୁଖ କହିଲେ, 'ଅବଶ୍ୟ ଏହା ସତ୍ୟ ଯେ ସଚ୍ଚରିତ୍ରା ନାରୀ ପୃଥିବୀରେ ବିରଳ । ସ୍ତ୍ରୀମାନେ ସାଧାରଣତଃ ଚଞ୍ଚଳପ୍ରକୃତିବିଶିଷ୍ଟା ଏବଂ ଆଦୌ ବିଶ୍ୱାସଯୋଗ୍ୟା ନୁହନ୍ତି । ଏ ପ୍ରସଙ୍ଗରେ ମୁଁ ମଧ୍ୟ ଗୋଟିଏ କଥା କହୁଛି, ଶୁଣନ୍ତୁ–

## ନିଶ୍ଚୟଦତ୍ତ ଓ ଅନୁରାଗପରା କଥା

ଉଜ୍ଜୟିନୀ ନଗରୀ ବିଶ୍ୱବିଖ୍ୟାତ । ପ୍ରାଚୀନ କାଳରେ ସେଠାରେ ନିଶ୍ଚୟଦତ୍ତ ନାମକ କୌଣସି ବଣିକପୁତ୍ର ବାସ କରୁଥିଲା । ଦ୍ୟୂତକ୍ରୀଡ଼ା ତାର ଏକମାତ୍ର ବିଳାସ ଥିଲା । ପ୍ରତ୍ୟହ ସେ ଶିପ୍ରା ନଦୀରେ ସ୍ନାନ ସାରି ଏବଂ ମହାକାଳେଶ୍ୱର ଶିବଙ୍କର ଉପାସନା କରି ଏହି ଦ୍ୟୂତକ୍ରୀଡ଼ାରୁ ଲବ୍ଧ ପ୍ରଭୂତ ଅର୍ଥ ଦୀନ, ଦରିଦ୍ର ଓ ବ୍ରାହ୍ମଣମାନଙ୍କୁ ଦାନ ଦେବା ପରେ ଅବଶିଷ୍ଟ ଅର୍ଥ ନିଜର ଭୋଗ ବିଳାସପାଇଁ ବିନିଯୋଗ କରୁଥିଲା ।

ନିଶ୍ଚୟଦତ୍ତ ପ୍ରତିଦିନ ସ୍ନାନ, ଉପସନା ପ୍ରଭୃତି ଶେଷକରି ମହାକାଳ ମନ୍ଦିର ନିକଟସ୍ଥ ଶ୍ମଶାନକୁ ଯାଇ ନିଜ ଶରୀରରେ ଚନ୍ଦନ ଲେପନ କରୁଥିଲା । ତା'ପରେ ଶ୍ମଶାନ ମଧ୍ୟରେ ଥିବା ଏକ ପ୍ରସ୍ତର ସ୍ତମ୍ଭକୁ ଚନ୍ଦନଦ୍ୱାରା ଲିପ୍ତ କରି ସେଥିରେ ନିଜର ପୃଷ୍ଠ ଦେଶ ଘର୍ଷଣ କରୁଥିଲା । ପ୍ରତିଦିନ ଏପରି କରିବା ଫଳରେ ସ୍ତମ୍ଭଟି କ୍ରମେ ଅତି ସୁନ୍ଦର ଓ ମସୃଣ ହୋଇ ଉଠିଲା । ଦିନେ ଜଣେ ଚିତ୍ରକର ଓ ଜଣେ ମୂର୍ତ୍ତିକାର ସେହି ପଥ ଦେଇ ଯାଉଥାଆନ୍ତି । ସ୍ତମ୍ଭଟିକୁ ଅତି ମସୃଣ ଦେଖି ଚିତ୍ରକର ସେଥିରେ ପାର୍ବତୀଙ୍କର ଏକ ମୂର୍ତ୍ତି ଅଙ୍କନ କଲା ଏବଂ ମୂର୍ତ୍ତିକାର ତାକୁ ନିହାଣ ମୁଗୁରରେ ରୂପ ଦେଲା । ସେମାନେ ନିଜର କାର୍ଯ୍ୟ ସମାପ୍ତ କରି ଗନ୍ତବ୍ୟ ପଥରେ ଚାଲିଯିବା ପରେ ଜଣେ ବିଦ୍ୟାଧର କୁମାରୀ ଆସି ସେଠାରେ ଉପସ୍ଥିତ ହେଲା । ସ୍ତମ୍ଭଟିକୁ ପାର୍ବତୀଙ୍କର ବାସସ୍ଥଳୀ ମନେକରି କନ୍ୟାଟି ମହାକାଳଙ୍କ ଉପାସନା ଶେଷରେ ସେଥିରେ ଆସି ଅଦୃଶ୍ୟ ରୂପରେ ପ୍ରବେଶ କଲା ।

କିଛି ସମୟ ପରେ ବଣିକପୁତ୍ର ନିଶ୍ଚୟଦତ୍ତ ଆସି ଅଭ୍ୟାସ ଅନୁଯାୟୀ ମହାକାଳଙ୍କ ଉପାସନା ଶେଷକଲା ଏବଂ ଉକ୍ତ ସ୍ତମ୍ଭରେ ଗୌରୀମୂର୍ତ୍ତି ଖୋଦିତ ହୋଇଥିବା ଦେଖି ତାର ଅପର ପାର୍ଶ୍ୱରେ ଚନ୍ଦନ ଲେପନ କରି ନିଜର ପୃଷ୍ଠ ଦେଶ ସେଥିରେ ଘର୍ଷଣ କରିବାକୁ ଲାଗିଲା । ଏହି ସମୟରେ ବିଦ୍ୟାଧର କନ୍ୟା ଚଞ୍ଚଳାକ୍ଷୀର ଦୃଷ୍ଟି ତା'ଉପରେ ନିବଦ୍ଧ ହେଲା । ନିଶ୍ଚୟଦତ୍ତର ରୂପରେ ମୋହିତା ହୋଇ ସେ ଚିନ୍ତା କଲା ଯେ ଏହାଙ୍କର ପୃଷ୍ଠ ଦେଶରେ ଚନ୍ଦନ ଲେପନ କରିବା ପାଇଁ କେହି ନଥିବାରୁ ସେ ବୋଧହୁଏ ଏପରି କରୁଅଛନ୍ତି; ତେଣୁ ମୁଁ ସ୍ୱହସ୍ତରେ ଏହା ସଂସାଧନ କରିବି । ଏପରି ଚିନ୍ତା କରି ସେ ସ୍ତମ୍ଭ ମଧ୍ୟରେ ରହି ସ୍ୱହସ୍ତରେ ନିଶ୍ଚୟଦତ୍ତର ପୃଷ୍ଠରେ ଚନ୍ଦନ ଲେପନ କରିବାକୁ ଲାଗିଲା ।

ନିଜର ପୃଷ୍ଠ ଦେଶରେ କୋମଳ ସ୍ପର୍ଶ ଅନୁଭବ କରି ଏବଂ ଚୁଡ଼ିର ରୁଣୁଝୁଣୁ ଶବ୍ଦ ଶୁଣି ନିଶ୍ଚୟଦତ୍ତ ଚଞ୍ଚଳାକ୍ଷୀର ହସ୍ତଯୁଗଳ ଧରି ନେଲା । ଏଥିରେ ବିବ୍ରତା ଚଞ୍ଚଳାକ୍ଷୀ ସ୍ତମ୍ଭ ମଧ୍ୟରେ ଥାଇ କହିଲା, 'ହେ ମହାଭାଗ, ମୁଁ ତୁମର କି ଅପରାଧ କଲି ଯେ ତୁମେ ମୋତେ ଏପରି ଧରି ରଖିଛ । ମୋତେ ମୁକ୍ତି ଦିଅ ।' ଏଥିରେ ବଣିକପୁତ୍ର କହିଲା, 'ତୁମେ ମୋର ସମ୍ମୁଖକୁ ଆସି ନିଜର ପରିଚୟ ପ୍ରଦାନ କଲେ ମୁଁ ତୁମକୁ ମୁକ୍ତି ଦେବି ।' ବିଦ୍ୟାଧରୀ ଶପଥ ପୂର୍ବକ ନିଜର ପରିଚୟ ପ୍ରଦାନ କରିବାର ପ୍ରତିଶ୍ରୁତି ଦେବାରୁ ନିଶ୍ଚୟଦତ୍ତ ତାର ହସ୍ତ ଶିଥିଳ କରିଦେଲା ।

ଏହାପରେ ଚଞ୍ଚଳାକ୍ଷୀ ପ୍ରୀତିପୂର୍ଣ୍ଣ ଦୃଷ୍ଟିରେ ନିଶ୍ଚୟଦତ୍ତ ସମ୍ମୁଖକୁ ଆସି ନିଜର ପରିଚୟ ଦେବାକୁ ଯାଇ କହିଲା, ହିମାଳୟର ଶୀର୍ଷଦେଶରେ ପୁଷ୍କରାବତୀ ବୋଲି ଗୋଟିଏ ନଗରୀ ଅଛି । ସେହି ନଗରୀରେ ବିନ୍ଧ୍ୟପର ନାମକ ଜଣେ ବିଦ୍ୟାଧର ରାଜତ୍ୱ କରନ୍ତି । ମୁଁ ତାଙ୍କର କନ୍ୟା ଅନୁରାଗପରା । ଆଜି ମୁଁ ଭଗବାନ୍ ମହାକାଳେଶ୍ୱରଙ୍କ ଉପାସନା ନିମିତ୍ତ ଏଠାକୁ ଆସିଥିଲି । ଏହି ସ୍ତମ୍ଭ ମଧ୍ୟରେ କିଛି ସମୟ ପାଇଁ ବିଶ୍ରାମ କରୁଥିବା ବେଳେ ତୁମର କନ୍ଦର୍ପ ସୁନ୍ଦର ରୂପ ମୋତେ ମୁଗ୍ଧ କଲା । ତୁମର ପୃଷ୍ଠ ଦେଶରେ ଚନ୍ଦନ ଲେପନ କରୁଥିବା ସମୟରେ ପ୍ରଥମ ଅନୁରାଗ ତୁଲ୍ୟ ତୁମେ ମୋର ହାତ ଧରିନେଲ ! ବର୍ତ୍ତମାନ ମୁଁ ବିଦାୟ ନେଉଅଛି ।' ଏହା ଶୁଣି ନିଶ୍ଚୟଦତ୍ତ କହିଲା, 'ମୁଁ ତୁମର ବାସସ୍ଥଳୀର ସନ୍ଧାନ ଲାଭ କଲି । ଅପହରଣ କରି ନେଇଥିବା ମୋର ହୃଦୟକୁ ବର୍ତ୍ତମାନ ସୁଦ୍ଧା ତୁମେ ମୋତେ ପ୍ରତ୍ୟର୍ପଣ କରିନାହଁ । ତାକୁ ସଙ୍ଗରେ ନେଇ ତୁମେ ଯିବ କିପରି ?'

ବଣିକପୁତ୍ରଠାରୁ ଏହା ଶୁଣି ପ୍ରେମବିହ୍ୱଳା ଅନୁରାଗପରା ଉତ୍ତରରେ କହିଲା, 'ତୁମେ ଯଦି ଆମ ନଗରୀକୁ ଆସ ତାହାହେଲେ ସେଠାରେ ଆମ୍ଭମାନଙ୍କର ମିଳନ ହେବ । କିନ୍ତୁ ସେ ନଗରୀ ଅତ୍ୟନ୍ତ ଦୁର୍ଗମ । ତେଣୁ ତୁମର ଅଭିଳାଷ ପୂର୍ଣ୍ଣ ନ ହୋଇପାରେ । ଅବଶ୍ୟ ଉଦ୍ୟୋଗୀ ପୁରୁଷମାନଙ୍କ ପକ୍ଷରେ କୌଣସି କର୍ମ ଦୁଷ୍କର ବା ଅସମ୍ଭବ ନୁହେ ।'

**ନ ହି ଦୁଷ୍କରମସ୍ତୀହ କିଞ୍ଚିଦଧ୍ୟବସାୟିନାମ୍ ।**

ଏହା କହି ସେ ଆକାଶ ମାର୍ଗରେ ସ୍ୱପୁର ଅଭିମୁଖରେ ଯାତ୍ରା କଲା ।

ନିଶ୍ଚୟଦତ୍ତ ବିଦ୍ୟାଧର କନ୍ୟା ଫେରିଯିବା ପରେ ତାରି କଥା ଭାବି ଭାବି ନିଜ ଗୃହରେ ଉପସ୍ଥିତ ହେଲା । ଅନୁରାଗପରାର ହସ୍ତଧାରଣ କରି ମଧ୍ୟ ତା ସହ ଗାନ୍ଧର୍ବ ରୀତିରେ ବିବାହ ନ କରିଥିବା ଯୋଗୁଁ ସେ ଅନୁତପ୍ତ ହେଲା ଏବଂ ପୁଷ୍କରାବତୀ ନଗରୀକୁ ଯିବା ପାଇଁ ପ୍ରତିଜ୍ଞା କଲା । ଏଥିରେ ବିଫଳ ମନୋରଥ ହେଲେ ପ୍ରାଣ ବିସର୍ଜନ କରିବା ନିମନ୍ତେ ମଧ୍ୟ ସେ କୃତସଂକଳ୍ପ ହେଲା ।

ଏହିପରି ପ୍ରତିଜ୍ଞା କରି କୌଣସିମତେ ଉକ୍ତ ଦିନଟି ବିତାଇ ଦେଇ ନିଶ୍ଚୟଦତ୍ତ ପରଦିନ ପ୍ରାତଃକାଳରୁ ଉତ୍ତର ଦିଗରେ ଯାତ୍ରା ଆରମ୍ଭ କଲା । ପଥମଧ୍ୟରେ ଉତ୍ତରାପଥକୁ ଯାଉଥିବା ଅନ୍ୟ ତିନିଜଣ ଯାତ୍ରୀଙ୍କ ସହ ତାର ସାକ୍ଷାତ ହେଲା । ଏମାନଙ୍କ ସହ ବହୁ ନଦୀ, ନାଳ, ବଣ, ପାହାଡ଼ ଅତିକ୍ରମ କରି ସେ ପ୍ରଥମେ ଉତ୍ତର ଦିଗରେ ଥିବା ମ୍ଲେଚ୍ଛମାନଙ୍କ ରାଜ୍ୟରେ ଆସି ଉପସ୍ଥିତ ହେଲା । ସେଠାରେ ସେ ଅନ୍ୟ ସହଯାତ୍ରୀଙ୍କ ସହ ତାଜିକ୍‌ମାନଙ୍କ ଦ୍ୱାରା ଆକ୍ରାନ୍ତ ହେଲା । ତନ୍ମଧ୍ୟରୁ ଜଣେ ତାଜିକ୍ ଉପଯୁକ୍ତ ମୂଲ୍ୟରେ ସେମାନଙ୍କୁ ଅନ୍ୟ ଜଣେ ତାଜିକ୍‌କୁ ବିକ୍ରୀ କରିଦେଲା । ସେ ଏମାନଙ୍କୁ କ୍ରୟ କରି ଭୃତ୍ୟ ସହିତ ମୁରବାର ନାମକ ଜଣେ ତୁର୍କୀ ନିକଟକୁ ଉପହାର ସ୍ୱରୂପ ପ୍ରେରଣ କଲା । ଭୃତ୍ୟ ଏମାନଙ୍କୁ ନେଇ ତା ନିକଟରେ ଉପସ୍ଥିତ ହେବା ବେଳକୁ ସେ ମୃତ୍ୟୁଲାଭ କରିଥାଏ । ତେଣୁ ଭୃତ୍ୟଟି ଏମାନଙ୍କୁ ତାର ପୁତ୍ର ହସ୍ତରେ ସମର୍ପଣ କରି ଦେଇ ଫେରି ଆସିଲା । ସେହି ତୁର୍କୀର ପୁତ୍ର, 'ମୋର ପିତାଙ୍କ ନିକଟକୁ ତାର ମିତ୍ର ଉପହାର ସ୍ୱରୂପ ପଠାଇ ଥିବାରୁ, ଏମାନଙ୍କୁ ପିତାଙ୍କ ନିକଟରେ କବର ଦେଇଦେବା ଉଚିତ' ବୋଲି ଚିନ୍ତା କରି ସେମାନଙ୍କର ହସ୍ତପଦ ବନ୍ଧନ ପୂର୍ବକ ଗୋଟିଏ କୋଠରି ମଧ୍ୟରେ ନେଇ ନିକ୍ଷେପ କଲା ।

ଦୃଢ଼ବନ୍ଧନ ମଧ୍ୟରେ ରହି ଅନ୍ୟ ତିନିଜଣ ବଣିକପୁତ୍ର ମୃତ୍ୟୁ ଭୟରେ ବ୍ୟାକୁଳ ହୋଇ ଉଠିବାରୁ ନିଶ୍ଚୟଦତ୍ତ ଧୈର୍ଯ୍ୟ ପ୍ରଦାନପୂର୍ବକ କହିଲା, 'ଦୁଃଖ ଓ ଶୋକ କରି

ଲାଭ କ'ଣ ? ଧୈର୍ଯ୍ୟର ସହ ଅପେକ୍ଷା କର । ସାହସୀ ଲୋକମାନଙ୍କର ବିପତ୍ତି ଆପେ ଆପେ ଦୂରୀଭୂତ ହୋଇଯାଇଥାଏ ।'

**ଭୀତା ଇବ ହି ଧୀରାଣାଂ ଦୂରେ ଯାନ୍ତି ବିପତ୍ତୟଃ ।**

ସେମାନଙ୍କୁ ଏହିପରି ଆଶ୍ୱାସନା ପ୍ରଦାନ କରି ନିଶ୍ଚୟଦତ୍ତ ସଙ୍କଟତାରିଣୀ ଭଗବତୀ ଦୁର୍ଗାଙ୍କୁ ସ୍ମରଣ କଲା–'ହେ ଦେବି, ଅସୁରମାନଙ୍କର ରକ୍ତ ତୁମର ପଦଯୁଗଳରେ ଅଲକ୍ତକ ତୁଲ୍ୟ ଶୋଭା ପାଉଅଛି । ବିଶ୍ୱବାସୀଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରିବାରେ ତୁମେ ତୁମର ପତି ଶିବଙ୍କୁ ମଧ୍ୟ ଜୟ କରିପାରିଛ । ତୁମର ସକ୍ରିୟ ପ୍ରେରଣାଦ୍ୱାରା ହିଁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆତଯାତ ହେଉଅଛି । ଆମ୍ଭେମାନେ ଆର୍ତ୍ତଭାବରେ ତୁମର ସ୍ମରଣ କରୁଅଛୁ । ହେ ମହିଷାସୁରମର୍ଦ୍ଦିନି, ହେ ସଂସାରତ୍ରାଣକାରିଣି, ହେ ଭକ୍ତ ବତ୍ସଳେ ! ଆମ୍ଭମାନଙ୍କୁ ଏହି ବିପତ୍ତିରୁ ଉଦ୍ଧାର କର ।'

**ନମସ୍ତୁଭ୍ୟଂ ମହାଦେବି ପାଦୌ ତେ ଯାବକାଙ୍କିତୌ ।**
**ମୃଦିତାସୁରଲଗ୍ନାସ୍ରପଙ୍କାବିବ ନମାମ୍ୟହମ୍ ।।**

**ଜିତଂ ଶକ୍ତ୍ୟା ଶିବସ୍ୟାପି ବିଶ୍ୱୈଶ୍ୱର୍ଯକୃତା ତ୍ୱୟା ।**
**ତ୍ୱଦନୁପ୍ରାଣିତଂ ଚେଦଂ ଚେଷ୍ଟତେ ଭୁବନତ୍ରୟମ୍ ।।**

**ପରିତ୍ରାତସ୍ତ୍ୱୟା ଲୋକା ମହିଷାସୁରସୂଦିନୀ ।**
**ପରିତ୍ରାୟସ୍ୱ ମାଂ ଭକ୍ତବତ୍ସଳେ ଶରଣାଗତମ୍ ।।**

ଏହିପରି ସ୍ତୁତି କରୁଥିବା ବେଳେ କ୍ଳାନ୍ତି ଓ ଏକାଗ୍ରତାରୁ ସେମାନଙ୍କ ଆଖିକୁ ନିଦ ଆସିଗଲା । ଦେବୀ ସେମାନଙ୍କୁ ସ୍ୱପ୍ନରେ କହିଲେ, 'ଉଠ, ତୁମେ ବର୍ତ୍ତମାନ ବନ୍ଧନମୁକ୍ତ ।' ସେମାନେ ଜାଗ୍ରତ ହୋଇ ଦେଖିଲେ ଯେ ପ୍ରକୃତରେ ସେମାନଙ୍କର ବନ୍ଧନ ଛିନ୍ନ ହୋଇଯାଇଛି । ପରସ୍ପର ମଧ୍ୟରେ ସ୍ୱପ୍ନ ବୃତ୍ତାନ୍ତ ସମ୍ପର୍କରେ କଥାବାର୍ତ୍ତା ହୋଇ ସେମାନେ ସେଠାରୁ ଯଥାଶୀଘ୍ର ପଳାୟନ କଲେ । ସକାଳ ହେବାରୁ ନିଶ୍ଚୟଦତ୍ତକୁ ଅନ୍ୟମାନେ କହିଲେ ଯେ ଉତ୍ତର ଦିଗ ମ୍ଳେଚ୍ଛମାନଙ୍କଦ୍ୱାରା ପରିପୂର୍ଣ୍ଣ । ତେଣୁ ଆମ୍ଭେମାନେ ସେ ଦିଗକୁ ଅଧିକ ଅଗ୍ରସର ନ ହୋଇ ଦକ୍ଷିଣାପଥ ପ୍ରତି ଗତିପଥ ପରିବର୍ତ୍ତନ କରିବା ଶ୍ରେୟସ୍କର ହେବ । କିନ୍ତୁ ନିଶ୍ଚୟଦତ୍ତ ସେମାନଙ୍କ ପ୍ରସ୍ତାବରେ ସମ୍ମତ ନ ହେବାରୁ ସେମାନେ ତାକୁ ସେଠାରେ ପରିତ୍ୟାଗ କରି ଦକ୍ଷିଣ ଦିଗକୁ ଅଗ୍ରସର ହେଲେ ।

ନିଶ୍ଚୟଦତ୍ତ ବିଦ୍ୟାଧରୀ ଚିନ୍ତାରେ ନିମଜ୍ଜିତ ରହି ଏକାକୀ ଉତ୍ତର ଦିଗକୁ ଯାତ୍ରା କଲା । ପଥ ମଧ୍ୟରେ ଚାରିଜଣ କାପାଳିକଙ୍କ ସହ ତାର ପରିଚୟ ହେଲା । ସେମାନଙ୍କ ସହିତ ବିତସ୍ତା ନଦୀ ପାର ହୋଇ ସୂର୍ଯ୍ୟାସ୍ତ ସମୟରେ ସେ ଏକ ଅରଣ୍ୟ ମଧ୍ୟରେ ପ୍ରବେଶ କଲା । ବିପରୀତ ଦିଗରୁ ଆସୁଥିବା କେତେଜଣ କାଷ୍ଠଜୀବୀ ସେମାନଙ୍କୁ ଦେଖି କହିଲେ, 'ସେ ଦିଗରେ କୌଣସି ଜନବସତି ନାହିଁ । ଏହି ନିର୍ଜନ ଅରଣ୍ୟ ମଧ୍ୟରେ କେବଳ ଏକମାତ୍ର ଶିବାଳୟ ଅଛି । ତାର ବାହାରେ ବା ଭିତରେ ଯିଏ ରାତ୍ରିଯାପନ କରେ ତାକୁ ଶୃଙ୍ଗୋତ୍ପାଦିନୀ ନାମ୍ନୀ ଏକ ଯକ୍ଷିଣୀ ପଶୁରେ ପରିଣତ କରେ, ଏବଂ ତାର ମସ୍ତକରୁ ଶୃଙ୍ଗ ଜାତ କରାଇ ଭକ୍ଷଣ କରେ ।' ସେମାନେ ଏହା କହିବା ସତ୍ତ୍ୱେ କାପାଳିକମାନେ ନିଶ୍ଚୟଦତ୍ତକୁ କହିଲେ, 'ଆସ, ଏହି ମୂର୍ଖମାନଙ୍କ କଥାରେ ଆମେ ଭୟଭୀତ ହେବା ଉଚିତ ନୁହେଁ । ମହା ମହା ଶ୍ମଶାନରେ ଆମେ କେତେ ରାତ୍ରିଯାପନ କରିଛୁ । ଏ ଯକ୍ଷିଣୀ ବା ଆମର କ'ଣ କରିବ ?'

ନିଶ୍ଚୟଦତ୍ତକୁ ଏହିପରି ପ୍ରୋତ୍ସାହିତ କରି ସେମାନେ ରାତ୍ରିଯାପନ ନିମିତ୍ତ ସେହି ଶୂନ୍ୟ ଶିବାଳୟ ମଧ୍ୟରେ ପ୍ରବେଶ କଲେ । ମନ୍ଦିର ପ୍ରାଙ୍ଗଣରେ ଭସ୍ମଦ୍ୱାରା ଏକ ମଣ୍ଡଳ ନିର୍ମାଣ ପୂର୍ବକ ତା' ମଧ୍ୟରେ ଅଗ୍ନି ପ୍ରଜ୍ୱଳିତ କରି ସେମାନେ ଯକ୍ଷିଣୀ ଭୟରେ ମନ୍ତ୍ରଜପ କରିବାକୁ ଲାଗିଲେ । କିଛି ସମୟ ପରେ ନରକଙ୍କାଳ ନିର୍ମିତ ବୀଣାବାଦନ ପୂର୍ବକ ନୃତ୍ୟରତା ଶୃଙ୍ଗୋତ୍ପାଦିନୀ ଯକ୍ଷିଣୀ ଆସି ସେଠାରେ ଉପସ୍ଥିତ ହେଲା । ସେ ପ୍ରତ୍ୟେକଙ୍କ ଦୃଷ୍ଟିରେ ନିଜର ଦୃଷ୍ଟି ମିଳାଇ ମଣ୍ଡଳବାହାରେ ନୃତ୍ୟ କରିବା ସହ ମନ୍ତ୍ରପାଠ କରିବାକୁ ଲାଗିଲା । ଫଳରେ ଏମାନଙ୍କ ମଧ୍ୟରୁ ଜଣକର ମସ୍ତକରେ କ୍ରମେ କ୍ରମେ ଶୃଙ୍ଗ ଜାତ ହେଲା ଏବଂ ସେ ନାଚି ନାଚି ଆସି ଅଗ୍ନି ମଧ୍ୟରେ ଢଳିପଡ଼ିଲା । ତାର ଶରୀର ସେହି ଅଗ୍ନିରେ ଦଗ୍ଧୀଭୂତ ହେଉଥିବା ସମୟରେ ସେହି ଅର୍ଦ୍ଧଦଗ୍ଧ ଶବଟିକୁ ଆନନ୍ଦରେ ଭକ୍ଷଣ କରି ଯକ୍ଷିଣୀ ପୁଣି ମନ୍ତ୍ରପାଠ ଓ ବୀଣାବାଦନ ପୂର୍ବକ ନୃତ୍ୟ କରିବାକୁ ଲାଗିଲା । ଫଳରେ ଦ୍ୱିତୀୟ କାପାଳିକର ମସ୍ତକରେ କ୍ରମେ କ୍ରମେ ଶୃଙ୍ଗ ଜାତ ହେଲା ଏବଂ ସେ ମଧ୍ୟ ପ୍ରଥମ ତୁଲ୍ୟ ଯାଇ ଅଗ୍ନି ମଧ୍ୟରେ ନିପତିତ ହେଲା । ଏହିପରି ଚାରୋଟିଯାକ କାପାଳିକ ଗୋଟି ଗୋଟି ହୋଇ ଯକ୍ଷିଣୀର ଖାଦ୍ୟରେ ପରିଣତ ହେଲେ ।

କିନ୍ତୁ ଚତୁର୍ଥ କାପାଳିକର ଅର୍ଦ୍ଧଦଗ୍ଧ ଶରୀରକୁ ଭକ୍ଷଣ କରୁଥିବା ସମୟରେ ଯକ୍ଷିଣୀ ମାଂସ ଭକ୍ଷଣ ଓ ରକ୍ତ ପାନରେ ଉନ୍ମତ୍ତା ହୋଇ ସୌଭାଗ୍ୟବଶତଃ ନିଜର କଙ୍କାଳନିର୍ମିତ ବୀଣାଟିକୁ ଭୂମି ଉପରେ ରଖି ଦେଲା । ଏହା ଦେଖି କାଳବିଳମ୍ବ ନ କରି

ନିଶ୍ଚୟଦତ୍ତ ବୀଣାଟିକୁ ଉଠାଇ ନେଇ ଯକ୍ଷିଣୀ ପରି ଗୀତଗାନ କରି ମଣ୍ଡଳର ଚତୁର୍ଦ୍ଦିଗରେ ଘୂରି ଘୂରି ନାଚିବାକୁ ଲାଗିଲା । ସେ ଜପ କରୁଥିବା ମନ୍ତ୍ରଟିକୁ ଏ ମଧ୍ୟରେ ନିଶ୍ଚୟଦତ୍ତ ମନସ୍ଥ କରି ନେଇଥିବାରୁ ସେହି ମନ୍ତ୍ର ଉଚ୍ଚାରଣ କରି ଯେତେବେଳେ ଯକ୍ଷିଣୀର ମୁଖକୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଲା, ସେତେବେଳେ ଯକ୍ଷିଣୀର ମସ୍ତକରୁ ମୃତ୍ୟୁଦୂତ ତୁଲ୍ୟ ଶୃଙ୍ଗ ଜାତ ହେବାକୁ ଲାଗିଲା । ଶୃଙ୍ଗଉତ୍ପାଦିନୀ ନିଜର ମୃତ୍ୟୁ ସୁନିଶ୍ଚିତ ଜାଣି ନମ୍ରତାର ସହିତ ବଣିକ ପୁତ୍ରକୁ କହିଲା, 'ମହାଭାଗ, ତୁମେ ଏହି ଅବଳା ନାରୀଟିକୁ ହତ୍ୟା କରନାହିଁ । ମୁଁ ବର୍ତ୍ତମାନ ତୁମର ଶରଣାପନ୍ନ ।' ତଥାପି ନିଶ୍ଚୟଦତ୍ତ ମନ୍ତ୍ରପାଠ ବନ୍ଦ ନ କରିବା ଦେଖି ସେ ପୁଣି ବ୍ୟାକୁଳ ଭାବେ ଅନୁରୋଧ କଲା, 'ମୋତେ ରକ୍ଷା କର, ମୁଁ ତୁମର ସମସ୍ତ ବିଷୟ ଜାଣିପାରିଛି । ତୁମର ଅଭିପ୍ରାୟ ମଧ୍ୟ ମୋତେ ଅଜଣା ନୁହେଁ । ଅନୁରାଗପରା ଯେଉଁଠାରେ ଅବସ୍ଥାନ କରୁଛି, ମୁଁ ତୁମକୁ ସେଠାରେ ପହଞ୍ଚାଇ ଦେବି ।' ଏହି ବିଶ୍ୱାସପୂର୍ଣ୍ଣ ଆକୁଳ ଅନୁରୋଧ ଶୁଣି ନିଶ୍ଚୟଦତ୍ତ ମନ୍ତ୍ରପାଠ ବନ୍ଦ ରଖି ଯକ୍ଷିଣୀର ସ୍କନ୍ଧରେ ଆରୋହଣ କରି ଅନୁରାଗପରା ରହୁଥିବା ଦିଗରେ ଅଗ୍ରସର ହେଲା ।

ରାତ୍ରୀ ଶେଷ ହେବା ବେଳକୁ ସେମାନେ ଏକ ପାର୍ବତ୍ୟ ଅରଣ୍ୟ ନିକଟରେ ଆସି ପହଞ୍ଚିଲେ । ସେଠାରେ ଶୃଙ୍ଗଉତ୍ପାଦିନୀ ଯକ୍ଷିଣୀ ବିନମ୍ର ଭାବରେ ନିଶ୍ଚୟଦତ୍ତକୁ କହିଲା, 'ମହାଭାଗ, ସୂର୍ଯ୍ୟ ଉଦୟ ହେବାରୁ ଆଉ ଉପରକୁ ଯିବାର ଶକ୍ତି ମୋର ନାହିଁ । ତେଣୁ ତୁମେ ଏହି ରମଣୀୟ ଅରଣ୍ୟ ମଧ୍ୟରେ ସୁମିଷ୍ଟ ଓ ସୁପକ୍ୱ ଫଳ ଭୋଜନ କରି ଏବଂ ନିକଟସ୍ଥ ସ୍ୱଚ୍ଛ ନିର୍ଝରିଣୀରୁ ଜଳପାନ କରି ଦିନଟି ଏଠାରେ ବିତାଇ ଦିଅ । ମୁଁ ବର୍ତ୍ତମାନ ମୋର ଗୃହକୁ ଫେରିଯାଇ ପୁଣି ସୂର୍ଯ୍ୟାସ୍ତ ପରେ ଏଠାରେ ଆସି ଉପସ୍ଥିତ ହେବି ଏବଂ ତୁମକୁ ଅନୁରାଗପରା ରହୁଥିବା ପୁଷ୍କରାବତୀ ନଗରୀରେ ନେଇ ପହଞ୍ଚାଇ ଦେବି ।' ଏହା କହି ଯକ୍ଷିଣୀ ବଣିକପୁତ୍ରକୁ ସ୍କନ୍ଧରୁ ଅବତରଣ କରାଇ ନିଜର ବାସଗୃହ ଅଭିମୁଖରେ ପ୍ରସ୍ଥାନ କଲା ।

ଶୃଙ୍ଗଉତ୍ପାଦିନୀ ଫେରିଯିବା ପରେ ନିଶ୍ଚୟଦତ୍ତ ସେଠାରେ ଏକ ସ୍ୱଚ୍ଛ ଓ ଶୀତଳ ଜଳାଶୟ ଦେଖିବାକୁ ପାଇଲା । କିନ୍ତୁ ଏହାର ଜଳରାଶି ବାହାରକୁ ନିର୍ମଳ ଓ ଶୀତଳ ଜଣା ଯାଉଥିଲେ ହେଁ ଅତ୍ୟନ୍ତ ବିଷାକ୍ତ ଥିଲା । ତାର ମନେ ହେଲା ସୂର୍ଯ୍ୟଦେବ ଯେପରି ତାଙ୍କର କିରଣ ରୂପକ ହସ୍ତଦ୍ୱାରା ଉକ୍ତ ପୁଷ୍କରିଣୀଟିକୁ ଦେଖାଇ ତାକୁ କହୁଛନ୍ତି ଯେ ସ୍ତ୍ରୀମାନଙ୍କର ସ୍ୱଭାବ ଏହିପରି ଭିତରେ ବିଷମୟ ଏବଂ ବାହାରେ ପ୍ରୀତିମୟ । ଜଳର ଗନ୍ଧରୁ ବଣିକପୁତ୍ର ଜଳ ବିଷାକ୍ତ ଥିବା ଜାଣିପାରି ଅନ୍ୟତ୍ର ଜଳର ଅନୁସନ୍ଧାନ କରିବା

ପାଇଁ ଏଣେତେଣେ ଘୂରିବାକୁ ଲାଗିଲା । କିଛିଦୂର ଅଗ୍ରସର ହେବା ପରେ ପର୍ବତର ଏକ ଉଚ୍ଚ ମୃତ୍ତିକା ସ୍ତୂପ ମଧ୍ୟରେ ପଦ୍ମରାଗମଣି ତୁଲ୍ୟ ଦେଦୀପ୍ୟମାନ ଦୁଇଟି ଆଲୋକ ବିନ୍ଦୁ ତାର ଦୃଷ୍ଟିଗୋଚର ହେଲା । ସେ ଏହାର ତଥ୍ୟ ଜାଣିବା ନିମିତ୍ତ ଯେତେବେଳେ ସେହି ସ୍ଥାନଟି ଖୋଳିବାକୁ ଲାଗିଲା ସେତେବେଳେ ଗୋଟିଏ ଜୀବିତ ବାନରର ମସ୍ତକ ତାର କୌତୂହଳ ବୃଦ୍ଧି କଲା । ସେ ଆଉ ଅଧିକ ଖୋଳିବ କି ନାହିଁ ଚିନ୍ତା କରୁଥିବା ବେଳେ ଉକ୍ତ ବାନର ମନୁଷ୍ୟ ସ୍ୱରରେ ତାକୁ କହିଲା, 'ହେ ସଜ୍ଜନ ! ମୁଁ ଜଣେ ବ୍ରାହ୍ମଣ । ଦୁର୍ଭାଗ୍ୟବଶତଃ ବାନର ରୂପ ଧାରଣ କରିଅଛି । ଏଥିରୁ ଉଦ୍ଧାର କଲେ ମୋର ସମଗ୍ର ବୃତ୍ତାନ୍ତ ତୁମ ନିକଟରେ ବ୍ୟକ୍ତ କରିବି ।'

ଏହା ଶୁଣି ଆଶ୍ଚର୍ଯ୍ୟଚକିତ ନିଶ୍ଚୟଦତ୍ତ ସାବଧାନତା ସହ ଭୂମି ଖୋଦନ କରି ବାନରଟିକୁ ଭୂଗର୍ଭରୁ ଉଦ୍ଧାର କଲା । ମୁକ୍ତିଲାଭ କରି ବାନର ନିଶ୍ଚୟଦତ୍ତର ପଦଯୁଗଳ ସ୍ପର୍ଶ ପୂର୍ବକ କହିଲା, 'ତୁମେ ବହୁକଷ୍ଟ ସ୍ୱୀକାର କରି ମୋର ପ୍ରାଣରକ୍ଷା କଲ । ମାଟି ଖୋଳିବା ଫଳରେ ତୁମେ କ୍ଳାନ୍ତ ହୋଇ ପଡ଼ିଛ; ଏଣୁ କିଛି ଫଳମୂଳ ଓ ଜଳ ଗ୍ରହଣ କର । ମୁଁ ମଧ୍ୟ ବହୁଦିନ ଧରି ଉପବାସ ରହିଛି । ତୁମ ସହ ପାରଣା କରିବି ।' ଏହା କହି ସେ ତାର ଜୀବନଦାତାକୁ ଏକ ଦୂର ସ୍ଥାନକୁ ନେଇଗଲା । ସେଠାରେ ଏକ ସ୍ୱଚ୍ଛ ନିର୍ଝରିଣୀ ଥିଲା । ନିକଟସ୍ଥ ବୃକ୍ଷରୁ ସୁସ୍ୱାଦୁ ଫଳ ଭୋଜନ ପୂର୍ବକ ଜଳପାନ କରି ଉଭୟେ ଆଶ୍ୱସ୍ତ ହେଲେ । କ୍ଳାନ୍ତି ଦୂର ହେବାରୁ ନିଶ୍ଚୟଦତ୍ତ ତା'କୁ ତା'ର ବାନର ରୂପ ଧାରଣ କରିବାର କାରଣ ଜିଜ୍ଞାସା କରନ୍ତେ, ସେ କହିଲା—

## ବାନର ରୂପୀ ସୋମସ୍ୱାମୀ ବ୍ରାହ୍ମଣ କଥା

ମିତ୍ର ! ବାରଣସୀ ନଗରୀରେ ଚନ୍ଦ୍ରସ୍ୱାମୀ ନାମରେ ଜଣେ ବ୍ରାହ୍ମଣ ଥିଲେ । ତାଙ୍କରି ପତିବ୍ରତା ସ୍ତ୍ରୀଙ୍କ ଗର୍ଭରୁ ମୋର ଜନ୍ମ । ପିତା ମୋର ନାମ ରଖିଥିଲେ ସୋମସ୍ୱାମୀ । ବାଲ୍ୟ ଓ କୈଶୋର ଅତିକ୍ରମ କରି ମୁଁ ଯୌବନରେ ଆସି ଉପନୀତ ହେଲି ।

ଦିନକର କଥା, ମୁଁ ରାଜରାସ୍ତାରେ ଯାଉଥିବା ସମୟରେ ଆମ ନଗରୀରେ ବାସ କରୁଥିବା ଶ୍ରୀଗର୍ଭ ନାମକ ବଣିକଙ୍କ କନ୍ୟା ବନ୍ଧୁଦତ୍ତାର ଦୃଷ୍ଟି ମୋ ଉପରେ ପଡ଼ିଲା । ସେ ମଥୁରା ନଗରୀର ସାଧବ ବରାହଦତ୍ତଙ୍କର ବିବାହିତା ପତ୍ନୀ; ପତିଗୃହରୁ କିଛି ଦିନ ପାଇଁ ପିତୃଗୃହକୁ ଆସିଥାଏ । ମୋତେ ଦେଖି ସେ କାମବିହ୍ୱଳା ହୋଇ ମୋର ଅଙ୍ଗସଙ୍ଗ ଲାଭ କରିବା ନିମିତ୍ତ ନିଜର ଦୂତୀକୁ ପ୍ରେରଣ କଲା । ଦୂତୀ ତାକୁ କାମାସକ୍ତା ଦେଖି

ତାର ମନୋରଥ ମୋ ନିକଟରେ ପ୍ରକାଶ କଲା ଏବଂ ମୋତେ ତାର ଗୃହକୁ ନେଇଗଲା । ସେଠାରେ ମୋତେ ଅପେକ୍ଷା କରିବାକୁ କହି ସେ ଗୁପ୍ତ ପଥରେ ବନ୍ଧୁଦତ୍ତାଙ୍କ ନିକଟକୁ ଗଲା । ବନ୍ଧୁଦତ୍ତା ମଧ କାମପୀଡ଼ା ଯୋଗୁଁ ଲଜ୍ଜା ପରିତ୍ୟାଗ ପୂର୍ବକ ମୋ ନିକଟରେ ଆସି ପହଞ୍ଚିଲା । ଆସିବା କ୍ଷଣି ସେ ମୋତେ ଆଲିଙ୍ଗନ ପାଶରେ ଆବଦ୍ଧ କଲା । ନାରୀମାନଙ୍କର ଏ ପ୍ରକାର ଉଗ୍ର ମୂର୍ତ୍ତି ଆଶ୍ରୟ କରି କନ୍ଦର୍ପ ସାଧାରଣତଃ ତାର ବୀରତ୍ୱ ପ୍ରକାଶ କରିଥାଏ ।

ଏହିପରି ବନ୍ଧୁଦତ୍ତା ପ୍ରତ୍ୟହ ଗୁପ୍ତଭାବରେ ଗୃହରୁ ଆସି ମୋ ସହ କ୍ରୀଡ଼ା କରୁଥାଏ । ବହୁଦିନଧରି ପିତୃଗୃହରେ ରହୁଥିବା ବନ୍ଧୁଦତ୍ତାକୁ ନେବାପାଇଁ ଦିନେ ତାର ପତି ମଥୁରାରୁ ଆସି ପହଞ୍ଚିଲା । ପିତାଙ୍କର ଅନୁମତି କ୍ରମେ ପତି ସହିତ ମଥୁରା ଯିବା ଯେତେବେଳେ ନିଶ୍ଚିତ ହେଲା, ସେତେବେଳେ ସେ ତାର ଏହି ଗୋପନୀୟ ଅଭିସାର ସମ୍ପର୍କରେ ଜାଣିଥିବା ବିଶ୍ୱସ୍ତା ସଖୀକୁ ଡାକି କହିଲା, 'ମୋର ପତି ବର୍ତ୍ତମାନ ନିଶ୍ଚୟ ମୋତେ ମଥୁରା ନେଇ ଚାଲିଯିବେ । କିନ୍ତୁ ସୋମସ୍ୱାମୀଙ୍କ ବିନା ଜୀବନଧାରଣ କରି ରହିବା ମୋ ପକ୍ଷରେ ଆଦୌ ସମ୍ଭବପର ନୁହେଁ । କି ଉପାୟ କରାଯିବ, ଚିନ୍ତାକର ।'

ବନ୍ଧୁଦତ୍ତାର ଏ ପ୍ରକାର ବିକଳ ମନୋଭାବ ଦେଖି ସୁଖାଶୟା ନାମକ ତାର ଯୋଗିନୀ ଦୂତୀ କହିଲା 'ମୋ ନିକଟରେ ଦୁଇଟି ମନ୍ତ୍ର ଅଛି । ପ୍ରଥମ ମନ୍ତ୍ର ପାଠକରି କୌଣସି ବ୍ୟକ୍ତିର କଣ୍ଠଦେଶରେ ଗୋଟିଏ ସୂତ୍ର ବନ୍ଧନ କଲେ ସେ ତତ୍‌କ୍ଷଣାତ୍ ବାନରରେ ପରିଣତ ହୁଏ । ଦ୍ୱିତୀୟ ମନ୍ତ୍ରପାଠ ପୂର୍ବକ ଉକ୍ତ ସୂତ୍ରଟି ଛିଣ୍ଡାଇଦେଲେ ବାନର ପୁଣି ମାନବ ରୂପ ଧାରଣ କରେ । ବାନରରେ ପରିଣତ ହେଲେ କିମ୍ବା ବାନରରୁ ପୁଣି ମନୁଷ୍ୟରେ ପରିଣତ ହେଲେ ମଧ ତାର ଜ୍ଞାନଭ୍ରଷ୍ଟ ହୁଏ ନାହିଁ । ତେଣୁ, ତୁମେ ଯଦି ଚାହଁ ତାହେଲେ ତୁମର ପ୍ରାଣପ୍ରିୟ ପ୍ରେମିକ ସୋମସ୍ୱାମୀଙ୍କୁ ମୁଁ ବର୍ତ୍ତମାନ ବାନରରେ ପରିଣତ କରିଦେବି । ତୁମେ ତାକୁ ନିଜର କ୍ରୀଡ଼ନକ ରୂପେ ମଥୁରା ନେଇଯାଅ । ମୁଁ ତୁମକୁ ଏହି ଉଭୟ ମନ୍ତ୍ର ଓ ତାର କୌଶଳ ଶିକ୍ଷା ଦେଉଅଛି । ଏହାଦ୍ୱାରା ତୁମେ ତାକୁ ଇଚ୍ଛାନୁଯାୟୀ ମାନବରେ ପରିଣତ କରି ତାର ସଙ୍ଗସୁଖ ଲାଭ କରିପାରିବ ।' ସଖୀଠାରୁ ଏହା ଶୁଣି ବନ୍ଧୁଦତ୍ତା ମୋ ନିକଟକୁ ଆସି ମୋତେ ଏହି ଚକ୍ରାନ୍ତଟି କାର୍ଯ୍ୟକାରୀ କରାଇବା ପାଇଁ ସମ୍ମତ କରାଇଲା ଏବଂ ଅଭିମନ୍ତ୍ରିତ ସୂତ୍ରଟିଏ ଗଳାରେ ବାନ୍ଧିଦେଇ ମୋତେ ବାନରରେ ପରିଣତ କରିଦେଲା ।

ଏହାପରେ ବନ୍ଧୁଦତ୍ତା ମୋ ସହିତ ତାର ପତି ନିକଟରେ ଉପସ୍ଥିତ ହୋଇ କହିଲା ଯେ, 'ଏହି ବାନରଟିକୁ ତା'ର ସଖୀ ଉପହାର ରୂପେ ତାକୁ ପ୍ରଦାନ କରିଛି । ବରାହଦତ୍ତ ବନ୍ଧୁଦତ୍ତାର କୋଳରେ ବସି ରହିଥିବା ବାନରଟିକୁ ଦେଖି ଅତ୍ୟନ୍ତ ପ୍ରୀତ ହେଲା । ମୁଁ ସବୁକିଛି ଦେଖି ଓ ବୁଝିପାରୁଥିଲେ ହେଁ ବାନର ରୂପରେ ହିଁ ରହିଥିଲି ଏବଂ ମନେ ମନେ ସ୍ତ୍ରୀମାନଙ୍କର ଚରିତ୍ର ସମ୍ପର୍କରେ ଚିନ୍ତା କରି ଆଶ୍ଚର୍ଯ୍ୟ ହେଉଥିଲି ।

ପରଦିନ ପ୍ରଭାତରୁ ବନ୍ଧୁଦତ୍ତା ସଖୀଠାରୁ ମନ୍ତ୍ରଶିକ୍ଷା କରି ପତି ସହିତ ମଥୁରା ଅଭିମୁଖରେ ଯାତ୍ରା କଲା । ବରାହଦତ୍ତ ପତ୍ନୀର ଆନନ୍ଦ ସମ୍ପାଦନ ନିମିତ୍ତ ମୋତେ ମଧ୍ୟ ଗୋଟିଏ ଭୃତ୍ୟର ସ୍କନ୍ଧରେ ବସାଇ ତା ସହ ନେଇ ଚାଲିଲା । ଦୁଇ ତିନି ଦିନ ଚାଲିବା ପରେ ଆମେ ଏକ ଅରଣ୍ୟ ମଧ୍ୟରେ ଯାଇ ଉପସ୍ଥିତ ହେଲୁ । ଏଠାରେ ବହୁ ମର୍କଟ କ୍ରୀଡ଼ା କରୁଥାଆନ୍ତି । ମୋତେ ଦେଖି ସେହି ବନ୍ୟ ମର୍କଟଗୁଡ଼ିକ ସଂଘବଦ୍ଧ ଭାବରେ ଆକ୍ରମଣ ଆରମ୍ଭ କରିଦେଲେ । ମୁଁ ଯେଉଁ ଭୃତ୍ୟର ସ୍କନ୍ଧରେ ବସିଥିଲି ତାକୁ ଚତୁର୍ଦ୍ଦିଗରୁ ଘେରିଗଲେ । ସେମାନଙ୍କ ଭୟରେ ଭୃତ୍ୟଟି ମୋତେ ସ୍କନ୍ଧରୁ ଓହ୍ଲାଇ ଦେଇ ପଳାୟନ କଲା । ଫଳରେ ମୁଁ ସେହି ମର୍କଟ ଦଳର ହାତରେ ଯାଇ ପଡ଼ିଲି । ମୋର ପ୍ରେମରେ ପାଗଳିନୀ ବନ୍ଧୁଦତ୍ତା ଓ ତାର ପତି ବରାହଦତ୍ତ ବହୁ ଚେଷ୍ଟା କରି ମଧ୍ୟ ସେମାନଙ୍କଠାରୁ ମୋତେ ମୁକୁଳାଇ ପାରିଲେ ନାହିଁ । କିଛି ସମୟ ବାଡ଼ି ଓ ପଥରଦ୍ୱାରା ସେମାନଙ୍କୁ ଘଉଡ଼ାଇବା ପାଇଁ ବ୍ୟର୍ଥ ପ୍ରୟାସ କରି ସେମାନେ ନିଜର ଗନ୍ତବ୍ୟ ପଥରେ ଚାଲିଗଲେ ।

ସେହି ଆରଣ୍ୟକ ଓ ହିଂସ୍ର ମର୍କଟମାନେ ମୋ କୁକର୍ମରେ କ୍ରୁଦ୍ଧ ହୋଇ ମୋର ପ୍ରତ୍ୟେକ ଅଙ୍ଗ ଓ ପ୍ରତି ଲୋମକୂପରେ ନଖ ଓ ଦନ୍ତ ଦ୍ୱାରା ଆଘାତ କଲେ । ମୁଁ ବିବଶ ହୋଇ ପଡ଼ିଲି । କିନ୍ତୁ ଭଗବାନଙ୍କ କୃପା ଓ ଗଳାରେ ଥିବା ମନ୍ତ୍ରିତ ସୂତ୍ର ପ୍ରଭାବରୁ କିଛି ଶକ୍ତି ସଞ୍ଚୟ ପୂର୍ବକ ମୁଁ ସେମାନଙ୍କଠାରୁ ମୁକ୍ତିଲାଭ କରି ଘନ ଅରଣ୍ୟ ମଧ୍ୟକୁ ପଳାୟନ କଲି ଏବଂ ବନରୁ ବନ ବୁଲି ବୁଲି ଶେଷରେ ଆସି ଏଠାରେ ଉପସ୍ଥିତ ହେଲି । ବନ୍ଧୁଦତ୍ତାଠାରୁ ବିଚ୍ଛିନ୍ନ ହେବାଦ୍ୱାରା ମୋତେ ଏହି ଜନ୍ମରେ ହିଁ ପରଦାରା ସମାଗମଜନିତ ପାପର ଫଳ ବାନରତ୍ୱ ମିଳିଗଲା ।

ଏହିପରି ଦୁଃଖ ଓ ଶୋକରେ ଦିନ ଯାପନ କରୁଥିବା ସମୟରେ ବିଧାତା ମୋ ଉପରେ ତଥାପି ଅସନ୍ତୁଷ୍ଟ ହୋଇ ଆଉ ଏକ ଦୁଃଖ ଆଣି ପହଞ୍ଚାଇଲା । ବର୍ଷା ଋତୁରେ ଇତସ୍ତତଃ ଭ୍ରମଣ କରୁଥିବା ସମୟରେ ଗୋଟିଏ ବନ୍ୟ ହସ୍ତୀ ମୋତେ ତାର ଶୁଣ୍ଢଦ୍ୱାରା ଟେକି ନେଇ ଏକ ଜଳସିକ୍ତ ହୁଙ୍କା ଉପରେ ଫୋପାଡ଼ି ଦେଲା । ଫଳରେ ମୁଁ କ୍ରମେ କ୍ରମେ

ତା ମଧ୍ୟରେ ଗଳିଯିବାକୁ ଲାଗିଲି । ହସ୍ତୀଟି ମୋର ଭବିତବ୍ୟ ଚିନ୍ତା ନ କରି ତାର ଗନ୍ତବ୍ୟ ପଥରେ ଚାଲିଗଲା । ମୁଁ କିନ୍ତୁ ଶତଚେଷ୍ଟା ସତ୍ତ୍ୱେ ସେହି ହୁଙ୍କା ମଧ୍ୟରୁ ବାହାରି ପାରିଲି ନାହିଁ । ମନରେ ସାହସ ସଞ୍ଚୟ କରି ଭଗବାନଙ୍କୁ ଏକନିଷ୍ଠ ଭାବରେ କାତର ପ୍ରାର୍ଥନା କରନ୍ତେ ମୃତ୍ୟୁ ମୋତେ ସ୍ପର୍ଶ କରିପାରିଲା ନାହିଁ । ତୁମେ ମୋତେ ସେହି ଭୟଙ୍କର ମୃତ୍ତିକା ସ୍ତୂପରୁ ଉଦ୍ଧାର ନ କରିବା ପର୍ଯ୍ୟନ୍ତ ମୁଁ କ୍ଷୁଧା ଓ ତୃଷା ଅନୁଭବ କରି ନଥିଲି । ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ସଜ୍ଞାନ ଥିଲେ ହେଁ ବାନରତ୍ୱରୁ ମୁକ୍ତିଲାଭ କରିବା ମୋ ପକ୍ଷରେ ସମ୍ଭବପର ନୁହେଁ । ଯଦି କୌଣସି ଯୋଗିନୀ ମନ୍ତ୍ର ପ୍ରୟୋଗ ପୂର୍ବକ ମୋର କଣ୍ଠରୁ ଏହି ସୂତ୍ରଟି ଛିନ୍ନ କରେ, ତା' ହେଲେ ମୁଁ ଏହି ବାନର ଜନ୍ମରୁ ମୁକ୍ତି ପାଇ ପାରିବି । ଏହା ହିଁ ମୋର ଜୀବନ ଗାଥା । ବର୍ତ୍ତମାନ ତୁମେ କହ, ତୁମେ କିପରି ଏହି ନିବିଡ଼ ଅରଣ୍ୟ ମଧ୍ୟରେ ଆସି ପହଞ୍ଚିଲ ?

ସୋମସ୍ୱାମୀର କରୁଣ କାହାଣୀ ଶ୍ରବଣ କରି ନିଶ୍ଚୟଦତ୍ତ ମଧ୍ୟ ନିଜର ଅନୁଭୂତି ତାକୁ ଶୁଣାଇଲା । ବିଦ୍ୟାଧରୀ ଅନୁରାଗପରାର ପ୍ରେମରେ ଆସକ୍ତ ହୋଇ ସେ କିପରି ଉଜ୍ଜୟିନୀ ପରିତ୍ୟାଗ କରି ଆସିଲା, ସାହସ ଓ କୌଶଳର ସହ କିପରି ଯକ୍ଷିଣୀକୁ ଆୟତ୍ତ କରି ଏହି ଅରଣ୍ୟରେ ଆସି ଉପସ୍ଥିତ ହେଲା, ଏ ସବୁ ବୃତ୍ତାନ୍ତ ବାନର ନିକଟରେ ବ୍ୟକ୍ତ କଲା । ଏହି ବିସ୍ମୟକର କାହାଣୀ ଶ୍ରବଣ କରି ବାନର ରୂପୀ ସୋମସ୍ୱାମୀ ତାକୁ କହିଲା—

ତା' ହେଲେ ତୁମେ ମଧ୍ୟ ମୋପରି ଗୋଟିଏ ନାରୀ ପାଇଁ ଏତେ କଷ୍ଟ ସହ୍ୟ କରୁଅଛ । କିନ୍ତୁ ମନେରଖ କାହାରି ସ୍ତ୍ରୀ ଓ ସମ୍ପତ୍ତି ସ୍ଥିର ନୁହେଁ । ସ୍ତ୍ରୀମାନଙ୍କର ପ୍ରେମ ସନ୍ଧ୍ୟାରାଗ ତୁଲ୍ୟ କ୍ଷଣସ୍ଥାୟୀ, ନଦୀ ତୁଲ୍ୟ ଏମାନଙ୍କର ହୃଦୟ କୁଟୀଳ, ନାଗୁଣୀ ତୁଲ୍ୟ ଏମାନେ ଅବିଶ୍ୱସନୀୟ ଏବଂ ବିଜୁଳି ତୁଲ୍ୟ ଚଞ୍ଚଳ ।

**ନ ଚ଼ ଶ୍ରିୟଃ ସ୍ତ୍ରିୟଶ୍ଚେହ କଦାଚିଦ୍ କସ୍ୟଚିଦ୍ ସ୍ଥିରାଃ ।**
**ସଂଧ୍ୟାବତ୍‌କ୍ଷଣରାଗିଣ୍ୟୋ ନଦୀବତ୍ କୁଟିଳାଶୟାଃ**
**ଭୁଜଗୀବଦ୍‌ବିଶ୍ୱାସ୍ୟା ବିଦ୍ୟୁତ୍ ବଚ୍ଚପଳାଃ ସ୍ତ୍ରିୟଃ ।।**

ତେଣୁ ଅନୁରାଗପରା ବିଦ୍ୟାଧରୀ ତୁମ ପ୍ରତି ଆସକ୍ତ ଥିଲେ ସୁଦ୍ଧା କୌଣସି ବିଦ୍ୟାଧର ପୁରୁଷର ଅଙ୍ଗସଙ୍ଗ ଲାଭକଲେ ତୁମପରି ମନୁଷ୍ୟ ପ୍ରତି ବିରକ୍ତ ହୋଇପଡ଼ିବ । ତେଣୁ ତୁମେ ଏହି ଛାର ନାରୀଟି ପାଇଁ ଆଉ ଅଧିକ କଷ୍ଟ ସହ୍ୟ କରିବା ଅନୁଚିତ । ହେ ମିତ୍ର ! ତୁମେ ଆଉ ସେହି ପୁଷ୍କରାବତୀ ନଗରୀକୁ ଯାଅ ନାହିଁ । ବରଂ ତୁମର ଆୟତ୍ତରେ ଥିବା

ଯକ୍ଷିଣୀର ସ୍କନ୍ଧରେ ଆରୋହଣ କରି ଉଜ୍ଜୟିନୀ ଫେରିଯାଅ । ମିତ୍ର ! ମୋର କଥା ରକ୍ଷାକର । ମୁଁ ମଧ୍ୟ ପ୍ରଥମେ ମୋର ମିତ୍ରମାନଙ୍କ ଉପଦେଶ ପ୍ରତି କର୍ଣ୍ଣପାତ ନ କରି ଏ ପ୍ରକାର ଦୁଃଖ ଲାଭ କରୁଅଛି । ମୁଁ ଯେତେବେଳେ ବନ୍ଧୁଦତ୍ତା ପ୍ରତି ଆସକ୍ତ ଥିଲି, ସେତେବେଳେ ମୋର ଜଣେ ହିତାକାଂକ୍ଷୀ ମିତ୍ର ଭବଶର୍ମା ମୋତେ ଏହିପରି ଉପଦେଶ ବାକ୍ୟ ଶୁଣାଇ ସେଥିରୁ ନିବୃତ ହେବାପାଇଁ ପରାମର୍ଶ ଦେଇଥିଲା–

## ଭବଶର୍ମା ଓ ସୋମଦା କଥା

ମିତ୍ର ! ସ୍ତ୍ରୀମାନଙ୍କଠାରେ ବଶୀଭୂତ ହୁଅନାହିଁ । ସେମାନଙ୍କର ହୃଦୟ ଅତ୍ୟନ୍ତ ଦୁର୍ଗମ । ମୋ ନିଜର ଅନୁଭୂତି କଥା ଶୁଣ–

ଏହି ବାରଣସୀ ନଗରୀରେ ସୋମଦା ବୋଲି ଏକ ସୁନ୍ଦରୀ, ଯୁବତୀ, ଚଞ୍ଚଳା ଓ ଗୁପ୍ତଯୋଗିନୀ ବ୍ରାହ୍ମଣ ସ୍ତ୍ରୀ ବାସ କରୁଥିଲା । ଦୈବ ଯୋଗରୁ ତା ସହିତ ମୋର ଏକାନ୍ତ ସମାଗମ ହେବାରୁ ଆମ୍ଭମାନଙ୍କ ମଧ୍ୟରେ ପ୍ରେମର ସୂତ୍ରପାତ ହେଲା । ଦିନେ ମୁଁ ତାକୁ କ୍ରୋଧ ପରବଶ ହୋଇ ପ୍ରହାର କଲି । କିନ୍ତୁ ସେ ଦୁଷ୍ଟା ବ୍ରାହ୍ମଣୀ ସେତେବେଳେ ନିଜର କ୍ରୋଧ ସମ୍ବରଣ କରି ତାହା ସହ୍ୟ କରିଗଲା । ପରଦିନ ସେ ପ୍ରଣୟ କ୍ରୀଡ଼ା ଛଳରେ ମୋର କଣ୍ଠରେ ଖଣ୍ଡେ ମନ୍ତ୍ରିତ ସୂତ୍ର ବନ୍ଧନ କରିଦେଲା । ଫଳରେ ମୁଁ ତତ୍‌କ୍ଷଣାତ୍ ଏକ ଭାରବାହୀ ବଳଦରେ ପରିଣତ ହେଲି । ସେ ଅନ୍ୟ ଏକ ବଣିକ ନିକଟରେ ମୋତେ ଉଚିତ ମୂଲ୍ୟରେ ବିକ୍ରୟ କରିଦେଲା । ମୁଁ ତାଙ୍କର ଭାରବହନ କର୍ମରେ ନିଯୁକ୍ତ ହେଲି ।

ଏକଦା ମୋର ଏହି କଷ୍ଟ ଦେଖି ବନ୍ଧମୋଚନିକା ନାମ୍ନୀ ଏକ ଯକ୍ଷିଣୀ ଦୟା ପ୍ରକାଶ କଲା । ସେ ନିଜ ବିଦ୍ୟାର ପ୍ରଭାବରେ ମୋର ପ୍ରକୃତ ସ୍ୱରୂପ ଜାଣିପାରି ବଣିକଙ୍କ ଅନୁପସ୍ଥିତିରେ ମୋର ଗଳାରୁ ସେହି ସୂତ୍ରଟି ଛିନ୍ନ କଲା । ଫଳରେ ମୁଁ ପୁଣି ମନୁଷ୍ୟରେ ପରିଣତ ହେଲି । ମୋର ପ୍ରଭୁ ବଳଦଟି କେଉଁଆଡ଼େ ଚାଲିଗଲା ଭାବି ଏଣେ ତେଣେ ବହୁତ ଖୋଜାଖୋଜି କରି ଶେଷରେ ନିରାଶ ହେଲେ ।

ଦିନେ ବନ୍ଧମୋଚନିକା ସହିତ ମୁଁ ଏକତ୍ର ବୁଲୁଥିବା ବେଳେ ସୋମଦା ମୋତେ ଦେଖିପାରି ଆମ ନିକଟକୁ ଆସି କ୍ରୋଧଜର୍ଜ୍ଜରିତ କଣ୍ଠରେ ବନ୍ଧମୋଚନିକାକୁ କହିଲା, 'ତୁ ଏହି ପାପୀକୁ ପଶୁଜନ୍ମରୁ କାହିଁକି ମୁକ୍ତି ପ୍ରଦାନ କଲୁ । ତୋତେ ଧିକ୍ । କାଲି ପ୍ରଭାତରେ ତୋତେ ହତ୍ୟା କରି ଏହି କୁକର୍ମର ଉପଯୁକ୍ତ ଫଳ ପ୍ରଦାନ କରିବି ।' ଏହା କହି ସୋମଦା ଚାଲିଯିବା ପରେ ବନ୍ଧମୋଚନିକା ମୋତେ ଲକ୍ଷ୍ୟକରି କହିଲା, 'ଏହି ସୋମଦା ଗୋଟିଏ

କୃଷ୍ଣ ଘୋଟକର ରୂପ ଧାରଣ କରି ମୋତେ ହତ୍ୟା କରିବା ପାଇଁ ଆସି ପହଞ୍ଚିବ । ମୁଁ ସେତେବେଳେ ଗୋଟିଏ ରକ୍ତବର୍ଣ୍ଣ ଅଶ୍ୱ ରୂପରେ ରହିଥିବି । ଆମର କଳହ ସମୟରେ ତୁମେ ଲୁଚି ରହି ତାକୁ ଖଡ୍‌ଗଦ୍ୱାରା ଆଘାତ କରିବ । କାଲି ପ୍ରଭାତରୁ ସେ ଆସି ମୋ ଦ୍ୱାରରେ ପହଞ୍ଚିବ; ତେଣୁ ତୁମେ ତା ପୂର୍ବରୁ ଆସି ମୋର ଗୃହ ମଧ୍ୟରେ ଲୁକ୍କାୟିତ ଭାବରେ ରହିବା ଆବଶ୍ୟକ ।' ଏହା କହି ସେ ମୋତେ ତାର ବାସଗୃହ ଦେଖାଇ ଦେଲା । ମୁଁ ମୋର ଗୃହକୁ ପ୍ରତ୍ୟାବର୍ତ୍ତନ କରି ଆସିଲି ।

ପରଦିନ ଅତି ପ୍ରତ୍ୟୁଷରୁ ମୁଁ ତା'ର ଗୃହରେ ଯାଇ ଉପସ୍ଥିତ ହେଲି । ସୋମଦା ମଧ୍ୟ ତାର ଅଳ୍ପ ସମୟ ପରେ ଗୋଟିଏ କୃଷ୍ଣ ଘୋଟକର ରୂପ ଧାରଣ କରି ସେଠାରେ ଆସି ପହଞ୍ଚିଲା । ତାକୁ ଦେଖିବା ମାତ୍ରେ ରକ୍ତାଶ୍ୱରୂପିଣୀ ବନ୍ଧମୋଚନିକା ଆକ୍ରମଣ କଲା । ସେମାନେ ନିଜ ନିଜର ଦନ୍ତ ଓ ପଦଦ୍ୱାରା ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତେ ମୁଁ ଅବସର ଦେଖି ସାବଧାନତାର ସହ ସେହି ନୀଚ ଡାକିନୀ ସୋମଦାକୁ ପ୍ରହାର କଲି । ଫଳରେ ସେ ମୃତ୍ୟୁଲାଭ କଲା । ଏହା ପରେ ପଶୁଜନ୍ମରୁ ଚିରଦିନ ପାଇଁ ମୁକ୍ତିଲାଭ କରି ମୁଁ ମନରେ ସୁଦ୍ଧା ପରସ୍ତ୍ରୀ ସମ୍ପର୍କରେ ଚିନ୍ତା କରିବି ନାହିଁ ବୋଲି ପ୍ରତିଜ୍ଞା କଲି ।

ଚପଳତା, ସାହସ ଏବଂ ଦୁଶ୍ଚରିତ୍ରତା—ନାରୀମାନଙ୍କର ଏହି ତିନୋଟି ଗୁଣ ସମଗ୍ର ପୃଥିବୀକୁ ଭୀତତ୍ରସ୍ତ କରିଦିଏ ।

**ଚାପଲଂ ସାହସିକତା ଶାକିନୀଶମ୍ବରାଦୟଃ**
**ଦୋଷାଃ ସ୍ତ୍ରୀଣାଂ ତ୍ରୟଃ ପ୍ରାୟୋ ଲୋକତ୍ରୟଭୟାବହାଃ ॥**

ତେଣୁ ଡାକିନୀର ସଖୀ ବନ୍ଧୁଦତ୍ତା ପ୍ରତି ତୁମେ କାହିଁକି ଏପରି ଆକୃଷ୍ଟ ହୋଇ ପଡ଼ିଅଛ ? ଯା'ର ନିଜ ପତିଠାରେ ପ୍ରେମ ନାହିଁ, ସେ ତୁମକୁ କିପରି ବା ଭଲ ପାଇ ପାରିବ ?'

ଭବଶର୍ମା ଏତେ ପ୍ରକାର ଉପଦେଶ ଦେଲେ ମଧ୍ୟ ମୁଁ ସେତେବେଳେ ତାହା ଗ୍ରହଣ ନ କରି, ଆଜି ପଶ୍ଚାତ୍ତାପ କରୁଅଛି । ଏଣୁ ମୁଁ ତୁମକୁ ଅନୁରୋଧ କରୁଛି, ତୁମେ ଅନୁରାଗପରା ପ୍ରତି ଆଉ ଆସକ୍ତ ହୁଅ ନାହିଁ । କୌଣସି ସ୍ୱଜାତୀୟ ପୁରୁଷ ମିଳିଲେ ସେ ତୁମକୁ ପରିତ୍ୟାଗ କରିବ । ଭ୍ରମର ଯେପରି ନୂଆ ନୂଆ ପୁଷ୍ପରୁ ମଧୁ ସଂଗ୍ରହ କରିବା ପାଇଁ ଚେଷ୍ଟା କରେ, ନାରୀ ସେହିପରି ନୂତନ ନୂତନ ପ୍ରେମିକ ସହ ମିଳିତ ହେବାପାଇଁ ସର୍ବଦା ଚାହିଁଥାଏ ।

**ଭୃଙ୍ଗୀବ ପୁଷ୍ପଂ ପୁରୁଷଂ ସ୍ତ୍ରୀ ବାଂଛତି ନବଂ ନବମ୍ ।**

ତେଣୁ, ହେ ମିତ୍ର ! ତୁମେ ମଧ୍ୟ ମୋ ପରି ପରେ ଅନୁତପ୍ତ ହେବ ।''

ସୋମସ୍ୱାମୀର ଏହି ବନ୍ଧୁତ୍ୱପୂର୍ଣ୍ଣ ବାକ୍ୟ ନିଶ୍ଚୟଦତ୍ତର ମନ ଉପରେ କୌଣସି ପ୍ରଭାବପାତ କରିପାରିଲା ନାହିଁ । ସେ ବରଂ କହିଲା, 'ଅନୁରାଗପରା ବିଶୁଦ୍ଧା ବିଦ୍ୟାଧରୀ । ସେ କଦାପି ମୋ ପ୍ରତି ଅନାସକ୍ତ ହେବନାହିଁ ।'

ଏହିପରି ବାର୍ତ୍ତାଳାପ କରୁଥିବା ସମୟରେ ସୂର୍ଯ୍ୟଦେବ ନିଶ୍ଚୟଦତ୍ତର ଉପକାର ସାଧନ କରିବା ନିମନ୍ତେ ଅସ୍ତାଚଳଗାମୀ ହେଲେ । ରାତ୍ରି ପ୍ରବେଶ କରିବା ମାତ୍ରେ, ତାର ଅଗ୍ରଦୂତୀ ତୁଲ୍ୟ ଶୃଙ୍ଗୋତ୍ପାଦିନୀ ଯକ୍ଷିଣୀ ଆସି ସେଠାରେ ଉପସ୍ଥିତ ହେଲା । ବାନରରୂପୀ ସୋମସ୍ୱାମୀ 'ମୋତେ ସ୍ମରଣ କରୁଥିବ' କହି ଅନ୍ୟତ୍ର ପ୍ରସ୍ଥାନ କରନ୍ତେ ଯକ୍ଷିଣୀ ଉପରେ ଆରୋହଣ କରି ନିଶ୍ଚୟଦତ୍ତ ନିଜର ପ୍ରେୟସୀ ନିକଟକୁ ଯାତ୍ରା କଲା ।

ରାତ୍ରିର ମଧ୍ୟ ଭାଗରେ ଯକ୍ଷିଣୀ ନିଶ୍ଚୟଦତ୍ତକୁ ନେଇ ହିମାଳୟ ଉପରେ ଥିବା ପୁଷ୍କରାବତୀ ନଗରୀରେ ଅବତରଣ କରାଇଲା । ଅନୁରାଗପରା ସ୍ୱୀୟ ବିଦ୍ୟା ପ୍ରଭାବରେ ସେ ଆସିଥିବା ଜାଣିପାରି ତାକୁ ସ୍ୱାଗତ କରିବା ନିମିତ୍ତ ପିତୃଗୃହରୁ ନିର୍ଗତ ହେଲା । ତାକୁ ଦେଖି 'ଦ୍ୱିତୀୟ ଚନ୍ଦ୍ରମା ତୁଲ୍ୟ ତୁମର ନେତ୍ରାନନ୍ଦ ପ୍ରଦାୟିନୀ ପ୍ରାଣପ୍ରିୟା ଅନୁରାଗପରା ଆସିଗଲେ, ମୁଁ ବିଦାୟ ନେଉଛି', କହି ଯକ୍ଷିଣୀ ପ୍ରଣିପାତପୂର୍ବକ ସ୍ୱଗୃହ ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲା ।

ଅନୁରାଗପରା ବହୁଦିନର ଉତ୍କଣ୍ଠା ହେତୁ ଆଲିଙ୍ଗନ ଚୁମ୍ବନାଦି ଦ୍ୱାରା ନିଶ୍ଚୟଦତ୍ତକୁ ଅଭିନନ୍ଦନ ଜଣାଇଲା । ବହୁ କଷ୍ଟ ସ୍ୱୀକାର କରି ମିଳିତ ହୋଇଥିବାରୁ ନିଶ୍ଚୟଦତ୍ତ ନିଜର ପ୍ରେୟସୀକୁ ଏପରି ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲା ଯେ ମନେ ହେଲା ସତେ ଯେପରି ଉଭୟେ ଏକୀଭୂତ ହୋଇପଡ଼ିଲେ । ବିଦ୍ୟାଧରୀ ତା' ସହ ଗାନ୍ଧର୍ବରୀତିରେ ବିବାହ କରି ନିଜର ବିଦ୍ୟାବଳରେ ଏକ ସ୍ୱତନ୍ତ୍ର ନଗର ନିର୍ମାଣ ପୂର୍ବକ ସେଠାରେ ବାସ କରିବାକୁ ଲାଗିଲା । ବିଦ୍ୟା ପ୍ରଭାବରେ ନିଶ୍ଚୟଦତ୍ତ ତା'ର ପିତାମାତାଙ୍କଠାରୁ ଦୂରରେ ରହି ଉକ୍ତ ନବନିର୍ମିତ ନବରରେ ସୁଖମୟ ଜୀବନ ଯାପନ କରୁଥାଏ । ନିଶ୍ଚୟଦତ୍ତଠାରୁ କ୍ଳେଶପୂର୍ଣ୍ଣ ଯାତ୍ରାର ବିବରଣ ଶ୍ରବଣ କରି ଅନୁରାଗପରା ତା'ପ୍ରତି ଅଧିକ ଆସକ୍ତ ହେବାକୁ ଲାଗିଲା ଏବଂ ବିବିଧ ଦିବ୍ୟ ଭୋଗ ଦ୍ୱାରା ତାର ମନ ବିନୋଦନ କରିବାକୁ ଲାଗିଲା ।

ଦିନେ ଅବସର ଦେଖି ନିଶ୍ଚୟଦତ୍ତ ନିଜର ବନ୍ଧୁ ବାନର ସୋମସ୍ୱାମୀ ସମ୍ପର୍କରେ ସମସ୍ତ ବୃତ୍ତାନ୍ତ ଅନୁରାଗପରାକୁ ଶୁଣାଇ କହିଲା, 'ତୁମେ ଯଦି କୌଣସି ଉପାୟରେ ତାଙ୍କୁ ପୁଣି ମନୁଷ୍ୟ ରୂପ ପ୍ରଦାନ କର, ତାହାହେଲେ ତୁମର ବହୁତ ପୁଣ୍ୟ ହେବ ।'

ଏହା ଶୁଣି ବିଦ୍ୟାଧର କନ୍ୟା କହିଲା, 'ଏହା ମନ୍ତ୍ରସିଦ୍ଧ ଯୋଗିନୀମାନଙ୍କଦ୍ୱାରା ସମ୍ଭବପର, ଆମ୍ଭମାନଙ୍କଦେଇ ନୁହେ । ତଥାପି ମୁଁ ମୋର ପ୍ରିୟବାନ୍ଧବୀ ଭଦ୍ରରୂପା ନାମକ ସିଦ୍ଧ ଯୋଗିନୀଙ୍କୁ ପ୍ରାର୍ଥନା କରି ତୁମର ମନୋରଥ ପୂର୍ଣ୍ଣ କରିବି ।' ଏହା ଶୁଣି ବଣିକ ପୁତ୍ର ନିଜର ମିତ୍ରସହ ପରିଚିତ କରାଇଦେବା ନିମିତ୍ତ ଅନୁରାଗପରାକୁ ନେଇ ପୂର୍ବବର୍ଣ୍ଣିତ ଅରଣ୍ୟକୁ ଯାତ୍ରାକଲା ।

ବନ ମଧ୍ୟରେ ବାନରରୂପୀ ସୋମସ୍ୱାମୀକୁ ନିଜର ପ୍ରିୟା ସହ ପ୍ରଣିପାତ କରି ନିଶ୍ଚୟଦତ୍ତ ତା'ର କୁଶଳ ଜିଜ୍ଞାସା କରନ୍ତେ ସେ କହିଲା, 'ଅନୁରାଗପରା ସହ ତୁମକୁ ଦେଖି ମୁଁ ଆଜି ବିଶେଷ ପ୍ରୀତ ହେଲି । ତେଣୁ ଆଜି ମୋର ଶୁଭ ଦିନ ।' ଏହା କହି ସେ ବନ୍ଧୁକୁ ସ୍ୱାଗତ ଜଣାଇ ବନ୍ଧୁପତ୍ନୀକୁ ଆଶୀର୍ବାଦ କଲା । ଏହାପରେ ସେମାନେ ଏକ ଶିଳାଖଣ୍ଡ ଉପରେ ବସି ବାନରର ପୂର୍ବ ଜୀବନ ସମ୍ପର୍କରେ ଚର୍ଚ୍ଚା କଲେ । କିଛି ସମୟ ସେଠାରେ ବାର୍ତ୍ତାଳାପ କରି ନିଶ୍ଚୟଦତ୍ତ ବନ୍ଧୁଠାରୁ ବିଦାୟ ଗ୍ରହଣ ପୂର୍ବକ ଅନୁରାଗପରା କୋଳରେ ବସି ପୂର୍ବୋକ୍ତ ନବନିର୍ମିତ ନବର ମଧ୍ୟକୁ ପ୍ରତ୍ୟାବର୍ତ୍ତନ କରି ଆସିଲା ।

ଦ୍ୱିତୀୟ ଦିନ ପୁଣି ଯେତେବେଳେ ବନ୍ଧୁ ନିକଟକୁ ଯିବା ନିମିତ୍ତ ନିଶ୍ଚୟଦତ୍ତ ଅନୁରାଗପରାକୁ ଅନୁରୋଧ କଲା, ସେତେବେଳେ ସେ କହିଲା 'ଆଜି ତୁମେ ନିଜେ ଯାଅ । ମୋଠାରୁ ଆକାଶବିହାର ଓ ଅବତରଣ ବିଦ୍ୟା ଶିକ୍ଷା କରି ଗଲେ ତୁମର ଯିବା ଆସିବାରେ କୌଣସି ଅସୁବିଧା ହେବ ନାହିଁ ।' ଏହା କହି ସେ ଉଭୟ ମନ୍ତ୍ର ଶିକ୍ଷା ଦିଅନ୍ତେ ବଣିକ ପୁତ୍ର ଏକାକୀ ଆକାଶମାର୍ଗରେ ଆସି ବାନର ମିତ୍ର ନିକଟରେ ଉପସ୍ଥିତ ହେଲା ।

ସେମାନେ ସେଠାରେ ବସି ବାର୍ତ୍ତାଳାପ କରୁଥିବା ବେଳେ ଏଣେ ଅନୁରାଗପରା ଗୃହରୁ ନିର୍ଗତ ହୋଇ ଉପବନ ମଧ୍ୟରେ ବିଚରଣ କରିବାକୁ ଲାଗିଲା । କିଛି ସମୟ ପରେ ସେ ଗୋଟିଏ ସ୍ଥାନରେ ବସିଥିବା ବେଳେ ଆକାଶମାର୍ଗରେ ବିଚରଣ କରୁଥିବା କୌଣସି ବିଦ୍ୟାଧର ଯୁବକ ତାକୁ ଦେଖି କାମବିହ୍ୱଳ ହୋଇ ପଡ଼ିଲା । ସେ ନିଜର ବିଦ୍ୟା ପ୍ରଭାବରେ ଅନୁରାଗପରାକୁ ଏକ ମାନବପତ୍ନୀ ବିଦ୍ୟାଧରୀ ବୋଲି ଜାଣି ନିଜର ପ୍ରେମ ନିବେଦନ କରିବା ନିମନ୍ତେ ତା ନିକଟରେ ଆସି ଉପସ୍ଥିତ ହେଲା । ବିଦ୍ୟାଧରୀ ଏକ ପର ପୁରୁଷକୁ ନିଜ ନିକଟକୁ ଆସୁଥିବା ଦେଖି ଅଧୋମୁଖ ହୋଇ କୌତୂହଳବଶତଃ ତାର ପରିଚୟ ଓ ଆଗମନର କାରଣ ଜିଜ୍ଞାସା କଲା । ତାର ଉତ୍ତରରେ ବିଦ୍ୟାଧର କହିଲା, 'ହେ ସୁନ୍ଦରି, ମୋତେ ତୁମ ଜାତିର ଏବଂ ତୁମ ବିଦ୍ୟାର ଅଧିକାରୀ ରାଜଭଞ୍ଜନ ନାମକ ବିଦ୍ୟାଧର ବୋଲି ଜାଣ । ମୁଁ ତୁମକୁ ଦେଖିଲା ବେଳୁ କାମଦେବଙ୍କ ବଶୀଭୂତ ହୋଇ ତୁମ ନିକଟରେ

ନିଜକୁ ସମର୍ପଣ କରିଦେଇଅଛି । ତେଣୁ ହେ ଦେବି ! ତୁମ ପିତା ଏକଥା ଜ୍ଞାତ ହେବା ପୂର୍ବରୁ ତୁମେ ସେହି ମାନବକୁ ପରିତ୍ୟାଗ କରି ତୁମର ସମଜାତୀୟ ମୋତେ ବରଣ କର ।' ତା'ର ଏହି ଅନୁରାଗପୂର୍ଣ୍ଣ କଥା ଶୁଣି ଚଞ୍ଚଳହୃଦୟା ଅନୁରାଗପରା ଚିନ୍ତା କରିବାକୁ ଲାଗିଲା ଯେ ଏହି ବିଦ୍ୟାଧର ହିଁ ତାର ଉପଯୁକ୍ତ ପତି ହେବ ।

ରାଜଭଞ୍ଜନ ଅନୁରାଗପରାର ମନୋଭାବ ଜ୍ଞାତ ହୋଇ ତାକୁ ନିଜର ସ୍ତ୍ରୀ ରୂପରେ ଗ୍ରହଣ କରିନେଲା । ଏକାନ୍ତରେ ପ୍ରେମିକ ପ୍ରେମିକା ଏକଚିତ୍ତ ହେଲେ କାମଦେବ ସଂସାରରେ କାହାକୁ ଅପେକ୍ଷା କରେ ନାହିଁ ।

ବିଦ୍ୟାଧର ଚାଲିଯିବାର କିଛି ସମୟ ପରେ ନିଶ୍ଚୟଦତ୍ତ ବନ୍ଧୁ ସୋମସ୍ୱାମୀ ନିକଟରୁ ଫେରି ଆସିଲା । କିନ୍ତୁ ତା' ପ୍ରତି ଆଉ ଅନୁରକ୍ତ ନଥିବା ଅନୁରାଗପରା ଶିରଃପୀଡ଼ା ବ୍ୟାଜରେ ତାକୁ ଆଲିଙ୍ଗନାଦିଦ୍ୱାରା ଅଭିନନ୍ଦନ ବା ପ୍ରେମ ପ୍ରଦର୍ଶନ କଲା ନାହିଁ । ସରଳହୃଦୟ ବଣିକପୁତ୍ର ତାର ଛଳନା ବୁଝି ନ ପାରି ଉକ୍ତ ଦିନଟି ସେହିପରି ବିତାଇଦେଇ ପରଦିନ ଆକାଶ ସଞ୍ଚରଣ ବିଦ୍ୟା ଫଳରେ ପୁଣି ଆସି ବନ୍ଧୁ ନିକଟରେ ଉପସ୍ଥିତ ହେଲା ।

ସେ ଚାଲିଯିବା ପରେ ପୁଣି ବିଦ୍ୟାଧର ରାଜଭଞ୍ଜନ ତା' ନିକଟରେ ଆସି ପହଞ୍ଚିଲା । ସମଗ୍ର ରଜନୀ ଅନୁରାଗପରାର ଚିନ୍ତାରେ ବିନିଦ୍ର ରହିଥିବା ଯୋଗୁଁ ସେ ଅତି କ୍ଳାନ୍ତ ହୋଇ ସେଠାରେ ହିଁ ନିଦ୍ରାଭିଭୂତ ହୋଇପଡ଼ିଲା । ଅନୁରାଗପରା ମଧ୍ୟ ବିନିଦ୍ର ରଜନୀ ଯାପନ କରିଥିବା ହେତୁ ତା'ର କୋଳରେ ଶୋଇଥିବା ବିଦ୍ୟାଧରକୁ ନିଜ ବିଦ୍ୟାବଳରେ ଅଦୃଶ୍ୟ କରିଦେଇ ତା' ସହିତ ସେଠାରେ ଶୟନ କରିଗଲା ।

ଏଣେ ନିଶ୍ଚୟଦତ୍ତ ଆସି ସୋମସ୍ୱାମୀ ନିକଟରେ ଉପସ୍ଥିତ ହେଲା । ବାନରରୂପୀ ସୋମସ୍ୱାମୀ ତାର ବିଷଣ୍ଣ ଭାବ ଦେଖି କାରଣ ଜିଜ୍ଞାସା କରନ୍ତେ ବଣିକ ପୁତ୍ର ଉତ୍ତରରେ କହିଲା, 'ମିତ୍ର, ଅନୁରାଗପରା ଅସୁସ୍ଥ ହୋଇ ପଡ଼ିଅଛି । ତେଣୁ ମୋର ମନ ବିଷାଦଗ୍ରସ୍ତ । ସେ ମୋର ପ୍ରାଣଠାରୁ ମଧ୍ୟ ଅଧିକ ପ୍ରିୟ ।' ଏହା ଶୁଣି ଜ୍ଞାନୀ ବାନର କହିଲା, 'ତୁମେ ବର୍ତ୍ତମାନ ହିଁ ଯାଇ ନିଜ ବିଦ୍ୟା ପ୍ରଭାବରେ ନିଦ୍ରାଭିଭୂତା ଥିବା ତୁମର ପ୍ରେମିକାକୁ କୋଳରେ ଧରି ଏଠାକୁ ଚାଲିଆସ । ମୁଁ ଏଠାରେ ତୁମକୁ ଏକ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଘଟଣା ଦେଖାଇବି ।'

ବାନର କଥା ଶୁଣି ନିଶ୍ଚୟଦତ୍ତ ତତ୍କ୍ଷଣାତ୍ ଯାଇ ନିଜର ବିଦ୍ୟା ପ୍ରଭାବରେ ନିଦ୍ରାଭିଭୂତା ଅନୁରାଗପରାକୁ ନେଇ ଆସିଲା । ପ୍ରଥମେ ନିଦ୍ରା ଯାଇଥିବା ଏବଂ ପରେ

ବିଦ୍ୟାଧରୀର ବିଦ୍ୟା ପ୍ରଭାବରେ ଅଦୃଶ୍ୟ ରୂପେ ତାର କୋଳରେ ଶୟନ କରିଥିବା ବିଦ୍ୟାଧର ରାଜଭଞ୍ଜନକୁ ସେ ନିକଟରେ ଥାଇ ମଧ୍ୟ ଦେଖିପାରି ନଥିଲା । କିନ୍ତୁ ପରେ ବାନର ବଣିକପୁତ୍ରକୁ ଏପରି ଯୋଗ ଶିକ୍ଷା ଦେଲା, ଯା'ର ଫଳରେ ସେ ବିଦ୍ୟାଧରୀର କଣ୍ଠକୁ ଆଶ୍ଳେଷ କରି ଶୟନ କରିଥିବା ବିଦ୍ୟାଧରକୁ ଦେଖିବା ପାଇଁ ସମର୍ଥ ହେଲା । ଏହା ଦେଖି ବିସ୍ମିତ ଓ କିଂକର୍ତ୍ତବ୍ୟବିମୂଢ଼ ନିଶ୍ଚୟଦତ୍ତକୁ ତତ୍ତ୍ୱଦର୍ଶୀ ବାନର ସମସ୍ତ କିଛି ବୁଝାଇ ଦେଲା । ନିଶ୍ଚୟଦତ୍ତକୁ କୋପାନ୍ୱିତ ଦେଖି ରାଜଭଞ୍ଜନ ଆକାଶ ମାର୍ଗରେ ପଳାୟନ କଲା ଏବଂ ଅନୁରାଗପରା ନିଜର ସମସ୍ତ ରହସ୍ୟ ଉଦ୍‌ଘାଟିତ ହୋଇଥିବା ଦେଖି ଲଜ୍ଜାରେ ମୁଖ ଅବନତ କରି ବସି ରହିଲା । ଏଥିରେ ନିଶ୍ଚୟଦତ୍ତ ଶୋକାଭିଭୂତ ହୋଇ କହିଲା, 'ରେ ପାପିଷ୍ଠା, ତୋ ଉପରେ ବିଶ୍ୱାସ କରି ମୁଁ ଏତେ କଷ୍ଟ ସହ୍ୟ କଲି, କିନ୍ତୁ ତୁ ମୋତେ କାହିଁକି ଏପରି ପ୍ରତାରଣା କଲୁ । ଅତ୍ୟନ୍ତ ଚଞ୍ଚଳ ଗୁଣଯୁକ୍ତ ପାରଦକୁ ଆୟତ୍ତ କରାଯାଇପାରେ କିନ୍ତୁ ସ୍ତ୍ରୀମାନଙ୍କର ଚଞ୍ଚଳ ଚିତ୍ତକୁ ନିୟନ୍ତ୍ରଣ କରିବା ପାଇଁ କୌଣସି ଉପାୟ ବା କୌଶଳ ନାହିଁ ।'

**ଅତ୍ୟନ୍ତ ଚଂଚଳସ୍ୟେହ ପାରଦସ୍ୟ ନିବନ୍ଧନେ**
**କାମଂ ବିଜ୍ଞାୟତେ ଯୁକ୍ତିର୍ନସ୍ତ୍ରୀଚିତ୍ତସ୍ୟ କାଚନ ।।**

ତା'ର ଏକଥା ଶ୍ରବଣ କରି ଅନୁରାଗପରା କିଛି ନକହି ଅଶ୍ରୁପୂର୍ଣ୍ଣ ଲୋଚନରେ ଧୀରେ ଧୀରେ ଆକାଶ ମାର୍ଗରେ ନିଜ ଗୃହ ଅଭିମୁଖରେ ପ୍ରସ୍ଥାନ କଲା ।

ଏସବୁ ଦେଖି ବାନରରୂପୀ ସୋମସ୍ୱାମୀ କହିଲା, 'ବନ୍ଧୁ, ମୋ କହିବା ସତ୍ତ୍ୱେ ତୁମେ ଏହି ନାରୀର ମୋହ ପରିତ୍ୟାଗ କରି ନ ଥିଲ, ବର୍ତ୍ତମାନ ସେହି ପ୍ରେମାଗ୍ନିରେ ଜଳିବା ହିଁ ସାର ହେଲା । କ୍ଷଣସ୍ଥାୟୀ ସମ୍ପତ୍ତି ଓ ଚଞ୍ଚଳମନା ସ୍ତ୍ରୀଠାରେ ବିଶ୍ୱାସ କ'ଣ ?

**କୋ ହି ସମ୍ପତ୍ସୁ ଚପଳାସ୍ୱାଶ୍ୱାସୋ ବନିତାସୁ ଚ ।**

ବର୍ତ୍ତମାନ ଆଉ ବ୍ୟର୍ଥ ଚିନ୍ତା କରନାହିଁ । ଯାହା ଭବିତବ୍ୟ ତାକୁ ସ୍ୱୟଂ ବିଧାତା ମଧ୍ୟ ବାରଣ କରିପାରିବ ନାହିଁ ।'

**ଭବିତବ୍ୟଂ ହି ଧାତ୍ରାପି ନ ଶକ୍ୟମତିବର୍ତ୍ତିତୁମ୍ ।**

ବାନରଠାରୁ ଏହା ଶୁଣି ନିଶ୍ଚୟଦତ୍ତ ଶୋକ ଓ ମୋହ ପରିତ୍ୟାଗ ପୂର୍ବକ ସାଂସାରିକ ଭୋଗ ବିଳାସ ପ୍ରତି ବିରକ୍ତ ହୋଇ ଭଗବାନ ମହାଦେବଙ୍କ ଉପାସନା ପୂର୍ବକ ଅବଶିଷ୍ଟ ଜୀବନ ଯାପନ କରିବାକୁ ଲାଗିଲା ।

ସେହି ଅରଣ୍ୟରେ ବାନର ସହ ରହୁଥିବା ସମୟରେ ଦୈବଯୋଗରୁ ମୋକ୍ଷଦା ନାମ୍ନୀ ଏକ ତପସ୍ୱିନୀ ଆସି ନିଶ୍ଚୟଦତ୍ତ ନିକଟରେ ଉପସ୍ଥିତ ହେଲା । ତାକୁ ପ୍ରଣିପାତ କରନ୍ତେ ସେ ଜିଜ୍ଞାସା କଲା, 'ତୁମେ ମନୁଷ୍ୟ ହେଲେ ହେଁ ତୁମର ଏହି ମିତ୍ର କିପରି ବାନର ରୂପରେ ରହିଅଛନ୍ତି ?' ନିଶ୍ଚୟଦତ୍ତ ନମ୍ରତା ପୂର୍ବକ ପ୍ରଥମେ ନିଜର ଏବଂ ପରେ ସୋମସ୍ୱାମୀର ସମଗ୍ର ବୃତ୍ତାନ୍ତ ତା' ନିକଟରେ ପ୍ରକାଶ କରି ଅନୁରୋଧ କଲା ଯେ ସେ ଯଦି କିଛି ମନ୍ତ୍ର ଜାଣିଥାଆନ୍ତି ତାହାହେଲେ ତାର ମିତ୍ରକୁ ଏହି ପଶୁ ଜନ୍ମରୁ ମୁକ୍ତି ପ୍ରଦାନ କରନ୍ତୁ । ନିଶ୍ଚୟଦତ୍ତର ପ୍ରାର୍ଥନାରେ ପ୍ରୀତ ହୋଇ ତପସ୍ୱିନୀ ମନ୍ତ୍ରପାଠ ପୂର୍ବକ ସୋମସ୍ୱାମୀ ଗଳାରୁ ସୂତ୍ରଟି ଖୋଲି ଦେଲା । ଫଳରେ ସୋମସ୍ୱାମୀ ସଙ୍ଗେ ସଙ୍ଗେ ବାନରରୂପ ପରିତ୍ୟାଗ ପୂର୍ବକ ମାନବ ଶରୀରରେ ସେଠାରେ ଦଣ୍ଡାୟମାନ ହେଲା । ବିଜୁଳିତୁଲ୍ୟ ମୋକ୍ଷଦା ଅନ୍ତର୍ହିତ ହୋଇଯାଆନ୍ତେ ଉଭୟେ ସେଠାରେ କଠୋର ତପସ୍ୟା ଆଚରଣ କରି ମୋକ୍ଷଧାମ ପ୍ରାପ୍ତ ହେଲେ ।

ଏହିପରି ସ୍ୱଭାବଚଞ୍ଚଳା ସ୍ତ୍ରୀମାନେ ବିବେକ ଓ ବୈରାଗ୍ୟ ବିରୋଧୀ ଦୁରାଚାରକୁ କଦାପି ପରିତ୍ୟାଗ କରିପାରନ୍ତି ନାହିଁ । ଏମାନଙ୍କ ମଧ୍ୟରେ ପତିବ୍ରତା ବିରଳ । ଚନ୍ଦ୍ରକଳା ଆକାଶକୁ ସୁଶୋଭିତ କଲାପରି ଏମାନେ କଦାପି ନିଜର କୁଳକୁ ଉଜ୍ଜ୍ୱଳ କରିପାରନ୍ତି ନାହିଁ ।

ଗୋମୁଖଙ୍କଠାରୁ ଏ ପ୍ରକାର ମନୋରମ ଗଳ୍ପ ଶ୍ରବଣ କରି ନରବାହନଦତ୍ତ ଓ ରତ୍ନପ୍ରଭା ଯଥେଷ୍ଟ ଆନନ୍ଦ ଲାଭ କଲେ ।



## ଚତୁର୍ଥ ତରଙ୍ଗ

ଗୋମୁଖଙ୍କଠାରୁ ଉପରୋକ୍ତ ବିଚିତ୍ର ଗଳ୍ପ ଶ୍ରବଣ କରି ନରବାହନଦତ୍ତ ପ୍ରସନ୍ନ ହେବା ଦେଖି ମରୁଭୂତି କହିଲେ ଯେ ସ୍ତ୍ରୀ ମାତ୍ରେ ଚଞ୍ଚଳ ପ୍ରକୃତିର ବୋଲି କହିବା ଏକାନ୍ତ ସତ୍ୟ ନୁହେ । ଏପରି ଅନେକ ବେଶ୍ୟା ମଧ୍ୟ ଅଛନ୍ତି ଯେଉଁମାନେ ଚରିତ୍ରବତୀ । ଏ ସମ୍ପର୍କରେ ସେ ଏକ ଗଳ୍ପ ଶୁଣାଇବା ଆରମ୍ଭ କଲେ—

### ରାଜା ବିକ୍ରମାଦିତ୍ୟ ଓ ବେଶ୍ୟା ମଦନମାଳା କଥା

ପାଟଳିପୁତ୍ର ନଗରରେ ବିକ୍ରମାଦିତ୍ୟ ବୋଲି ଜଣେ ରାଜା ଥିଲେ । ତାଙ୍କର ଦୁଇଜଣ ପରମ ମିତ୍ରରାଜା ହେଉଛନ୍ତି ହୟପତି ଓ ଗଜପତି । ଏହି ଉଭୟ ରାଜାଙ୍କ ସେନାବାହିନୀ ମଧ୍ୟରେ ପ୍ରଚୁର ପରିମାଣରେ ଅଶ୍ୱାରୋହୀ ଓ ଗଜାରୋହୀ ସୈନ୍ୟ ଥାଆନ୍ତି । ପ୍ରତିଷ୍ଠାନପୁରର ପରାକ୍ରମଶାଳୀ ରାଜା ନରସିଂହ ହେଉଛନ୍ତି ବିକ୍ରମାଦିତ୍ୟଙ୍କର ଏକମାତ୍ର ଶତ୍ରୁ । ସେ କୌଣସିମତେ ତାଙ୍କର ବଶତା ସ୍ୱୀକାର କରୁନଥିଲେ ।

ଏକଦା ରାଜା ବିକ୍ରମାଦିତ୍ୟ ଉଭୟ ମିତ୍ରରାଜାଙ୍କର ସେନାବାହିନୀ ଉପରେ ନିର୍ଭର କରି ପ୍ରତିଜ୍ଞା କରି ବସିଲେ ଯେ ସେ ନରସିଂହଙ୍କୁ ଏପରି ଭାବରେ ପରାସ୍ତ କରିବେ ଯେପରି ନରସିଂହ ଅନ୍ୟାନ୍ୟ ସେବକମାନଙ୍କତୁଲ୍ୟ ଭାଟ ଓ ଭୃତ୍ୟମାନଙ୍କଦ୍ୱାରା ପ୍ରଥମେ ରାଜ ଅନୁମତି ପାଇବା ପରେ ହିଁ ତାଙ୍କୁ ଦର୍ଶନ କରିବାର ସୁଯୋଗ ଲାଭ କରିବେ । ଏହିପରି ପ୍ରତିଜ୍ଞାବଦ୍ଧ ହୋଇ ସେ ଉଭୟ ହୟପତି ଓ ଗଜପତିଙ୍କ ସମ୍ମତିକ୍ରମେ ସେମାନଙ୍କର ବିଶାଳ ଅଶ୍ୱାରୋହୀ ଓ ଗଜାରୋହୀ ସେନା ଏବଂ ନିଜର ବିପୁଳ ସୈନ୍ୟବାହିନୀ ସହିତ ପ୍ରତିଷ୍ଠାନପୁର ଆକ୍ରମଣ କଲେ । ବିକ୍ରମଙ୍କର ଆକ୍ରମଣ ବାର୍ତ୍ତା ଶ୍ରବଣ ମାତ୍ରେ ନରସିଂହ ନିଜର ବିଶାଳ ପଦାତିକ ସେନା ନେଇ ସମର ଭୂମିରେ ଅବତୀର୍ଣ୍ଣ ହେଲେ । ଗଜାରୋହୀ ଓ ଅଶ୍ୱାରୋହୀ ସେନା ସହ ପଦାତିକ ବାହିନୀର ଅଭୂତପୂର୍ବ

ଯୁଦ୍ଧ ସଂଘଟିତ ହେଲା । କ୍ରମଶଃ ନରସିଂହଙ୍କର ଏକ କୋଟି ପଦାତିକ ସେନା ବିକ୍ରମଙ୍କ ବିଶାଳ ବାହିନୀକୁ ପରାସ୍ତ କଲେ । ବିଜିତ ବିକ୍ରମ ପାଟଳିପୁତ୍ର ପଳାୟନ କରନ୍ତେ ହୟପତି ଓ ଗଜପତି ନିଜ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ବାଧ୍ୟ ହେଲେ । ନରସିଂହ ମଧ୍ୟ ବିଜୟ ଗର୍ବରେ ମାଗଧ ଓ ଭାଟମାନଙ୍କଦ୍ୱାରା ପ୍ରଶଂସିତ ହୋଇ ପ୍ରତିଷ୍ଠାନପୁର ନଗରରେ ପ୍ରବେଶ କଲେ ।

ରାଜା ବିକ୍ରମାଦିତ୍ୟ ପରାଜିତ ହୋଇ ଚିନ୍ତା କଲେ ଯେ ନରସିଂହ ଶକ୍ତିରେ ଅଜେୟ; ତେଣୁ ତାଙ୍କୁ ବୁଦ୍ଧି ବଳରେ ହିଁ ଜୟ କରିବାକୁ ହେବ । ଅବଶ୍ୟ ଏଥିପାଇଁ ନିନ୍ଦିତ ହେବାକୁ ପଡ଼ିପାରେ, କିନ୍ତୁ ନିଜର ପ୍ରତିଜ୍ଞା ରକ୍ଷାହେବା ଆବଶ୍ୟକ । ଏହି ସିଦ୍ଧାନ୍ତରେ ଉପନୀତ ହୋଇ ସେ ରାଜ୍ୟଭାର ମନ୍ତ୍ରୀମାନଙ୍କ ଉପରେ ଅର୍ପଣ କଲେ । ଏକଶତ ରାଜପୁତ ଏବଂ ପାଞ୍ଚଜଣ ବିଶିଷ୍ଟ ଅଙ୍ଗରକ୍ଷୀ ସହ ସେ ଜଣେ ସାଧବର ଛଦ୍ମ ବେଶରେ ଯାଇ ପ୍ରତିଷ୍ଠାନପୁର ନଗରରେ ପ୍ରବେଶ କଲେ ।

ସେଠାରେ ଉପସ୍ଥିତ ହୋଇ ରାଜା ବିକ୍ରମ ମଦନମାଳା ନାମ୍ନୀ କୌଣସି ବେଶ୍ୟାର ରାଜଭବନ ତୁଲ୍ୟ ଅଟ୍ଟାଳିକାରେ ଯାଇ ପହଞ୍ଚିଲେ । ଏହି ବିଶାଳ ଭବନର ଶିଖର ଦେଶରେ ଉଡ୍‌ଡ଼ୀୟମାନ ପତାକାରାଶି ସତେ ଯେପରି ଆଗନ୍ତୁକମାନଙ୍କୁ ସାଦର ନିମନ୍ତ୍ରଣ ଜଣାଉଥିଲା । ଏହାର ପୂର୍ବଦ୍ୱାରକୁ ବିଂଶ ସହସ୍ର ସୈନିକ ରକ୍ଷା କରୁଥିଲେ ଏବଂ ଅନ୍ୟ ତିନି ଦ୍ୱାରରେ ଦଶ ଦଶ ହଜାର ଶକ୍ତିଶାଳୀ ସୈନିକ ସର୍ବଦା ପହରା ଦେଉଥିଲେ । ପ୍ରତିହାରମାନଙ୍କଦ୍ୱାରା ନିଜର ଆଗମନ ବାର୍ତ୍ତା ସୂଚିତ କରି ରାଜା ଭବନ ମଧ୍ୟରେ ପ୍ରବେଶ କଲେ । ଏହି ପ୍ରାସାଦର କେଉଁ ଅଂଶ ସୁସଜ୍ଜିତ ଶ୍ରେଷ୍ଠ ଅଶ୍ୱମାନଙ୍କଦ୍ୱାରା, କେଉଁ ଅଂଶ ପର୍ବତ ତୁଲ୍ୟ ହସ୍ତୀମାନଙ୍କଦ୍ୱାରା ଶୋଭା ପାଉଥିଲା । କେଉଁଠାରେ ବିବିଧ ପ୍ରକାର ଅସ୍ତ୍ରଶସ୍ତ୍ର ସୁସଜ୍ଜିତ ହୋଇ ରହିଥିଲା, କେଉଁ ପ୍ରକୋଷ୍ଠ ମୂଲ୍ୟବାନ ରତ୍ନରାଶିଦ୍ୱାରା ଆଲୋକିତ ହୋଇ ଉଠୁଥିଲା, ଅନ୍ୟ କେଉଁ ପ୍ରକୋଷ୍ଠରୁ ସଙ୍ଗୀତ ଓ ମୃଦଙ୍ଗର ସୁମଧୁର ଧ୍ୱନି ଆଗନ୍ତୁକମାନଙ୍କର କର୍ଣ୍ଣକୁହରରେ ଅମୃତ ବୃଷ୍ଟି କରୁଥିଲା । ସପ୍ତ ପ୍ରାକାର ପରିବେଷ୍ଟିତ ଏହି ଅଟ୍ଟାଳିକାର ଶୀର୍ଷ ଦେଶରେ ଯାଇ ରାଜା ବିକ୍ରମ ମଦନମାଳାର ଅନ୍ତଃପୁରରେ ଉପସ୍ଥିତ ହେଲେ ।

ମଦନମାଳା ଭବନର ବହିର୍ଦ୍ଦେଶରେ ଥିବା ତାଙ୍କର ଗଜ ଅଶ୍ୱ ପ୍ରଭୃତି ଦେଖି ଏବଂ ଗୁପ୍ତଚରମାନଙ୍କଦ୍ୱାରା ତାଙ୍କର ସନ୍ଧାନ ନେଇ, ତାଙ୍କୁ ଜଣେ ଗୁପ୍ତ ବେଶଧାରୀ ଧନାଢ଼୍ୟ ବ୍ୟକ୍ତି ବୋଲି ମନେ କଲା ଏବଂ ପ୍ରଣାମ ଓ ସ୍ୱାଗତ ସତ୍କାରପୂର୍ବକ ରାଜୋଚିତ

ଆସନରେ ନେଇ ଆସୀନ କରାଇଲା । ରାଜା ମଧ ତାର ରୂପ, ଲାବଣ୍ୟ ଓ ଆଚରଣରେ ମୁଗ୍ଧ ହୋଇ ତା' ପ୍ରତି ଆକୃଷ୍ଟ ହୋଇପଡ଼ିଲେ ।

ଏହାପରେ ମଦନମାଳା ବହୁମୂଲ୍ୟ ସ୍ନାନୀୟ, ପୁଷ୍ପ, ଅନୁଲେପନ, ବସ୍ତ୍ର, ଭୂଷଣ ଇତ୍ୟାଦିଦ୍ୱାରା ରାଜାଙ୍କର ସତ୍କାରପୂର୍ବକ ତାଙ୍କର ପରିଚରମାନଙ୍କୁ ପାନ ଭୋଜନ ଇତ୍ୟାଦିରେ ଆପ୍ୟାୟିତ କଲା । ଦର୍ଶନ ମାତ୍ରେ ବିକ୍ରମଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇ ପଡ଼ିଥିବା ମଦନମାଳା ଆସବ, ସଙ୍ଗୀତ ଓ ବୀଣାବାଦନଦ୍ୱାରା ସର୍ବଦା ରାଜାଙ୍କର ମନୋରଞ୍ଜନ କରି ନିଜକୁ ତାଙ୍କ ନିକଟରେ ସମ୍ପୂର୍ଣ୍ଣରୂପେ ସମର୍ପିତ କରିଦେଲା । ବେଶ୍ୟାଠାରୁ ରାଜଚକ୍ରବର୍ତ୍ତୀ ଭୋଗ ପାଇ ସେ ସେଠାରେ ଗୁପ୍ତ ଭାବରେ କିଛିଦିନ ରହିବାକୁ ଲାଗିଲେ । ଯାଚକମାନଙ୍କୁ ସେ ପ୍ରତ୍ୟହ ଯାହା କିଛି ଅର୍ଥପ୍ରଦାନ କରୁଥିଲେ, ମଦନମାଳା ତାହା ଦେଖିବାମାତ୍ରେ ସେମାନଙ୍କଠାରୁ ସେଗୁଡ଼ିକ ସଂଗ୍ରହ କରି ନିଜେ ରଖି ନେଉଥିଲା । ରାଜା ବିକ୍ରମଙ୍କ ପ୍ରତି ସେ ଏପରି ଆକୃଷ୍ଟ ହୋଇ ପଡ଼ିଥିଲା ଯେ ଅନ୍ୟମାନଙ୍କଠାରୁ ସମସ୍ତ ସମ୍ପର୍କ ଛିନ୍ନ କରି ବିକ୍ରମଙ୍କଦ୍ୱାରା ଉପଭୁକ୍ତ ଧନସମ୍ପତ୍ତି ଓ ଶରୀରକୁ ସଫଳ ଓ ସାର୍ଥକ ହେଲା ବୋଲି ମନେ କରୁଥିଲା । ଏପରିକି ପ୍ରତିଷ୍ଠାନପୁରର ନରପତି ନରସିଂହଙ୍କୁ ମଧ ସେ କୌଶଳରେ ଆସିବା ନିମନ୍ତେ ବାରଣ କରି ଦେଉଥିଲା ।

ଏହିପରି ମଦନମାଳାର ପ୍ରେମପାଶରେ ଆବଦ୍ଧ ରାଜା ବିକ୍ରମ ନିଜ ସହିତ ଗୁପ୍ତରେ ବାସ କରୁଥିବା ମନ୍ତ୍ରୀ ବୁଦ୍ଧିବରଙ୍କୁ ଦିନେ ଏକାନ୍ତରେ କହିଲେ, 'ବେଶ୍ୟାମାନେ ସାଧାରଣତଃ ଅର୍ଥଲୋଭୀ । ଧନ ବ୍ୟତୀତ ସେମାନେ କାମଦେବଙ୍କ ପ୍ରତି ମଧ କଦାପି ଆକୃଷ୍ଟ ହୁଅନ୍ତି ନାହିଁ । ବିଧାତା ପ୍ରଥମେ ଭିକ୍ଷୁକମାନଙ୍କୁ ସୃଷ୍ଟି କଲେ ଏବଂ ପରେ ସେମାନଙ୍କର ସମସ୍ତ ଲାଳସାକୁ ଏକତ୍ର କରି ବେଶ୍ୟାମାନଙ୍କୁ ସୃଷ୍ଟି କଲେ । କିନ୍ତୁ ଏହି ମଦନମାଳା ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ମନେହୁଏ । ମୁଁ ଯଥେଚ୍ଛା ଭାବରେ ତାର ସମ୍ପତ୍ତି ଉପଭୋଗ କଲେ ହେଁ ସେ ମୋ ପ୍ରତି ବିରକ୍ତ ନ ହୋଇ ବରଂ ପ୍ରସନ୍ନ ହେଉଅଛି । ତେଣୁ ଏହାକୁ ସନ୍ତୁଷ୍ଟ କରିବା ପାଇଁ କି ଉପାୟ ଅବଲମ୍ବନ କରାଯାଇପାରେ; ଏହାଦ୍ୱାରା ସେ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ ଆମର ଅଭିଳାଷ ମଧ ପୂର୍ଣ୍ଣ ହେବ ।

ଏହା ଶୁଣି ବୁଦ୍ଧିବର ଚିନ୍ତା କରି ଉତ୍ତର ଦେଲେ, 'ଯଦି ଆପଣଙ୍କର ଏ ପ୍ରକାର ଅଭିଳାଷ, ତାହେଲେ ପ୍ରପଞ୍ଚବୁଦ୍ଧି ନାମକ ତପସ୍ୱୀ ଆପଣଙ୍କୁ ଯେଉଁ ରତ୍ନ ଦାନ କରିଥିଲେ, ସେହି ବହୁମୂଲ୍ୟ ରତ୍ନ ଆପଣ ଏହାକୁ ପ୍ରଦାନ କରନ୍ତୁ ।' କିନ୍ତୁ ରାଜା ପ୍ରତ୍ୟୁତ୍ତରରେ କହିଲେ, 'ଏ ସମସ୍ତ ଦ୍ୱାରା ମଧ ଏ ଉପକାରର ଯଥାର୍ଥ ପ୍ରତ୍ୟୁପକାର ହେବ ନାହିଁ ।

ଏହାର ପ୍ରତ୍ୟୁପକାର ପାଇଁ ଏହି ପ୍ରପଞ୍ଚବୁଦ୍ଧି ବୃତ୍ତାନ୍ତ ସହ ସଂଶ୍ଳିଷ୍ଟ ଅନ୍ୟ ଏକ ଉପାୟ ଅଛି ।' ଏହା ଜାଣିବାପାଇଁ ବୁଦ୍ଧିବର ଆଗ୍ରହ ପ୍ରକାଶ କରନ୍ତେ, ରାଜା ବିକ୍ରମାଦିତ୍ୟ ଆରମ୍ଭ କଲେ–

## ପ୍ରପଞ୍ଚବୁଦ୍ଧି ଭିକ୍ଷୁ କଥା

ଅତୀତରେ ପାଟଳିପୁତ୍ର ନଗରୀରେ ବାସ କରୁଥିବା ଭିକ୍ଷୁ ପ୍ରପଞ୍ଚବୁଦ୍ଧି ଆସି ପ୍ରତ୍ୟହ ମୋତେ ଗୋଟିଏ କରି ନିବୁଜ ଫରୁଆ ପ୍ରଦାନ କରୁଥିଲା । ଏକ ବର୍ଷ ପର୍ଯ୍ୟନ୍ତ ତା'ଠାରୁ ଏ ପ୍ରକାର ଗୋଟିଏ ଗୋଟିଏ ସମ୍ପୁଟକ ପ୍ରାପ୍ତହୋଇ ମୁଁ ସେଗୁଡ଼ିକୁ ସେହିପରି ନେଇ ଭଣ୍ଡାରରକ୍ଷକ ହସ୍ତରେ ଅର୍ପଣ କରୁଥାଏ । ଦିନେ ଦୈବକ୍ରମେ ଗୋଟିଏ ଫରୁଆ ମୋ ହାତରୁ ତଳେ ପଡ଼ିଯାଇ ଖୋଲିଗଲା । ଫଳରେ ତା ଭିତରେ ଗୋଟିଏ ଅତି ଉଜ୍ଜ୍ୱଳ ରତ୍ନଖଣ୍ଡ ଥିବା ଜଣାଗଲା । ଜ୍ୱଳନ୍ତ ଅଗ୍ନିଖଣ୍ଡ ତୁଲ୍ୟ ଏହି ରତ୍ନଖଣ୍ଡିକୁ ଦେଖି ମୋର ହୃଦୟ ଆନନ୍ଦରେ ନାଚି ଉଠିଲା । ମୁଁ ପୂର୍ବରୁ ପାଇଥିବା ସମସ୍ତ ସମ୍ପୁଟକ ମଗାଇ ଆଣି ସେଗୁଡ଼ିକୁ ପରୀକ୍ଷା କରନ୍ତେ ପ୍ରତ୍ୟେକରୁ ସେହିପରି ଗୋଟିଏ ଗୋଟିଏ ରତ୍ନ ଖଣ୍ଡ ନିର୍ଗତ ହେଲା । ମୁଁ ବିସ୍ମିତ ହୋଇ ପ୍ରପଞ୍ଚବୁଦ୍ଧିକୁ ଏହାର କାରଣ ଜିଜ୍ଞାସା କଲି । ସେ ମୋତେ ଏକ ନିର୍ଜନ ସ୍ଥାନକୁ ନେଇଯାଇ ଏକାନ୍ତ ଗୁପ୍ତଭାବରେ କହିଲା, 'ଆଗାମୀ କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରରେ ମୁଁ ଗୋଟିଏ ବିଦ୍ୟା ସିଦ୍ଧ କରିବି । ସେଥିରେ ସହାୟତା କରିବା ନିମିତ୍ତ ତୁମପରି ଜଣେ ବୀରପୁରୁଷ ମୋର ଆବଶ୍ୟକ । କୌଣସି ବୀରପୁରୁଷ ସାହାଯ୍ୟରେ ସମସ୍ତ ବିଘ୍ନ ଦୂରୀଭୂତ ହେଲେ ମୋର ସିଦ୍ଧି ଲାଭ ସହଜ ହେବ ।' ଭିକ୍ଷୁଠାରୁ ଏହା ଶ୍ରବଣ କରି ମୁଁ ତାହାର ସହାୟତା କରିବା ନିମିତ୍ତ ସ୍ୱୀକୃତ ହେଲି । ସେ ମଧ୍ୟ ପ୍ରସନ୍ନ ଚିତ୍ତରେ ସ୍ୱ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲା ।

କିଛି ଦିନ ବିତିଗଲା । କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ମୋର ପ୍ରପଞ୍ଚବୁଦ୍ଧି ଭିକ୍ଷୁ କଥା ସ୍ମରଣ ହେଲା । ପ୍ରାତଃକାଳରୁ ନିତ୍ୟକର୍ମ ସମାପନ କରି ମୁଁ ସାୟଂକାଳର ଅପେକ୍ଷାରେ ରହିଲି । ସନ୍ଧ୍ୟାରେ ସାନ୍ଧ୍ୟକୃତ୍ୟ ସମାପନ ପୂର୍ବକ ମୁଁ ଚଞ୍ଚଳ ନିଦ୍ରାଗତ ହେଲି । ନିଦ୍ରା ଆସିବା ମାତ୍ରେ ସ୍ୱୟଂ ଭଗବାନ୍ ବିଷ୍ଣୁ ଗରୁଡ଼ ପୃଷ୍ଠରେ ଲକ୍ଷ୍ମୀଙ୍କ ସହ ଆସି ମୋତେ ସତର୍କ କରାଇ ଦେଇ କହିଲେ, 'ସେହି ଭିକ୍ଷୁ କେବଳ ନାମରେ ନୁହେ କାର୍ଯ୍ୟରେ ମଧ୍ୟ ପ୍ରପଞ୍ଚବୁଦ୍ଧି । ସେ ମଣ୍ଡଳପୂଜା କଲାବେଳେ ତୋତେ ଶ୍ମଶାନକୁ ନେଇ ବଳିଦେବ । ଏଣୁ

ସେ ଯାହା କହିବ, ତୁ ତାହା କରିବୁ ନାହିଁ । ତୁ କହିବୁ ଯେ ଯାହା କର୍ତ୍ତବ୍ୟ ତାହା ସେ ନିଜେ ପ୍ରଥମେ ଦେଖାଇ ଶିକ୍ଷା ଦେଉ । ସେ ତୋତେ ଶିକ୍ଷା ଦେବାପାଇଁ କିଛି କଲାବେଳେ ତୁ କୌଶଳରେ ତାକୁ ହତ୍ୟା କରିବୁ । ଫଳରେ ସେ ଯେଉଁ ସିଦ୍ଧି ଲାଭ କରିବା ପାଇଁ ଚେଷ୍ଟା କରୁଅଛି, ତୁ ତାହା ଲାଭ କରିପାରିବୁ ।'

ଭଗବାନ୍ ବିଷ୍ଣୁ ଏହା କହି ଅନ୍ତର୍ହିତ ହୁଅନ୍ତେ ମୁଁ ନିଦ୍ରାତ୍ୟାଗ ପୂର୍ବକ ଭାବିଲି, ପ୍ରଭୁ ଦୟାକରି ମୋତେ ଏହି ପାପିଷ୍ଠ ଭିକ୍ଷୁର ପ୍ରକୃତ ସ୍ୱରୂପ ଜଣାଇ ଦେଲେ । ନୋଚେତ୍ ମୋର ମୃତ୍ୟୁ ସୁନିଶ୍ଚିତ ଥିଲା । ତାକୁ ନିଶ୍ଚୟ ହତ୍ୟା କରିବାକୁ ହେବ । ଏହିପରି ଚିନ୍ତାକରି ମୁଁ ରାତ୍ରିର ଦ୍ୱିତୀୟ ପ୍ରହରରେ ଉନ୍ମୁକ୍ତ ତରବାରି ହସ୍ତରେ ଯାଇ ଭିକ୍ଷୁ ନିକଟରେ ଉପସ୍ଥିତ ହେଲି । ସେଠାରେ ଏକ ମଣ୍ଡଳ ମଧ୍ୟରେ ବସି ସେ ଉପାସନା କରୁଥାଏ । ମୋତେ ତା' ନିକଟରେ ଦେଖି ସେ ଆନନ୍ଦିତ ହୋଇ ନିର୍ଦ୍ଦେଶ ଦେଲା, 'ଚକ୍ଷୁ ମୁଦ୍ରିତ କରି ଏଠାରେ ସାଷ୍ଟାଙ୍ଗ ପ୍ରଣିପାତ କର । ତା'ହେଲେ ଉଭୟେ ସମାନ ସିଦ୍ଧିର ଅଧିକାରୀ ହେବା ।' ମୁଁ ଭଗବାନ୍ ବିଷ୍ଣୁଙ୍କର କରୁଣାମୟ ଉପଦେଶ ସ୍ମରଣ କରି ତାକୁ କହିଲି, 'ତୁମେ ପ୍ରଥମେ ପ୍ରଣାମ କରି ମୋତେ ଶିଖାଇଦିଅ । ତୁମଠାରୁ ଶିକ୍ଷାକରି ପରେ ମୁଁ ସେହିପରି କରିବି ।' ଏହା ଶୁଣି ସେହି ମୂର୍ଖ ଭିକ୍ଷୁ ପ୍ରଥମେ ସାଷ୍ଟାଙ୍ଗ ପ୍ରଣାମ କଲା । ଏହି ଅବସରରେ ମୁଁ ମୋର ତରବାରିଦ୍ୱାରା ତାର ମସ୍ତକ ଛେଦନ କଲି ।

ତାର ମସ୍ତକ ଶରୀରରୁ ବିଚ୍ଛିନ୍ନ ହେବା ମାତ୍ରେ ଶୁଣାଗଲା, 'ରାଜନ୍, ତୁମେ ଏହି ପାପୀ ଭିକ୍ଷୁକୁ ବଳିଦାନ କରି ଅତି ଉତ୍ତମ କର୍ମ କରିଅଛ । ଏଣୁ ମୁଁ, ଧନାଧିପତି କୁବେର, ତୁମପ୍ରତି ପ୍ରସନ୍ନ । ବର୍ତ୍ତମାନ ତୁମର ଯାହା ଇଚ୍ଛା, ସେହି ବର ପ୍ରାର୍ଥନା କର ।' ଏହା କହି ସ୍ୱୟଂ କୁବେର ମଧ୍ୟ ନିଜେ ଆସି ମୋର ସମ୍ମୁଖରେ ଉପସ୍ଥିତ ହେଲେ । ମୁଁ ତାଙ୍କୁ ପ୍ରଣାମ କରି କହିଲି, 'ଭଗବନ୍, ଆବଶ୍ୟକ ବେଳେ ବର ପ୍ରାର୍ଥନା କରିବି, ସେତେବେଳେ ଆପଣ ସ୍ୱୟଂ ଉପସ୍ଥିତ ହୋଇ ମୋତେ ଅଭୀଷ୍ଟ ବର ପ୍ରଦାନର ପ୍ରତିଶ୍ରୁତି ଦିଅନ୍ତୁ ।' କୁବେର 'ତଥାସ୍ତୁ' କହି ଅନ୍ତର୍ହିତ ହୁଅନ୍ତେ ମୁଁ ଏହି ଅକ୍ଷୟସିଦ୍ଧି ଲାଭ ପୂର୍ବକ ସ୍ୱଭବନକୁ ପ୍ରତ୍ୟାବର୍ତ୍ତନ କଲି ।

ଏହାହିଁ ପ୍ରପଞ୍ଚବୁଦ୍ଧି ଭିକ୍ଷୁଦ୍ୱାରା ଲାଭ ହୋଇଥିବା ମୋର ସିଦ୍ଧିର ବୃତ୍ତାନ୍ତ । ବର୍ତ୍ତମାନ ଏହି ସିଦ୍ଧିଦ୍ୱାରା ମୁଁ ମଦନମାଳାର କିଛି ପ୍ରତ୍ୟୁପକାର କରିବି । ତୁମେ ବର୍ତ୍ତମାନ ଗୁପ୍ତବେଶରେ ଥିବା ସୈନିକମାନଙ୍କ ସହ ପାଟଳିପୁତ୍ର ଫେରିଯାଅ । ମୁଁ ମଦନମାଳାର ପ୍ରତ୍ୟୁପକାର କରିବା ପରେ ପାଟଳିପୁତ୍ର ଯାଇ ପୁଣି ଏଠାକୁ ଫେରି ଆସିବି ।

ଏହା କହି ବିକ୍ରମାଦିତ୍ୟ ବୁଦ୍ଧିବରଙ୍କୁ ସୈନ୍ୟମାନଙ୍କ ସହ ବିଦାୟ ଦେଲେ । ସେ ଚାଲିଯିବା ପରେ ରାଜା ଭାବୀ ବିରହ ନିମିତ୍ତ ବ୍ୟାକୁଳିତ ହୋଇ ମଦନମାଳା ସହ ସେହି ରାତ୍ରିଟି ନିରାନନ୍ଦରେ ହିଁ କଟାଇଦେଲେ । ମଦନମାଳା ରାଜାଙ୍କ ମନୋବେଦନା ଜାଣିଲା ପରି ଅତୃପ୍ତ ହୃଦୟରେ ତାଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ ରଖି ନିଦ୍ରା ଗଲା ।

ପ୍ରାତଃକାଳରୁ ଶଯ୍ୟା ତ୍ୟାଗ କରି ରାଜା ଜପ କରିବା ଛଳରେ ଏକାକୀ ଉପାସନା ମନ୍ଦିରରେ ଯାଇ ପହଞ୍ଚିଲେ । ସେଠାରେ ସ୍ମରଣ କରିବାମାତ୍ରେ ସ୍ୱୟଂ କୁବେର ଆସି ଉପସ୍ଥିତ ହେବାରୁ ରାଜା ବିକ୍ରମ ତାଙ୍କୁ ପ୍ରଣାମ କରି ପ୍ରାର୍ଥନା କଲେ, 'ଭଗବନ୍, ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ଆପଣ ମୋତେ ସୁବର୍ଣ୍ଣ ନିର୍ମିତ ଏପରି ପାଞ୍ଚୋଟି ଅକ୍ଷୟ ପୁରୁଷ ପ୍ରଦାନ କରନ୍ତୁ ଯାହାକୁ ପ୍ରତିଦିନ ବାରମ୍ବାର କର୍ତ୍ତନ କଲେ ହେଁ କର୍ତ୍ତିତ ଅଂଶ ପୁଣି ପୂର୍ବପରି ପୂର୍ଣ୍ଣାଙ୍ଗ ହୋଇ ଯାଉଥିବ ।' କୁବେର ବରପ୍ରଦାନ ପୂର୍ବକ ସେଠାରୁ ଅନ୍ତର୍ହିତ ହୋଇଗଲେ ଏବଂ ତତ୍‌କ୍ଷଣାତ୍ ମନ୍ଦିର ଗର୍ଭରେ ପାଞ୍ଚଗୋଟି ରତ୍ନପୁରୁଷ ରାଜାଙ୍କ ଦୃଷ୍ଟିଗୋଚର ହେଲା । ରାଜା ମଧ୍ୟ ନିଜର ଅଭିଳାଷ ପୂର୍ଣ୍ଣ ହେବା ଦେଖି, ଅବଶ୍ୟ ନିଜର ପ୍ରତିଜ୍ଞା ବିସ୍ମୃତ ନ ହୋଇ, ଆକାଶମାର୍ଗରେ ପାଟଳିପୁତ୍ର ନଗର ଅଭିମୁଖରେ ଅଗ୍ରସର ହେଲେ । ସେଠାରେ ମହାରାଣୀ, ମନ୍ତ୍ରୀ, ପରିଷଦ ଏବଂ ଉତ୍କଣ୍ଠିତ ଜନତାଦ୍ୱାରା ଅଭିନନ୍ଦିତ ହୋଇ ପୁଣି ରାଜକାର୍ଯ୍ୟରେ ମନୋଯୋଗ କଲେ । କିନ୍ତୁ ତାଙ୍କ ଚିତ୍ତବୃତ୍ତି ସର୍ବଦା ପ୍ରତିଷ୍ଠାନପୁର ପ୍ରତି ଉନ୍ମୁଖ ରହିଥାଏ ।

ଏଣେ ପ୍ରତିଷ୍ଠାନପୁର ନଗରରେ ବେଶ୍ୟା ମଦନମାଳା ରାଜାଙ୍କର ଅତ୍ୟନ୍ତ ବିଳମ୍ବ ଦେଖି ଦେବମନ୍ଦିର ମଧ୍ୟରେ ଯାଇ ପ୍ରବେଶ କଲା । ସେଠାରେ ଚତୁର୍ଦ୍ଦିଗ ଅନୁସନ୍ଧାନ କରି ସେ ରାଜାଙ୍କର ଦର୍ଶନ ଲାଭ କରିପାରିଲା ନାହିଁ, ପ୍ରତ୍ୟୁତ ପାଞ୍ଚଟି ବିଶାଳ ରତ୍ନପୁରୁଷ ତାର ଦୃଷ୍ଟି ଆକର୍ଷଣ କଲେ । ସେଗୁଡ଼ିକୁ ଦେଖି ମଦନମାଳା ଭାବିଲା ଯେ ତାର ପ୍ରେମିକ କୌଣସି ବିଦ୍ୟାଧର ବା ଗନ୍ଧର୍ବ ହେବେ; ପ୍ରତିଦାନ ସ୍ୱରୂପ ଏହି ପାଞ୍ଚଟି ରତ୍ନପୁରୁଷ ପ୍ରଦାନ କରି ଅନ୍ତର୍ହିତ ହୋଇଯାଇଛନ୍ତି । ତାଙ୍କରି ଅନୁପସ୍ଥିତିରେ ଏହି ପାଞ୍ଚଟି ପୁରୁଷରେ ତାର ବା ଆବଶ୍ୟକତା କ'ଣ ? ଏହିପରି ଚିନ୍ତା କରି ସେ ଉପାସାନ ମନ୍ଦିରରୁ ନିର୍ଗତ ହୋଇ ସେବକମାନଙ୍କୁ ଅତିଥିଙ୍କ ସମ୍ପର୍କରେ ବାରମ୍ବାର ଜିଜ୍ଞାସା କଲା ଏବଂ ପାଗଳିନୀ ତୁଲ୍ୟ ଏଣେ ତେଣେ ଖୋଜିବାକୁ ଲାଗିଲା । ଭବନ, ଉଦ୍ୟାନ, ଉପବନ କେହି ତାର ଶାନ୍ତି ବିଧାନ କରିପାରିଲେ ନାହିଁ । ବିକ୍ରମଙ୍କ ବିରହ ବେଦନା ଅସହ୍ୟ ହୋଇ ଉଠିବାରୁ ସେ ଶରୀର ତ୍ୟାଗ କରିବା ନିମିତ୍ତ ପ୍ରସ୍ତୁତ ହେଲା ।

ସେବକ ସେବିକାମାନେ ସେହି ଦେବତା ଯେଉଁପରି ଅନ୍ତର୍ହିତ ହୋଇଛନ୍ତି ସେହିପରି ପୁଣି ଆସି ଉପସ୍ଥିତ ହେବେ ବୋଲି ଆଶ୍ୱାସନା ବାଣୀ ଶୁଣାଇବାରୁ ମଦନମାଳା କିଞ୍ଚିତ୍ ଆଶ୍ୱସ୍ତ ହେଲା । କିନ୍ତୁ ସେ ପ୍ରତିଜ୍ଞା କଲା ଯେ ଛ' ମାସ ମଧ୍ୟରେ ଯଦି ବିକ୍ରମଙ୍କ ସହ ପୁଣି ମିଳନ ନହୁଏ, ତା' ହେଲେ ସେ ସର୍ବସ୍ୱ ପ୍ରଦାନ ପୂର୍ବକ ଅଗ୍ନିରେ ଝାସ ଦେଇ ଆତ୍ମହତ୍ୟା କରିବ ।

ଏହିପରି ପ୍ରତିଜ୍ଞା କରି ସେ ଆତ୍ମହତ୍ୟାରୁ ନିବୃତ୍ତ ହେଲା । ପ୍ରତିଦିନ ବିଭିନ୍ନ ପ୍ରକାର ଦାନ ଧର୍ମରେ ଏବଂ ନିଜର ପ୍ରିୟତମ ବିକ୍ରମଙ୍କ ଧ୍ୟାନରେ ଲୀନ ରହି କୌଣସି ପ୍ରକାରେ ସେ ଜୀବନ ବିତାଉଥାଏ । ଉପରୋକ୍ତ ସ୍ୱର୍ଣ୍ଣନିର୍ମିତ ପୁରୁଷଗୁଡ଼ିକ ମଧ୍ୟରୁ ଗୋଟିକର ଗୋଟିଏ ହସ୍ତ ଛେଦନ କରି ସେ ଦିନେ ବ୍ରାହ୍ମଣମାନଙ୍କୁ ଦାନ କଲା । କିନ୍ତୁ ଦ୍ୱିତୀୟ ଦିନ ଉକ୍ତ ହସ୍ତଟି ପୁନର୍ବାର ଜାତ ହୋଇଥିବା ଦେଖି ତାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏହିପରି ସେ କ୍ରମଶଃ ପ୍ରତ୍ୟେକ ପୁରୁଷର ହସ୍ତ ଛେଦନ କରି ବ୍ରାହ୍ମଣମାନଙ୍କୁ ପ୍ରଦାନ କଲା, କିନ୍ତୁ ତାର ଆଶ୍ଚର୍ଯ୍ୟର ସୀମାକୁ ପ୍ରସାରଣ କରି ସେଗୁଡ଼ିକ ପୁଣି ଅଙ୍କୁରିତ ହେବାକୁ ଲାଗିଲା । ଏହାପରେ ଏହି ସୁବର୍ଣ୍ଣ ନିର୍ମିତ ପୁରୁଷଗୁଡ଼ିକୁ ଅକ୍ଷୟ ଓ ଅବ୍ୟୟ ଦେଖି ସେ ବେଦ ସଂଖ୍ୟା ଅନୁଯାୟୀ ବ୍ରାହ୍ମଣମାନଙ୍କୁ ଦାନ ଦେବା ଆରମ୍ଭ କଲା । ଅର୍ଥାତ୍ ଯେଉଁ ବ୍ରାହ୍ମଣ ଯେତୋଟି ବେଦ ଆୟତ୍ତ କରିଥାନ୍ତି ସେହି ବ୍ରାହ୍ମଣ ସେତେଗୋଟି ସୁବର୍ଣ୍ଣ ନିର୍ମିତ ହସ୍ତ ଲାଭ କରନ୍ତି ।

କିଛିଦିନ ଏହିପରି ଦାନ କରିବା ଫଳରେ ମଦନମାଳାର କୀର୍ତ୍ତି ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ତାର ଏପ୍ରକାର ପ୍ରସିଦ୍ଧି ଶୁଣି ଏକଦା ପାଟଳିପୁତ୍ର ନଗରରୁ ସଂଗ୍ରାମଦତ୍ତ ନାମକ ଜଣେ ବ୍ରାହ୍ମଣ ଆସି ସେଠାରେ ଉପସ୍ଥିତ ହେଲେ । ସେ ଦରିଦ୍ର କିନ୍ତୁ ଗୁଣବାନ୍ ଓ ଚତୁର୍ବେଦୀ । ଦ୍ୱାରପାଳମାନଙ୍କ ନିକଟରେ ନିଜର ପରିଚୟ ପ୍ରଦାନ କରନ୍ତେ ସେମାନେ ତାଙ୍କୁ ମଦନମାଳା ନିକଟକୁ ନେଇଗଲେ । ମଦନମାଳା ମଧ୍ୟ ନିଜର ବ୍ରତ ସମାପ୍ତ କରି ବ୍ରାହ୍ମଣଙ୍କର ବିଧି ପୂର୍ବକ ଅର୍ଚ୍ଚନା କଲା ଏବଂ ଚାରୋଟି ହସ୍ତ ତାଙ୍କୁ ପ୍ରଦାନ କଲା । ବ୍ରାହ୍ମଣ ମଦନମାଳାର କ୍ଷୀଣ ଶରୀର ଓ ବିରହକ୍ଲିଷ୍ଟ ପାଣ୍ଡୁର ମୁଖ ଦେଖି ଏବଂ ତାର ଅଗ୍ନିପ୍ରବେଶ ରୂପକ ଦୃଢ଼ ପ୍ରତିଜ୍ଞା ଶ୍ରବଣ କରି ଅତ୍ୟନ୍ତ ଦୁଃଖ ଲାଭ କଲେ । କିନ୍ତୁ ନିଜେ ତାକୁ ହଠାତ୍ କୌଣସି ସାହାଯ୍ୟ କରି ନ ପାରି ପ୍ରାପ୍ତ ସୁବର୍ଣ୍ଣମୟ ହସ୍ତଗୁଡ଼ିକୁ ନେଇ ପାଟଳିପୁତ୍ର ନଗରୀକୁ ପ୍ରତ୍ୟାବର୍ତ୍ତନ କଲେ ।

ନିଜ ଗୃହରେ ଉପସ୍ଥିତ ହୋଇ ସେ ଚିନ୍ତା କଲେ ଯେ ଏହି ସମ୍ପତ୍ତି ଯଦି ରାଜାଙ୍କଦ୍ୱାରା ସୁରକ୍ଷିତ ନ ହୁଏ ତାହା ହେଲେ ଏହା ତାଙ୍କ ପକ୍ଷରେ ଦୁଃଖଦାୟକ ହିଁ ହେବ । ଏ ପ୍ରକାର ଚିନ୍ତା କରି ସେ ରାଜା ବିକ୍ରମାଦିତ୍ୟଙ୍କୁ ଯାଇ ନିବେଦନ କଲେ, "ମହାରାଜ, ମୁଁ ଏହି ନଗର ମଧ୍ୟରେ ବାସ କରୁଥିବା ଜଣେ ଦରିଦ୍ର ବ୍ରାହ୍ମଣ । ଏକଦା ଭିକ୍ଷା କରିବା ନିମନ୍ତେ ଦକ୍ଷିଣ ଦିଗରେ ଥିବା ମହାରାଜ ନରସିଂହଙ୍କ ପ୍ରତିଷ୍ଠାନ ନଗରକୁ ଯାଇଥିଲି । ସେଠାରେ ଶୁଣିବାକୁ ପାଇଲି ଯେ ମଦନମାଳା ନାମକ କୌଣସି ବେଶ୍ୟା ଧନ ଦାନ କରିବାରେ ମୁକ୍ତହସ୍ତା । କୌଣସି ଦିବ୍ୟପୁରୁଷ ତା ନିକଟରେ କିଛିଦିନ ବାସ କରିବା ପରେ ତାକୁ ସୁବର୍ଣ୍ଣ ନିର୍ମିତ ପାଞ୍ଚଟି ଅକ୍ଷୟ ପୁରୁଷ ପ୍ରଦାନ କରି କୌଣସି ଆଡ଼େ ପଳାୟନ କଲା । ଉକ୍ତ ପୁରୁଷର ବିୟୋଗରେ ଦଗ୍ଧୀଭୂତା ମଦନମାଳା ଜୀବନକୁ ବିଷମୟ, ଶରୀରକୁ ନିଷ୍ଫଳ ଏବଂ ଆହାରକୁ ଚୌର ଯାତନା ମନେକରି ଜୀବନ ଯାପନ କରୁଅଛି । ଆତ୍ମହତ୍ୟା କରୁଥିବା ବେଳେ ସେବକମାନେ ଆଶ୍ୱାସନା ପ୍ରଦାନ କରନ୍ତେ ସେ ସେଥିରୁ ନିବୃତ୍ତ ହୋଇ ପ୍ରତିଜ୍ଞା କରିଅଛି ଯେ ଯଦି ତାର ସେହି ପ୍ରିୟତମ ପୁରୁଷ ଛ ମାସ ମଧ୍ୟରେ ଆସି ତା ସହିତ ମିଳିତ ନ ହୁଏ, ତାହା ହେଲେ ସେ ଅଗ୍ନିରେ ପ୍ରବେଶ କରି ପ୍ରାଣ ବିସର୍ଜନ କରିବ । ଏହିପରି ପ୍ରତିଜ୍ଞାବଦ୍ଧ ହୋଇ ମଦନମାଳା ଅତ୍ୟଧିକ ପୁଣ୍ୟ ଲାଭ ଆଶାରେ ପ୍ରତିଦିନ ଅଧିକ ଦାନ କରିବାରେ ଲାଗିଅଛି ।

'ମହାରାଜ, ମୁଁ ତାକୁ ସ୍ୱଚକ୍ଷୁରେ ଦେଖିଅଛି । ସେ ତାର ଶରୀର ଭାର ବହନ କରି ଚଳପ୍ରଚଳ ହେବା ନିମନ୍ତେ ମଧ୍ୟ ଅସମର୍ଥା । କିନ୍ତୁ ଆହାର ବିନା ଶରୀର ଦୁର୍ବଳ ହୋଇପଡ଼ିଥିଲେ ମଧ୍ୟ ତାର ଶରୀରର କାନ୍ତି ଅତ୍ୟନ୍ତ ମନୋହର; ଦାନ ଜଳଦ୍ୱାରା ତାର ହସ୍ତ ଯୁଗଳ ସର୍ବଦା ଜଳସିକ୍ତ । ତାର ଶରୀରର ଗନ୍ଧଦ୍ୱାରା ଆକୃଷ୍ଟ ହୋଇ ଭ୍ରମରମାନେ ସର୍ବଦା ତାକୁ ବ୍ୟାକୁଳିତ କରୁଅଛନ୍ତି । ସେ କନ୍ଦର୍ପ ରୂପକ ହସ୍ତିର ଶରୀର ଧାରିଣୀ ଉନ୍ମତ୍ତାବସ୍ଥା ତୁଲ୍ୟ ପ୍ରତୀତ ହେଉଅଛି । ମୋ ମତରେ ଯେଉଁ ଜାରପୁରୁଷ ତାକୁ ପରିତ୍ୟାଗ କରି ପଳାୟନ କରିଅଛି ସେ ଏକାଧାରରେ ନିନ୍ଦନୀୟ ଓ ବନ୍ଦନୀୟ । ପ୍ରକୃତରେ ସେହି ପୁରୁଷ କେଡ଼େ ସୁନ୍ଦର ହୋଇନଥିବ ? ତା ନହେଲେ ମଦନମାଳା ତୁଲ୍ୟ ବେଶ୍ୟା ତାର ବିରହରେ ଏପରି ମର୍ମନ୍ତୁଦ ବେଦନା ଲାଭ କରିବା ସମ୍ଭବପର ନୁହେଁ । ମୁଁ ଚାରୋଟି ବେଦ ଆୟତ୍ତ କରିଥିବା ଜାଣିପାରି ସେ ମୋତେ ଚାରୋଟି ସୁବର୍ଣ୍ଣମୟ ହସ୍ତ ପ୍ରଦାନ କରିଅଛି । ଆପଣ ଏଗୁଡ଼ିକୁ ନିଜ ଭଣ୍ଡାର ମଧ୍ୟରେ ସୁରକ୍ଷିତ କଲେ ମୁଁ ମୋର ସ୍ୱଧର୍ମ ପାଳନ କରିବା ପାଇଁ ସମର୍ଥ ହୁଅନ୍ତି ।'

ବ୍ରାହ୍ମଣଠାରୁ ପ୍ରିୟବାର୍ତ୍ତା ଶ୍ରବଣ କରି ରାଜା ବିକ୍ରମାଦିତ୍ୟଙ୍କ ମନ ମଦନମାଳା ପ୍ରତି ଆକୃଷ୍ଟ ହେଲା । ବ୍ରାହ୍ମଣର କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ପ୍ରତିହାରୀକୁ ଆଦେଶ ପ୍ରଦାନ କରି ସେ ମଦନମାଳାର ଚିନ୍ତାରେ ଅସ୍ଥିର ହୋଇ ଉଠିଲେ । ତାଙ୍କ ପ୍ରତି ମଦନମାଳାର ଏ ପ୍ରକାର ଆସକ୍ତି ଏବଂ ତାଙ୍କ ବିନା ତାର ଆତ୍ମହତ୍ୟା କରିବାର ପ୍ରତିଜ୍ଞା ତାଙ୍କୁ ସର୍ବଦା ବିଚଳିତ କଲା । ମଦନମାଳାର ଜୀବନ ଆଉ ଅଳ୍ପଦିନ ସ୍ଥାୟୀ ଜାଣିପାରି, ଶୀଘ୍ର ମନ୍ତ୍ରୀମାନଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ବିକ୍ରମାଦିତ୍ୟ ଆକାଶ ମାର୍ଗରେ ଯାଇ ମଦନମାଳାର ଗୃହ ପ୍ରାଙ୍ଗଣରେ ଉପସ୍ଥିତ ହେଲେ ।

ମଦନମାଳା ବ୍ରାହ୍ମଣମାନଙ୍କୁ ସମସ୍ତ ସମ୍ପତ୍ତି ପ୍ରଦାନ କରି ଶୁଭ୍ରବସ୍ତ୍ର ପରିଧାନ ପୂର୍ବକ ଏକାକିନୀ ବସି ଚିନ୍ତା କରୁଥାଏ । ତାର କ୍ଷୀଣ ଶରୀର ଦର୍ଶକ ମନରେ ଅମାବାସ୍ୟା ଚନ୍ଦ୍ରକଳାର ଭ୍ରମ ଜାତ କରୁଥାଏ । ସେ ହଠାତ୍ ତାର ପ୍ରିୟ ପୁରୁଷକୁ ସେଠାରେ ଉପସ୍ଥିତ ହେବା ଦେଖି କ୍ଷଣକ ପାଇଁ ସ୍ତବ୍ଧ ଓ ବିସ୍ମିତ ହୋଇପଡ଼ିଲା । କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସେ ବିକ୍ରମାଦିତ୍ୟଙ୍କୁ ନିଜର ବାହୁପାଶରେ ଏପରି ଦୃଢ଼ଭାବରେ ଆବଦ୍ଧ କଲା ଯେ ମନେହେଲା ରାଜା ଚିରଦିନପାଇଁ ତାର ଶରୀରରେ ଲୀନ ହୋଇଗଲେ । ବାଷ୍ପରୁଦ୍ଧ କଣ୍ଠରେ, 'ହେ ନିଷ୍ଠୁର, ମୋ ଭଳି ଜଣେ ନିରପରାଧିନୀ ନାରୀକୁ ପରିତ୍ୟାଗ କରି କାହିଁକି ଚାଲିଗଲ ?' ବୋଲି ଜିଜ୍ଞାସା କରନ୍ତେ ରାଜା ଏକାନ୍ତରେ ସବୁକଥା କହିବେ ବୋଲି ତାକୁ ଅନ୍ତଃପୁର ମଧ୍ୟକୁ ନେଇ ଚାଲିଗଲେ । ରାଜାଙ୍କ ଆଗମନରେ ମଦନମାଳାର ସମଗ୍ର ନବର ପୁଣି କୋଳାହଳମୟ ହୋଇ ଉଠିଲା ।

ବିକ୍ରମାଦିତ୍ୟ ଏକାନ୍ତରେ ନିଜର ସମ୍ପୂର୍ଣ୍ଣ ପରିଚୟ ପ୍ରଦାନ କରି ତାଙ୍କର ସମଗ୍ର ବୃତ୍ତାନ୍ତ ତା ନିକଟରେ ବ୍ୟକ୍ତ କଲେ—ରାଜା ନରସିଂହଙ୍କୁ ଜୟ କରିବା ନିମନ୍ତେ ସେ କିପରି ଏଠାରେ ଆସି ପ୍ରଥମେ ଉପସ୍ଥିତ ହୋଇଥିଲେ, ପ୍ରପଞ୍ଚବୁଦ୍ଧି ଭିକ୍ଷୁକୁ ହତ୍ୟା କରି ସେ କିପରି ଆକାଶରେ ବିଚରଣ କରିବା ବିଦ୍ୟା ଲାଭ କରିବା ସଙ୍ଗେ ସଙ୍ଗେ କୁବେରଙ୍କ ବର ପ୍ରଭାବରୁ ସୁବର୍ଣ୍ଣ ନିର୍ମିତ ଅକ୍ଷୟ ପୁରୁଷ ଲାଭ କରିପାରିଥିଲେ, ବ୍ରାହ୍ମଣଠାରୁ ବାର୍ତ୍ତା ଲାଭ କରି ସେ କିପରି ପୁଣି ସେଠାରେ ଆସି ଉପସ୍ଥିତ ହେଲେ ଇତ୍ୟାଦି ନିଜର ସମସ୍ତ ଗୋପନୀୟ ବିଷୟ ତା ନିକଟରେ ବ୍ୟକ୍ତ କରି ରାଜା ପୁଣି କହିଲେ ''ପ୍ରିୟେ, ରାଜା ନରସିଂହ ଅତ୍ୟନ୍ତ ବଳବାନ; ତେଣୁ ସେ ମୋର ଅଜେୟ । ସେ ମୋ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାରେ ସମର୍ଥ । ମୁଁ ଆକାଶଚାରୀ ହୋଇ ଭୂମିଚାରୀ ନରସିଂହଙ୍କୁ ହତ୍ୟା କରିବାପାଇଁ ଚାହେଁ ନାହିଁ; କାରଣ ପ୍ରକୃତ କ୍ଷତ୍ରିୟ କଦାପି ଅଧର୍ମ ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରେ

ନାହିଁ । ତେଣୁ ତୁମେ ମୋର ପ୍ରତିଜ୍ଞା ପୂର୍ଣ୍ଣ କରିବାରେ ସହାୟତା କରିବ ବୋଲି ମୋର ଅନୁରୋଧ ।''

ଏହା ଶୁଣି ବେଶ୍ୟା 'ତା ଜୀବନ ଧନ୍ୟ' କହି ରାଜାଙ୍କ ସହିତ ଆବଶ୍ୟକୀୟ ପରାମର୍ଶ ପୂର୍ବକ ପ୍ରତିହାରୀମାନଙ୍କୁ ଡାକି କହିଲା, 'ରାଜା ନରସିଂହ ମୋର ଅନ୍ତଃପୁରକୁ ଆସିବା ସମୟରେ ତୁମେମାନେ ଦ୍ୱାର ନିକଟରେ ଥାଇ ଡାକ ଦେବ 'ମହାରାଜ ! ରାଜା ନରସିଂହ ଆପଣଙ୍କ ପ୍ରତି ଭକ୍ତି ଓ ଆନୁଗତ୍ୟ ପୋଷଣ କରୁଅଛନ୍ତି ।' ଯଦି ରାଜା ନରସିଂହ ଅନ୍ତଃପୁର ମଧ୍ୟରେ 'କିଏ ଅଛନ୍ତି' ବୋଲି ପ୍ରଶ୍ନ କରନ୍ତି ତାହାହେଲେ ତୁମେମାନେ ରାଜା ବିକ୍ରମାଦିତ୍ୟ ଅବସ୍ଥାନ କରୁଛନ୍ତି ବୋଲି ଉତ୍ତର ଦେବ ।' ଏହା କହି ସେ ପ୍ରତିହାରୀମାନଙ୍କୁ ବିଦାୟ ଦେଲା ପରେ ଦ୍ୱାରପାଳିକାମାନଙ୍କୁ ଡାକି ନିର୍ଦ୍ଦେଶ ଦେଲା 'ଯଦି ରାଜା ନରସିଂହ କେବେ ମୋ ବାସଭବନକୁ ଆସନ୍ତି, ତାହାହେଲେ ତୁମେମାନେ ତାଙ୍କର ଆଉ ପଥରୋଧ କରିବ ନାହିଁ ।'

ଏ ପ୍ରକାର କୌଶଳ ଅବଲମ୍ବନ ପୂର୍ବକ ମଦନମାଳା ବହୁ ଧନରତ୍ନ ଦ୍ୱାରା ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରି ରାଜା ବିକ୍ରମାଦିତ୍ୟଙ୍କ ସହିତ ଆନନ୍ଦରେ ଜୀବନ ଯାପନ କରିବାକୁ ଲାଗିଲା ।

ଏଣେ ରାଜା ନରସିଂହ ବେଶ୍ୟାଳୟକୁ ଯିବା ପରିତ୍ୟାଗ କରି ଦେଇଥିଲେ ହେଁ ମଦନମାଳାର ସୁଖ୍ୟାତି ଶ୍ରବଣ କରି ଦିନେ ସେହି ସୁବର୍ଣ୍ଣ ନିର୍ମିତ ପୁରୁଷଗୁଡ଼ିକୁ ଦର୍ଶନ କରିବା ନିମନ୍ତେ ତା' ଦ୍ୱାରରେ ଆସି ଉପସ୍ଥିତ ହେଲେ । ଏଥର କିନ୍ତୁ ଦ୍ୱାରପାଳମାନେ ତାଙ୍କର ପଥରୋଧ କଲେ ନାହିଁ । ସେ ଯେତେବେଳେ ଅନ୍ତଃପୁରର ଦ୍ୱାରଦେଶରେ ଆସି ଉପସ୍ଥିତ ହେଲେ ତାଙ୍କୁ ସେଠାରେ ଦେଖିବା ମାତ୍ରେ ପ୍ରତିହାରୀମାନେ ଉଚ୍ଚ ସ୍ୱରରେ ଡାକଦେଲେ 'ମହାରାଜ ! ଆପଣଙ୍କ ପ୍ରତି ରାଜା ନରସିଂହଙ୍କର ଅଚଳା ଭକ୍ତି ରହିଅଛି । ସେ ଆପଣଙ୍କର ଜଣେ ପ୍ରଧାନ ଭକ୍ତ ।' ଏହା ଶୁଣି ରାଜା ନରସିଂହଙ୍କର ମନ କ୍ରୋଧ ଓ ଆଶଙ୍କାରେ ପୂର୍ଣ୍ଣ ହେଲା । ସେ ପ୍ରତିହାରୀମାନଙ୍କଠାରୁ ରାଜା ବିକ୍ରମାଦିତ୍ୟ ସେଠାରେ ଅବସ୍ଥାନ କରୁଛନ୍ତି ବୋଲି ଜାଣିପାରି ଚିନ୍ତା କଲେ 'ରାଜା ବିକ୍ରମ ପ୍ରଥମେ ଏହି ପ୍ରତିଜ୍ଞା ହିଁ କରିଥିଲେ । ବର୍ତ୍ତମାନ ମୋର ରାଜ୍ୟ ମଧ୍ୟରେ ପ୍ରବେଶ କରି ସେ ନିଜର ପ୍ରତିଜ୍ଞା ପୂର୍ଣ୍ଣ କରି ଅଛନ୍ତି । ନିଶ୍ଚିତଭାବରେ ସେ ଜଣେ ତେଜସ୍ୱୀ ରାଜା; ତା' ନ ହେଲେ ମୁଁ ଆଜି ତାଙ୍କ ନିକଟରେ ପରାସ୍ତ ହୋଇ ନଥାନ୍ତି । ସେ ଏକାକୀ ମୋର ରାଜ୍ୟ ମଧ୍ୟରେ ରହିବାରୁ ତାଙ୍କୁ ହତ୍ୟା କରିବା ମଧ୍ୟ ମୋର ଉଚିତ ହେବ ନାହିଁ । ବର୍ତ୍ତମାନ ଅନ୍ତଃପୁରରେ ପ୍ରବେଶ

କରି ତାଙ୍କ ସହ ସାକ୍ଷାତ୍ କରିବା ଉଚିତ । ଯାହା ହେବ; ତାହା ପରେ ବିଚାର୍ଯ୍ୟ ।' ଏହିପରି ଚିନ୍ତା କରି ସେ ଅନ୍ତଃପୁର ମଧ୍ୟରେ ପ୍ରବେଶ କଲେ ।

ରାଜା ବିକ୍ରମାଦିତ୍ୟ ନରସିଂହଙ୍କୁ ଦେଖିବା ମାତ୍ରେ ଆନନ୍ଦର ସହିତ ତାଙ୍କୁ କୋଳାଗ୍ରତ କଲେ । ମଦନମାଳା ଉଭୟଙ୍କର ମନ ତୁଷ୍ଟି ପାଇଁ ବିବିଧ ଆୟୋଜନ କଲା । ଉଭୟେ ପରସ୍ପରର କୁଶଳ ଜିଜ୍ଞାସା କରି ଆଳାପ ଆଲୋଚନାରେ ମାତିଗଲେ । ସୁବର୍ଣ୍ଣ ପୁରୁଷ ପ୍ରାପ୍ତି ସମ୍ପର୍କରେ ରାଜା ନରସିଂହ ଜାଣିବାପାଇଁ ଚାହିଁବାରୁ ରାଜା ବିକ୍ରମାଦିତ୍ୟ ତାଙ୍କୁ ପ୍ରପଞ୍ଚବୁଦ୍ଧି ଭିକ୍ଷୁର ସମସ୍ତ ବୃତ୍ତାନ୍ତ କହି ବିସ୍ମିତ କରିଦେଲେ । ରାଜା ନରସିଂହ ବିକ୍ରମଙ୍କୁ ଆକାଶଚାରୀ ଏବଂ ମହାଶକ୍ତିଶାଳୀ ଜାଣି ତାଙ୍କ ସହ ମିତ୍ରତା ପାଶରେ ଆବଦ୍ଧ ହେଲେ । ପ୍ରତିଷ୍ଠାନ ନଗରରେ ବିକ୍ରମାଦିତ୍ୟଙ୍କୁ ରାଜୋଚିତ ସମ୍ମାନରେ ସମ୍ବର୍ଦ୍ଧିତ କରାଗଲା ।

ଏହିପରି ପ୍ରତିଭା ଓ ଚାତୁର୍ଯ୍ୟ ବଳରେ ନିଜର ଅସାଧାରଣ ପ୍ରତିଜ୍ଞା ପୂର୍ଣ୍ଣ କରି ରାଜା ବିକ୍ରମାଦିତ୍ୟ ସ୍ୱୀୟ ରାଜଧାନୀ ପାଟଳିପୁତ୍ର ନଗରୀକୁ ଫେରିଯିବା ପାଇଁ ପ୍ରସ୍ତୁତ ହେଲେ । ରାଜାଙ୍କର ବିରହ ବେଦନା ସହ୍ୟ କରିବା ସମ୍ଭବପର ନୁହେ ଜାଣି ମଦନମାଳା ମଧ୍ୟ ନିଜର ସମସ୍ତ ଚଳାଚଳ ସମ୍ପତ୍ତି ବ୍ରାହ୍ମଣମାନଙ୍କୁ ପ୍ରଦାନ କରି ରାଜ୍ୟତ୍ୟାଗ ପୂର୍ବକ ରାଜାଙ୍କର ଅନୁଗମନ କରିବା ନିମିତ୍ତ ଉଦ୍ୟତ ହେଲା । ରାଜା ବିକ୍ରମାଦିତ୍ୟ ପ୍ରାଣପ୍ରିୟା ମଦନମାଳା ଏବଂ ବହୁ ସୈନ୍ୟ ସାମନ୍ତ ସହିତ ପାଟଳିପୁତ୍ର ନଗରୀ ଅଭିମୁଖରେ ଯାତ୍ରା କଲେ । ପ୍ରତିଦ୍ୱନ୍ଦ୍ୱୀ ରାଜା ନରସିଂହ ତାଙ୍କର ମିତ୍ରତା ପାଶରେ ଆବଦ୍ଧ ହୋଇଥିବାରୁ ସେ ନିର୍ଭୟ ଚିତ୍ତରେ ମଦନମାଳା ସହ ଭୋଗ ବିଳାସରେ ଜୀବନ ଯାପନ କରିବାକୁ ଲାଗିଲେ ।

'ମହାରାଜ, ବେଶ୍ୟାମାନେ ମଧ୍ୟ ଏହିପରି ଚରିତ୍ରବତୀ ଓ ସଦାଚାରିଣୀ ହୋଇଥାନ୍ତି । ତେଣୁ କୁଳୀନ ସ୍ତ୍ରୀମାନଙ୍କର କଥା ବା ଆଉ କଣ କୁହାଯିବ !'

ମରୁଭୂତିଠାରୁ ଏ ପ୍ରକାର ମନୋରଞ୍ଜକ ଗଳ୍ପ ଶ୍ରବଣ କରି ରାଜା ନରବାହନଦତ୍ତ ଏବଂ ତାଙ୍କର ନବପରିଣିତା ପତ୍ନୀ ରତ୍ନପ୍ରଭା ଅତ୍ୟନ୍ତ ଆନନ୍ଦଲାଭ କଲେ ।



## ପଞ୍ଚମ ତରଙ୍ଗ

ମରୁଭୂତିଙ୍କ କଥା ଶେଷ ହେବା ପରେ ସେନାପତି ହରିଶିଖ ଉଚ୍ଚକୁଳସମ୍ଭୂତା ସ୍ତ୍ରୀମାନଙ୍କର ପତି ହିଁ କିପରି ଏକମାତ୍ର ଗତି, ସେ ସମ୍ପର୍କରେ ଏକ ଗଳ୍ପ ଶୁଣାଇବା ଆରମ୍ଭ କଲେ—

### ରାଜପୁତ୍ର ଶୃଙ୍ଗଭୁଜ ଓ ରାକ୍ଷସ କନ୍ୟା ରୂପଶିଖା କଥା

ବର୍ଦ୍ଧମାନ ନାମକ ନଗରରେ ବୀରଭୁଜ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ଏକଶତ ରାଣୀଙ୍କ ମଧ୍ୟରେ ଗୁଣବରା ଥିଲେ ରାଜାଙ୍କର ଅତି ପ୍ରିୟତମା । ରାଜା ବୀରଭୁଜ ନିର୍ବିଘ୍ନରେ ଶାସନ କାର୍ଯ୍ୟ ପରିଚାଳନା କରି ମହା ଆନନ୍ଦରେ ଜୀବନ ଯାପନ କରୁଥିଲେ ସୁଦ୍ଧା ପୁତ୍ର ସନ୍ତାନ ଲାଭ କରି ନଥିବା ହେତୁ ମନେ ମନେ ଦୁଃଖ ଅନୁଭବ କରୁଥାନ୍ତି । ଏକଶତ ରାଣୀଙ୍କ ଗର୍ଭରୁ ଗୋଟିଏ ହେଲେ ପୁତ୍ର ସନ୍ତାନ ଜନ୍ମଲାଭ ନ କରିବାରୁ ରାଜା ଶ୍ରୁତବର୍ଦ୍ଧନ ନାମକ ବୈଦ୍ୟକୁ ଡାକି ପୁତ୍ର ଉତ୍ପତ୍ତି ନିମିତ୍ତ କିଛି ଔଷଧିର ବ୍ୟବସ୍ଥା କରିବା ପାଇଁ ଅନୁରୋଧ କଲେ । ବୈଦ୍ୟ ଶ୍ରୁତବର୍ଦ୍ଧନ ଗୋଟିଏ ବନ୍ୟଛାଗଳର ବ୍ୟବସ୍ଥା କରିବାପାଇଁ ଅନୁରୋଧ କରନ୍ତେ ରାଜାଙ୍କ ନିର୍ଦ୍ଦେଶରେ ଦ୍ୱାରପାଳ ଯାଇ ସଙ୍ଗେ ସଙ୍ଗେ ଅରଣ୍ୟରୁ ଗୋଟିଏ ଛାଗଳ ନେଇ ଆସିଲା । ଛାଗଳଟିକୁ ପାଚକ ହସ୍ତରେ ଦେଇ ବୈଦ୍ୟ ଏହାର ମାଂସରେ ସୁମିଷ୍ଟ ରସ ପ୍ରସ୍ତୁତ କରିବା ନିମିତ୍ତ ନିର୍ଦ୍ଦେଶ ଦେଲେ ।

ଏଣେ ରାଜା ସମସ୍ତ ରାଣୀଙ୍କୁ ଏକତ୍ର ହେବା ସକାଶେ ନିର୍ଦ୍ଦେଶ ଦେଇ ସ୍ୱୟଂ ଭଗବାନଙ୍କର ଉପାସନା କରିବା ନିମନ୍ତେ ଦେବମନ୍ଦିର ଅଭିମୁଖରେ ପ୍ରସ୍ଥାନ କଲେ । ରାଣୀମାନେ ଆସି ଗୋଟିଏ ସ୍ଥାନରେ ଏକତ୍ର ହେଲେ, କିନ୍ତୁ ମହାରାଣୀ ଗୁଣବରା ରାଜାଙ୍କ ସହିତ ଉପାସନାରେ ବ୍ୟସ୍ତ ଥିବାରୁ ସେଠାରେ ଉପସ୍ଥିତ ହୋଇପାରି ନଥିଲେ । ସମସ୍ତ ରାଣୀ ଏକତ୍ର ହେବା ପରେ ବୈଦ୍ୟରାଜ ମାଂସରସ ସହିତ ଔଷଧି ଚୂର୍ଣ୍ଣ ମିଶ୍ରଣ କରି ସେମାନଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟି ଦେଲେ ।

ରାଜା ପୂଜା ଶେଷରେ ଗୁଣବରାଙ୍କ ସହିତ ସେଠାରେ ଆସି ଉପସ୍ଥିତ ହେଲେ । ସେତେବେଳକୁ ସମସ୍ତ ମାଂସରସ ନିଃଶେଷ ହୋଇଯାଇଥାଏ । ଏହା ଦେଖି ରାଜା ବୈଦ୍ୟଙ୍କୁ କହିଲେ ‘‘ଗୁଣବରାଙ୍କ ନିମନ୍ତେ ଟିକିଏ ସୁଦ୍ଧା ମାଂସରସ ନ ରଖି ତୁମେ ମସ୍ତବଡ଼ ଭ୍ରମ କରିଅଛ; କାରଣ ତାଙ୍କ ପାଇଁ ହିଁ ଏସମସ୍ତର ଆୟୋଜନ କରାଯାଇଥିଲା । ବୈଦ୍ୟଙ୍କୁ ଲଜ୍ଜିତ ଓ ବିଚଳିତ ଦେଖି ରାଜା ପାଚକମାନଙ୍କୁ କିଛି ଅବଶିଷ୍ଟାଂଶ ଅଛି କି ବୋଲି ଜିଜ୍ଞାସା କଲେ । ପାଚକମାନଙ୍କଠାରୁ କେବଳ ଶୃଙ୍ଗ ଦୁଇଟି ଅବଶିଷ୍ଟ ଥିବା ଜାଣିପାରି ବୈଦ୍ୟେ ଶ୍ରୁତବର୍ଦ୍ଧନ ଶୃଙ୍ଗ ମଧ୍ୟରେ ଥିବା ମାଂସକୁ ଉତ୍ତମ ରୂପେ ସିଦ୍ଧ କରିବାପାଇଁ ନିର୍ଦ୍ଦେଶ ଦେଲେ । ମାଂସ ସିଦ୍ଧ ହୋଇ ଆସିଲା ଏବଂ ସେହି ମାଂସରସରେ ପୂର୍ବୋକ୍ତ ଚୂର୍ଣ୍ଣ ମିଶ୍ରଣ କରି ମହାରାଣୀ ଗୁଣବରା ଗ୍ରହଣ କଲେ ।

ଔଷଧ ସେବନ ଫଳରେ ରାଜାଙ୍କର ଅନ୍ୱେଶତ ରାଣୀ ଏକ ସମୟରେ ଗର୍ଭଧାରଣ କଲେ ଏବଂ ସମସ୍ତେ ଏକ ସମୟରେ ହିଁ ଗୋଟିଏ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କଲେ । ଗୁଣବରା ଶେଷରେ ରସପାନ କରିଥିବା ଯୋଗୁଁ ସମସ୍ତଙ୍କ ଅପେକ୍ଷା ସମ୍ପୂର୍ଣ୍ଣ ଶୁଭ ଲକ୍ଷଣଯୁକ୍ତ ଗୋଟିଏ ପୁତ୍ରକୁ ଜନ୍ମ ଦେଲେ । ଛାଗଳ ଶୃଙ୍ଗର ମାଂସ ଭକ୍ଷଣ କରିବାଦ୍ୱାରା ଏହି ପୁତ୍ରଟି ଜନ୍ମ ଲାଭ କରିଥିବାଯୋଗୁଁ ରାଜା ବୀରଭୁଜ ପୁତ୍ରର ନାମ ରଖିଲେ ଶୃଙ୍ଗଭୁଜ ।

ଶୃଙ୍ଗଭୁଜ ଅନ୍ୟାନ୍ୟ ଭାଇମାନଙ୍କ ସହିତ କ୍ରମଶଃ ବୃଦ୍ଧିପ୍ରାପ୍ତ ହେଲେ । ବୟସରେ କନିଷ୍ଠ ହେଲେ ମଧ୍ୟ ଗୁଣରେ ଅନ୍ୟମାନଙ୍କ ଅପେକ୍ଷା ସେ ଜ୍ୟେଷ୍ଠ ବୋଲି ପ୍ରତୀତ ହେଉଥିଲେ । କ୍ରମେ କ୍ରମେ ସେ ରୂପରେ କାମଦେବ, ଧନୁର୍ବେଦରେ ଅର୍ଜ୍ଜୁନ ଏବଂ ପରାକ୍ରମରେ ଭୀମଙ୍କ ସହିତ ସମକକ୍ଷ ହୋଇ ଉଠିଲେ । ଏପ୍ରକାର ଗୁଣଶାଳୀ ପୁତ୍ର ସହିତ ରାଣୀ ଗୁଣବରାଙ୍କୁ ଦେଖି ତାଙ୍କର ସପତ୍ନୀମାନେ ଇର୍ଷାନ୍ୱିତା ହେବା ସ୍ୱାଭାବିକ । ସେମାନଙ୍କ ମଧ୍ୟରେ ସମସ୍ତଙ୍କ ଅପେକ୍ଷା ଦୁଷ୍ଟା ରାଣୀ ଅଯଶୋଲେଖା ଅନ୍ୟମାନଙ୍କ ସହ ଚକ୍ରାନ୍ତ କରି ଦିନେ ରାଜାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । କୃତ୍ରିମ ଦୁଃଖରେ ସେ ଭାଙ୍ଗି ପଡ଼ିଥାଆନ୍ତି । ରାଜା ତାର କାରଣ ଜିଜ୍ଞାସା କରନ୍ତେ ଅଯଶୋଲେଖା ଅତି କଷ୍ଟରେ କହିଲେ ‘‘ଆର୍ଯ୍ୟପୁତ୍ର, ଆପଣ ନିଜର ଗୃହ ମଧ୍ୟରେ ଏପ୍ରକାର କଳଙ୍କିତ କାର୍ଯ୍ୟ କିପରି ସହ୍ୟ କରି ଯାଉଅଛନ୍ତି । ଅନ୍ୟର ଦୋଷ ପାଇଁ ସେମାନଙ୍କୁ ଦଣ୍ଡ ଦେଉଥିଲେ ସୁଦ୍ଧା ନିଜ ପରିବାର ମଧ୍ୟରେ ଥିବା ଏପରି ବ୍ୟକ୍ତିମାନଙ୍କୁ କିପରି ପ୍ରଶ୍ରୟ ଦେଉଛନ୍ତି । ଅନ୍ତଃପୁରର ଦ୍ୱାରପାଳ ବଳିଷ୍ଠ ଯୁବକ ସୁରକ୍ଷିତ ସହିତ ଆପଣଙ୍କ ମହାରାଣୀ ଗୁଣବରାଙ୍କର କୁତ୍ସିତ ସମ୍ପର୍କ ଥିବା ସମସ୍ତେ ଜାଣିଲେଣି । କଞ୍ଚୁକୀମାନଙ୍କଦ୍ୱାରା ସୁରକ୍ଷିତ ଅନ୍ତଃପୁର ମଧ୍ୟରେ

ଅନ୍ୟ କୌଣସି ପୁରୁଷର ପ୍ରବେଶ ଅଧିକାର ନ ଥିବାରୁ ମହାରାଣୀ ଏହି ଦ୍ୱାରପାଳ ପ୍ରତି ଆସକ୍ତ ହୋଇପଡ଼ିଛନ୍ତି ।''

ଏହା ଶୁଣି ରାଜା ଦ୍ୱନ୍ଦ୍ୱରେ ପଡ଼ିଗଲେ । ଗୋଟି ଗୋଟି କରି ପ୍ରତ୍ୟେକ ରାଣୀଙ୍କ ନିକଟକୁ ଯାଇ ସେ ଏ ସମ୍ପର୍କରେ ଜିଜ୍ଞାସା କଲେ । ପୂର୍ବ ଚକ୍ରାନ୍ତ ଅନୁଯାୟୀ ସମସ୍ତ ରାଣୀ ଏହି ଗୋଟିଏ ମାତ୍ର କଥା ରାଜାଙ୍କ ନିକଟରେ ପ୍ରକାଶ କରନ୍ତେ ବୁଦ୍ଧିମାନ ଓ ଜିତକ୍ରୋଧ ରାଜା ଚିନ୍ତା କଲେ ଯେ ଏ ଉଭୟଙ୍କ ମଧ୍ୟରେ ସମ୍ପର୍କ ଥିବା ସମ୍ଭବ ବୋଲି ମନେ ହେଉନାହିଁ । କିନ୍ତୁ ଏ ବିଷୟ ସମସ୍ତେ ଏକ ସ୍ୱରରେ ସ୍ୱୀକାର କରି ଯାଉଛନ୍ତି । ତେଣୁ ଏ ସମ୍ପର୍କରେ ସ୍ଥିର ନିଶ୍ଚିତ ନ ହେବା ପର୍ଯ୍ୟନ୍ତ କାହା ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବା ଉଚିତ ନୁହେ । ପ୍ରଥମତଃ ଉଭୟଙ୍କୁ ପରସ୍ପରଠାରୁ ଦୂରେଇ ଦେଇ ଏହାର ପରୀକ୍ଷା କରିବା ଉଚିତ ହେବ ।

ଏପ୍ରକାର ନିଶ୍ଚୟ କରି ଦ୍ୱିତୀୟ ଦିନ ରାଜା ଅନ୍ତଃପୁରର ଦ୍ୱାରପାଳ ସୁରକ୍ଷିତକୁ ଡାକି କ୍ରୋଧ ପ୍ରଦର୍ଶନ ପୂର୍ବକ କହିଲେ, 'ପାପିଷ୍ଠ, ତୁ ବ୍ରହ୍ମହତ୍ୟା କରିଥିବା କଥା ଏବେ ମୁଁ ଜାଣିବାକୁ ପାଇଛି, ତେଣୁ ତୀର୍ଥଯାତ୍ରା କରି ନ ଫେରିବା ପର୍ଯ୍ୟନ୍ତ ମୁଁ ତୋର ମୁଖ ଦର୍ଶନ କରିବାପାଇଁ ଚାହେଁ ନାହିଁ ।' ଏଥିରେ ସୁରକ୍ଷିତ ବିଚଳିତ ହୋଇ ସେ ବ୍ରହ୍ମହତ୍ୟା କରି ନାହିଁ ବୋଲି ରାଜାଙ୍କୁ ଯେତେ ପ୍ରକାର ବୁଝାଇବା ପାଇଁ ଚେଷ୍ଟା କଲେ ସୁଦ୍ଧା ରାଜା ତା' କଥାରେ କର୍ଣ୍ଣପାତ ନ କରି କହିଲେ 'ଅଧିକ ଅବାଧ ହୁଅ ନାହିଁ । କାଶ୍ମୀର ନାମରେ ଯେଉଁ ଦେଶ ଅଛି ସେ ଦେଶ ପାପକ୍ଷାଳନ କରିବାପାଇଁ ସୁବିଖ୍ୟାତ । ସେଠାରେ ବିଜୟ କ୍ଷେତ୍ର, ନନ୍ଦୀ କ୍ଷେତ୍ର ଓ ବରାହ କ୍ଷେତ୍ର ନାମରେ ତିନୋଟି କ୍ଷେତ୍ର ଅଛି । ଏ କ୍ଷେତ୍ରମାନଙ୍କୁ ଭଗବାନ ନାରାୟଣ ପବିତ୍ରିତ କରିଛନ୍ତି । ଏହି ଦେଶରେ ଜାହ୍ନବୀ ବିତସ୍ତା ନାମ ଧାରଣ କରି ପ୍ରବାହିତ ହେଉଛନ୍ତି । ତାହାର ଉତ୍ତରରେ ଉତ୍ତର ମାନସ ନାମକ ପବିତ୍ର କ୍ଷେତ୍ର ବିଦ୍ୟମାନ । ସେହି ତୀର୍ଥରେ ସ୍ନାନ କରି ତୁ ମୋ ନିକଟରେ ଆସି ଉପସ୍ଥିତ ହେବୁ ।' ଏ ପ୍ରକାର ଆଦେଶ ପ୍ରଦାନ କରି ରାଜା ବୀରଭୁଜ ଦ୍ୱାରପାଳ ସୁରକ୍ଷିତକୁ ତୀର୍ଥଯାତ୍ରା ଛଳରେ ଦୂର ଦେଶକୁ ପ୍ରେରଣ କଲେ ।

ସୁରକ୍ଷିତ ଚାଲିଯିବା ପରେ ସ୍ନେହ, କ୍ରୋଧ ତଥା ଚିନ୍ତାମୁକ୍ତ ରାଜା ରାଣୀ ଗୁଣବରାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ରାଜାଙ୍କୁ ଦୁଃଖିତ ଦେଖି ରାଣୀ ବ୍ୟାକୁଳ ଚିତ୍ତରେ ତାର କାରଣ ଜିଜ୍ଞାସା କରନ୍ତେ ସେ କପଟରେ କହିଲେ, 'ଦେବି, ଆଜି ଜଣେ ମହାଜ୍ଞାନୀ ଜ୍ୟୋତିର୍ବିଦ ଆସି କହିଗଲେ ଯେ, ତୁମକୁ କିଛିଦିନ ପାଇଁ ଭୂଗୃହରେ ବନ୍ଦିନୀ

ରଖି ମୁଁ ନିଜେ ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରିବି । ଯଦି ଏହା ନ କରେ ତେବେ ସମଗ୍ର ରାଜ୍ୟ ନଷ୍ଟ ହୋଇଯିବ ଏବଂ ତୁମର ମଧ ପ୍ରାଣହାନୀ ଘଟିବ । ତେଣୁ ସେହି ସମୟ ଠାରୁ ମୁଁ ବିଚଳିତ ହୋଇପଡ଼ିଛି ।' ରାଜାଙ୍କର ଏ ପ୍ରକାର କଥା ଶୁଣି ମହାରାଣୀ ଗୁଣବରା ପ୍ରେମ ଓ ଭୟରେ ବ୍ୟାକୁଳ ହୋଇ କହିଲେ, 'ମହାରାଜ, ଯଦି ଏହା ସତ୍ୟ ହୁଏ, ତାହା ହେଲେ ଆପଣ ମୋତେ ବର୍ତ୍ତମାନ ହିଁ ଭୂଗୃହରେ ଆବଦ୍ଧ କରି ରଖନ୍ତୁ । ଆପଣଙ୍କର ସୁଖ ସମ୍ପାଦନପାଇଁ ଯଦି ମୋର ମୃତ୍ୟୁ ହୁଏ, ତାହାହେଲେ ମୁଁ ଧନ୍ୟ ହେବି । ମୋର ମୃତ୍ୟୁ ହେଉ, କିନ୍ତୁ ଆପଣଙ୍କର ଦୁଃଖ ଲାଘବ ହେବା ଆବଶ୍ୟକ; ଇହଲୋକ ଓ ପରଲୋକରେ ପତି ହିଁ ନାରୀମାନଙ୍କର ପରମ ଗତି ।' ରାଣୀଙ୍କ ଠାରୁ ଏହା ଶୁଣି ରାଜା ଅଶ୍ରୁପୂର୍ଣ୍ଣ ଲୋଚନରେ ଚିନ୍ତାକଲେ ଯେ ମହାରାଣୀ ଏବଂ ସୁରକ୍ଷିତ ଉଭୟେ ପବିତ୍ର । ଉଭୟେ ନିଃଶଙ୍କ ଓ ପ୍ରସନ୍ନ ବଦନରେ ତାଙ୍କର ଆଦେଶ ପାଳନ କରିଅଛନ୍ତି । ତଥାପି ଏହି ଜନରବର ସତ୍ୟତା ନିର୍ଣ୍ଣୟ କରିବାକୁ ପଡ଼ିବ । ଏ ପ୍ରକାର ଚିନ୍ତା କରି ରାଜା ଏକ ସୁନ୍ଦର ଓ ସୁଗମ ଭୂଗୃହ ନିର୍ମାଣ ପୂର୍ବକ ରାଣୀଙ୍କୁ ତା' ମଧ୍ୟରେ ବନ୍ଦିନୀ କରି ରଖିଲେ । ଶୃଙ୍ଗଭୂଜ ପିତାଙ୍କର ଏପ୍ରକାର ବ୍ୟବହାରରେ ଦୁଃଖ ଅନୁଭବ କରିବାରୁ ରାଣୀ ରାଜାଙ୍କ କଥିତ ସମସ୍ତ ବୃତ୍ତାନ୍ତ ତା' ନିକଟରେ ପ୍ରକାଶ କରି ତାକୁ ଆଶ୍ୱାସନା ଦେଲେ । ରାଜାଙ୍କର ହିତ ସାଧନ ନିମନ୍ତେ ଗୁଣବରା ଉକ୍ତ ଭୂଗୃହକୁ ସ୍ୱର୍ଗତୁଲ୍ୟ ଜ୍ଞାନ କରି ତା' ମଧ୍ୟରେ ଜୀବନ ଅତିବାହନ କରିବାକୁ ଲାଗିଲେ । ପତିବ୍ରତା ସ୍ତ୍ରୀମାନଙ୍କ ପାଇଁ ନିଜର ସୁଖ ସୁଖ ନୁହେ । ପତିଙ୍କର ଆନନ୍ଦରେ ହିଁ ସେମାନଙ୍କର ଆନନ୍ଦ ।

**ସ୍ୱସୁଖଂ ନାସ୍ତି ସାଧ୍ୱୀନାଂ ତାସାଂ ଭର୍ତ୍ତୃସୁଖଂ ସୁଖମ୍ ।**

ଏହି ଘଟଣାସବୁ ଘଟିଯିବା ପରେ ଦିନେ ରାଣୀ ଅଯଶୋଲେଖା ନିଜର ପୁତ୍ର ନିର୍ବାସଭୁଜକୁ ଡାକି ଏକାନ୍ତରେ କହିଲେ, ''ରାଜା ବର୍ତ୍ତମାନ ମହାରାଣୀ ଗୁଣବରାକୁ ଭୂଗୃହ ମଧ୍ୟରେ ଆବଦ୍ଧ କରି ରଖିଛନ୍ତି । ଏ ଅବସରରେ ତା'ର ପୁତ୍ରକୁ ଯଦି କୌଣସି ଉପାୟରେ ଏଠାରୁ ଦୂରେଇ ଦିଆଯାଏ ତାହାହେଲେ ଆମ୍ଭେମାନେ ଯଥେଷ୍ଟ ଉପକୃତ ହେବା । ତୁ ଅନ୍ୟାନ୍ୟ ଭାଇମାନଙ୍କ ସହିତ ମନ୍ତ୍ରଣା କରି ଏ ସମ୍ପର୍କରେ କିଛି ଉପାୟ ଉଦ୍ଭାବନ କରିବା ଉଚିତ ।'' ମାତାଙ୍କ ଠାରୁ ଏହାଶୁଣି ନିର୍ବାସଭୁଜ ଶୃଙ୍ଗଭୁଜକୁ ବିତାଡ଼ନ କରିବା ନିମନ୍ତେ ଅନ୍ୟାନ୍ୟ ଭାଇଙ୍କ ସହ ଉପାୟ ଚିନ୍ତା କରିବାକୁ ଲାଗିଲା ।

ଦିନେ ରାଜପୁତ୍ରମାନେ ନିଜ ନିଜର ଅସ୍ତ୍ର ପରୀକ୍ଷା ପାଇଁ ରାଜଭବନ ସମ୍ମୁଖସ୍ଥ ପ୍ରାଙ୍ଗଣରେ ଆସି ଉପସ୍ଥିତ ହୋଇଥାଆନ୍ତି । ଏହି ସମୟରେ ରାଜଭବନ ଉପରେ

ବସିଥିବା ଏକ ବିଶାଳକାୟ ବକ ପକ୍ଷୀ ସେମାନଙ୍କର ଦୃଷ୍ଟିଗୋଚର ହେଲା । ଏହି ପକ୍ଷିଟିକୁ ଦେଖି ଏମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସେଠାରେ ଦଣ୍ଡାୟମାନ ହୋଇଥିବା ବେଳେ ସେହି ମାର୍ଗରେ ଯାଉଥିବା ଜଣେ ଜ୍ଞାନସିଦ୍ଧ ତପସ୍ୱୀ ସେମାନଙ୍କୁ କହିଲେ, 'ହେ ରାଜକୁମାରବୃନ୍ଦ, ଏହା ପ୍ରକୃତରେ ବକ ପକ୍ଷୀ ନୁହେ । ଅଗ୍ନିଶିଖ ନାମକ ରାକ୍ଷସ ବକପକ୍ଷୀ ରୂପରେ ଏହି ନଗରକୁ ଧ୍ୱଂସ୍ କରିବା ପାଇଁ ଆସିଛି । ତେଣୁ ଏହା ପ୍ରତି ଶର ସନ୍ଧାନ କରି ଯଥାଶୀଘ୍ର ବିତାଡ଼ନ କର ।' ତପସ୍ୱୀଙ୍କଠାରୁ ଏହାଶୁଣି ରାଜକୁମାରମାନେ ତା'ର ପ୍ରତି ଶର ପ୍ରୟୋଗ କଲେ । ବାରମ୍ବାର ଶର ପ୍ରୟୋଗଦ୍ୱାରା ବକ ପକ୍ଷିଟିର କୌଣସି କ୍ଷୟକ୍ଷତି ଘଟିଲା ନାହିଁ । ଏମାନଙ୍କର ପ୍ରଚେଷ୍ଟା ବ୍ୟର୍ଥ ହେଉଥିବା ଦେଖି ସେହି ତପସ୍ୱୀ ପୁଣି କହିଲେ, 'ତୁମ୍ଭମାନଙ୍କର କନିଷ୍ଠ ଭ୍ରାତା ଶୃଙ୍ଗଭୁଜ ହିଁ ଏହାକୁ ହତ୍ୟା କରିବା ପାଇଁ ସମର୍ଥ । ତେଣୁ ତାକୁ ଏକ ଉତ୍ତମ ଧନୁର୍ବାଣ ପ୍ରଦାନ କର ।'

ତପସ୍ୱୀଙ୍କଠାରୁ ଏହା ଶୁଣି କ୍ରୁର ନିର୍ବାସଭୁଜ ମା'ଙ୍କ କଥା ସ୍ମରଣ କଲା । ଏହାହିଁ ଶୃଙ୍ଗଭୁଜର ବିତାଡ଼ନ ପାଇଁ ଉପଯୁକ୍ତ ସମୟ ଭାବି ପିତାଙ୍କର ସୁବର୍ଣ୍ଣ ନିର୍ମିତ ଧନୁର୍ବାଣ ଆଣି ତାକୁ ପ୍ରଦାନ କଲା । ଭାବିଲା ଶରବିଦ୍ଧ ବକ ପକ୍ଷିଟି ଯଦି ସେଠାରୁ ଉଡ଼ିଯାଏ, ତାହାହେଲେ ଶୃଙ୍ଗଭୁଜ ବାଣଟିକୁ ଫେରାଇ ଆଣିବା ନିମିତ୍ତ ତାର ଅନୁସରଣ କରିବ । ରାକ୍ଷସକୁ ଖୋଜି ଖୋଜି ସେ ଯେତେବେଳେ ନିରସ୍ତ ହେବ ସେତେବେଳେ ଲଜ୍ଜା ଓ ସଙ୍କୋଚବଶତଃ ଆଉ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବ ନାହିଁ ।

ଶକ୍ତିଶାଳୀ ଶୃଙ୍ଗଭୁଜ ସୁବର୍ଣ୍ଣ ନିର୍ମିତ ଶରଦ୍ୱାରା ବକ ପକ୍ଷୀକୁ ବିଦ୍ଧ କରନ୍ତେ ପକ୍ଷିଟି ଆହତ ହୋଇ ସେଠାରୁ ଉଡ଼ିଗଲା । ଏହା ଦେଖି ନିର୍ବାସଭୁଜ ଏବଂ ତା'ର ଚକ୍ରାନ୍ତରୁ ଅନ୍ୟାନ୍ୟ ରାଜକୁମାର ମଧ୍ୟ ଶୃଙ୍ଗଭୁଜଙ୍କୁ ଲକ୍ଷ୍ୟ କରି କହିଲେ 'ଯେକୌଣସିମତେ ପିତାଙ୍କର ସ୍ୱର୍ଣ୍ଣ ଶରଟିକୁ ଫେରାଇ ଆଣିବାକୁ ପଡ଼ିବ, ନୋଚେତ୍ ଆମେ ସମସ୍ତେ ଆତ୍ମହତ୍ୟା କରିବୁ । କାରଣ ସେହି ଶରଟିକୁ ଲାଭ ନ କଲେ ପିତା ଆମ୍ଭମାନଙ୍କୁ ଦେଶରୁ ନିର୍ବାସନ କରିବେ । ପୁଣି ସେହିପରି ଅନ୍ୟ ଏକ ଶର ନିର୍ମାଣ କରିବା ମଧ୍ୟ ଆଉ ସମ୍ଭବପର ନୁହେ ।' ଏହା ଶୁଣି ଶୃଙ୍ଗଭୁଜ ସେମାନଙ୍କୁ ଆଶ୍ୱସନା ପ୍ରଦାନ କଲେ ଏବଂ ରାକ୍ଷସକୁ ହତ୍ୟା କରି ଶରଟିକୁ ନିଶ୍ଚିତ ଭାବେ ଫେରାଇ ଆଣିବେ ବୋଲି ପ୍ରତିଶ୍ରୁତି ଦେଇ ରକ୍ତଧାର ଅନୁସରଣ ପୂର୍ବକ ବକ ପକ୍ଷିଟିର ଅନୁସନ୍ଧାନରେ ଅଗ୍ରସର ହେଲେ । ଏହା ଦେଖି କପଟୀ ରାଜକୁମାରଗଣ ମାତାମାନଙ୍କ ନିକଟରେ ଏହି ସୁସମ୍ବାଦ ପ୍ରଦାନ କରିବା ପାଇଁ ପ୍ରସ୍ଥାନ କଲେ ।

ଏଣେ ଶୃଙ୍ଗଭୁଜ ଧନୁଃଶର ହସ୍ତରେ ସେହି ବକ ପକ୍ଷୀର ଅନୁସରଣ କରି ଏକ ନିବିଡ଼ ଅରଣ୍ୟ ମଧ୍ୟରେ ଆସି ଉପସ୍ଥିତ ହେଲେ । ସେଠାରେ ସେହି ବକପକ୍ଷୀର ଅନୁସନ୍ଧାନ କରୁଥିବା ବେଳେ ଏକ ବିଶାଳ ନଗର ତାଙ୍କର ଦୃଷ୍ଟିଗୋଚର ହେଲା । ନଗରଟିକୁ ଦେଖି ତାଙ୍କର ମନେହେଲା ସତେ ଯେପରି ଏହା ତାଙ୍କ ପୁଣ୍ୟ ରୂପକ ବୃକ୍ଷର ଅମୃତମୟ ଫଳ । ନଗରର ରମଣୀୟ ଉଦ୍ୟାନ ମଧ୍ୟରେ ଭ୍ରମଣ କରି ସେ ଏକ ବୃକ୍ଷର ଛାୟାରେ ଆଶ୍ରୟ ନେଲେ । ସେଠାରେ କ୍ଳାନ୍ତି ଦୂର କରୁଥିବା ବେଳେ ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟା ଆସି ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ବିରହରେ ପ୍ରାଣବିଘାତିନୀ ଏବଂ ସଙ୍ଗମରେ ପ୍ରାଣ ପ୍ରଦାୟିନୀ କନ୍ୟାଟିକୁ ସତେ ଯେପରି ବିଧାତା ବିଷ ଓ ଅମୃତର ସମ୍ମିଶ୍ରଣରେ ନିର୍ମାଣ କରିଥିଲା । ଉଭୟଙ୍କ ଦୃଷ୍ଟିର ମିଳନ ହେବାରୁ ରାଜକୁମାର ନଗର ଓ ତାଙ୍କର ପରିଚୟ ଜିଜ୍ଞାସା କଲେ । ଉତ୍ତରରେ ସେହି ପରମାସୁନ୍ଦରୀ କନ୍ୟାଟି ଲଜ୍ଜାବନତ ମୁଖ ଓ ଅମୃତବର୍ଷିଣୀ ବାଣୀରେ କହିଲା, ''ଏହା ଧୂମପୁର ନାମକ ନଗର । ଏହି ଧନଧାନ୍ୟ ପରିପୂର୍ଣ୍ଣ ନଗରଟି ରାକ୍ଷସ ଶ୍ରେଷ୍ଠ ଅଗ୍ନିଶିଖଙ୍କର ବାସସ୍ଥଳୀ । ମୁଁ ତାଙ୍କର କନ୍ୟା । ରୂପ ଅନୁଯାୟୀ ସେ ମୋର ନାମ ରଖିଛନ୍ତି ରୂପଶିଖା । ଆପଣଙ୍କର ଅସାମାନ୍ୟ ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମୁଁ ଏଠାକୁ ଆସିଅଛି । ବର୍ତ୍ତମାନ ଆପଣଙ୍କର ପରିଚୟ ପ୍ରଦାନ ପୂର୍ବକ ଏଠାକୁ କିପରି ଆସିଲେ କହନ୍ତୁ ।'' ଶୃଙ୍ଗଭୁଜ ନିଜର ପରିଚୟ ପ୍ରଦାନ ପୂର୍ବକ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ ତା ନିକଟରେ ବ୍ୟକ୍ତ କଲେ ।

ତାଙ୍କର ପରିଚୟ ଲାଭ କରି ଏବଂ ଅଭିଳାଷ ଜ୍ଞାତ ହୋଇ ରୂପଶିଖା କହିଲା, 'ଆପଣଙ୍କପରି ଧନୁର୍ଦ୍ଧର ନିଶ୍ଚୟ ତ୍ରିଭୁବନରେ ବିରଳ । ତା' ନ ହୋଇ ଥିଲେ ମୋ ପିତାଙ୍କ ପ୍ରତି ଶର ପ୍ରୟୋଗ କରି ଆପଣ ତାଙ୍କୁ ଆହତ କରି ପାରି ନଥାନ୍ତେ । ସେହି ସୁବର୍ଣ୍ଣ ନିର୍ମିତ ଶରଟିକୁ ଖେଳିବାପାଇଁ ମୁଁ ପିତାଙ୍କ ଠାରୁ ନେଇ ଆସିଛି । ମୋର ପିତା ମଧ୍ୟ ମନ୍ତ୍ରୀ ମହାଦଂଷ୍ଟ୍ରଙ୍କଦ୍ୱାରା ପ୍ରଦତ୍ତ ବିଷଲ୍ୟକରଣୀ ଲେପନ କରି ଆରୋଗ୍ୟ ଲାଭ କରିସାରିଲେଣି । ବର୍ତ୍ତମାନ ତାଙ୍କର ଅନୁମତି ନେଇ ଆପଣଙ୍କୁ ମୁଁ ରାଜନବର ମଧ୍ୟକୁ ନେଇଯିବି । ଆର୍ଯ୍ୟପୁତ୍ର, ଆଜିଠାରୁ ମୁଁ ଆପଣଙ୍କ ନିକଟରେ ନିଜକୁ ସମର୍ପଣ କଲି ।'

ଶୃଙ୍ଗଭୁଜଙ୍କୁ ଏହା କହି ରୂପଶିଖା ପିତା ଅଗ୍ନିଶିଖଙ୍କ ନିକଟରେ ଯାଇ ଉପସ୍ଥିତ ହେଲା ଏବଂ କହିଲା 'ବାପା, ଶୃଙ୍ଗଭୁଜ ନାମକ ଜଣେ ରାଜକୁମାର ଏଠାକୁ ଆସି ଅଛନ୍ତି । ସେ ରୂପ, ଚରିତ୍ର, ବୟସ ଓ ଗୁଣରେ ଅସାଧାରଣ । ତାଙ୍କୁ ଦେଖିଲେ ମନେ ହେଉଛି ସେ ଜଣେ ଶାପଭ୍ରଷ୍ଟ ଦେବତା । ତାଙ୍କ ସହିତ ଯଦି ମୋର ବିବାହ ନ ହୁଏ ତାହାହେଲେ

ମୁଁ ନିଶ୍ଚୟ ପ୍ରାଣ ତ୍ୟାଗ କରିବି ।' ରୂପଶିଖାର ଏ ପ୍ରକାର ପ୍ରତିଜ୍ଞା ଶୁଣି ରାକ୍ଷସ କହିଲା, 'ମନୁଷ୍ୟ ତ ଆମମାନଙ୍କର ଖାଦ୍ୟ । ତଥାପି ତୁ ଯଦି ଏତେ ଆଗ୍ରହୀ ତାହାହେଲେ ବିବାହ ପାଇଁ ମୁଁ ଅସମ୍ମତ ହେବିନାହିଁ । କିନ୍ତୁ ତା ପୂର୍ବରୁ ସେହି ରାଜକୁମାରକୁ ମୁଁ ଦେଖିବାକୁ ଚାହେଁ ।'

ପିତାଙ୍କର ଆଦେଶ ନେଇ ରାକ୍ଷସ କନ୍ୟା ରାଜକୁମାରଙ୍କୁ ଆଣି ସେଠାରେ ଉପସ୍ଥିତ କରାଇଲା । ତାଙ୍କର ନମ୍ରତା ଓ ବିଦ୍‌ବତ୍ତା ଦେଖି ରାକ୍ଷସ ଉଚିତ ସତ୍କାର ପୂର୍ବକ କହିଲା, ''ରାଜକୁମାର, ମୁଁ ତୁମ ହସ୍ତରେ ମୋର କନ୍ୟା ରୂପଶିଖାକୁ ସମର୍ପଣ କରୁଅଛି । କିନ୍ତୁ ତୁମେ ମୋର ପ୍ରତ୍ୟେକ କଥା ମାନି ଚଳିବାକୁ ପଡ଼ିବ ।' ଶୃଙ୍ଗଭୁଜ ଏଥିରେ ସମ୍ମତ ହେଲେ ଏବଂ କଦାପି ତାଙ୍କର ଆଦେଶ ଅମାନ୍ୟ କରିବେ ନାହିଁ ବୋଲି ମଧ୍ୟ ଦୃଢ଼ ପ୍ରତିଶ୍ରୁତି ପ୍ରଦାନ କଲେ ।

ଶୃଙ୍ଗଭୁଜଙ୍କର ଉତ୍ତରରେ ସନ୍ତୁଷ୍ଟ ହୋଇ ରାକ୍ଷସ ତାଙ୍କୁ ସ୍ନାନ କରି ଆସିବା ପାଇଁ ନିର୍ଦ୍ଦେଶ ଦେଲା ଏବଂ ରୂପଶିଖାକୁ ଅନ୍ୟାନ୍ୟ ଭଉଣୀମାନଙ୍କୁ ସଙ୍ଗରେ ନେଇ ଶୀଘ୍ର ଆସିବା ପାଇଁ ଆଦେଶ ଦେଲା । ରାକ୍ଷସର ଆଦେଶ ପାଳନ କରି ଉଭୟେ ସେଠାରୁ ବାହାରକୁ ଆସନ୍ତେ ରୂପଶିଖା ଶୃଙ୍ଗଭୁଜଙ୍କୁ କହିଲା, 'ମୋର ଆଉ ଶହେ ଭଉଣୀ ଅଛନ୍ତି । ସମସ୍ତେ ଅବିବାହିତା । ଆମେ ସମସ୍ତେ ସର୍ବଦା ସମାନ ବେଶଭୂଷା ହିଁ ଧାରଣ କରିଥାଉଁ । ଆଉ ଆଶ୍ଚର୍ଯ୍ୟର କଥା ଆମ୍ଭମାନଙ୍କର ରୂପ ଭିତରେ ମଧ୍ୟ କୌଣସି ପାର୍ଥକ୍ୟ ନାହିଁ । ଗୋଟିଏ ପ୍ରକାର ହାର ଆମେ ସମସ୍ତେ ସର୍ବଦା କଣ୍ଠରେ ଧାରଣ କରିଥାଉ । ଏଣୁ ମୋର ପିତା ଆପଣଙ୍କୁ ପ୍ରତାରିତ କରିବା ପାଇଁ ଆମ୍ଭମାନଙ୍କୁ ଏକତ୍ର ଠିଆ କରାଇ ଜଣକୁ ବରଣ କରିବା ପାଇଁ କହିବେ । ମୁଁ ତାଙ୍କର ଏ କପଟ ବ୍ୟବହାର ଜାଣେ । ନୋଚେତ୍ ସବୁ ଭଉଣୀଙ୍କୁ ନେଇ ଆସିବାପାଇଁ ମୋତେ ନିର୍ଦ୍ଦେଶ ଦେଇ ନ ଥାନ୍ତେ । ବରଣ ସମୟରେ ମୁଁ ମାଳାଟିକୁ ମୋର ମସ୍ତକ ଉପରକୁ ଉଠାଇ ନେବି । ତାହାହେଲେ ଆପଣ ଚିହ୍ନି ପାରି ମୋର ଗଳାରେ ବରଣମାଳା ଅର୍ପଣ କରିବେ । ମୋ ପିତାଙ୍କ ତୁଲ୍ୟ ମୂର୍ଖ ବୋଧହୁଏ ଅନ୍ୟତ୍ର ବିରଳ । ତା' ନ ହୋଇଥିଲେ ନିଜର କନ୍ୟାପ୍ରତି ସେ ଏପ୍ରକାର ବ୍ୟବହାର କରନ୍ତେ ନାହିଁ; ତେଣୁ ଆପଣଙ୍କୁ ପ୍ରତାରିତ କରିବାପାଇଁ ସେ ଯାହା ଯାହା କହିବେ ଆପଣ ସେସବୁ ସ୍ୱୀକାର କରିନେଇ ମୋ ନିକଟରେ ପ୍ରକାଶ କରିବେ । ତା'ପରେ ଯାହା କରିବା କଥା ମୁଁ କରି ନେବି ।' ଏହା କହି ରୂପଶିଖା ନିଜର ଭଗିନୀମାନଙ୍କ ନିକଟକୁ ପ୍ରସ୍ଥାନ କଲା । ଶୃଙ୍ଗଭୁଜ ମଧ୍ୟ ତାର ନିର୍ଦ୍ଦେଶ ଅନୁଯାୟୀ ସ୍ନାନାଗାର ଅଭିମୁଖରେ ଅଗ୍ରସର ହେଲେ ।

କିଛି ସମୟ ପରେ ରୂପଶିଖା ନିଜର ଶହେ ଭଉଣୀଙ୍କୁ ଆଣି ପିତାଙ୍କ ନିକଟରେ ଉପସ୍ଥିତ କରାଇଲା । ଏଣେ ଶୃଙ୍ଗଭୁଜ ମଧ୍ୟ ସେବିକାମାନଙ୍କଦ୍ୱାରା ସ୍ନାନ ସମାପନ କରି ସେଠାରେ ଆସି ପହଞ୍ଚିଲେ । ଅଗ୍ନିଶିଖ ଏମାନଙ୍କ ମଧ୍ୟରୁ ନିଜର ଇଚ୍ଛା ଅନୁଯାୟୀ ଜଣକୁ ବରଣ କରିବାପାଇଁ କହି ଶୃଙ୍ଗଭୁଜଙ୍କ ହସ୍ତରେ ଗୋଟିଏ ପୁଷ୍ପମାଲ୍ୟ ଅର୍ପଣ କଲା । ରାଜକୁମାର ବରଣମାଳା ନେଇ ମସ୍ତକ ଉପରେ ମାଳା ଧାରଣ କରିଥିବା କନ୍ୟାର କଣ୍ଠରେ ପ୍ରଲମ୍ବନ କଲେ । ଏହା ଦେଖି ଅଗ୍ନିଶିଖ ପରଦିନ ପ୍ରଭାତରେ ସେମାନଙ୍କର ବିବାହ ସମାପନ ହେବ ବୋଲି ନିର୍ଦ୍ଦେଶ ଦିଅନ୍ତେ ସେମାନେ ନିଜ ନିଜର ବାସଭବନ ଅଭିମୁଖରେ ପ୍ରସ୍ଥାନ କଲେ ।

ହଠାତ୍ ରାକ୍ଷସ ଅଗ୍ନିଶିଖ ଶୃଙ୍ଗଭୁଜଙ୍କୁ ଡାକି କହିଲା, ''ଏହି ଦୁଇଟି ବଳଦ ସାହାଯ୍ୟରେ ତୁମେ ନଗର ବାହାରେ ଥିବା ଶସ୍ୟକ୍ଷେତ୍ରର ଏକଶତ ଖାରୀ (ଖମାର)ରେ ରାଶି ବୁଣିଦେଇ ଆସ ।'' ଏଥିରେ ଶୃଙ୍ଗଭୁଜ ବିଚଳିତ ହୋଇ ରୂପଶିଖା ନିକଟରେ ସମସ୍ତ ବୃତ୍ତାନ୍ତ ପ୍ରକାଶ କଲେ । କିନ୍ତୁ ସେ ତାଙ୍କୁ ଧୈର୍ଯ୍ୟ ପ୍ରଦାନ କରି କହିଲା, 'ଆର୍ଯ୍ୟପୁତ୍ର, ଆପଣ ଏ ସମ୍ପର୍କରେ ଚିନ୍ତା କରିବା ଅନାବଶ୍ୟକ । କେବଳ ହଳ ନେଇ ଆପଣ ଏଠାରୁ ଚାଲିଯାଆନ୍ତୁ । ମୁଁ ମୋର ମାୟା ବଳରେ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ସିଦ୍ଧ କରି ଦେଉଛି ।' ଏଥିରେ ଆଶ୍ୱସ୍ତ ହୋଇ ରାଜକୁମାର ଶସ୍ୟକ୍ଷେତ୍ରରେ ଯାଇ ପହଞ୍ଚିଲାବେଳକୁ ରାକ୍ଷସ କନ୍ୟାର ମାୟା ବଳରେ ସମସ୍ତ କ୍ଷେତ୍ର କର୍ଷିତ ହୋଇଯାଇଥିଲା ଏବଂ ସବୁ ରାଶି ମଧ୍ୟ ବୁଣି ଦିଆଯାଇଥିଲା ।

ରାଜପୁତ୍ର ଶୃଙ୍ଗଭୁଜ ଅଗ୍ନିଶିଖ ନିକଟରେ ଯାଇ କାର୍ଯ୍ୟଶେଷ ହୋଇଥିବା ପ୍ରକାଶ କରନ୍ତେ, ସେହି କ୍ରୂର ଓ ଧୂର୍ତ୍ତ ରାକ୍ଷସ ପୁଣି କହିଲା, ''ବର୍ତ୍ତମାନ ରାଶି ବୁଣିବାର ଉପଯୁକ୍ତ ସମୟ ନୁହେଁ । ମୁଁ ଭୁଲବଶତଃ ତୁମକୁ ଏହା କରିବାପାଇଁ କହିଦେଇଥିଲି । ଏଣୁ ତୁମେ ସେଗୁଡ଼ିକୁ ଏକତ୍ର କରି ପୁଣି ନେଇଆସ । ଏହାଶୁଣି ରାଜକୁମାର ପୁଣି ରୂପଶିଖାର ଆଶ୍ରୟ ନେଲେ । ଫଳରେ ସେ ଶସ୍ୟକ୍ଷେତ୍ର ମଧ୍ୟରେ ଶହ ଶହ ପିପୀଲିକା ସୃଷ୍ଟି କରି ରାଶିଗୁଡ଼ିକୁ ପୁଣି ଏକତ୍ର କରିଦେଲା ।

ରାଜକୁମାର ଏ ବିଷୟ ଅଗ୍ନିଶିଖ ନିକଟରେ ପ୍ରକାଶ କରନ୍ତେ ସେ ପୁଣି ଆଦେଶ ଦେଲା 'ଏହିଠାରୁ ଆଠ କୋଶ ଦକ୍ଷିଣରେ ଏକ ଶିବମନ୍ଦିର ଅଛି । ସେଠାରେ ମୋର ଭାଇ ଧୂମଶିଖ ବାସ କରେ । ସେ ମୋର ଅତିପ୍ରିୟ । ତୁମେ ବର୍ତ୍ତମାନ ସେଠାକୁ ଯାଇ ଦେବମନ୍ଦିର ସମ୍ମୁଖରେ ଠିଆହୋଇ ମୋ ପକ୍ଷରୁ କହିବ ଯେ ''ଧୂମଶିଖ, ତୁମର

ଅନୁଚରମାନଙ୍କ ସହିତ ତୁମକୁ ନିମନ୍ତ୍ରଣ କରିବା ପାଇଁ ରାକ୍ଷସରାଜ ଅଗ୍ନିଶିଖ ମୋତେ ପଠାଇଅଛନ୍ତି । କାଲି ପ୍ରାତଃକାଳରେ ତାଙ୍କର ପ୍ରିୟ କନ୍ୟା ରୂପଶିଖାର ବିବାହ ଉତ୍ସବ ପାଳିତ ହେବ । ତେଣୁ ଶୀଘ୍ର ଆସି ଯୋଗଦେବା ପାଇଁ ତୁମ ଜ୍ୟେଷ୍ଠଭ୍ରାତା ମୋଦ୍ୱାରା ତୁମକୁ ନିର୍ଦ୍ଦେଶ ଦେଇ ଅଛନ୍ତି । ଏହା କହି ତୁମେ ଆଜି ହିଁ ସେଠାରୁ ଫେରି ଆସିବ ଏବଂ କାଲି ପ୍ରଭାତରେ ମୋର କନ୍ୟାକୁ ବିବାହ କରିବ ।'

ଏ କଠୋର ନିର୍ଦ୍ଦେଶ ଶୁଣି ରାଜକୁମାର ପୁଣି ଆସି ରୂପଶିଖା ନିକଟରେ ସମସ୍ତ କଥା ପ୍ରକାଶ କଲେ । ପତିବ୍ରତା ରୂପଶିଖା ତାଙ୍କୁ କିଛି ମାଟି, କିଛି ଜଳ, କିଛି କଣ୍ଟା, କିଛି ଅଗ୍ନି ଏବଂ ଏକ ଶୀଘ୍ରଗାମୀ ଅଶ୍ୱ ପ୍ରଦାନ କରି କହିଲା, 'ଏହି ଅଶ୍ୱ ଆରୋହଣ ପୂର୍ବକ ଆପଣ ସେହି ଦେବ ମନ୍ଦିର ନିକଟକୁ ଯିବେ । ଧୂମଶିଖକୁ ପିତାଙ୍କ ପକ୍ଷରୁ ନିମନ୍ତ୍ରଣ କରି ସଙ୍ଗେ ସଙ୍ଗେ ଫେରି ଆସିବେ; କିନ୍ତୁ ଆସିଲାବେଳେ ଅଶ୍ୱର ଗତି ଯେପରି ଦ୍ରୁତତର ହୁଏ, ତା' ପ୍ରତି ଦୃଷ୍ଟି ରଖିଥିବେ ଏବଂ ବାରମ୍ବାର ପଛକୁ ଚାହୁଁଥିବେ । ଯଦି କେତେବେଳେ ଧୂମଶିଖ ଆପଣଙ୍କୁ ଅନୁସରଣ କରୁଥିବା ଦେଖନ୍ତି ତାହାହେଲେ ପ୍ରଥମେ ଏହି ମୃତ୍ତିକାକୁ ଭୂପୃଷ୍ଠରେ ନିକ୍ଷେପ କରିବେ । ତଥାପି ଯଦି ସେ ଆପଣଙ୍କର ପଶ୍ଚାଦ୍ଧାବନ କରେ ତାହାହେଲେ ଆପଣଙ୍କ ପଛପଟେ ଏହି ଜଳ ପାତ୍ରକୁ ଢାଳିଦେବେ । ପୁଣି ଯଦି ସେ ଅନୁଧାବନ କରେ ତେବେ କଣ୍ଟାଗୁଡ଼ିକୁ ପଛକୁ ଫୋପାଡ଼ି ଦେବେ । ଏଥିରେ ମଧ ସେ ଅନୁସରଣ କରିବାରୁ ବିରତ ନ ହେଲେ ଶେଷରେ ଏହି ଅଗ୍ନିକୁ ତା ଆଡ଼କୁ ପକାଇଦେବେ । ଏ ପ୍ରକାର କରିବାଦ୍ୱାରା ବିନା କଷ୍ଟରେ ଆପଣ ଆସି ଏଠାରେ ପହଞ୍ଚି ପାରିବେ । ତେଣୁ ବର୍ତ୍ତମାନ ମନରେ କୌଣସି ଆଶଙ୍କା ନ କରି ପ୍ରସ୍ଥାନ କରନ୍ତୁ । ମୋର ବିଦ୍ୟାର ପ୍ରଭାବ କେତେ, ତାହା ଆଜି ହିଁ ଆପଣ ଜାଣିପାରିବେ ।'

ରୂପଶିଖାଠାରୁ ଏହା ଶୁଣି ଶୃଙ୍ଗଭୁଜ ମୃତ୍ତିକା, ଜଳ, କଣ୍ଟା ଓ ଅଗ୍ନି ସହିତ ଅଶ୍ୱ ଉପରେ ଆରୋହଣ କଲେ । ବେଗଗାମୀ ଅଶ୍ୱ ତାଙ୍କୁ ମୁହୂର୍ତ୍ତକ ମଧରେ ପୂର୍ବୋକ୍ତ ଶିବ ମନ୍ଦିରରେ ନେଇ ପହଞ୍ଚାଇ ଦେଲା । ମନ୍ଦିର ମଧରେ ବିଶ୍ୱେଶର ଶିବଙ୍କୁ ଏବଂ ତାଙ୍କର ବାମ ଭାଗରେ ଥିବା ଗୌରୀ ଓ ଦକ୍ଷିଣରେ ଥିବା ଗଣେଶଙ୍କୁ ପ୍ରଣାମ କରି ରାଜକୁମାର ଅଗ୍ନିଶିଖର ସନ୍ଦେଶ ଉଚ୍ଚ ସ୍ୱରରେ ଘୋଷଣା କଲେ । ଧୂମଶିଖକୁ ଏହିପରି ନିମନ୍ତ୍ରଣ କରି ସେ ତତ୍କ୍ଷଣାତ୍ ଧୂମପୁର ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ଅଳ୍ପଦୂର ଯିବା ପରେ ସେ ପଛକୁ ଚାହିଁ ଦେଖିଲେ ଧୂମଶିଖ ତାଙ୍କର ଅନୁସରଣ କରୁଅଛି । ରୂପଶିଖାର କଥା ସ୍ମରଣ କରି ସେ ପ୍ରଥମେ ଧରିଥିବା ମୃତ୍ତିକାକୁ ସେଠାରେ ନିକ୍ଷେପ କଲେ । ଚାହୁଁ

ତାହୁଁ ଏକ ବିରାଟ ପର୍ବତ ସେଠାରେ ସୃଷ୍ଟି ହେଲା । ଅନାୟାସରେ ଏହି ପର୍ବତକୁ ଅତିକ୍ରମ କରି ରାକ୍ଷସ ତାଙ୍କର ଅନୁସରଣ କରନ୍ତେ ସେ ପାଖରେ ଥିବା ଜଳପାତ୍ରଟିକୁ ସେଠାରେ ଢାଳି ଦେଇ ଶୀଘ୍ର ପଳାୟନ କରିବାକୁ ଲାଗିଲେ । ଉକ୍ତ ଜଳ ସେଠାରେ ଏକ ସୁଉଚ୍ଚ ଲହରିମାଳା ପରିପୂର୍ଣ୍ଣ ମହାନଦୀରେ ପରିଣତ ହେଲା । କିନ୍ତୁ ରାକ୍ଷସ ଧୂମଶିଖ ଅତି ସହଜରେ ସେଥିରେ ସନ୍ତରଣ କରି ପୁଣି ତାଙ୍କର ଅନୁସରଣ କରିବାକୁ ଲାଗିଲା । ଏଥିରେ ଶୃଙ୍ଗଭୁଜ ବିବ୍ରତ ହୋଇ ନିକଟରେ ଥିବା କଣ୍ଟାଗୁଡ଼ିକୁ ନିକ୍ଷେପ କରି ଆଗକୁ ଅଗ୍ରସର ହେଲେ । ଫଳରେ କଣ୍ଟକପୂର୍ଣ୍ଣ ଏକ ଭୟଙ୍କର ଅରଣ୍ୟ ରାକ୍ଷସର ଗତିରୋଧ କଲା । କିନ୍ତୁ ତାକୁ ଅତିକ୍ରମ କରି ଧୂମଶିଖ ଯେତେବେଳେ ପୁଣି ତାଙ୍କର ନିକଟବର୍ତ୍ତୀ ହେଲା ସେତେବେଳେ ରାଜକୁମାର ଅଗ୍ନିଖଣ୍ଡକୁ ତା ଆଡ଼କୁ ନିକ୍ଷେପ କଲେ । ଫଳରେ ସମଗ୍ର ବନଭୂମି ଏବଂ ବନପଥ ପ୍ରଜ୍ୱଳିତ ହୋଇ ଉଠିଲା । ଖାଣ୍ଡବ ବନ ତୁଲ୍ୟ ଏହି ଜ୍ୱଳନ୍ତଅରଣ୍ୟ ଦର୍ଶନ କରି ଭୟରେ ଧୂମଶିଖ ସେଠାରୁ ପ୍ରତ୍ୟାବର୍ତ୍ତନ କଲା । ରୂପଶିଖାର ମାୟାଦ୍ୱାରା ବିମୋହିତ ଧୂମଶିଖ ଏହି ସମୟରେ ଆକାଶ ମାର୍ଗରେ ଯିବାପାଇଁ ଭୁଲିଯାଇ ଭୂମି ଉପରେ ହିଁ ଗତି କରୁଥିଲା; ତେଣୁ ରାଜକୁମାର ନିର୍ବିଘ୍ନରେ ରୂପଶିଖାର ବିଦ୍ୟା ବିଭବକୁ ପ୍ରଶଂସା କରି ଧୂମପୁରରେ ଆସି ଉପସ୍ଥିତ ହେଲେ ।

ଶୃଙ୍ଗଭୁଜ ରୂପଶିଖାକୁ ତା'ର ଅଶ୍ୱଟି ପ୍ରତ୍ୟର୍ପଣ କରିଦେଇ ପ୍ରସନ୍ନ ଚିତ୍ତରେ ସମସ୍ତ ଘଟଣା ତା' ନିକଟରେ ବର୍ଣ୍ଣନା କଲେ । ଏହାପରେ ଅଗ୍ନିଶିଖ ନିକଟକୁ ଯାଇ ତାର ଭ୍ରାତା ଧୂମଶିଖକୁ ନିମନ୍ତ୍ରଣ କରିଥିବା କଥା ପ୍ରକାଶ କଲେ । ଏଥିରେ ଅଗ୍ନିଶିଖ ବିଚଳିତ ହୋଇ କହିଲା, 'ତୁମେ ଯଦି ସେଠାକୁ ଯାଇଥିଲ ତାହାହେଲେ ସେଠାର କିଛି ସଙ୍କେତ ପ୍ରମାଣ ସ୍ୱରୂପ ପ୍ରକାଶ କର ।' ଉତ୍ତରରେ ଶୃଙ୍ଗଭୁଜ କହିଲେ 'ମୁଁ ଯେଉଁ ମନ୍ଦିର ନିକଟକୁ ଯାଇଥିଲି ସେହି ମନ୍ଦିରରେ ଥିବା ଦେବଦେବ ମହାଦେବଙ୍କର ବାମପାର୍ଶ୍ୱରେ ପାର୍ବତୀ ଏବଂ ଦକ୍ଷିଣ ପାର୍ଶ୍ୱରେ ବିନାୟକ ବିରାଜମାନ କରୁଅଛନ୍ତି ।' ଏଥିରେ ଅଗ୍ନିଶିଖର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ମନେ ମନେ ଚିନ୍ତା କଲା 'ମୋର ଭାଇ ଏହି ମନୁଷ୍ୟଟିକୁ ଭକ୍ଷଣ ନ କରି ପରିତ୍ୟାଗ କଲା କିପରି ? ତେଣୁ ମନେ ହେଉଛି ଏ ଯୁବକ ପ୍ରକୃତରେ ମନୁଷ୍ୟ ନୁହେ । କୌଣସି ଦେବତା ଛଦ୍ମ ରୂପରେ ଆସି ଏଠାରେ ଉପସ୍ଥିତ ହୋଇଅଛି । ତେଣୁ ମୋର କନ୍ୟା ପାଇଁ ଏ ଏକାନ୍ତ ଉପଯୁକ୍ତ ।' ଏହା ଭାବି ସେ ରାଜକୁମାରଙ୍କୁ ରୂପଶିଖା ନିକଟକୁ ପ୍ରେରଣ କଲା । କିନ୍ତୁ ମୂର୍ଖ ରାକ୍ଷସ ଜାଣିପାରିଲା ନାହିଁ ଯେ ଏହି ଯୁବକ ହିଁ ତାକୁ ଶରବିଦ୍ଧ କରି କ୍ଷତବିକ୍ଷତ କରିଥିଲା ।

ବିବାହ ନିମନ୍ତେ ଉତ୍କଣ୍ଠିତ ଶୃଙ୍ଗଭୁଜ ଓ ରୂପଶିଖା କୌଣସିମତେ ରାତ୍ରିଯାପନ କଲେ । ପ୍ରଭାତରୁ ନିଜର ବୈଭବ ଅନୁସାରେ ଦାନ ଦକ୍ଷିଣ ପ୍ରଦାନ କରି ରାକ୍ଷସ ଅଗ୍ନିଶିଖ ଉଭୟଙ୍କର ବିବାହ ସମ୍ପାଦନ କଲା । ରାଜକୁମାର ଓ ରାକ୍ଷସକନ୍ୟାର ବିବାହ ପ୍ରକୃତରେ ଏକ ବୈଚିତ୍ର୍ୟପୂର୍ଣ୍ଣ ଘଟଣା ।

ରାଜପୁତ୍ର ଶୃଙ୍ଗଭୁଜ ରାକ୍ଷସକନ୍ୟାକୁ ବିବାହ କରି ପଙ୍କଜାତ ପଦ୍ମ ନିକଟରେ ରାଜହଂସ ତୁଲ୍ୟ ଶୋଭା ପାଇଲେ । ରାକ୍ଷସଠାରୁ ପ୍ରାପ୍ତ ସମ୍ପତ୍ତିଦ୍ୱାରା ବିଭିନ୍ନ ଭୋଗ ବିଳାସରେ ନିମଜ୍ଜିତ ରହି ଉଭୟେ କାଳଯାପନ କରିବାକୁ ଲାଗିଲେ ।

ଏହିପରି କିଛି ଦିନ ବିତିଗଲା । ଦିନେ ଶୃଙ୍ଗଭୁଜ ରୂପଶିଖାକୁ ଏକାନ୍ତରେ କହିଲେ, 'ପ୍ରିୟେ, ଚାଲ ବର୍ତ୍ତମାନ ଆମର ରାଜଧାନୀ ବର୍ଦ୍ଧମାନ ନଗରକୁ ଚାଲିଯିବା । ଏତେଦିନ ଅନ୍ୟ ଗୃହରେ ରହିବା ମୋ ପକ୍ଷରେ ସମ୍ମାନଜନକ ହେବ ବୋଲି ମନେ କରୁନାହିଁ । ତେଣୁ ତୁମେ ମୋ ନିମନ୍ତେ ପ୍ରିୟ ଜନ୍ମଭୂମି ପରିତ୍ୟାଗ କରି ମୋ ସହିତ ଯିବାଲାଗି ପିତାଙ୍କ ଠାରୁ ଅନୁମତି ନେଇ ଆସ । ପୁଣି କୌଣସି ଉପାୟରେ ପିତାଙ୍କଠାରୁ ସେହି ସୁବର୍ଣ୍ଣ ନିର୍ମିତ ଶରଟିକୁ ହସ୍ତଗତ କରିନିଅ ।' ଏହାଶୁଣି ରୂପଶିଖା ଉତ୍ତର ଦେଲା, 'ଆର୍ଯ୍ୟପୁତ୍ର, ଆପଣ ଯାହା ଆଦେଶ ଦେଲେ ତାହା ମୁଁ ସଙ୍ଗେ ସଙ୍ଗେ ପାଳନ କରୁଅଛି । ଆପଣଙ୍କ ବ୍ୟତୀତ ଜନ୍ମଭୂମି ଓ ବନ୍ଧୁବାନ୍ଧବ ମୋ ନିକଟରେ ଅତି ତୁଚ୍ଛ ଓ ଅନାବଶ୍ୟକ । ସଚ୍ଚରିତ୍ରା ସ୍ତ୍ରୀମାନଙ୍କ ନିମନ୍ତେ ପତିସେବା ହିଁ ପରମ ଧର୍ମ ।

**ନ ପତିବ୍ୟତିରେକେଣ ସୁସ୍ତ୍ରୀଣାମପରା ଗତିଃ ।**

କିନ୍ତୁ ଆମେ ଯିବା କଥା ପିତାଙ୍କର କର୍ଣ୍ଣଗୋଚର କରିବା ଉଚିତ ନୁହେ । ସେ ଆମକୁ କଦାପି ଯିବା ପାଇଁ ଦେବେ ନାହିଁ । ତେଣୁ ଏହି କ୍ରୂର ରାକ୍ଷସର ଅଜ୍ଞାତସାରରେ ହିଁ ଆମକୁ ପଳାୟନ କରିବାକୁ ପଡ଼ିବ । ଯଦି ଭୃତ୍ୟମାନଙ୍କ ଠାରୁ ଜାଣିପାରି ସେ ଆମର ପଶ୍ଚାତ୍‌ଧାବନ କରନ୍ତି ତାହାହେଲେ ମୁଁ ମୋର ମାୟା ବଳରେ ତାକୁ ପ୍ରତାରିତ କରିପାରିବି ।'

ପରଦିନ ରୂପଶିଖା ରତ୍ନପୂର୍ଣ୍ଣ ଏକ ପେଟିକା ସହ ନିଜର ସରବେଗ ନାମକ ଅଶ୍ୱ ଉପରେ ଆରୋହଣ କରି ଉଦ୍ୟାନ ଭ୍ରମଣ ବ୍ୟାଜରେ ଶୃଙ୍ଗଭୁଜସହ ବର୍ଦ୍ଧମାନପୁରୀ ପ୍ରତି ଅଗ୍ରସର ହେଲା । ରାଜକୁମାର ରୂପଶିଖାର କୌଶଳରେ ପିତାଙ୍କର ସୁବର୍ଣ୍ଣ ନିର୍ମିତ ଶରଟିକୁ ହସ୍ତଗତ କରି ନେଇଥାଆନ୍ତି ।

ଏମାନେ କିଛି ଦୂର ଅତିକ୍ରମ କରିଯିବା ପରେ ଭୃତ୍ୟମାନଙ୍କଠାରୁ ଏ ସମ୍ବାଦ ଲାଭ କରି ଅଗ୍ନିଶିଖ ଆକାଶ ମାର୍ଗରେ ସେମାନଙ୍କର ଅନୁଧାବନ କଲା । ଦୂରରୁ ତାର ସୂଚନା ପାଇ ରୂପଶିଖା ଶୃଙ୍ଗଭୁଜଙ୍କୁ କହିଲା, 'ଆର୍ଯ୍ୟପୁତ୍ର, ବର୍ତ୍ତମାନ ପିତା ଆମ୍ଭମାନଙ୍କୁ ଫେରାଇ ନେବା ପାଇଁ ଆସୁଅଛନ୍ତି । ଆପଣ ନିଃଶଙ୍କଚିତ୍ତରେ ଅଶ୍ୱ ଉପରେ ବସି ଥାଆନ୍ତୁ । ମୁଁ ମୋର ମାୟାବଳରେ ଆପଣଙ୍କୁ ଓ ଅଶ୍ୱକୁ ଅଦୃଶ୍ୟ କରିଦେଉଅଛି । ଫଳରେ ସେ ଆପଣଙ୍କୁ ଦେଖି ପାରିବେ ନାହିଁ ।' ଏହିପରି କହି ରାକ୍ଷସକନ୍ୟା ଅଶ୍ୱପୃଷ୍ଠରୁ ଅବତରଣ କରି ପୁରୁଷ ବେଶ ଧାରଣ କଲା । ନିକଟରେ ବୃକ୍ଷ ଛେଦନ କରୁଥିବା ଜଣେ ବ୍ୟକ୍ତିକୁ ଦେଖି, ପଛରୁ ଏକ ଭୟଙ୍କର ରାକ୍ଷସ ଆସୁଥିବାର ଭୟ ଦେଖାଇ ତାକୁ ଲୁଚିଯିବା ପାଇଁ ନିର୍ଦ୍ଦେଶ ଦେଲା ଏବଂ ନିଜେ ତାର କୁଠାର ଗ୍ରହଣ କରି ବୃକ୍ଷ ଛେଦନ କରିବାକୁ ଲାଗିଲା । ତାକୁ ଦେଖି ମୂର୍ଖ ରାକ୍ଷସ ଆକାଶରୁ ଅବତରଣ କରି ଜିଜ୍ଞାସା କଲା, 'ମିତ୍ର, ଏହି ରାସ୍ତାରେ ଯାଉଥିବା କୌଣସି ଜଣେ ସ୍ତ୍ରୀ ଓ ପୁରୁଷକୁ ତୁମେ ଦେଖିଛ ?' ପୁରୁଷ ରୂପ ଧାରିଣୀ ରୂପଶିଖା କିଛି ସମୟ ଚିନ୍ତା କରି ଦୁଃଖର ସହିତ ଉତ୍ତର ଦେଲା, ''ପରିଶ୍ରମ ହେତୁ ମୁଁ ଅତ୍ୟନ୍ତ କ୍ଲାନ୍ତ । ଏଣୁ କିଛି ଦେଖିବା ପାଇଁ ସମର୍ଥ ହୋଇ ପାରି ନାହିଁ । ଆଜି ରାକ୍ଷସରାଜ ଅଗ୍ନିଶିଖଙ୍କର ଶବଦାହ ନିମନ୍ତେ ଅଧିକ କାଠ ଆବଶ୍ୟକ ହେଉଛି । ତେଣୁ ଏହି ବ୍ୟସ୍ତତା ମଧ୍ୟରେ ପଥଦେଇ ଯାଇଥିବା କୌଣସି ଲୋକକୁ ମୁଁ ଦେଖିପାରି ନାହିଁ । ଏହା ଶୁଣି ମୂର୍ଖ ରାକ୍ଷସ ଚିନ୍ତା କଲା, ''ଆହା, ମୁଁ ମରିଗଲି କିପରି ? ମରିଯିବା ପରେ ମୋର ଆଉ କନ୍ୟାର କି ଆବଶ୍ୟକ । ଘରକୁ ଯାଇ ବନ୍ଧୁବାନ୍ଧବମାନଙ୍କୁ ଏକଥା ଜଣାଇ ଦେବା ଉଚିତ । ଏପରି ଚିନ୍ତା କରି ଅଗ୍ନିଶିଖ ସେଠାରୁ ପ୍ରତ୍ୟାବର୍ତ୍ତନ କରନ୍ତେ ରୂପଶିଖା ପୁଣି ନିଜ ବେଶରେ ପତିଙ୍କ ସହିତ ଅଗ୍ରସର ହେଲା ।

ରାକ୍ଷସ ନଗରରେ ଉପସ୍ଥିତ ହୋଇ ନିଜର ପରିବାରବର୍ଗଙ୍କୁ ତା'ର ମୃତ୍ୟୁବାର୍ତ୍ତା ଦେବାରୁ ସେମାନେ ଉପହାସ କଲେ । ଏଥିରେ ସେ ନିଜେ ପ୍ରତାରିତ ହୋଇଥିବା ଏବଂ ଜୀବିତ ଥିବା ଜାଣିପାରି ଆନନ୍ଦ ମନରେ ପୁଣି ରୂପଶିଖାର ଅନୁଗମନ କଲା । ଭୟଙ୍କର ଶବ୍ଦ ଯୋଗୁଁ ଦୂରରୁ ଅଗ୍ନିଶିଖର ଆଗମନ ସୂଚନା ଲାଭକରି ରୂପଶିଖା ପୁଣି ଶୃଙ୍ଗଭୁଜ ଓ ଅଶ୍ୱଟିକୁ ମାୟା ବଳରେ ଅଦୃଶ୍ୟ କରିଦେଇ ସେହି ମାର୍ଗରେ ଆସୁଥିବା କୌଣସି ପତ୍ରବାହକର ହସ୍ତରୁ ପତ୍ରଟି ଆଣି ପୁରୁଷ ବେଶରେ ସେଠାରେ ଅପେକ୍ଷା କଲା । ଏହି ସମୟରେ ରାକ୍ଷସ ଆସି ନିଜ କନ୍ୟା ଓ ଜାମାତାର ସମ୍ବାଦ ଜିଜ୍ଞାସା କରନ୍ତେ, ସେ ଦୀର୍ଘଶ୍ୱାସ ନେଇ କହିଲା, 'ମୁଁ ଅତିଶୀଘ୍ର ଯିବା ପାଇଁ ବ୍ୟସ୍ତ ଥିବାରୁ କାହାରିକୁ ଦେଖିପାରି

ନାହିଁ । ଆଜି ଶତ୍ରୁମାନେ ଯୁଦ୍ଧରେ ରାକ୍ଷସରାଜ ଅଗ୍ନିଶିଖଙ୍କୁ ହତ୍ୟା କରିଅଛନ୍ତି । ମୃତ୍ୟୁ ପୂର୍ବରୁ ତାଙ୍କ ଭାଇ ଧୂମଶିଖଙ୍କୁ ରାଜ୍ୟ ପରିଚାଳନା ପାଇଁ କେତେକ ଉପଦେଶ ଦେଇ ମୋ ହସ୍ତରେ ସେ ଖଣ୍ଡେ ପତ୍ର ପ୍ରେରଣ କରିଛନ୍ତି । ତେଣୁ ମୁଁ ଅତି ଶୀଘ୍ର ଯାଇ ପତ୍ରଟି ପ୍ରଦାନ ନ କଲେ ହୁଏତ ଅରାଜକ ରାଜ୍ୟ ଶତ୍ରୁମାନଙ୍କଦ୍ୱାରା ଧ୍ୱଂସ ହେବ ।' ଏହା ଶୁଣି ମୂର୍ଖ ଅଗ୍ନିଶିଖ ଶତ୍ରୁମାନେ ତାକୁ ମାରିଦେଲେ ବୋଲି ଭାବି, ଦୁଃଖରେ ନିଜର ମୃତ୍ୟୁ ସମ୍ବାଦକୁ ପରୀକ୍ଷା କରିବା ପାଇଁ ସ୍ୱ ନଗରକୁ ପ୍ରତ୍ୟାବର୍ତ୍ତନ କଲା । ପ୍ରକୃତରେ ଭଗବାନଙ୍କର ଏହି ମୂର୍ଖ ସୃଷ୍ଟି ଏକ ବିରାଟ ବିସ୍ମୟ । ପରିବାରବର୍ଗଙ୍କ ଦ୍ୱାରା ଉପହସିତ ହୋଇ ରାକ୍ଷସ କନ୍ୟାର ଅନୁଧାବନ କରିବା ପାଇଁ ଆଉ ଉଚିତ ମନେକଲା ନାହିଁ । ତେଣୁ ରୂପଶିଖା ନିଜର ପିତାକୁ ପ୍ରତାରଣା କରି ନିର୍ବିଘ୍ନରେ ପତିଙ୍କ ସହ ଯାଇ ବର୍ଦ୍ଧମାନପୁରରେ ଉପସ୍ଥିତ ହେଲା । ପତିବ୍ରତା ସ୍ତ୍ରୀମାନେ ପତିଙ୍କର ମଙ୍ଗଳ ବ୍ୟତୀତ ଅନ୍ୟ କୌଣସି କଥା ଜାଣନ୍ତି ନାହିଁ ।

ରୂପଶିଖାଙ୍କ ସହିତ ପୁତ୍ର ଶୃଙ୍ଗଭୁଜ ଆସୁଥିବା ଜାଣିପାରି ପିତା ବୀରଭୁଜ ତାଙ୍କର ସ୍ୱାଗତ କରିବା ପାଇଁ ନଗରରୁ ବହିର୍ଗତ ହେଲେ । ବିଷ୍ଣୁଙ୍କ ସହ ସତ୍ୟଭାମାଙ୍କ ତୁଲ୍ୟ ପୁତ୍ର ସହିତ ରାକ୍ଷସକନ୍ୟା ରୂପଶିଖାକୁ ଦେଖି ରାଜା ନୂତନ ରାଜ୍ୟଲାଭ ହେଲା ବୋଲି ମନେ କଲେ । ଅଶ୍ୱରୁ ଅବତରଣ କରି ସେମାନେ ତାଙ୍କର ଚରଣ ସ୍ପର୍ଶ କରନ୍ତେ ରାଜା ଅଶ୍ରୁପୂର୍ଣ୍ଣ ଲୋଚନରେ ସେମାନଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ ପରମ ଆନନ୍ଦରେ ନଗର ମଧ୍ୟରେ ପ୍ରବେଶ କଲେ । ରାଜାଙ୍କର କୌତୂହଳ ଦମନ କରିବା ନିମିତ୍ତ ଶୃଙ୍ଗଭୁଜ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରି ଭାଇ ନିର୍ବାସଭୁଜକୁ ଉକ୍ତ ସୁବର୍ଣ୍ଣ ନିର୍ମିତ ବାଣଟି ଅର୍ପଣ କଲେ । ଏହି ସମସ୍ତ ସମାଚାର ଶ୍ରବଣ କରି ରାଜା ବୀରଭୁଜ ମନେ ମନେ ଚିନ୍ତାକଲେ ଯେ ଶୃଙ୍ଗଭୁଜ ହିଁ ତାଙ୍କର ଏକମାତ୍ର ସୁଯୋଗ୍ୟ ସନ୍ତାନ । ଈର୍ଷାନ୍ୱିତ ହୋଇ ଅନ୍ୟମାନେ ଏହାକୁ ରାଜ୍ୟରୁ ବିତାଡ଼ନ କରି ଦେଇଥିଲେ । ଏହି ପାପିଷ୍ଠ ଜ୍ୟେଷ୍ଠ ଭ୍ରାତାମାନେ ନିରପରାଧୀ ଶୃଙ୍ଗଭୁଜକୁ ଯେପରି ଦୁଃଖ ଦେଇଅଛନ୍ତି, ସେହିପରି ବୋଧହୁଏ ଏମାନଙ୍କର ମାତାମାନେ ଗୁଣବତୀ ଗୁଣବରାଙ୍କୁ ବିନାଦୋଷରେ ଦଣ୍ଡ ବିଧାନ କରିବାପାଇଁ ତାଙ୍କୁ ବାଧ୍ୟ କରିଅଛନ୍ତି । ଗୁଣବରା ନିଶ୍ଚିତ ଭାବରେ ଦୋଷଶୂନ୍ୟା, ତେଣୁ ମହାରାଣୀଙ୍କୁ ଶୀଘ୍ର ମୁକ୍ତି ଦେବା ଆବଶ୍ୟକ ।

ଏହା ଭାବି ରାଜା ବିଧିପୂର୍ବକ ରାଜକାର୍ଯ୍ୟ ସମାପନ କରି ରାଣୀ ଅଯଶୋଲେଖାଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କର ଆକସ୍ମିକ ଆଗମନରେ ଅତ୍ୟନ୍ତ ପ୍ରସନ୍ନା ରାଣୀଙ୍କୁ

ରାଜା ଅତ୍ୟଧିକ ମଦ୍ୟପାନ କରାଇ ବିହ୍ୱଳିତ କରିଦେଲେ । ଫଳରେ ରତିକ୍ଳାନ୍ତା ରାଣୀ ଶୀଘ୍ର ସୁଷୁପ୍ତି ଲାଭ କଲେ । କିନ୍ତୁ ରାଜା ତାଙ୍କ ନିକଟରେ ଜାଗ୍ରତ ଅବସ୍ଥାରେ ଅପେକ୍ଷା କରିଥାଆନ୍ତି । ରାଣୀ ଅଯଶୋଲେଖା ହଠାତ୍ ପ୍ରଳାପ କରି କହିଲେ–'ମୁଁ ଗୁଣବରାକୁ ଯଦି ମିଥ୍ୟା ଦୋଷରେ ଦୁଷ୍ଟ କରିନଥାନ୍ତି, ତାହାହେଲେ ରାଜା ସ୍ୱତଃପ୍ରବୃତ୍ତ ହୋଇ ମୋ ନିକଟକୁ ଆସିନଥାନ୍ତେ ।' ବୀରଭୁଜ ଏହା ଶୁଣି ନିଶ୍ଚିତ ହେଲେ ଯେ ରାଣୀ ଗୁଣବରା ନିଷ୍କଳଙ୍କିଣୀ । ସେ ସେଠାରୁ ସଙ୍ଗେ ସଙ୍ଗେ ଯାଇ ରାଣୀ ଗୁଣବରାଙ୍କୁ ମୁକ୍ତ କରିବା ନିମିତ୍ତ ଦ୍ୱାରପାଳମାନଙ୍କୁ ଆଦେଶ ଦେଲେ । ଆଦେଶ ସଙ୍ଗେ ସଙ୍ଗେ ପାଳିତ ହେଲା । ରାଣୀ ଗୁଣବରା ସ୍ନାନ ଓ ପ୍ରସାଧନ ଶେଷ କରି ପ୍ରସନ୍ନ ଚିତ୍ତରେ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ଉଭୟେ ବିରହ ସମୁଦ୍ର ସନ୍ତରଣ କରି ପରସ୍ପରକୁ ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେହେଁ ତୃପ୍ତିଲାଭ କରିପାରିଲେ ନାହିଁ । ନାନା କ୍ରୀଡ଼ା କୌତୁକରେ ରାତ୍ରିଯାପନ କରି ରାଜା ପ୍ରସନ୍ନ ଚିତ୍ତରେ ଶୃଙ୍ଗଭୁଜଙ୍କର ସମସ୍ତ ବୃତ୍ତାନ୍ତ ରାଣୀଙ୍କ ନିକଟରେ ପ୍ରକାଶ କଲେ ।

ଏଣେ ଅଯଶୋଲେଖା ଜାଗ୍ରତ ହୋଇ ଦେଖିଲେ ଯେ ରାଜା ତାଙ୍କ ନିକଟରୁ ବହୁପୂର୍ବରୁ ଚାଲିଯାଇ ଅଛନ୍ତି । ଏଥିରେ ତାଙ୍କର ଗଭୀର ଦୁଃଖ ଜାତ ହେଲା ।

ପ୍ରଭାତରେ ରାଜା ରୂପଶିଖା ଓ ଶୃଙ୍ଗଭୁଜଙ୍କ ସହ ଗୁଣବରାଙ୍କ ଅନ୍ତଃପୁରରେ ଆସି ଉପସ୍ଥିତ ହେଲେ । ସେମାନେ ମାତାଙ୍କର ମୁକ୍ତିଲାଭରେ ଆନନ୍ଦିତ ହୋଇ ତାଙ୍କର ଚରଣ ସ୍ପର୍ଶ ପୂର୍ବକ ପ୍ରଣାମ କଲେ । ଗୁଣବରା ବହୁଦିନ ପରେ ପୁତ୍ର ଓ ପୁତ୍ରବଧୂର ମୁଖ ଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲେ । ପିତାଙ୍କର ଆଦେଶାନୁଯାୟୀ ଶୃଙ୍ଗଭୁଜ ରୂପଶିଖାଠାରୁ ଲାଭ କରିଥିବା ସମସ୍ତ ସାହାଯ୍ୟର କଥା ଗୁଣବରାଙ୍କ ନିକଟରେ ପ୍ରକାଶ କରି ତାଙ୍କୁ ବିସ୍ମିତ କଲେ । ଗୁଣବରା ପ୍ରସନ୍ନ ଚିତ୍ତରେ କହିଲେ 'ରୂପଶିଖା ତୋ ପାଇଁ କ'ଣ ନ କରିଛି ? ତା'ର ଚରିତ୍ର ବିଚିତ୍ର । ସେ ତୋ ପାଇଁ ନିଜର ଦେଶ ଓ ପରିବାର ପରିତ୍ୟାଗ କରି ଦେଇଛି । ଭାଗ୍ୟବଶତଃ କୌଣସି ସ୍ୱର୍ଗବାସିନୀ ଦେବୀ ତୋର ପାଣିଗ୍ରହଣ କରିବା ପାଇଁ ପୃଥିବୀରେ ରୂପଶିଖା ରୂପରେ ଅବତୀର୍ଣ୍ଣ ହୋଇଛି ବୋଲି ମନେହୁଏ । ଏ ପ୍ରକାର ପତିବ୍ରତା ନାରୀ ବାସ୍ତବରେ ବିରଳ ।'

ରାଣୀଙ୍କର ଏ ପ୍ରକାର ପ୍ରଶଂସାବ୍ୟଞ୍ଜକ ଉକ୍ତିକୁ ରାଜା ସମର୍ଥନ କରନ୍ତେ, ରୂପଶିଖା ସଂଭ୍ରମ ଓ ଲଜ୍ଜାରେ ମସ୍ତକ ଅବନତ କଲା । ସେମାନେ ସେଠାରେ ଏ ପ୍ରକାର ବାର୍ତ୍ତାଳାପ କରୁଥିଲା ବେଳେ ମିଥ୍ୟାରେ ଅଭିଯୁକ୍ତ ରାଣୀ-ଅନ୍ତଃପୁରର ଦ୍ୱାରପାଳ

ସୁରକ୍ଷିତ ତୀର୍ଥ ପର୍ଯ୍ୟଟନ କରି ଆସି ସେଠାରେ ଉପସ୍ଥିତ ହେଲା । ସେ ନିର୍ଦ୍ଦୋଷ ଜାଣି ରାଜା ତାକୁ ପୁରସ୍କୃତ କଲେ ଏବଂ ଅନ୍ୟାନ୍ୟ ଅନେଶ୍ୱତ ରାଣୀଙ୍କୁ ଏକତ୍ର ଭୂଗୃହ ମଧ୍ୟରେ ଆବଦ୍ଧ କରି ରଖିବାପାଇଁ ଆଦେଶ ପ୍ରଦାନ କଲେ । ରାଜାଙ୍କର ଆଦେଶ ତତ୍‌କ୍ଷଣାତ୍ କାର୍ଯ୍ୟକାରୀ ହେଲା । କିନ୍ତୁ, ରାଣୀ ଗୁଣବରା ରାଜାଙ୍କୁ ପ୍ରଣିପାତ ପୂର୍ବକ ତାଙ୍କର ସପତ୍ନୀମାନଙ୍କୁ ଦୟାପରବଶ ହୋଇ ମୁକ୍ତି ଦାନ କରିବା ପାଇଁ ବିନୀତ ପ୍ରାର୍ଥନା କଲେ । ପ୍ରିୟତମା ପତ୍ନୀଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ରାଜା ସେମାନଙ୍କୁ ମୁକ୍ତି ଦେଲେ । ଉତ୍ତମ ଲୋକମାନେ ଶତ୍ରୁମାନଙ୍କୁ କ୍ଷମା ପ୍ରଦାନ କରି ହିଁ ଶତ୍ରୁତାର ପ୍ରତିଶୋଧ ନେଇ ଥାଆନ୍ତି ।

**ମହତାମନୁକମ୍ପା ହି ବିରୁଦ୍ଧେଷୁ ପ୍ରତିକ୍ରିୟା ।**

ଗୁଣବରାଙ୍କର ଏପରି ଆଚରଣରେ ରାଣୀମାନେ ଲଜ୍ଜିତ ଓ କ୍ଷୁବ୍‌ଧ ହୋଇ ନିଜ ନିଜର ବାସଭବନକୁ ପ୍ରସ୍ଥାନ କଲେ ।

ଏହା ପରେ ରାଜା ବୀରଭୁଜ କୁଚକ୍ରୀ ପୁତ୍ରମାନଙ୍କୁ କୌଶଳରେ ରାଜ୍ୟରୁ ବିତାଡ଼ନ କରିବା ନିମନ୍ତେ ଅଭିଳାଷ ପୋଷଣ କରି ନିର୍ବାସଭୁଜ ପ୍ରଭୃତିଙ୍କୁ କହିଲେ, ମୁଁ ଶୁଣିବାକୁ ପାଇଛି ଯେ ତୁମ୍ଭେମାନେ ଜଣେ ନିରୀହ ପଥିକକୁ ହତ୍ୟା କରିଅଛ । ତେଣୁ ତୀର୍ଥାଟନ କରି ପାପ ମୁକ୍ତ ନ ହେବା ପର୍ଯ୍ୟନ୍ତ ତୁମେମାନେ ଏ ରାଜ୍ୟର ସୀମା ସ୍ପର୍ଶ କରିପାରିବ ନାହିଁ । ରାଜକୁମାରମାନେ ନିଜର ନିର୍ଦ୍ଦୋଷତା ପ୍ରମାଣ କରିବା ନିମିତ୍ତ ବହୁ ଚେଷ୍ଟା କରି ବିଫଳ ହେଲେ । ରାଜା ଜିଦ୍‌ଖୋର ହେଲେ ତାଙ୍କର ମତପରିବର୍ତ୍ତନ କରାଇବା ସମ୍ଭବ ନୁହେଁ ।

**ପ୍ରଭୌ ହଠପ୍ରବୃତ୍ତେ ହି କସ୍ୟ ପ୍ରତ୍ୟାୟନା ଭବେତ୍ ।**

ଭ୍ରାତାମାନେ ନତମସ୍ତକରେ ରାଜ୍ୟରୁ ପ୍ରସ୍ଥାନ କରୁଥିବା ଦେଖି ଶୃଙ୍ଗଭୁଜଙ୍କର ଚକ୍ଷୁ ଦୟାର୍ଦ୍ର ହୋଇ ଉଠିଲା । ସେ ପିତାଙ୍କୁ ପ୍ରାର୍ଥନା କରି କହିଲେ, 'ମୋର ଗୋଟିଏ ମାତ୍ର ଅପରାଧ ଆପଣ କ୍ଷମା କରନ୍ତୁ । ଏମାନଙ୍କ ଉପରେ ଦୟାପରବଶ ହୋଇ ଆପଣଙ୍କ ଆଦେଶ ପ୍ରତ୍ୟାହାର କରନ୍ତୁ ।' ଏହା କହି ସେ ରାଜାଙ୍କର ଚରଣ ସ୍ପର୍ଶ କରନ୍ତେ ରାଜା ପୁତ୍ର ଶୃଙ୍ଗଭୁଜକୁ ଶୈଶବରୁ ହିଁ ଯଶସ୍ୱୀ ଓ ଦୟାଶୀଳ ଜାଣିପାରି ରାଜ୍ୟର ଉପଯୁକ୍ତ ଉତ୍ତରାଧିକାରୀ ବୋଲି ମନେ କଲେ ଏବଂ ନିଜର ଆଦେଶ ପ୍ରତ୍ୟାହାର କଲେ । ଭାଇମାନେ ଶୃଙ୍ଗଭୁଜଙ୍କୁ ସେମାନଙ୍କର ପ୍ରାଣଦାତା ମନେକରି ତାଙ୍କର ବିରୁଦ୍ଧାଚରଣ କରିଥିବାରୁ ଲଜ୍ଜିତ ହେଲେ । ରାଜ୍ୟବାସୀ ରାଜକୁମାରଙ୍କର ଏ ପ୍ରକାର ମହନୀୟ ଗୁଣରାଶିର ସନ୍ଧାନ ପାଇ ତାଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇ ପଡ଼ିଲେ । ପୁତ୍ରର

ଆଚରଣରେ ସନ୍ତୁଷ୍ଟ ହୋଇ ରାଜା ପରଦିନ ଅନ୍ୟାନ୍ୟ ଜ୍ୟେଷ୍ଠ ପୁତ୍ରମାନଙ୍କର ସମ୍ମୁଖରେ ହିଁ କନିଷ୍ଠ ରାଜକୁମାର ଶୃଙ୍ଗଭୁଜଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ ।

ଶୃଙ୍ଗଭୁଜ ରାଜ୍ୟଭାର ପ୍ରାପ୍ତ ହୋଇ ପିତାଙ୍କର ଆଶୀର୍ବାଦ ଲାଭ କଲେ ଏବଂ ସୈନ୍ୟବାହିନୀ ସହିତ ଦିଗ୍‌ବିଜୟ ଯାତ୍ରାରେ ନିର୍ଗତ ହେଲେ । ବାହୁବଳରେ ପୃଥିବୀର ସମସ୍ତ ବଳିଷ୍ଠ ରାଜାମାନଙ୍କୁ ପରାସ୍ତ କରି ସେ ନିଜର ଯଶୋରାଶିକୁ ଦିଗବିଦିଗରେ ପ୍ରଚାରିତ କଲେ ଏବଂ ଭାଇମାନଙ୍କ ସହିତ ରାଜ୍ୟ ପରିପାଳନା କରି ପ୍ରଜାବର୍ଗଙ୍କୁ ଅନୁରଞ୍ଜିତ କଲେ । ପିତାମାତାଙ୍କର ସେବା ଓ ବ୍ରାହ୍ମଣମାନଙ୍କୁ ଧନ ଏବଂ ପ୍ରଜାପୁଞ୍ଜଙ୍କୁ ନ୍ୟାୟ ବିତରଣ କରି ସେ ରୂପଶିଖାଙ୍କ ସହିତ ସ୍ୱର୍ଗୀୟ ଭୋଗରେ ଜୀବନଯାପନ କରିବାକୁ ଲାଗିଲେ ।

ପତିବ୍ରତା ନାରୀମାନେ ସମସ୍ତ ଅବସ୍ଥାରେ ନିଜ ପତିଙ୍କ ସେବା କରିଥାଆନ୍ତି ।

**ଇତ୍ୟନନ୍ୟାଃ ପତିଂ ସାଧ୍ୱଃ ସର୍ବାକାରମୁପାସତେ ।**

ଗୁଣବରା ଓ ରୂପଶିଖା ଏହାର ପ୍ରକୃଷ୍ଟ ଦୃଷ୍ଟାନ୍ତ ।

ନରବାହନଦତ୍ତ ହରିମୁଖଙ୍କଠାରୁ ଏ ପ୍ରକାର ବିଚିତ୍ର ଗଳ୍ପ ଶ୍ରବଣ କରି ତାଙ୍କୁ ଧନ୍ୟ ଧନ୍ୟ କଲେ । ଏହାପରେ ଶୀଘ୍ର ନିତ୍ୟ କୃତ୍ୟ ସମାପନ କରି ସେ ପତ୍ନୀ ରତ୍ନପ୍ରଭାଙ୍କ ସହିତ ବତ୍ସରାଜ ଉଦୟନଙ୍କ ନିକଟକୁ ଗମନ କଲେ ଏବଂ ସେଠାରେ ପାନାହାର ସମାପନ ପୂର୍ବକ ଅପରାହ୍ଣରେ ସଙ୍ଗୀତ ଚର୍ଚ୍ଚାକରି ରାତ୍ରିଯାପନ କଲେ ।



# ଷଷ୍ଠ ତରଙ୍ଗ

ପରଦିନ ପ୍ରାତଃକାଳରେ ରତ୍ନପ୍ରଭାଙ୍କ ସହିତ ନରବାହନଦତ୍ତ ବସି ବାର୍ତ୍ତାଳାପ କରୁଥାଆନ୍ତି । ଏ ସମୟରେ ହରିଶିଖ, ଗୋମୁଖ ପ୍ରଭୃତି ମନ୍ତ୍ରୀମାନେ ଆସି ସେଠାରେ ଉପସ୍ଥିତ ହେଲେ । କିନ୍ତୁ ମରୁଭୂତି ଯଥେଷ୍ଟ ମଦ୍ୟପାନ କରି ଏବଂ ପୁଷ୍ପମାଲ୍ୟ ବିଭୂଷିତ ହୋଇ କିଛି ବିଳମ୍ବରେ ଆସି ପହଞ୍ଚିଲେ । ତାଙ୍କର ଅନିୟନ୍ତ୍ରିତ ଗତି, ଅନାବଶ୍ୟକ ହାସ୍ୟ ଏବଂ ଅନୈତିକ କ୍ରିୟାକଳାପ ଦେଖି ଗୋମୁଖ ବ୍ୟଙ୍ଗ କରି କହିଲେ, 'ତମେ ଯୌଗନ୍ଧରାୟଣଙ୍କ ପୁତ୍ର ହୋଇ ମଧ୍ୟ ନୀତିଭ୍ରଷ୍ଟ ହୋଇଛ । ପ୍ରଭାତରେ ଆସବ ସେବନ କରି ରାଜାଙ୍କ ନିକଟକୁ ଆସିବା କେତେଦୂର ଉଚିତ ?' ଏହା ଶୁଣି ଆସବମତ୍ତ ମରୁଭୂତି କ୍ରୋଧପରବଶ ହୋଇ କହିଲେ, 'ଏକଥା ମୋର ପ୍ରଭୁ (ରାଜା) କିମ୍ବା ପିତା ପଚାରିପାରନ୍ତି । କିନ୍ତୁ ରେ ଇତ୍ୟକ (ଦ୍ୱାରପାଳ) ପୁତ୍ର, ତୁ ମୋତେ ଶିକ୍ଷା ଦେବା ପାଇଁ କିଏ ?' ଏହା ଶୁଣି ଗୋମୁଖ ପ୍ରଶାନ୍ତ ଭାବେ ଉତ୍ତର ଦେଲେ, ''ମହାଜନମାନେ ଅବିନୀତ ଭୃତ୍ୟକୁ କଟୁକଥା କହି ଭର୍ତ୍ସନା କରନ୍ତି ନାହିଁ । ପ୍ରକୃତରେ ମୁଁ ଇତ୍ୟକଙ୍କ ପୁତ୍ର ଓ ତୁମେ ମନ୍ତ୍ରୀ ବୃଷଭ । ତୁମର ଏ ପ୍ରକାର ଅବସ୍ଥା ହିଁ ଏହି ଉପାଧିର ସାର୍ଥକତା ପ୍ରମାଣିତ କରୁଅଛି । କେବଳ ଦୁଇଟି ଶିଙ୍ଗ ଉଠିଥିଲେ ନାମର ସାର୍ଥକତା ପ୍ରତିପାଦିତ ହୁଅନ୍ତା ।''

ଏଥିରେ ମରୁଭୂତି ଆଉ ଟିକିଏ ଉତ୍ତେଜିତ ହୋଇ କହିଲେ, 'ତୁମର ଗୋମୁଖ ନାମହିଁ ତୁମ ଉକ୍ତିର ସାର୍ଥକତା ସମ୍ପର୍କରେ ସୂଚନା ଦେଉଅଛି ଏବଂ ତୁମର ଅବିନୀତ ଭାବ ତୁମ ବର୍ଣ୍ଣସଙ୍କରତାର ପରିଚୟ ପ୍ରଦାନ କରୁଛି ।' ଏହା ଶୁଣି ଅନ୍ୟମାନେ ହାସ୍ୟପ୍ରକାଶ କରନ୍ତେ ଗୋମୁଖ ପୁଣି ଧୀର ଭାବରେ କହିଲେ, 'ଏହି ମରୁଭୂତି ଏକ କଠିନ ହୀରାଜାତୀୟ ରତ୍ନ । ତା' ମଧ୍ୟରେ ସୂତ୍ର ପ୍ରବେଶ କରାଇବା ଯେପରି ସମ୍ଭବପର ନୁହେ, ମରୁଭୂତିଙ୍କୁ ଉପଦେଶ ପ୍ରଦାନ କରି ତାଙ୍କ ଚରିତ୍ରରେ ପରିବର୍ତ୍ତନ ଆଣିବା ମଧ୍ୟ ସେହିପରି ଅସମ୍ଭବ । ଅନ୍ୟ କେହି ହୋଇଥିଲେ ଅତି ସହଜରେ ସୁଶିକ୍ଷା ଦିଆଯାଇ ପାରିଥାନ୍ତା । ଏ ପ୍ରସଙ୍ଗରେ ସିକତାସେତୁର ଉଦାହରଣ ଦିଆଯାଇପାରେ—

## ସିକତାସେତୁ କଥା

ପ୍ରତିଷ୍ଠାନ ନାମକ ନଗରରେ ତପୋଦତ୍ତ ନାମରେ ଜଣେ ବ୍ରାହ୍ମଣ ଥିଲା । ପିତା ବହୁ ଚେଷ୍ଟା, ବହୁ ଦଣ୍ଡବିଧାନ କରିବା ସତ୍ତ୍ୱେ ତାକୁ ଶିକ୍ଷିତ କରିପାରିଲେ ନାହିଁ । ପିତାଙ୍କ ମୃତ୍ୟୁପରେ ଏହି ମୂର୍ଖ ବ୍ରାହ୍ମଣ ଅନ୍ୟମାନଙ୍କ ଦ୍ୱାରା ଅତ୍ୟନ୍ତ ଦୁଃଖ ଲାଭ କରି ବିଦ୍ୟା ସିଦ୍ଧି ନିମିତ୍ତ ଗଙ୍ଗାତଟରେ ବସି ତପସ୍ୟା କରିବାକୁ ଲାଗିଲା । ତାର ଉଗ୍ର ତପସ୍ୟା ଦେଖି ଦେବରାଜ ଇନ୍ଦ୍ର ମଧ୍ୟ ବିସ୍ମିତ ହେଲେ । ଦିନେ ଇନ୍ଦ୍ର ବ୍ରାହ୍ମଣ ବେଶରେ ତପୋଦତ୍ତ ନିକଟରେ ବସି ଗଙ୍ଗାଗର୍ଭକୁ କିଛି କିଛି ବାଲୁକା ନିକ୍ଷେପ କରିବାକୁ ଲାଗିଲେ ।

କିଛି ସମୟ ଧରି ଇନ୍ଦ୍ରଙ୍କର ଏ ପ୍ରକାର ଆଚରଣ ଦେଖି ତପୋଦତ୍ତ ନିଜର ମୌନବ୍ରତ ଭଙ୍ଗକରି ଛଦ୍ମବେଶୀ ଇନ୍ଦ୍ରଙ୍କୁ ଏହାର ମର୍ମ ଜିଜ୍ଞାସା କଲା । ଇନ୍ଦ୍ର ଉତ୍ତର ଦେଲେ ଯେ ଜୀବଜନ୍ତୁମାନଙ୍କର ସୁବିଧା ନିମିତ୍ତ ସେ ଗଙ୍ଗାନଦୀରେ ଏକ ସେତୁ ନିର୍ମାଣ କରୁଛନ୍ତି । ଏହା ଶୁଣି ତପୋଦତ୍ତ ହସି ହସି କହିଲା, 'ଆରେ ମୂର୍ଖ, ଲହରୀଦ୍ୱାରା ତୁ ନିକ୍ଷେପ କରୁଥିବା ସବୁ ବାଲୁକାରାଶି ସ୍ରୋତମୁଖରେ ଭାସିଯାଉଅଛି । ଏଥିରେ ତୋର ଆକାଂକ୍ଷିତ ସେତୁ କେମିତି ନିର୍ମିତ ହେବ ?' ବ୍ରାହ୍ମଣରୂପୀ ଇନ୍ଦ୍ର ଏହାଶୁଣି କହିଲେ, 'ଯଦି ଏହା ସମ୍ଭବ ନୁହେ ବୋଲି କହୁଅଛ ତାହାହେଲେ ତୁମ ଭଳି ଜଣେ ନିପଟ ମୂର୍ଖ କିପରି ବିଦ୍ୟାଲାଭ କରିପାରିବ । ଅକ୍ଷର ନଜାଣି ଲେଖିବା ଓ ବିନା ଅଧ୍ୟୟନରେ ବିଦ୍ୟାଲାଭ କରିବା ଯଦି ସମ୍ଭବପର ହୋଇଥାଆନ୍ତା, ତାହାହେଲେ ସମସ୍ତେ ପାଠପଢ଼ା ଛାଡ଼ି ତପସ୍ୟା ଆଚରଣ କରିଥାଆନ୍ତେ ।' ଇନ୍ଦ୍ରଙ୍କର ଏ ପ୍ରକାର ବାକ୍ୟ ଶୁଣି ବ୍ରାହ୍ମଣ ତପୋଦତ୍ତ ତାର ସତ୍ୟତା ଉପଲବ୍ଧି କରିପାରିଲା ଏବଂ ତପସ୍ୟା ପରିତ୍ୟାଗପୂର୍ବକ ସ୍ୱ-ଗୃହକୁ ପ୍ରତ୍ୟାବର୍ତ୍ତନ କରି ନିବିଷ୍ଟ ଚିତ୍ତରେ ବିଦ୍ୟା ଅଧ୍ୟୟନ କରିବାକୁ ଲାଗିଲା ।

ଏହିପରି ବୁଦ୍ଧିମାନ୍ ବ୍ୟକ୍ତିମାନଙ୍କୁ ଅନାୟାସରେ ଶିକ୍ଷା ପ୍ରଦାନ କରାଯାଇପାରେ । କିନ୍ତୁ ମରୁଭୂତି ତ ଦୁଷ୍ଟ ବୁଦ୍ଧି; ତାଙ୍କୁ ଶିକ୍ଷା ଦେବା ଆଦୌ ସମ୍ଭବପର ନୁହେ । ଶିକ୍ଷା ଦେବାକୁ ବସିଲେ ସେ ବରଂ କ୍ରୋଧାନ୍ୱିତ ହେବେ ।

ଗୋମୁଖ ଏପରି କହୁଥିବା ବେଳେ ହରିଶିଖ ରାଜାଙ୍କୁ ଲକ୍ଷ୍ୟ କରି କହିଲେ, 'ମହାରାଜ, ଗୋମୁଖ ଯାହା କହୁଛନ୍ତି ତାହା ପ୍ରକୃତରେ ସତ୍ୟ । ବୁଦ୍ଧିମାନ୍ ବ୍ୟକ୍ତିମାନଙ୍କୁ ଅନାୟାସରେ ଶିକ୍ଷାଦାନ କରାଯାଇପାରେ ।

**ଭବନ୍ତି ସୁଖସମ୍ବୋଧାଃ ସତ୍ୟଂ ଦେବ ସୁମେଧସଃ ।**

ଏହି ପ୍ରସଙ୍ଗରେ ମୁଁ ଆପଣଙ୍କୁ ଅନ୍ୟ ଏକ ଗଳ୍ପ କହିବି—

# ବ୍ରାହ୍ମଣ ବିରୂପ ଶର୍ମା କଥା

ପୂର୍ବକାଳରେ ବିରୂପ ଶର୍ମା ନାମରେ ଜଣେ ବ୍ରାହ୍ମଣ ବାରାଣସୀ ନଗରରେ ବାସ କରୁଥିଲେ । ସେ ଦରିଦ୍ର ଏବଂ ତାଙ୍କର ରୂପ ଅତି କୁତ୍ସିତ । ନିଜ ରୂପରେ ନିଜେ ବିରକ୍ତ ହୋଇ ସେ କୌଣସି ଅରଣ୍ୟ ମଧ୍ୟରେ ରୂପ ଓ ଧନ ପ୍ରାପ୍ତି ପାଇଁ କଠୋର ତପସ୍ୟା ଆଚରଣ କଲେ । ତାଙ୍କର ତପସ୍ୟାରେ ଦେବରାଜ ଇନ୍ଦ୍ର ଭୟଭୀତ ହୋଇ ଏକ ରୁଗ୍ଣ ଶୃଗାଳ ରୂପରେ ଆସି ତାଙ୍କ ଆଶ୍ରମ ନିକଟରେ ପହଞ୍ଚିଲେ । ତାର ଶରୀରରୁ ରକ୍ତ ମାଂସ ବିଗଳିତ ହେଉଥିଲା ଏବଂ ବ୍ରଣ ମକ୍ଷିକାମାନେ ସେଥିରୁ ପୂଯ ଓ ରକ୍ତ ଶୋଷଣ କରୁଥିଲେ । ଏ ପ୍ରକାର ଶୃଗାଳକୁ ଦେଖି ବିରୂପ ଶର୍ମା ମନେ ମନେ ଚିନ୍ତା କଲେ, 'ସଂସାର ମଧ୍ୟରେ ପୂର୍ବଜନ୍ମ କର୍ମ ଅନୁସାରେ ଏ ପ୍ରକାର ପ୍ରାଣୀ ମଧ୍ୟ ଦେଖାଯାନ୍ତି । ଏ ଦୃଷ୍ଟିରୁ ବିଧାତା ମୋତେ ଅତି ଅଳ୍ପ ଦୁଃଖ ହିଁ ଦେଇ ଅଛନ୍ତି । ମୋ ଭଳି କୁରୂପ ଓ ଘୃଣିତ ବ୍ୟକ୍ତି ଅପେକ୍ଷା ଏହି ଶୃଗାଳର ଅବସ୍ଥା ଆହୁରି ଶୋଚନୀୟ । କପାଳ ଲିଖନ କେ କରିବ ଆନ । ଭାଗ୍ୟରେ ଯାହା ଥିବ, ତାହା ଅବଶ୍ୟ ଭୋଗ କରିବାକୁ ପଡ଼ିବ ।'

**କୋ ଦୈବଲିଖିତଂ ଭୋଗଂ ଲଂଘୟେଦିତି ।**

ଏ ପ୍ରକାର ଚିନ୍ତା କରି ବିରୂପ ଶର୍ମା ତପସ୍ୟାରୁ ନିବୃତ୍ତ ହୋଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ତେଣୁ ମହାରାଜ ! ଉତ୍ତମ ବୁଦ୍ଧିମାନ୍ ବ୍ୟକ୍ତିମାନେ ସାଧାରଣ ବିଷୟରୁ ହିଁ ଉତ୍ତମ ଶିକ୍ଷାଲାଭ କରିଥାଆନ୍ତି । କିନ୍ତୁ ଅବିବେକୀ ବ୍ୟକ୍ତିମାନେ ଅତି କଷ୍ଟରେ ସୁଦ୍ଧା ଜ୍ଞାନଲାଭ କରିପାରନ୍ତି ନାହିଁ ।'

**ଇତ୍ଥଂ ସୁବୁଦ୍ଧିରଳ୍ପେନ ଦେବ ଯତ୍ନେନ ବୋଧତେ**
**ନ କୃଚ୍ଛ୍ରେଣାପି ମହତା ନିର୍ବିଚାରମତିଃ ପୁନଃ ।**

ହରିଶିଖ ଗୋମୁଖଙ୍କୁ ସମର୍ଥନ କରି ଏ ପ୍ରକାର ଏକ ଗଳ୍ପ ବର୍ଣ୍ଣନା କରନ୍ତେ ଆସବୋନ୍ମତ୍ତ ମରୁଭୂତି ଅତ୍ୟନ୍ତ କୋପାନ୍ୱିତ ହୋଇ କହିଲେ, 'ଗୋମୁଖ, ତୁମପରି ବ୍ୟକ୍ତିମାନଙ୍କୁ ବାକ୍ୟବୀର ବୋଲି ହିଁ କୁହାଯାଇପାରେ । ତୁମର ବାହୁ ଯୁଗଳରେ ତ ଶକ୍ତି ନାହିଁ, ତେଣୁ କେବଳ କଥାରେ ଅନ୍ୟମାନଙ୍କୁ ପରାସ୍ତ କରିବା ପାଇଁ ଚେଷ୍ଟା କରୁଅଛ । ତୁମପରି ବହୁଭାଷୀ ନପୁଂସକ ସହିତ ବାକ୍ୟବିନିମୟ କରିବା ମୋ ପରି ବଳଶାଳୀ ବୀରମାନଙ୍କ ପକ୍ଷରେ ଉଚିତ ନୁହେ ।' ଏହା କହି ଯୁଦ୍ଧପାଇଁ ପ୍ରସ୍ତୁତ ହେଉଥିବା ମରୁଭୂତିଙ୍କୁ ନରବାହନଦତ୍ତ ସହାସ୍ୟ ବଦନରେ ସାନ୍ତ୍ୱନା ଦେଇ ସେଥିରୁ ନିବୃତ୍ତ କଲେ ।

ଏହାପରେ ରାଜା ନିଜର ଅନ୍ତରଙ୍ଗ ମିତ୍ରମାନଙ୍କଠାରୁ ବିଦାୟ ନେଇ ଦୈନନ୍ଦିନ କାର୍ଯ୍ୟରେ ମନୋଯୋଗ କଲେ ।

ଦ୍ୱିତୀୟ ଦିନ ପୁଣି ଯେତେବେଳେ ମିତ୍ରମାନେ ଆସି ଉପସ୍ଥିତ ହେଲେ ସେତେବେଳେ ପୂର୍ବ ଦିନର କୁକର୍ମ ପାଇଁ ମରୁଭୂତି ଅନୁତପ୍ତ ଥିବା ପରି ଜଣାଯାଉ ଥାଆନ୍ତି । ତାଙ୍କର ଅବନତ ମୁଖମଣ୍ଡଳ ଦର୍ଶନ କରି ରତ୍ନପ୍ରଭା ଯୁବରାଜଙ୍କୁ କହିଲେ, ''ଆର୍ଯ୍ୟପୁତ୍ର ଆପଣଙ୍କର ଜୀବନ ଧନ୍ୟ । ଶୈଶବରୁ ହିଁ ଏହି ମନ୍ତ୍ରୀମାନେ ଆପଣଙ୍କର ସ୍ନେହପାଶରେ ଆବଦ୍ଧ । ପୁଣି ଏ ସମସ୍ତଙ୍କର ମନ ମଧ୍ୟ ଅତି ନିର୍ମଳ । ଆପଣଙ୍କ ତୁଲ୍ୟ ସ୍ନେହପର ପ୍ରଭୁ ଲାଭ କରି ଏମାନେ ମଧ୍ୟ ଧନ୍ୟ । ଆପଣମାନେ ସମସ୍ତେ ପୂର୍ବ ଜନ୍ମରେ ପରସ୍ପରର ମିତ୍ର ଥିବା ନିଃସନ୍ଦେହ ।''

ରାଣୀ ରତ୍ନପ୍ରଭାଙ୍କ ମୁଖରୁ ଏହା ଶ୍ରବଣ କରି ବସନ୍ତକଙ୍କ ପୁତ୍ର ତପନ୍ତକ (ବିଦୂଷକ) କହିଲେ, 'ଆପଣ ଯାହା କହିଛନ୍ତି ତାହା ଅକ୍ଷରେ ଅକ୍ଷରେ ସତ୍ୟ । ପୂର୍ବ ଜନ୍ମର କୃତକର୍ମରୁ ଆମ୍ଭେମାନେ ଏହି ଜନ୍ମରେ ନରବାହନଦତ୍ତଙ୍କୁ ପ୍ରଭୁ ରୂପରେ ଲାଭ କରିଅଛୁ । ଏ ପ୍ରସଙ୍ଗରେ ଏକ ବିଚିତ୍ର ଗଳ୍ପ ଶ୍ରବଣ କରନ୍ତୁ—

## ରାଜା ଅଜର ଓ ବୈଦ୍ୟ ତରୁଣଚନ୍ଦ୍ର କଥା

ପୂର୍ବେ ଶ୍ରୀକଣ୍ଠନିଳୟ ରାଜ୍ୟରେ ବିଳାସପୁର ନାମକ ଏକ ନଗର ଥିଲା । ସାର୍ଥକନାମା ବିଜୟଶୀଳ ଏ ରାଜ୍ୟର ରାଜା ଥିଲେ । କମଳପ୍ରଭା ତାଙ୍କର ପ୍ରାଣପ୍ରିୟା ପତ୍ନୀ । ବହୁଦିନ ପର୍ଯ୍ୟନ୍ତ ସେ ରାଣୀଙ୍କ ସହିତ ଅତି ଆନନ୍ଦରେ ସାଂସାରିକ ସୁଖଭୋଗ କଲେ ।

ସମୟ କ୍ରମେ ସମସ୍ତ ଶାରୀରିକ ସୌନ୍ଦର୍ଯ୍ୟର ବିନାଶକାରୀ ବୃଦ୍ଧାବସ୍ଥା ଆସି ଶରୀରରେ ପ୍ରବେଶ କରିବା ଦେଖି ତାଙ୍କ ମନରେ ଗଭୀର ଦୁଃଖଜାତ ହେଲା । ଶିଶିର ଋତୁର ମ୍ଳାନୀଭୂତ ପଦ୍ମପୁଷ୍ପ ତୁଲ୍ୟ ନିଜର ପାଣ୍ଡୁର ଓ ପଳିତ ମୁଖମଣ୍ଡଳ ଦର୍ଶନ କରି ରାଜା ଚିନ୍ତା କଲେ, 'ଏ ପ୍ରକାର ମୁଖ ନେଇ ରାଣୀଙ୍କୁ ଦେଖାକରିବି କିପରି ? ଏହା ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର ।' ଏହିପରି ଚିନ୍ତାକରି ସେ ତରୁଣଚନ୍ଦ୍ର ନାମକ ବୈଦ୍ୟଙ୍କୁ ଡାକି ଆଦରର ସହିତ କହିଲେ, 'ଭଦ୍ର, ତୁମେ ମୋର ହିତାକାଂକ୍ଷୀ । ଆୟୁର୍ବେଦରେ ତୁମର ଜ୍ଞାନ ଅତୁଳନୀୟ । ତେଣୁ ବର୍ତ୍ତମାନ ଏପରି କିଛି ଉପାୟ କର ଯାହା ଫଳରେ ମୋର ବାର୍ଦ୍ଧକ୍ୟ ଦୂର ହେବ ।' ଏହା ଶୁଣି ସ୍ୱଳ୍ପଜ୍ଞାନୀ ତଥା କୁଟିଳ ତରୁଣଚନ୍ଦ୍ର ରାଜାଙ୍କର

ମୂର୍ଖତା ଦେଖି ତାଙ୍କୁ କୌଶଳରେ ରାଜ୍ୟରୁ ବିତାଡ଼ିତ କରିବା ନିମନ୍ତେ ମନସ୍ଥ କଲା ଏବଂ କିଛି ସମୟ ଚିନ୍ତା କରି କହିଲା, 'ମହାରାଜ, ଯଦି ଆପଣ ଭୂଗୃହରେ ବାସ କରି ଆଠ ମାସ ପର୍ଯ୍ୟନ୍ତ ମୋର ଔଷଧ ସେବନ କରିବେ, ତାହାହେଲେ ଆପଣଙ୍କର ବାର୍ଦ୍ଧକ୍ୟ ଦୂରୀଭୂତ ହେବ ।'

ଏହା ଶୁଣି ରାଜା ଭୂଗୃହ ନିର୍ମାଣ ପାଇଁ ଆଦେଶ ଦେଲେ । ବିଷୟାସକ୍ତ ମୂର୍ଖମାନଙ୍କର ସାଧାରଣତଃ ବିବେଚନା ଶକ୍ତି ଲୋପ ପାଇ ଯାଇଥାଏ ।

**କ୍ଷମନ୍ତେ ନ ବିଚାରଂ ହି ମୂର୍ଖା ବିଷୟଲୋଲୁପାଃ ।**

'ମହାରାଜ ପୂର୍ବ କାଳରେ ଲୋକମାନଙ୍କର ତପସ୍ୟା, ତିତିକ୍ଷା ପ୍ରଭୃତି ଗୁଣରୁ ଏବଂ ଯୁଗର ପ୍ରଭାବରୁ ଅତି ଅଦ୍ଭୁତ ଔଷଧ ଓ ରସାୟନ ସିଦ୍ଧ ହୋଇପାରୁଥିଲା । କିନ୍ତୁ ଆଜିକାଲି ତାହା ନାମକୁ ମାତ୍ର ରହିଅଛି । ଅନେକ ସମୟରେ ବର୍ତ୍ତମାନ ଯୁଗ ପ୍ରଭାବରୁ ସେହି ରସାୟନ ବିପରୀତ ଫଳ ମଧ୍ୟ ଦେଉଥିବା ଦେଖାଯାଏ । ତେଣୁ ଆପଣ ସେହି ମୂର୍ଖ ବୈଦ୍ୟର କୋମଳ ବାକ୍ୟରେ ବିଶ୍ୱାସ କରିବା ଉଚିତ ହେବନାହିଁ । ଚାଲି ଯାଇଥିବା ବୟସ ପୁଣି ଫେରି ଆସିବା କେବେ ସମ୍ଭବପର ନୁହେଁ ।' ମନ୍ତ୍ରୀମାନେ ଏହିପରି ଉପଦେଶବାଣୀ ଶୁଣାଇଲେ ସୁଦ୍ଧା ରାଜାଙ୍କର ଚୈତନ୍ୟ ଉଦୟ ହେଲାନାହିଁ । ନୂତନ ଭୋଗବିଳାସରେ ନିମଜ୍ଜିତ ରହିବା ପାଇଁ ଇଚ୍ଛା କରୁଥିବା ବ୍ୟକ୍ତି ଅନ୍ୟମାନଙ୍କର ମଧୁର ଉପଦେଶ ବାକ୍ୟରେ ବିଶ୍ୱାସସ୍ଥାପନ କରିପାରେ ନାହିଁ ।

ରାଜା ବୈଦ୍ୟଙ୍କ କଥାରେ ବିଶ୍ୱାସ କରି ସମସ୍ତ ରାଜସୁଖ ପରିତ୍ୟାଗପୂର୍ବକ ଭୂଗୃହରେ ଯାଇ ବାସ କରିବାକୁ ଲାଗିଲେ । ତରୁଣଚନ୍ଦ୍ର ନିଜର ଏକ ବିଶ୍ୱସ୍ତ ଭୃତ୍ୟ ସହିତ ରାଜାଙ୍କର ପରିଚର୍ଯ୍ୟା କରୁଥାନ୍ତି । ସେହି ଅନ୍ଧକାର ଭୂଗୃହ ମଧ୍ୟରେ ରାଜାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ବୁଦ୍ଧିହୀନ ରାଜାଙ୍କର ହୃଦୟରେ ଥିବା ସମସ୍ତ ଅଜ୍ଞାନ ଅନ୍ଧକାର ସ୍ୱସ୍ଥାନ ତ୍ୟାଗ କରି ବାହାରକୁ ଚାଲି ଆସିଛନ୍ତି ।

ଏପରି ଛ' ମାସ ବିତିଗଲା । ରାଜାଙ୍କର ବାର୍ଦ୍ଧକ୍ୟ କ୍ରମେ କ୍ରମେ ବୃଦ୍ଧିଲାଭ କରୁଥିବା ଦେଖି ଶଠ ତରୁଣଚନ୍ଦ୍ର ରାଜାଙ୍କର ରୂପ ସହିତ ସାମଞ୍ଜସ୍ୟ ଥିବା ଅନ୍ୟ ଏକ ଯୁବକର ସନ୍ଧାନ ନେଲା । ତାକୁ ରାଜ୍ୟ ଲୋଭ ପ୍ରଦର୍ଶନପୂର୍ବକ ସେହି ଭୂଗୃହ ମଧ୍ୟରେ ଦୁଇମାସ ରହିବା ପାଇଁ ସମ୍ମତ କରାଇଲା । ପୁଣି ସେହି ଭୂଗୃହ ମଧ୍ୟକୁ ଏକ ସୁଡ଼ଙ୍ଗ ନିର୍ମାଣ କରାଇ ସେହି ଗୁପ୍ତ ପଥରେ ରାଜାଙ୍କ ନିକଟରେ ଯାଇ ଉପସ୍ଥିତ ହେଲା । ତାର ଏ ପ୍ରକାର ଆଚରଣରେ ଭୟଭୀତ ରାଜା ନିଜର ଅଜ୍ଞାନତା ଉପଲବ୍ଧି କଲେ । କିନ୍ତୁ

ସେତେବେଳେ ତାଙ୍କର ଆଉ ଅନ୍ୟ ଉପାୟ ନଥିଲା । ଦିନେ ବୈଦ୍ୟ ତରୁଣଚନ୍ଦ୍ର ରାଜାଙ୍କୁ ହତ୍ୟା କରି ତାଙ୍କ ଶବକୁ ନେଇ ଏକ ଗଭୀର କୂପ ମଧ୍ୟରେ ନିକ୍ଷେପ କଲା ଏବଂ ସେହି ସୁଡ଼ଙ୍ଗ ମାର୍ଗରେ ପୂର୍ବୋକ୍ତ ଯୁବକକୁ ଭୂଗୃହ ମଧ୍ୟରେ ପ୍ରବେଶ କରାଇଲା । ସୁବିଧା ପାଇଲେ କ୍ରୂର ଲୋକମାନେ ଅତି ସାହସର ସହିତ ମୂର୍ଖମାନଙ୍କର ଅନିଷ୍ଟ ସାଧନ କରିଥାନ୍ତି ।

ଏ ପ୍ରକାର କୌଶଳ କରି ପରଦିନ ପ୍ରଭାତରୁ ତରୁଣଚନ୍ଦ୍ର ରାଜ କର୍ମଚାରୀମାନଙ୍କୁ କହିଲା ଯେ ସେ ରାଜାଙ୍କର ବୃଦ୍ଧାବସ୍ଥା ଛ' ମାସ ମଧ୍ୟରେ ଦୂର କରିପାରିଛି । ରାଜା ବର୍ତ୍ତମାନ ଯୁବକ । ଆଉ ଦୁଇମାସ ମଧ୍ୟରେ ରାଜାଙ୍କର ରୂପ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ହୋଇଯିବ । ତେଣୁ ତୁମେମାନେ ବର୍ତ୍ତମାନ ରାଜାଙ୍କୁ ଦୂରରୁ ଦର୍ଶନ କରିପାର । ଏହିପରି କହି ସେ ରାଜ କର୍ମଚାରୀମାନଙ୍କୁ ଜଣ ଜଣ କରି ଭୂଗୃହର ଦ୍ୱାରଦେଶ ପର୍ଯ୍ୟନ୍ତ ନେଇ ଏବଂ ସେମାନଙ୍କର ନାମ ଓ ପଦବୀ ଉଚ୍ଚାରଣପୂର୍ବକ ରାଜାଙ୍କୁ ଦେଖାଇବାକୁ ଲାଗିଲା । ଏହିପରି ଦୁଇମାସ ପର୍ଯ୍ୟନ୍ତ ସେ ପ୍ରତିଦିନ ରାଜ କର୍ମଚାରୀ, ନଗରବାସୀ ଏବଂ ରାଣୀମାନଙ୍କୁ ନେଇ ରାଜାଙ୍କର ନୂତନ ରୂପ ଦର୍ଶନ କରାଉଥାଏ ।

ଆଠ ମାସ ଶେଷ ହେଲା ବେଳକୁ ଉକ୍ତ ପୁରୁଷ ରାଜକୀୟ ଖାଦ୍ୟପେୟ ଗ୍ରହଣ କରି ହୃଷ୍ଟପୁଷ୍ଟ ହୋଇଯାଇଥାଆନ୍ତି । ତାଙ୍କୁ ଭୂଗୃହ ମଧ୍ୟରୁ ମୁକ୍ତ କରି ତରୁଣଚନ୍ଦ୍ର ପ୍ରଚାର କଲା ଯେ ତା'ରି ଔଷଧ ପ୍ରଭାବରେ ବୃଦ୍ଧ ରାଜା ବିନୟଶୀଳ ଯୌବନ ଲାଭ କରିଅଛନ୍ତି । ଏଥିରେ ବିଶ୍ୱାସ କରି ରାଜ୍ୟବାସୀ ଏହି ଯୁବକଙ୍କୁ ରାଜା ରୂପେ ଗ୍ରହଣ କରିନେଲେ । ନିଜର ଚକ୍ରାନ୍ତ ସଫଳ ହେବା ଦେଖି ଧୂର୍ତ୍ତ ତରୁଣଚନ୍ଦ୍ରେ ମନ୍ତ୍ରୀମାନଙ୍କ ସହିତ ରାଜାଙ୍କର ଅଭିଷେକ ଉତ୍ସବ ପାଳନ କଲା । ବାର୍ଦ୍ଧକ୍ୟରୁ ମୁକ୍ତିଲାଭପୂର୍ବକ ଯୌବନ ଲାଭ କରିଥିବା ଯୋଗୁଁ ରାଜାଙ୍କର ନୂତନ ନାମକରଣ କରାଗଲା—ଅଜର । ଏହି ନାମରେ ଅଭିହିତ ହୋଇ ରାଜା ରାଣୀମାନଙ୍କ ସହିତ ବିବିଧ କ୍ରୀଡ଼ାରେ ଉନ୍ମତ୍ତ ରହି ରାଜକୀୟ ଭୋଗ ବିଳାସରେ ଦିନ ଯାପନ କରିବାକୁ ଲାଗିଲେ ।

ରାଜ କର୍ମଚାରୀ ଏବଂ ରାଜ୍ୟବାସୀ ତରୁଣଚନ୍ଦ୍ରର ଏ ପ୍ରକାର ଆୟୁର୍ବେଦ ଜ୍ଞାନରେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ଅଜରଙ୍କୁ ପୁରାତନ ରାଜା ମନେକରି ବିଧିପୂର୍ବକ ତାଙ୍କର ସେବା ଶୁଶ୍ରୂଷା କଲେ । ଯୁବକ ମଧ୍ୟ ନିଜର ଆଚାର ବ୍ୟବହାରଦ୍ୱାରା ରାଜ କର୍ମଚାରୀ, ରାଜ୍ୟବାସୀ ଏବଂ ପଟ୍ଟମହିଷୀ ବିମଳପ୍ରଭାଙ୍କୁ ସନ୍ତୁଷ୍ଟ କରି ମନ୍ତ୍ରୀମାନଙ୍କ ସହିତ ଆନନ୍ଦରେ ରାଜକାର୍ଯ୍ୟ ପରିଚାଳନା କରିବାକୁ ଲାଗିଲେ । ତାଙ୍କର ବାଲ୍ୟବନ୍ଧୁ ଭେଷଜଚନ୍ଦ୍ର ଏବଂ

ପଦ୍ମଦର୍ଶନଙ୍କୁ ହସ୍ତୀ, ଅଶ୍ୱ, ଗ୍ରାମ ଇତ୍ୟାଦି ଦାନ କରି ସେମାନଙ୍କ ସହିତ ଥିବା ପୂର୍ବ ବନ୍ଧୁତାକୁ ଦୃଢ଼ତର କଲେ । ବୈଦ୍ୟ ତରୁଣଚନ୍ଦ୍ରକୁ ସେ କେବଳ ବ୍ୟବହାରିକ ଦୃଷ୍ଟିରୁ ସମ୍ମାନ ଦେଉଥିଲେ; କିନ୍ତୁ ତାର କୁଟିଳତା ସମ୍ପର୍କରେ ପୂର୍ବରୁ ସଚେତନ ଥିବା ଯୋଗୁଁ ସେ ତାକୁ ବିଶ୍ୱାସ କରିପାରୁ ନଥିଲେ ।

ଦିନେ ବୈଦ୍ୟ ତରୁଣଚନ୍ଦ୍ର ରାଜାଙ୍କର ଏ ପ୍ରକାର ବ୍ୟବହାରରେ କ୍ଷୁଣ୍ଣ ହୋଇ କହିଲା, 'ତୁମେ ମୋର ବିନା ଅନୁମତିରେ ନିଜର ଇଚ୍ଛାନୁଯାୟୀ ରାଜକାର୍ଯ୍ୟ ପରିଚାଳନା କରିବା ଉଚିତ ହେଉନାହିଁ । ତୁମର ସ୍ମରଣ ରଖିବା କଥା ଯେ ମୋଦ୍ୱାରା ହିଁ ତୁମେ ରାଜପଦ ଲାଭ କରିଅଛ ।' ବୈଦ୍ୟଠାରୁ ଏହା ଶୁଣି ରାଜା ଅଜର ଉତ୍ତର ଦେଲେ, 'ତୁମଭଳି ମୂର୍ଖ ବୋଧହୁଏ ସଂସାରରେ ବିରଳ । କେହି କାହାକୁ ଦିଏ ନାହିଁ କି କେହି କାହାର ମଙ୍ଗଳ କରେ ନାହିଁ । ପୂର୍ବଜନ୍ମର କର୍ମ ଅନୁସାରେ ହିଁ ଏ ଜନ୍ମରେ ମନୁଷ୍ୟ ଉଚ୍ଚ କିମ୍ବା ନୀଚ ହୋଇଥାଏ । ତେଣୁ ତୁମେ ଗର୍ବ କରିବା ଅନାବଶ୍ୟକ । ମୋର ପୂର୍ବ ଜନ୍ମର ତପସ୍ୟା ପ୍ରଭାବରୁ ମୁଁ ଏ ରାଜ୍ୟ ଲାଭ କରିଅଛି । କିଛିଦିନ ଅପେକ୍ଷା କର, ମୁଁ ତୁମକୁ ସବୁ କିଛି ଦେଖାଇ ଦେଇପାରିବି ।'

ରାଜାଙ୍କଠାରୁ ଏ ପ୍ରକାର ଉତ୍ତର ଶୁଣି ବୈଦ୍ୟ ତରୁଣଚନ୍ଦ୍ର ଚିନ୍ତା କଲା, 'ଯୁବକ ଯାହା କହୁଅଛନ୍ତି ସେଥିରୁ ସେ ମୋ ସହିତ ପ୍ରତାରଣା କରୁଥିବା ପରି ମନେ ହେଉନାହିଁ । ନମ୍ର ଓ ବିନୟର ସହିତ ସେ କଥାବାର୍ତ୍ତା କରୁଅଛନ୍ତି । ବର୍ତ୍ତମାନ ରହସ୍ୟ ଉଦ୍‌ଘାଟନ କରିବା ମଧ୍ୟ ମୋ ପକ୍ଷରେ ସମ୍ଭବପର ନୁହେ । ତେଣୁ ତାଙ୍କର ଅନୁସରଣ କରିବା ହିଁ ମୋର ଏକମାତ୍ର କର୍ତ୍ତବ୍ୟ । ସେ ଯାହା ଦେଖାଇବା ପାଇଁ କହିଛନ୍ତି ତାହା ଦେଖିବା ପାଇଁ ଅପେକ୍ଷା କରିବା ମୋ ପକ୍ଷରେ ଉଚିତ ହେବ ।' ଏପରି ଚିନ୍ତା କରି ସେ ସେହିଦିନଠାରୁ ରାଜାଙ୍କର ବିରୁଦ୍ଧାଚରଣ କରିବାରୁ ନିବୃତ୍ତ ହେଲା ।

ଦିନେ ରାଜା ଅଜର ବୈଦ୍ୟ ତରୁଣଚନ୍ଦ୍ର ଓ ଅନ୍ୟାନ୍ୟ ମିତ୍ରମାନଙ୍କ ସହିତ ସାନ୍ଧ୍ୟଭ୍ରମଣ ନିମନ୍ତେ ନଗରରୁ ବହିର୍ଗତ ହେଲେ । ଏଣେତେଣେ ଭ୍ରମଣ କରି ସେମାନେ ଏକ ନଦୀକୂଳରେ ଯାଇ ପହଞ୍ଚିଲେ । ସେହି ନଦୀ ସ୍ରୋତରେ ଭାସିଯାଉଥିବା ପାଞ୍ଚଟି ସ୍ୱର୍ଣ୍ଣ କମଳ ଦେଖି ରାଜା ଭୃତ୍ୟମାନଙ୍କଦ୍ୱାରା ସେଗୁଡ଼ିକ ନେଇ ଆସିଲେ । ନିକଟରେ ଥିବା ତରୁଣଚନ୍ଦ୍ରକୁ ସେହି ପୁଷ୍ପଗୁଡ଼ିକ ଦେଖାଇ କହିଲେ, 'ତୁମେ ବର୍ତ୍ତମାନ ନଦୀର ଧାରେ ଧାରେ ଉପରକୁ ଯାଇ ଏଗୁଡ଼ିକର ଉତ୍ପତ୍ତିସ୍ଥଳ ନିର୍ଣ୍ଣୟ କର । ଏପରି ବହୁ ପୁଷ୍ପ ଲାଭ କରିବା ନିମନ୍ତେ ମୋର ପ୍ରବଳ ଇଚ୍ଛା ହେଉଅଛି । ତୁମେ କେବଳ ମୋର ଏକମାତ୍ର

ହିତାକାଂକ୍ଷୀ ବନ୍ଧୁ; ତେଣୁ ତୁମ ବ୍ୟତୀତ ଏ କାର୍ଯ୍ୟ ସମାହିତ କରିବା ପାଇଁ ଅନ୍ୟ କେହି ସମର୍ଥ ନୁହନ୍ତି । ରାଜାଙ୍କର ଏ ପ୍ରକାର ଆଗ୍ରହ ଦେଖି ବୈଦ୍ୟ ତରୁଣଚନ୍ଦ୍ର ସ୍ୱର୍ଣ୍ଣକମଳର ଉତ୍ପତ୍ତି ସ୍ଥଳ ଅନୁସନ୍ଧାନ କରିବା ପାଇଁ ଅଗ୍ରସର ହେଲା ଏବଂ ରାଜା ରାଜଭବନକୁ ପ୍ରତ୍ୟାବର୍ତ୍ତନ କରି ଆସିଲେ ।

ରାଜାଙ୍କ ପ୍ରଦର୍ଶିତ ମାର୍ଗରେ କିଛିଦୂର ଅଗ୍ରସର ହୋଇ ତରୁଣଚନ୍ଦ୍ର ଏକ ଶିବ ମନ୍ଦିର ନିକଟରେ ଆସି ଉପସ୍ଥିତ ହେଲା । ମନ୍ଦିରକୁ ଲାଗି ଗୋଟିଏ ସୁନ୍ଦର ପୁଷ୍କରିଣୀ ଥାଏ । ଏହାର ତଟ ଦେଶରେ ଗୋଟିଏ ବିଶାଳ ବଟବୃକ୍ଷ । ବଟବୃକ୍ଷଟିର ଶାଖାରେ ଗୋଟିଏ ନରକଙ୍କାଳ ଝୁଲୁଥାଏ । ତରୁଣଚନ୍ଦ୍ର ଏହି ସରୋବରରେ ସ୍ନାନ ଶେଷ କରି ମନ୍ଦିରସ୍ଥ ମହାଦେବଙ୍କୁ ପୂଜା କରିବା ପାଇଁ ବସିଲା । ଏହି ଅବସରରେ ସେଠାରେ ପ୍ରବଳ ବୃଷ୍ଟି ଆରମ୍ଭ ହେଲା ।

ପୂଜା ଶେଷରେ ସେ ଆସି ଯାହା ଦେଖିଲା, ସେଥିରେ ତା'ର ବିସ୍ମୟର ସୀମା ରହିଲା ନାହିଁ । ବର୍ଷା ବିନ୍ଦୁଗୁଡ଼ିକ ଏହି ନରକଙ୍କାଳ ଦେହରୁ ଟପ୍ ଟପ୍ ହୋଇ ତଳେ ନିଗିଡ଼ି ପଡୁଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଜଳବିନ୍ଦୁ ସବୁ ଆସି ଯେତେବେଳେ ସରୋବରରେ ମିଶୁଅଛି, ସେତେବେଳେ ସେଗୁଡ଼ିକ ସୁବର୍ଣ୍ଣ କମଳରେ ପରିବର୍ତ୍ତିତ ହୋଇଯାଉଛି । ଏସବୁ ଦେଖି ବୈଦ୍ୟ ଚିନ୍ତାକଲା, 'ଏ ବିସ୍ମୟକର ଘଟଣା ସମ୍ପର୍କରେ ଏଠାରେ ସେ କାହାକୁ ବା ପଚାରିବ ? ବିଧାତାର ଏହି ଅଦ୍ଭୁତ ସୃଷ୍ଟିର ରହସ୍ୟ ଉଦ୍‌ଘାଟନ କରିବା କାହା ପକ୍ଷରେ ବା ସମ୍ଭବପର ? ସୁବର୍ଣ୍ଣ କମଳର ଉତ୍ପତ୍ତିସ୍ଥଳର ସନ୍ଧାନ ତ ମିଳିଲା, ବର୍ତ୍ତମାନ ଏହି ନରକଙ୍କାଳଟିକୁ ବୃକ୍ଷଶାଖାରୁ ଆଣି ତୀର୍ଥଜଳରେ ନିକ୍ଷେପ କଲେ ଏହାକୁ ସଦ୍‌ଗତି ପ୍ରଦାନ କରିବାର ପୁଣ୍ୟ କିମ୍ବା ଧର୍ମ ଲାଭ ହୋଇପାରେ ।' ଏହିପରି ଚିନ୍ତା କରି ସେ ନରକଙ୍କାଳଟିକୁ ଆଣି ସରୋବର ମଧ୍ୟରେ ସଲୀଳ ସମାଧି ଦେଲା ।

ଏହି ନିର୍ଦ୍ଦିଷ୍ଟ କର୍ମ ସମ୍ପାଦନ ପୂର୍ବକ ବୈଦ୍ୟ ତରୁଣଚନ୍ଦ୍ର ଉକ୍ତ ଦିନଟି ସେଠାରେ ଅବସ୍ଥାନ କରି ପରଦିନ ରାଜ୍ୟ ଅଭିମୁଖରେ ଅଗ୍ରସର ହେଲା । କିଛିଦିନ ମଧ୍ୟରେ ସେ ଆସି ବିଳାସପୁର ନଗରରେ ଉପସ୍ଥିତ ହୋଇ ରାଜା ଅଜରଙ୍କ ସହ ସାକ୍ଷାତ କଲା । ରାଜା ପ୍ରଣିପାତ ତଥା କୁଶଳ ଜିଜ୍ଞାସା ପୂର୍ବକ ତା'ଠାରୁ ସମଗ୍ର ବୃତ୍ତାନ୍ତ ଶ୍ରବଣ କରି ଏକାନ୍ତରେ ତାକୁ କହିଲେ—

'ମିତ୍ର, ତୁମେ ସୁବର୍ଣ୍ଣକମଳର ଯେଉଁ ଉତ୍ପତ୍ତିସ୍ଥଳ ଦେଖି ଆସିଲ, ତାହା ଏକ ପବିତ୍ର କ୍ଷେତ୍ର । ସେଠାରେ ଥିବା ବଟବୃକ୍ଷ ଶାଖାରେ ଯେଉଁ ନରକଙ୍କାଳଟି ଝୁଲୁଥିଲା, ତାହା ମୋର ପୂର୍ବ ଜନ୍ମର ଶରୀର ମାତ୍ର । ମୁଁ ନିଜକୁ ସେହି ଅବସ୍ଥାରେ ରଖି ସେଠାରେ

ତପସ୍ୟା କରୁଥିଲି ଏବଂ ଶରୀରକୁ ଶୁଷ୍କକରି ପ୍ରାଣତ୍ୟାଗ କରିଥିଲି । ଏହି ତପୋ ପ୍ରଭାବରୁ ମୋର କଙ୍କାଳରୁ ନିପତିତ ଜଳବିନ୍ଦୁ ସୁବର୍ଣ୍ଣ କମଳରେ ପରିଣତ ହେଉଥିଲା । ତୁମେ ମୋର ସେହି କଙ୍କାଳଟିକୁ ତୀର୍ଥ ଜଳରେ ନିକ୍ଷେପ କରି ଉଚିତ କର୍ମ କରିଅଛ । କାରଣ ପୂର୍ବ ଜନ୍ମରେ ତୁମେ ମୋର ମିତ୍ର ଥିଲ । ଏହି ଭେଷଜ ଚନ୍ଦ୍ର ଓ ପଦ୍ମଦର୍ଶନ ମଧ୍ୟ ମୋର ସେ ଜନ୍ମର ମିତ୍ର । ପୂର୍ବଜନ୍ମାର୍ଜିତ ପୁଣ୍ୟ ପ୍ରଭାବରୁ ମୁଁ ଏ ଜନ୍ମରେ ଜାତିସ୍ମର, ଜ୍ଞାନୀ ଏବଂ ରାଜା ହୋଇପାରିଛି । ଏସବୁକୁ ମୁଁ ତୁମକୁ ପ୍ରତ୍ୟକ୍ଷ ରୂପେ ଦେଖାଇଦେଲି ଏବଂ ମୋର ନରକଙ୍କାଳ ସମ୍ପର୍କରେ ଅଭିଜ୍ଞାନ ସହ ବର୍ଣ୍ଣନା କଲି । ଏଣୁ ସେତେବେଳେ ମୁଁ ତୁମ ହାତରେ ଯେଉଁ ରାଜ୍ୟଭାର ଅର୍ପଣ କରିଥିଲି, ବର୍ତ୍ତମାନ ତୁମେ ତାହା ମୋତେ ଫେରାଇ ଦେଇଅଛ । ଏଥିପାଇଁ ତୁମେ ଅହଙ୍କାର କିମ୍ବା ଦୁଃଖ କରିବା ଅନୁଚିତ । ପୂର୍ବଜନ୍ମାର୍ଜିତ କର୍ମଫଳ ଅପେକ୍ଷା କେହି କାହାରିକି ଅଧିକ କିଛି ଦେଇପାରେ ନାହିଁ । ପ୍ରତ୍ୟେକ ପ୍ରାଣୀ ଗର୍ଭସ୍ଥ ହେବା ଦିନଠାରୁ ପୂର୍ବଜନ୍ମର ଫଳ ଭୋଗ କରିଥାଏ ।'

ବିନା ହି ପ୍ରାକ୍ତନଂ କର୍ମ ନ ଦାତା କୋଽପି କସ୍ୟଚିତ୍
ଆଗର୍ଭାତ୍‌ଜନ୍ତୁରଶ୍ନାତି ପୂର୍ବକର୍ମତରୋଃ ଫଳମ୍ ।

ରାଜାଙ୍କଠାରୁ ତାର ପୂର୍ବଜନ୍ମ ବୃତ୍ତାନ୍ତ ଏବଂ ଏ ପ୍ରକାର ଉପଦେଶ ବାଣୀ ଶ୍ରବଣ କରି ବୈଦ୍ୟ ତରୁଣଚନ୍ଦ୍ର ସନ୍ତୁଷ୍ଟ ହେଲା । ରାଜା ମଧ୍ୟ ତାକୁ ଧନ, ସମ୍ମାନ ଦ୍ୱାରା ଅନୁଗୃହୀତ କଲେ ଏବଂ ମିତ୍ର ଓ ପତ୍ନୀମାନଙ୍କ ସହ ସୁଖରେ ନିଷ୍କଣ୍ଟକ ରାଜଭୋଗ ଉପଭୋଗ କରିବାକୁ ଲାଗିଲେ ।

ଗଳ୍ପ ଶେଷକରି ତପନ୍ତକ ଯୁବରାଜ ନରବାହନଦତ୍ତଙ୍କୁ କହିଲେ, 'ମହାରାଜ ଏହିପରି ପୃଥିବୀର ସମସ୍ତ ପ୍ରାଣୀ ପୂର୍ବଜନ୍ମର କର୍ମ ଅନୁଯାୟୀ ଏ ଜନ୍ମରେ ଶୁଭ କିମ୍ବା ଅଶୁଭ ଫଳ ଭୋଗ କରିଥାନ୍ତି । ମୋର ଧାରଣା ଆପଣ ପୂର୍ବଜନ୍ମରେ ମଧ୍ୟ ଆମ୍ଭମାନଙ୍କର ରାଜା ଥିଲେ । ତା' ନହେଲେ ଅନ୍ୟ ବହୁ ବ୍ୟକ୍ତି ଥାଉଁ ଥାଉଁ ଆପଣ ଆମ୍ଭମାନଙ୍କ ପ୍ରତି ଏପରି ମିତ୍ରତା ପ୍ରକାଶ କରୁଥାଆନ୍ତେ କାହିଁକି ?'

ଯୁବରାଜ ରତ୍ନପ୍ରଭାଙ୍କ ସହିତ ତପନ୍ତକଙ୍କ ମୁଖରୁ ଏପ୍ରକାର ଅପୂର୍ବ ଏବଂ ବିଚିତ୍ର ଗଳ୍ପ ଶ୍ରବଣ କରି ଅତ୍ୟନ୍ତ ଆନନ୍ଦ ଲାଭ କଲେ । ମିତ୍ରମାନଙ୍କୁ ବିଦାୟ ଦେଇ ସେ ସ୍ନାନ ସମାପନ ପୂର୍ବକ ପିତାମାତାଙ୍କ ଆଶୀର୍ବାଦ ଗ୍ରହଣ କଲେ । ପତ୍ନୀ ଓ ମିତ୍ରମାନଙ୍କ ସହିତ ପାନ, ଭୋଜନ ପ୍ରଭୃତି ଭୋଗବିଳାସରେ ନିମଜ୍ଜିତ ରହି ନରବାହନଦତ୍ତଙ୍କ ସମୟ ଅତିବାହିତ ହେଉଥାଏ ।



# ସପ୍ତମ ତରଙ୍ଗ

ଏହିପରି କିଛି ଦିନ ବିତିଗଲା । ଦିନେ ରତ୍ନପ୍ରଭା ଓ ମନ୍ତ୍ରୀମାନଙ୍କ ସହିତ ବସି ଯୁବରାଜ ନରବାହନଦତ୍ତ ନିଜର ବାସଭବନ ମଧ୍ୟରେ ବାର୍ତ୍ତାଳାପ କରୁଥାଆନ୍ତି । ଏହି ସମୟରେ କୌଣସି ପୁରୁଷର ବିକଳ ରୋଦନ ଧ୍ୱନି ତାଙ୍କର କର୍ଣ୍ଣଗୋଚର ହେଲା । ପରିଚାରିକାକୁ ଏ ସମ୍ପର୍କରେ ଜିଜ୍ଞାସା କରନ୍ତେ ସେ ଉତ୍ତର ଦେଲା, 'ମହାରାଜ, କଞ୍ଚୁକୀ ଧର୍ମଗିରି କୌଣସି ମିତ୍ରଙ୍କଠାରୁ ତାଙ୍କ ପ୍ରାଣପ୍ରିୟ ସବାସାନଭାଇଙ୍କ ମୃତ୍ୟୁ ସମ୍ବାଦ ଶୁଣି କ୍ରନ୍ଦନ କରୁଅଛନ୍ତି । ତାଙ୍କ ଭାଇ ତୀର୍ଥଯାତ୍ରାରେ ଯାଇଥିଲେ । ସେ ସେଠାରେ ପ୍ରାଣତ୍ୟାଗ କରିଥିବା କଥା ଧର୍ମଗିରି ଜାଣିପାରିଛନ୍ତି । ତାହା ଶୁଣି ଶୋକର ଆବେଗରେ ରାଜଭବନ ମଧ୍ୟରେ ରହୁଥିବା କଥା ସେ ଭୁଲିଯାଇଛନ୍ତି । ବର୍ତ୍ତମାନ ତାଙ୍କର କେତେଜଣ ବନ୍ଧୁ ସାନ୍ତ୍ୱନା ଦେଇ ତାଙ୍କୁ ନିଜ ଗୃହକୁ ନେଇଯିବାପାଇଁ ଚେଷ୍ଟା କରୁଛନ୍ତି ।

ଏହା ଶୁଣି ଯୁବରାଜ ତାଙ୍କ ଦୁଃଖରେ ସମବେଦନା ପ୍ରକାଶ କଲେ ଏବଂ ମହାରାଣୀ ମଧ୍ୟ ଦୁଃଖିତ ହୋଇ କହିଲେ, 'ପ୍ରିୟଭ୍ରାତାର ମରଣ ଦୁଃଖ ପ୍ରକୃତରେ ଅସହ୍ୟ । ବିଧାତା ମଣିଷକୁ ଅଜର ଅମର ନ କରିବା ହିଁ ଦୁଃଖର କଥା ।'

ରାଣୀଙ୍କ ବାକ୍ୟରେ ମରୁଭୂତି ବିଜ୍ଞତାର ସହିତ କହିଲେ, 'ମହାରାଣି, ମନୁଷ୍ୟ ଜନ୍ମ ଲାଭ କରି ଅଜର ଓ ଅମର ହେବା ସମ୍ଭବପର ନୁହେ । ଏ ପ୍ରସଙ୍ଗରେ ମୋର ଗୋଟିଏ ଗଳ୍ପ ସ୍ମରଣ ହେଉଅଛି ।

## ନାଗାର୍ଜ୍ଜୁନ କଥା

ଚିରାୟୁ ନାମକ ନଗରରେ ମହାସମ୍ପତ୍ତିଶାଳୀ ଚିରାୟୁ ନାମକ ରାଜା ରାଜତ୍ୱ କରୁଥିଲେ । ତାଙ୍କର ମନ୍ତ୍ରୀ ନାଗାର୍ଜ୍ଜୁନ । ବୋଧିସତ୍ତ୍ୱଙ୍କ ଅଂଶରେ ସେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ପରମ ଦୟାଶୀଳ, ଦାନଶୀଳ ଓ ବିଜ୍ଞାନବେତ୍ତା । ବିଭିନ୍ନ ଅଦ୍ଭୁତ

ରସାୟନ ପ୍ରସ୍ତୁତ କରିବାରେ ସେ ସିଦ୍ଧହସ୍ତ ଥିଲେ । ନିଜର ଅଦ୍ୱିତୀୟ ଆୟୁର୍ବେଦ ଜ୍ଞାନ ବଳରେ ସେ ଏପରି ଏକ ରସାୟନ ଉଦ୍ଭାବନ କରିଥିଲେ ଯାହାଦ୍ୱାରା ସେ ନିଜେ ଏବଂ ରାଜା ଚିରାୟୁ ଅଜର ଓ ଅମର ହୋଇପାରିଥିଲେ ।

କାଳକ୍ରମେ ନାଗାର୍ଜ୍ଜୁନଙ୍କର ଅତି ପ୍ରିୟତମ ପୁତ୍ର ମୃତ୍ୟୁ ବରଣ କଲା । ସେଥିରେ ମନ୍ତ୍ରୀପ୍ରବର ଗଭୀର ଦୁଃଖଲାଭ କରି ପୃଥିବୀର ପ୍ରତ୍ୟେକ ମନୁଷ୍ୟଙ୍କୁ ଅମର କରିବା ନିମନ୍ତେ ନିଜର ତପସ୍ୟା ଓ ଦାନଶୀଳତା ପ୍ରଭାବରୁ ଏକ ଅମୃତମୟ ଔଷଧ ପ୍ରସ୍ତୁତ କରିବା ଆରମ୍ଭ କଲେ । ଆବଶ୍ୟକୀୟ ସମସ୍ତ ପଦାର୍ଥ ସଂଗୃହୀତ ହେଲା । କିନ୍ତୁ ଆଉ ଗୋଟିଏ ମାତ୍ର ଉପକରଣ ଲାଭ କଲେ ଏ ଅଦ୍ଭୁତ ଔଷଧ ପ୍ରସ୍ତୁତ ହୋଇଥାଆନ୍ତା । ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ତାହା ଉପଲବ୍‌ଧ ହେଉଥିବାରୁ ନାଗାର୍ଜ୍ଜୁନ ସେହି ସମୟର ପ୍ରତୀକ୍ଷା କରିଥାଆନ୍ତି ।

ଏ ସମୟରେ ନାଗାର୍ଜ୍ଜୁନଙ୍କର ଏହି ଅଦ୍ଭୁତ ଔଷଧ ଉଦ୍ଭାବନ କଥା ଦେବରାଜ ଇନ୍ଦ୍ରଙ୍କର କର୍ଣ୍ଣଗୋଚର ହେଲା । ସେ ଅନ୍ୟାନ୍ୟ ଦେବତାମାନଙ୍କ ସହିତ ଆଲୋଚନା କରି ସୁରବୈଦ୍ୟ ଅଶ୍ୱିନୀକୁମାରଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ପୃଥିବୀ ପୃଷ୍ଠକୁ ଯାଇ ନାଗାର୍ଜ୍ଜୁନଙ୍କୁ କହିବେ, 'ଆପଣ ମନ୍ତ୍ରୀ ହୋଇ ଏପ୍ରକାର ଅନୀତି କିପରି ଆଚରଣ କରୁଅଛନ୍ତି । ଆପଣଙ୍କର ଏପରି ଚେଷ୍ଟାଦ୍ୱାରା ବିଧାତାଙ୍କର ଇଚ୍ଛା ଫଳବତୀ ହେବନାହିଁ । ସେ ମରଣଶୀଳ ମାନବ ସମାଜ ସୃଷ୍ଟି କରିଥିଲେ; ଆଉ ଆପଣ ବର୍ତ୍ତମାନ ପୃଥିବୀରେ ଅମୃତ ପ୍ରସ୍ତୁତ କରି ସେମାନଙ୍କୁ ଦେବତାରେ ପରିଣତ କରିବାପାଇଁ ଚାହୁଁଅଛନ୍ତି । ଏହାଦ୍ୱାରା ମାନବ ଓ ଦେବତାମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଦୂରୀଭୂତ ହେବ । ଯାଜକ ଓ ଯଜ୍ଞଭୋକ୍ତାମାନଙ୍କର ଅଭାବରେ ପୃଥିବୀର ସ୍ଥିତି ବିପନ୍ନ ହେବ । ତେଣୁ ଆମର ଅନୁରୋଧ ଆପଣ ଏହି ଅମୃତ ପ୍ରସ୍ତୁତିରୁ କ୍ଷାନ୍ତ ହୁଅନ୍ତୁ । ନୋଚେତ୍ ଦେବତାମାନେ ଅସନ୍ତୁଷ୍ଟ ହୋଇ ଆପଣଙ୍କୁ ଶାପ ପ୍ରଦାନ କରିବେ । ଯେଉଁ ପୁତ୍ରପାଇଁ ଆପଣ ଶୋକସନ୍ତପ୍ତ ଚିତ୍ତରେ ଏ ପ୍ରକାର ଔଷଧ୍ ନିର୍ମାଣ କରିବା ପାଇଁ ଚେଷ୍ଟା କରୁଅଛନ୍ତି, ସେ ବର୍ତ୍ତମାନ ସ୍ୱର୍ଗରାଜ୍ୟରେ । ତାହାପାଇଁ ଚିନ୍ତା କରିବା ଆପଣଙ୍କ ତୁଲ୍ୟ ବିଜ୍ଞ ମନ୍ତ୍ରୀଙ୍କ ପକ୍ଷରେ ଅନୁଚିତ ।'

ଇନ୍ଦ୍ରଙ୍କ ନିର୍ଦ୍ଦେଶାନୁଯାୟୀ ଅଶ୍ୱିନୀ କୁମାର ନାଗାର୍ଜ୍ଜୁନଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ମନ୍ତ୍ରୀ ଗଭୀର ଭକ୍ତି ଓ ଅପରିସୀମ ଆନନ୍ଦରେ ସେମାନଙ୍କର ସତ୍କାର କରନ୍ତେ ସେମାନେ ଇନ୍ଦ୍ରଙ୍କ ନିର୍ଦ୍ଦେଶ ତାଙ୍କ ନିକଟରେ ପ୍ରକାଶ କଲେ । ଏହାଶୁଣି ନାଗାର୍ଜ୍ଜୁନ ବିଷଣ୍ଣ

ଚିତ୍ତରେ ଚିନ୍ତା କଲେ ''ମୁଁ ଯଦି ଇନ୍ଦ୍ରଙ୍କର ଅନୁରୋଧ ରକ୍ଷା ନକରେ, ତାହାହେଲେ ଦେବତାମାନେ ମୋତେ ଶାପଗ୍ରସ୍ତ କରିବେ । ଏହାମଧ୍ୟେ ସମ୍ଭବପର ଯେ ଏହି ଅଶ୍ୱିନୀକୁମାରଦ୍ୱୟ ହିଁ ମୋତେ ଶାପ ପ୍ରଦାନ କରିପାରନ୍ତି । ପୁଣି ମୋର ପୁତ୍ର ପୂର୍ବ ପୁଣ୍ୟ ପ୍ରଭାବରୁ ସ୍ୱର୍ଗରାଜ୍ୟ ଲାଭ କରିପାରିଅଛି । ତେଣୁ ଏହି ଅମୃତ ନିର୍ମାଣ କାର୍ଯ୍ୟରେ ଜଳାଞ୍ଜଳି ଦେବା ମୋ ପକ୍ଷରେ ଏକାନ୍ତ ଉଚିତ ହେବ ।' ଏପରି ଚିନ୍ତାକରି ସେ ଅଶ୍ୱିନୀକୁମାରଙ୍କୁ କହିଲେ 'ମୁଁ ଇନ୍ଦ୍ରଙ୍କ ଆଦେଶ ଶିରୋଧାର୍ଯ୍ୟ କଲି । ଯଦି ଆପଣମାନେ ଆସିନଥାନ୍ତେ ତାହାହେଲେ ଆଉ ପାଞ୍ଚଦିନ ମଧ୍ୟରେ ଏ କାର୍ଯ୍ୟ ସମାପ୍ତ କରି ସମଗ୍ର ପୃଥିବୀକୁ ମୁଁ ଅଜର ଓ ଅମର କରିଦେଇଥାନ୍ତି । ବର୍ତ୍ତମାନ ମୁଁ ସେଥିରୁ କ୍ଷାନ୍ତ ହେଉଅଛି ।' ଏହା କହି ସେ ଔଷଧି ଭାଣ୍ଡଟିକୁ ସେମାନଙ୍କ ସମ୍ମୁଖରେ ହିଁ ଭୂଗର୍ଭରେ ପୋତିଦେଲେ । ଏହା ଦେଖି ଅଶ୍ୱିନୀକୁମାର ପ୍ରସନ୍ନ ଚିତ୍ତରେ ପ୍ରତ୍ୟାବର୍ତ୍ତନ କରି ଇନ୍ଦ୍ରଙ୍କୁ ଏ ସମ୍ବାଦ ପ୍ରଦାନ କରନ୍ତେ ସେ ମଧ୍ୟ ନାଗାର୍ଜ୍ଜୁନଙ୍କ ପ୍ରତି ସନ୍ତୋଷ ପ୍ରକାଶ କଲେ ।

ଏଣେ ରାଜା ଚିରାୟୁ ଜୀବହର ନାମକ ପୁତ୍ରକୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଅଭିଷିକ୍ତ ଜୀବହର ଆନନ୍ଦରେ ପ୍ରଣାମ କରିବା ନିମନ୍ତେ ଆସି ମାତା ଧନପରାଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ ସେ ପୁତ୍ରର ଏପ୍ରକାର ଉତ୍କଣ୍ଠା ଓ ଆନନ୍ଦ ଦେଖି କହିଲେ ''ପୁତ୍ର, ଏହି ଯୌବରାଜ୍ୟ ପ୍ରାପ୍ତି ନିମିତ୍ତ ତୋର ଆନନ୍ଦିତ ହେବା ବୃଥା । ବହୁ ତପସ୍ୟା ବଳରେ ମଧ୍ୟ ଏ ରାଜ୍ୟ ତୁ ଭୋଗ କରିପାରିବୁ ନାହିଁ । ରାଜାଙ୍କର ବହୁପୁତ୍ର ତୋ ପରି ଯୁବରାଜ ପଦରେ ଅଭିଷିକ୍ତ ହେଲେଣି କିନ୍ତୁ କେହି ରାଜଭୋଗ ପାଇପାରି ନାହାନ୍ତି କିମ୍ବା ରାଜ ସିଂହାସନ ଆରୋହଣ କରିପାରି ନାହାନ୍ତି । ବୈଦ୍ୟରାଜ ନାଗାର୍ଜ୍ଜୁନ ରାଜାଙ୍କୁ ଏପରି ଏକ ରସାୟନ ପ୍ରଦାନ କରିଅଛନ୍ତି, ଯାହା ଫଳରେ ରାଜାଙ୍କର ବୟସ ବର୍ତ୍ତମାନ ଅଷ୍ଟଶତ । ସେ ଆଉ କେତେ ଶତ ବର୍ଷ ରାଜ୍ୟ ଶାସନ କରି କେତେଜଣ ପୁତ୍ରଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିବେ ତାହା କହିବା ସମ୍ଭବପର ନୁହେ ।'

ଏଥିରେ ପୁତ୍ରକୁ ଦୁଃଖିତ ହେବା ଦେଖି ଧନପରା ପୁଣି କହିଲେ, 'ଯଦି ରାଜ୍ୟ ଶାସନ କରିବାର ଆକାଂକ୍ଷା ଥାଏ, ତେବେ ଗୋଟିଏ ମାତ୍ର ଉପାୟ ଅବଲମ୍ବନ କରିପାରୁ । ଦାନଶୀଳ ମନ୍ତ୍ରୀ ନାଗାର୍ଜ୍ଜୁନ ପ୍ରତିଦିନ ସ୍ନାନ, ସଂଧ୍ୟା, ଉପାସନା ପ୍ରଭୃତି ଶେଷ କରି ଭୋଜନ ପାଇଁ ଯିବା ପୂର୍ବରୁ ଉଚ୍ଚ ସ୍ୱରରେ ଘୋଷଣା କରନ୍ତି ଯେ, ଯଦି କେହି ଯାଚକ ସେଠାରେ ଉପସ୍ଥିତ ଥାଆନ୍ତି, ତାହାହେଲେ ସେମାନେ ସେମାନଙ୍କର ଅଭିଳଷିତ ବସ୍ତୁ ଭିକ୍ଷା କରନ୍ତୁ । ଏହି ସମୟରେ ତୁ ଯାଇ ତାଙ୍କୁ ତାଙ୍କର ମସ୍ତକ ପ୍ରଦାନ କରିବା ନିମନ୍ତେ

ଭିକ୍ଷା କରିବୁ । ଫଳରେ ସତ୍ୟବ୍ରତ ମନ୍ତ୍ରୀ ନିଜର ମସ୍ତକ ତୋତେ ଅର୍ପଣ କରିବେ । ମନ୍ତ୍ରୀଙ୍କ ମୃତ୍ୟୁରେ ଶୋକସନ୍ତପ୍ତ ରାଜା ହୁଏତ ମୃତ୍ୟୁବରଣ କରିପାରନ୍ତି ନୋଚେତ୍ ରାଜ୍ୟ ପରିତ୍ୟାଗ ପୂର୍ବକ ଅରଣ୍ୟ ମଧ୍ୟକୁ ଯାଇ ତପସ୍ୟା ଆଚରଣ କରିପାରନ୍ତି । ତାହାହେଲେ ତୁ ନିର୍ବିଘ୍ନରେ ରାଜସିଂହାସନ ଲାଭ କରିପାରିବୁ । ଏହା ବ୍ୟତୀତ ରାଜ୍ୟଲାଭର ଅନ୍ୟ କୌଣସି ଦ୍ୱିତୀୟ ଉପାୟ ନାହିଁ ।' ରାଜପୁତ୍ର ଏଥିରେ ସମ୍ମତ ହେଲେ । ରାଜ୍ୟ ଲୋଭରେ ମନୁଷ୍ୟ ଆତ୍ମୀୟ ବନ୍ଧୁପରିଜନଙ୍କୁ ମଧ୍ୟ ହତ୍ୟା କରିବା ପାଇଁ ପଶ୍ଚାତ୍‌ପଦ ହୋଇ ନଥାଏ ।

**କଷ୍ଟୋ ହି ବାନ୍ଧବସ୍ନେହଂ ରାଜ୍ୟଲୋଭୋଽତିବର୍ତ୍ତତେ ।**

ପରଦିନ ରାଜକୁମାର ଜୀବହର ଭୋଜନ ସମୟରେ ନାଗାର୍ଜ୍ଜୁନଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ନାଗାର୍ଜ୍ଜୁନ କିଏ କଣ ଚାହାନ୍ତି ବୋଲି ଜିଜ୍ଞାସା କରିବା ମାତ୍ରେ ରାଜକୁମାର ତାଙ୍କର ମସ୍ତକ ଭିକ୍ଷା କଲେ । ଏଥିରେ ମନ୍ତ୍ରୀ ବିସ୍ମିତ ହୋଇ କହିଲେ 'ବତ୍ସ, ମୋର ଏହି ମସ୍ତକ ତୁମର କି ଉପକାର କରିବ ? ଏଥିରେ ଅସ୍ଥି, ମେଦ ଓ କେଶ ବ୍ୟତୀତ ଅନ୍ୟ କୌଣସି ମୂଲ୍ୟବାନ ବସ୍ତୁ ନାହିଁ, ତଥାପି ଯଦି ଏଥିରେ ତୁମର ପ୍ରୟୋଜନ ଅଛି, ତାହାହେଲେ ଗ୍ରହଣ କର ।' ଏହା କହି ମନ୍ତ୍ରୀ ମସ୍ତକ ଅବନତ କଲେ ।

ରସାୟନ ଲେପନ ଦ୍ୱାରା ସୁଦୃଢ଼ ମନ୍ତ୍ରୀଙ୍କ କଣ୍ଠଦେଶରେ ପ୍ରହାର କରନ୍ତେ ରାଜକୁମାରଙ୍କର ବହୁ ଅସ୍ତ୍ରଶସ୍ତ୍ର ନଷ୍ଟ ହେଲା; କିନ୍ତୁ ମନ୍ତ୍ରୀଙ୍କର ମସ୍ତକ ଶରୀରରୁ ବିଚ୍ଛିନ୍ନ ହେଲା ନାହିଁ । ଏ ବାର୍ତ୍ତା ଶ୍ରବଣ କରି ରାଜା ଚିରାୟୁ ସେଠାରେ ଆସି ଉପସ୍ଥିତ ହେଲେ । ମସ୍ତକ ପ୍ରଦାନ କରିବାରୁ ନିବୃତ୍ତ କରିବା ପାଇଁ ରାଜା ମନ୍ତ୍ରୀଙ୍କୁ ଅନୁରୋଧ କରନ୍ତେ ନାଗାର୍ଜ୍ଜୁନ କହିଲେ, 'ମହାରାଜ, ମୁଁ ଜାତିସ୍ମର । ପୂର୍ବରୁ ଅନେଶ୍ୱତ ଜନ୍ମଲାଭ କରି ମୁଁ ଅନେଶ୍ୱତବାର ନିଜର ମସ୍ତକ ଦାନ କରିଅଛି । ଏହା ମୋର ଶତତମ ଜନ୍ମ । ତେଣୁ ଏହି ଜନ୍ମରେ ମଧ୍ୟ ମୁଁ ମୋର ମସ୍ତକ ଦାନ କରିବି । ଆପଣ ମୋତେ ଏଥିରୁ ନିବୃତ୍ତ କରିବାପାଇଁ ଚେଷ୍ଟା କରନ୍ତୁ ନାହିଁ । ହୁଏତ ଏହାଦ୍ୱାରା ମୋର ଯାଚକ ବିରକ୍ତ ହୋଇପାରେ । ଆପଣଙ୍କ ପୁତ୍ରକୁ ମୁଁ ବର୍ତ୍ତମାନ ହିଁ ମୋର ମସ୍ତକ ଦାନ କରୁଅଛି । କେବଳ ଆପଣଙ୍କର ଦର୍ଶନଲାଭ କରିବା ନିମନ୍ତେ ଏ ପର୍ଯ୍ୟନ୍ତ ଅପେକ୍ଷା କରିଥିଲି ।'

ଏହା କହି ମନ୍ତ୍ରୀ ନାଗାର୍ଜ୍ଜୁନ ରାଜାଙ୍କୁ ଆଲିଙ୍ଗନ କରି ଏକ ଔଷଧି ଚୂର୍ଣ୍ଣଦ୍ୱାରା ରାଜକୁମାରଙ୍କ ତରବାରିକୁ ଲିପ୍ତ କଲେ । ଉକ୍ତ ତରବାରିଦ୍ୱାରା ଆଘାତ କରନ୍ତେ ମନ୍ତ୍ରୀଙ୍କର ମସ୍ତକ ମୃଣାଳରୁ ପଦ୍ମ ବିଚ୍ଛିନ୍ନ ହେଲାପରି ଭୂପୃଷ୍ଠରେ ପତିତ ହେଲା । ଏହା ଦେଖି ସମଗ୍ର ଜନତା ଶୋକବିହ୍ୱଳ ହୋଇପଡ଼ିଲା ଏବଂ ରାଜା ମଧ୍ୟ ଆତ୍ମହତ୍ୟା ନିମନ୍ତେ ଉଦ୍ୟତ

ହେଲେ । ଏ ସମୟରେ ଶୂନ୍ୟବାଣୀ ଶୁଣାଗଲା, 'ମହାରାଜ ! ଆତ୍ମହତ୍ୟା ରୂପକ ମହାପାପ କରନ୍ତୁ ନାହିଁ । ଆପଣଙ୍କର ମିତ୍ର ନାଗାର୍ଜ୍ଜୁନ ବର୍ତ୍ତମାନ ବୁଦ୍ଧଙ୍କ ତୁଲ୍ୟ ନିର୍ବାଣଲାଭ କରିଅଛନ୍ତି । ତାଙ୍କର ଆଉ ପୁନର୍ଜନ୍ମ ହେବନାହିଁ ।' ଏହାଶୁଣି ରାଜା ଚିରାୟୁ ଆତ୍ମ ବିସର୍ଜନରୁ କ୍ଷାନ୍ତ ହୋଇ ରାଜ୍ୟ ପରିତ୍ୟାଗ ପୂର୍ବକ କଠୋର ତପସ୍ୟା ଆଚରଣ କରିବା ନିମନ୍ତେ ଅରଣ୍ୟ ଅଭିମୁଖରେ ଯାତ୍ରା କଲେ । କିଛିଦିନ ପରେ ତାଙ୍କର ସ୍ୱର୍ଗ ଲାଭହେଲା ।

ରାଜାଙ୍କର ରାଜ୍ୟତ୍ୟାଗ ପରେ ଯୁବରାଜ ଜୀବହର ରାଜସିଂହାସନ ଆରୋହଣ କଲେ । କିନ୍ତୁ ପିତୃହତ୍ୟାର ପ୍ରତିଶୋଧ ନେବା ନିମନ୍ତେ ମନ୍ତ୍ରୀ ପୁତ୍ରମାନେ ରାଜ୍ୟରେ ବିପ୍ଳବର ସୂତ୍ରପାତ କରି ତାଙ୍କୁ ହତ୍ୟା କଲେ । ରାଣୀ ଧନପରା ମଧ୍ୟ ପତି ଓ ପୁତ୍ରର ବିଚ୍ଛେଦରେ ପ୍ରାଣତ୍ୟାଗ କଲେ ।

ଅନ୍ୟାୟ ମାର୍ଗ ଅବଲମ୍ବନ କରି କେହି ମଙ୍ଗଳମୟ ବସ୍ତୁ ଲାଭ କରିପାରେ ନାହିଁ ।

**ଅନାର୍ଯ୍ୟଜୁଷ୍ଟେନ ପଥା ପ୍ରବୃତ୍ତାନାଂ ଶିବଂ କୁତଃ ।**

ରାଜାଙ୍କର ମନ୍ତ୍ରୀମାନେ ଦ୍ୱିତୀୟ ରାଣୀଙ୍କ ଗର୍ଭରୁ ଜାତ ହୋଇଥିବା ରାଜପୁତ୍ର ଶତାୟୁଙ୍କୁ ରାଜସିଂହାସନରେ ଅଭିଷିକ୍ତ କଲେ ।

ଏହିପରି ନାଗାର୍ଜ୍ଜୁନ ମନୁଷ୍ୟମାନଙ୍କୁ ଅଜର ଓ ଅମର କରିବା ପାଇଁ ଯେଉଁ ପ୍ରଯତ୍ନ କରୁଥିଲେ ତାକୁ ଦେବତାମାନେ ମଧ୍ୟ ସହ୍ୟ କରିପାରିଲେ ନାହିଁ । ନାଗାର୍ଜ୍ଜୁନ ନିଜେ ମଧ୍ୟ ମୃତ୍ୟୁ ବରଣ କଲେ । ତେଣୁ ଏହି ସଂସାର ଅନିତ୍ୟ ଏବଂ ଦୁର୍ବାର ଦୁଃଖବହୁଳ । ଶତପ୍ରଚେଷ୍ଟା ସତ୍ତ୍ୱେ ମାନବ ବିଧାତାର ଇଚ୍ଛା ବିରୋଧରେ କୌଣସି କାର୍ଯ୍ୟ କରିପାରେ ନାହିଁ ।'

**ତସ୍ମାଦ୍ ବିଧାତୃ ବିହିତୋଽୟମନିତ୍ୟ ଏବ**
**ଦୁର୍ବାର ଦୁଃଖବହୁଲୋ ନନୁ ଜୀବଲୋକଃ ।**
**ଶକ୍ୟଂ ନ କର୍ତ୍ତୁମପି ଯତ୍ନଶତୈସ୍ତଦତ୍ର**
**କେନାପି କିଂଚିଦପି ନେଚ୍ଛତି ଯଦ୍‌ବିଧାତା ॥**

ମରୁଭୂତି ଗଳ୍ପ ଶେଷ କରନ୍ତେ ଯୁବରାଜ ନରବାହନଦତ୍ତ ସେମାନଙ୍କୁ ବିଦାୟ ଦେଇ ନିଜର ଦୈନନ୍ଦିନ କାର୍ଯ୍ୟରେ ମନୋଯୋଗ କଲେ ।



# ଅଷ୍ଟମ ତରଙ୍ଗ

## କର୍ପୂରିକା କଥା

ଏକଦା ନରବାହନଦତ୍ତ ଉତ୍କଣ୍ଠିତା ରତ୍ନପ୍ରଭାଙ୍କୁ ଶୀଘ୍ର ଫେରି ଆସିବା ନିମନ୍ତେ ପ୍ରତିଶ୍ରୁତି ପ୍ରଦାନ କରି ପିତା ଉଦୟନ ଏବଂ ଅନ୍ୟ ମନ୍ତ୍ରୀମାନଙ୍କ ସହିତ ଅଶ୍ୱ, ହସ୍ତୀ ଓ ସୈନ୍ୟବାହିନୀ ନେଇ ମୃଗୟା ନିମନ୍ତେ ଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ବନ ମଧ୍ୟରେ ମତ୍ତହସ୍ତୀମାନଙ୍କ ଗଣ୍ଡସ୍ଥଳ ବିଦାରଣ କରିଥିବା ହିଂସ୍ର ସିଂହମାନଙ୍କର ବଧ ସାଧନ କରନ୍ତେ ସେମାନଙ୍କର ନଖପଂକ୍ତିରୁ ଯେଉଁ ଗଜମୁକ୍ତା ସବୁ ବନଭୂମିରେ ବିକ୍ଷିପ୍ତ ହେଲା ସେଗୁଡ଼ିକୁ ଦେଖିଲେ ମନେ ହେଉଥିଲା ସତେ ଯେପରି କେହି ଅରଣ୍ୟ ପ୍ରଦେଶରେ ମୁକ୍ତାବୀଜ ବପନ କରିଅଛି । ଭଲ୍ଲ ଅସ୍ତ୍ରଦ୍ୱାରା ନିହତ ବ୍ୟାଘ୍ରମାନଙ୍କର ଦନ୍ତପଂକ୍ତି ଦର୍ଶକ ମନରେ ମୁକ୍ତାବୀଜରୁ ଅଙ୍କୁରୋଦ୍‌ଗମର ଭ୍ରମ ଜାତ କରୁଥିଲା । ମୃତ ହରିଣୀମାନଙ୍କର ଶରୀରରୁ ନିର୍ଗତ ରକ୍ତଧାରା ଉପରୋକ୍ତ ଅଙ୍କୁରଗୁଡ଼ିକରେ ନବପଲ୍ଲବର ପ୍ରତୀତି ସୃଷ୍ଟି କରୁଥିଲା । ବାଣବିଦ୍ଧ ବରାହ ଏବଂ ଶରଭଗୁଡ଼ିକ ପୁଷ୍ପଗୁଚ୍ଛ ଓ ଫଳଗୁଚ୍ଛର ଭ୍ରମ ଜାତ କରୁଥିଲେ । ଭୟଙ୍କର ଶବ୍ଦ କରି ଧନୁର୍ମୁକ୍ତ ବାଣ ସମୂହ ବନଭୂମିରେ ଏଣେତେଣେ ଘୂରି ବୁଲୁଥିବା ଦେଖିଲେ ମନେ ହେଉଥିଲା ମୃଗୟା କ୍ରୀଡ଼ା ରୂପକ ଲତାର ଚତୁର୍ଦ୍ଦିଗରେ ଭ୍ରମରମାନେ ଗୁଞ୍ଜନ କରି ବିଳାସ କରୁଅଛନ୍ତି । ବନଭୂମିକୁ ଏହିପରି ବିଚିତ୍ର ଶୋଭାରେ ରଞ୍ଜିତ କରି ଯୁବରାଜ ଶ୍ରାନ୍ତ ହୋଇପଡ଼ିଲେ ।

କିଛି ସମୟ ପରେ ଶ୍ରାନ୍ତି ଅପନୋଦନ ନିମିତ୍ତ ନରବାହନଦତ୍ତ ଏକମାତ୍ର ଗୋମୁଖଙ୍କୁ ସଙ୍ଗରେ ନେଇ ଅନ୍ୟ ଏକ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । କିୟତ୍‌କ୍ଷଣ ବିଶ୍ରାମ କଲାପରେ ସେମାନେ ମୃତ୍ତିକା ସାହାଯ୍ୟରେ କ୍ଷୁଦ୍ର କ୍ଷୁଦ୍ର ଗୁଟିକା ତିଆରି କରି ତା ଦ୍ୱାରା ଗୁଟିକା କ୍ରୀଡ଼ା (ବାଟିଖେଳ) ଆରମ୍ଭ କଲେ । ଦୈବାତ୍ ଏହି ସମୟରେ ଜଣେ

ତପସ୍ୱିନୀ ସେହି ମାର୍ଗଦେଇ ଯାଉଥାଆନ୍ତି । ଯୁବରାଜଙ୍କ ହସ୍ତରୁ ଗୋଟିଏ ଗୁଟିକା ଛୁଟିଯାଇ ତାଙ୍କୁ ଆଘାତ କରନ୍ତେ ସେ କିଞ୍ଚିତ ରୋଷ ପ୍ରକାଶ କରି କହିଲେ, 'ତୁମର ବର୍ତ୍ତମାନ ତ ଏତେ ଗର୍ବ, ଯଦି କର୍ପୂରିକାଙ୍କୁ ପତ୍ନୀ ରୂପରେ ଲାଭ କର ତାହାହେଲେ ତୁମ ଗର୍ବର ମାତ୍ରା କେତେଗୁଣ ବଢ଼ି ନଯିବ !' ଏହା ଶୁଣିବା ମାତ୍ରେ ରାଜପୁତ୍ର ତାଙ୍କର ଚରଣ ସ୍ପର୍ଶ କରି ବିନୀତ ଭାବେ କହିଲେ, 'ଭଗବତି, ମୋତେ କ୍ଷମା କରନ୍ତୁ; ମୁଁ ଆପଣଙ୍କୁ ଦେଖିପାରି ନଥିଲି । ଦୈବାତ୍ ଗୁଳିଟି ଆପଣଙ୍କୁ ଆଘାତ କଲା । ଆପଣ ଆମ୍ଭମାନଙ୍କ ମାତୃ ତୁଲ୍ୟ । ଆମ ପ୍ରତି ସଦୟ ହୁଅନ୍ତୁ ।' ଏହାଶୁଣି ତପସ୍ୱିନୀ ସେମାନଙ୍କ ପ୍ରତି ଆଦୌ କ୍ରୋଧ ପ୍ରକାଶ କରିନାହାନ୍ତି ବୋଲି କହି ସାନ୍ତ୍ୱନା ପ୍ରଦାନ କଲେ ।

ଯୁବରାଜ ତାଙ୍କୁ ସତ୍ୟବାଦିନୀ, ଜ୍ଞାନବତୀ ତଥା ପ୍ରକୃତ ଜିତକ୍ରୋଧା ତାପସୀ ବୋଲି ଜାଣିପାରି ନମ୍ରତାର ସହିତ ଜିଜ୍ଞାସା କଲେ 'ଭଗବତି, ଆପଣ ଯେଉଁ କର୍ପୂରିକାର ନାମ ଉଚ୍ଚାରଣ କଲେ ତା'ର ପରିଚୟ ପ୍ରଦାନ କଲେ ମୁଁ ଅନୁଗୃହୀତ ହୁଅନ୍ତି । ଯଦି ଆପଣ ମୋ ପ୍ରତି ପ୍ରସନ୍ନ, ତାହାହେଲେ ମୋର କୌତୂହଳ ଦମନ କରନ୍ତୁ ।'

ତପସ୍ୱିନୀ ବିନମ୍ର ରାଜକୁମାରଙ୍କର କୌତୂହଳ ଦମନ ନିମନ୍ତେ କହିଲେ 'ସମୁଦ୍ରର ପର ପାରରେ କର୍ପୂରସମ୍ଭବ ନାମରେ ଏକ ଦ୍ୱୀପ ଅଛି । ସେଠାରେ ବିବିଧ ଗୁଣଶାଳୀ ରାଜା କର୍ପୂରକ ରାଜତ୍ୱ କରନ୍ତି । ତାଙ୍କରି କର୍ପୂରିକା ନାମରେ ଏକ ସୁନ୍ଦରୀ କନ୍ୟା ଅଛି । ସେ କନ୍ୟାର ସୌନ୍ଦର୍ଯ୍ୟ ଓ ରୂପରାଶି ଦର୍ଶନ କଲେ ମନେହୁଏ ପ୍ରଥମ କନ୍ୟାଟି (ଲକ୍ଷ୍ମୀ) ଦେବତାମାନଙ୍କଦ୍ୱାରା ଅପହୃତା ହେବାରୁ ବରୁଣ ଦ୍ୱିତୀୟ କନ୍ୟାଟିକୁ ଏହି ଦ୍ୱୀପ ମଧ୍ୟରେ ଗୁପ୍ତଭାବରେ ରଖିଅଛନ୍ତି । କର୍ପୂରିକା ପୁରୁଷଦ୍ୱେଷିନୀ; ତେଣୁ ସେ ବିବାହ କରିବାକୁ ଚାହେଁନାହିଁ; କିନ୍ତୁ ସେ ତୁମର କାମନା ପୂର୍ଣ୍ଣ କରିବ । ତୁମେ ସେଠାକୁ ଯାଇ ତାକୁ ବିବାହ କର । ଅବଶ୍ୟ ମାର୍ଗରେ ତୁମକୁ ବହୁ ଦୁଃଖକଷ୍ଟ ସହ୍ୟ କରିବାକୁ ପଡ଼ିବ । କିନ୍ତୁ ଏଥିରେ ତୁମେ ବିଚଳିତ ହେବା ଉଚିତ ନୁହେଁ; କାରଣ ପରିଣାମ ମଙ୍ଗଳମୟ ।' ଏହା କହି ତପସ୍ୱିନୀ ଅଦୃଶ୍ୟ ହୋଇଗଲେ ।

ତପସ୍ୱିନୀଙ୍କର ବାଣୀ କନ୍ଦର୍ପର ଦୁର୍ଲଂଘ୍ୟ ଆଦେଶ ତୁଲ୍ୟ ନରବାହନଦତ୍ତଙ୍କୁ କର୍ପୂରସମ୍ଭବ ନଗର ପ୍ରତି ଅଗ୍ରସର ହେବାପାଇଁ ଉତ୍କଣ୍ଠିତ କଲା । ସେ ଗୋମୁଖଙ୍କୁ କହିଲେ, 'ଆସ, ବର୍ତ୍ତମାନ ହିଁ କର୍ପୂରସମ୍ଭବ ନଗରରେ ବାସ କରୁଥିବା କର୍ପୂରିକା ନିକଟକୁ ଗମନ କରିବା । ତାହାର ସାକ୍ଷାତ ବିନା ମୋର ଜୀବନଧାରଣ ଅସମ୍ଭବ ମନେହେଉଛି ।' ସେଥିରୁ ଗୋମୁଖ ତାଙ୍କୁ ନିବୃତ୍ତ କରିବା ନିମିତ୍ତ କହିଲେ, 'ଦେବ, ଆପଣ ଏ ପ୍ରକାର

ସାହସ କରିବା ଅନୁଚିତ । କାହିଁ ସମୁଦ୍ର, କାହିଁ ସେ ନଗର, କେଉଁଠି ସେ କନ୍ୟା ଏବଂ କେଉଁଠି ଆପଣଙ୍କ ତୁଲ୍ୟ କୋମଳଶରୀର ରାଜପୁତ୍ର । କେବଳ ତାର ନାମ ଶ୍ରବଣ କରି ବିଦ୍ୟାଧର କୁଳ ସମ୍ଭୂତା ପତ୍ନୀମାନଙ୍କୁ ପରିତ୍ୟାଗ ପୂର୍ବକ ସେହି ମନୁଷ୍ୟ କନ୍ୟାର ଅନୁସନ୍ଧାନ କରିବା ପାଇଁ ଏ ପ୍ରକାର କଷ୍ଟ ସହ୍ୟ କରିବା ଉଚିତ ବୋଲି ମନେ ହେଉନାହିଁ ।'

କିନ୍ତୁ ନରବାହନଦତ୍ତଙ୍କ ମନ ଏଥିରେ ସାନ୍ତ୍ୱନା ଲାଭ କରିପାରିଲା ନାହିଁ । କର୍ପୂରିକାର କଳ୍ପିତ ସୌନ୍ଦର୍ଯ୍ୟ ତାଙ୍କର ଚିତ୍ତବୃତ୍ତିକୁ ବାରମ୍ବାର ବିଚଳିତ କରିବାକୁ ଲାଗିଲା । ସେ ଗୋମୁଖଙ୍କୁ କହିଲେ, 'ତପସ୍ୱିନୀଙ୍କର ବଚନ ଅନ୍ୟଥା ହେବାର ନୁହେ । ତେଣୁ ମୋତେ ନିଶ୍ଚୟ ସେଠାକୁ ଯିବାକୁ ପଡ଼ିବ ।' ଏହା କହି ସେ ଅଶ୍ୱାରୋହଣ ପୂର୍ବକ ଅଗ୍ରସର ହେବାକୁ ଲାଗିଲେ । ଯୁବରାଜଙ୍କର ଏପ୍ରକାର ଆଚରଣ ଦର୍ଶନ କରି ଗୋମୁଖ ନିଜର ଅନିଚ୍ଛାସତ୍ତ୍ୱେ ତାଙ୍କର ଅନୁସରଣ କରିବାକୁ ବାଧ୍ୟ ହେଲେ ।

ଉପଦେଶ ବାକ୍ୟ ଗ୍ରହଣ କରିବା ନିମନ୍ତେ କୁଣ୍ଠିତ ପ୍ରଭୁମାନଙ୍କର କାର୍ଯ୍ୟରେ ସହାୟତା କରିବା ବ୍ୟତୀତ ପ୍ରକୃତ ଭୃତ୍ୟର ଅନ୍ୟ ଗତି ନାହିଁ ।

ଅକୁର୍ବନ୍ ବଚନଂ ଭୃତ୍ୟୈରନୁଗମ୍ୟଃ ପରଂ ପ୍ରଭୁଃ ।

ଏଣେ ବତ୍ସରାଜ ଉଦୟନ ମୃଗୟା ଶେଷ କରି ସ୍ୱନଗରକୁ ପ୍ରତ୍ୟାବର୍ତ୍ତନ କଲେ । ସେ ଭାବିଥିଲେ ଯେ ନରବାହନଦତ୍ତ ମଧ୍ୟ ସୈନ୍ୟବାହିନୀ ସହିତ ଆସୁଅଛନ୍ତି । କିନ୍ତୁ ରାଜଭବନରେ ଉପସ୍ଥିତ ହୋଇ ସେ ଜାଣିବାକୁ ପାଇଲେ ଯୁବରାଜ ସେମାନଙ୍କ ସହିତ ଅରଣ୍ୟରୁ ଫେରିନାହାନ୍ତି । ବିଭିନ୍ନ ଦିଗରେ ତାଙ୍କର ଅନୁସନ୍ଧାନ କରି ନିରସ୍ତ ହୁଅନ୍ତେ ସେ ରତ୍ନପ୍ରଭାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ ।

ପ୍ରଥମେ ରତ୍ନପ୍ରଭା ପ୍ରିୟତମ ପତିଙ୍କର ଏ ପ୍ରକାର ସମ୍ବାଦ ଲାଭକରି ବ୍ୟାକୁଳ ହୋଇ ଉଠିଲେ । କିନ୍ତୁ ପରେ ନିଜର ବିଦ୍ୟା ପ୍ରଭାବରେ ସମସ୍ତ ବୃତ୍ତାନ୍ତ ଜ୍ଞାତ ହୋଇ ବତ୍ସରାଜଙ୍କୁ କହିଲେ, ''ଅରଣ୍ୟ ମଧ୍ୟରେ କୌଣସି ତପସ୍ୱିନୀଠାରୁ କର୍ପୂରିକା ନାମ୍ନୀ ରାଜକୁମାରୀଙ୍କର ସମ୍ବାଦ ଲାଭକରି ଆର୍ଯ୍ୟପୁତ୍ର କର୍ପୂରସମ୍ଭବ ନାମକ ନଗରକୁ ଯାଉଅଛନ୍ତି । ତେଣୁ ଆପଣ ତାଙ୍କପାଇଁ ଅଧିକ ଚିନ୍ତିତ ହେବା ଅନୁଚିତ । ମୁଁ ମୋର ବିଦ୍ୟା ପ୍ରଭାବରେ ତାଙ୍କର ସମସ୍ତ ଗତିବିଧି ଜାଣିପାରିଅଛି ।'' ଏ ପ୍ରକାର ସମ୍ବାଦ ପ୍ରଦାନ କରି ରତ୍ନପ୍ରଭା ବତ୍ସରାଜ ଓ ବାସବଦତ୍ତାଙ୍କୁ ସାନ୍ତ୍ୱନା ପ୍ରଦାନ କଲେ । ସେ ଅନ୍ୟ ଏକ ବିଦ୍ୟା ପ୍ରୟୋଗ କରି ମାର୍ଗ ମଧ୍ୟରେ ନରବାହନଦତ୍ତଙ୍କର ଯେପରି କୌଣସି ବିଘ୍ନ ସଂଘଟିତ ନ ହୁଏ ତାର ମଧ୍ୟ ଉପାୟ କଲେ ।

ପତିବ୍ରତା ନାରୀମାନେ ପତିଙ୍କୁ ଅନ୍ୟ ନାରୀପ୍ରତି ଆକୃଷ୍ଟ ହେବା ଦେଖି ମନରେ ଈର୍ଷାଭାବ ପୋଷଣ କରିନଥାନ୍ତି ।

**ନେର୍ଷ୍ୟାଂ ଭର୍ତ୍ତୃହିତୈଷିଣ୍ୟୋ ଗଣୟନ୍ତି ହି ସୁସ୍ତ୍ରିୟଃ ।**

ଏଣେ ଅଶ୍ୱପୃଷ୍ଠରେ ନରବାହନଦତ୍ତ ଓ ଗୋମୁଖ ବହୁଦୂର ପଥ ଅତିକ୍ରମ କରିଗଲେ । ମାର୍ଗ ମଧ୍ୟରେ ହଠାତ୍ ଏକ କୁମାରୀ ଆସି ତାଙ୍କୁ କହିଲା, 'ମହାରାଜ, ମୁଁ ମାୟାବତୀ ନାମକ କନ୍ୟା । ରତ୍ନପ୍ରଭାଙ୍କ ଦ୍ୱାରା ପ୍ରେରିତ ହୋଇ ଆପଣଙ୍କର ନିର୍ବିଘ୍ନ ଯାତ୍ରାରେ ସହାୟତା କରିବା ନିମିତ୍ତ ଏଠାରେ ଆସି ଉପସ୍ଥିତ ହୋଇଅଛି । ଆପଣ ନିଃଶଙ୍କ ଚିତ୍ତରେ ଅଗ୍ରସର ହୁଅନ୍ତୁ । ଅଦୃଶ୍ୟ ରୂପରେ ରହି ମୁଁ ଆପଣଙ୍କର ସମସ୍ତ ବିଘ୍ନରାଶିକୁ ଦୂର କରିବା ପାଇଁ ଚେଷ୍ଟା କରୁଅଛି ।' ଏହା କହି ମାୟାବତୀ ଅଦୃଶ୍ୟ ହୋଇଗଲା । ଉକ୍ତ ବିଦ୍ୟା ପ୍ରଭାବରେ ଯୁବରାଜ ଓ ଗୋମୁଖ କ୍ଷୁଧା ଓ ତୃଷା ରହିତ ହୋଇ ରତ୍ନପ୍ରଭାଙ୍କର ଗୁଣଗାନ କରି କରି ଅଗ୍ରସର ହେବାକୁ ଲାଗିଲେ ।

କିଛିଦୂର ଅଗ୍ରସର ହେବା ପରେ ସୂର୍ଯ୍ୟ ଅସ୍ତମିତ ହେଲେ । ଅନ୍ଧକାର ମାଡ଼ି ଆସୁଥିବା ଦେଖି ଉଭୟେ କୌଣସି ଏକ ସରୋବର ନିକଟରେ ରାତ୍ରିଯାପନ କରିବା ନିମନ୍ତେ ବିଶ୍ରାମ ନେଲେ । ସରୋବରର ନିର୍ମଳ ଜଳରେ ସ୍ନାନ କରି ଏବଂ ନିକଟସ୍ଥ ବୃକ୍ଷରୁ ସୁମିଷ୍ଟ ଫଳ ଆସ୍ୱାଦନ କରି ସେମାନେ କ୍ଳାନ୍ତି ଅପନୋଦନ କଲେ । ଅଶ୍ୱ ଦୁଇଟିକୁ କିଛି ଆହାର ପ୍ରଦାନ ପୂର୍ବକ କୌଣସି ଏକ ବୃକ୍ଷରେ ବନ୍ଧନ କରି ସେମାନେ ସେହି ବୃକ୍ଷର ଉଚ୍ଚଶାଖାରେ ଯାଇ ଶୟନ କଲେ ।

ହଠାତ୍ ଘୋଟକ ଦୁଇଟିର ଭୀତିପୂର୍ଣ୍ଣ ଚିତ୍କାରରେ ସେମାନଙ୍କର ନିଦ୍ରା ଭଙ୍ଗହେଲା । ଦେଖିଲେ ଏକ ହିଂସ୍ର ସିଂହ ଅଶ୍ୱ ଦୁଇଟିକୁ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ । ଏଥିରେ ବିବ୍ରତ ହୋଇ ଯୁବରାଜ ବୃକ୍ଷରୁ ଅବତରଣ କରିବାକୁ ଯାଉଥିବା ବେଳେ ଗୋମୁଖ ତାଙ୍କୁ ସେଥିରୁ ନିବୃତ୍ତ କରି କହିଲେ 'ଆପଣ ମୋର ବିନାନୁମତିରେ ନିଜର ଶରୀର ରକ୍ଷା ପ୍ରତି ଭ୍ରୂକ୍ଷେପ ନକରି ଅବତରଣ କରି ଯାଉଛନ୍ତି । କିନ୍ତୁ ଆପଣ ଜାଣିରଖିବା ଉଚିତ, ରାଜାଙ୍କର ଶରୀର ଏବଂ ରାଜାର ମନ୍ତ୍ରୀ ସର୍ବଦା ରକ୍ଷଣୀୟ । ଆପଣ ମନୁଷ୍ୟ ହୋଇ ମଧ୍ୟ ଏହି ହିଂସ୍ର ପଶୁ ସହିତ ଯୁଦ୍ଧ କରିବାପାଇଁ କିପରି ସାହସୀ ହେଉଅଛନ୍ତି ? ଶରୀର ରକ୍ଷା ନିମିତ୍ତ ପରା ଆମ୍ଭେମାନେ ଏହି ବିଶାଳ ବୃକ୍ଷ ଆରୋହଣ କରିଅଛୁଁ ।' ଗୋମୁଖଙ୍କ ଏ ପ୍ରକାର ଉପଦେଶ ଶ୍ରବଣ କରି ଯୁବରାଜ ସେଥିରୁ କ୍ଷାନ୍ତ ହେଲେ ଏବଂ ଗୋଟିଏ ଅଶ୍ୱକୁ ଆହାର କରିବା ପାଇଁ ଉଦ୍ୟତ ହେଉଥିବା ସିଂହପ୍ରତି ଏକ ତୀକ୍ଷ୍ଣ ଛୁରିକା ନିକ୍ଷେପ

କଲେ । କିନ୍ତୁ ପଶୁଟିର ଏଥିରେ କୌଣସି କ୍ଷତି ହେଲାନାହିଁ । ସେ ଗୋଟିଏ ଅଶ୍ୱକୁ ନିଃଶେଷ କରି ଅନ୍ୟଟିକୁ ଆକ୍ରମଣ କଲା । ଏ ସମୟରେ ନରବାହନଦତ୍ତ ଗୋମୁଖଙ୍କଠାରୁ ତରବାରି ନେଇ ସିଂହଟି ପ୍ରତି ନିକ୍ଷେପ କଲେ । ଏହି ଆଘାତ ସିଂହଟିକୁ ମୃତ୍ୟୁ ମୁଖକୁ ଟାଣିନେଲା । କିନ୍ତୁ ଏତିକିବେଳକୁ ଦ୍ୱିତୀୟ ଅଶ୍ୱଟିର ମଧ ପଞ୍ଚତ୍ୱ ପ୍ରାପ୍ତି ହୋଇଯାଇଥାଏ ।

ଏହାପରେ ସେମାନେ ନିର୍ବିଘ୍ନରେ ରାତ୍ରିଯାପନ କରି ପ୍ରଭାତରେ ବୃକ୍ଷଶାଖାରୁ ଅବତରଣ କଲେ । ନିତ୍ୟକର୍ମ ସମାପନ ପୂର୍ବକ ଉଭୟେ ପଦବ୍ରଜରେ କର୍ପୂରସମ୍ଭବ ନଗର ପ୍ରତି ଅଗ୍ରସର ହେଉଥିବା ବେଳେ ଗୋମୁଖ ନରବାହନଦତ୍ତଙ୍କର ମନୋରଞ୍ଜନ ନିମିତ୍ତ ଏକ ବିଚିତ୍ର ଗଳ୍ପ କହିବା ଆରମ୍ଭ କଲେ–

## ଇନ୍ଦିବରସେନ ଓ ଅନିଚ୍ଛାସେନ କଥା

'ପୃଥିବୀ ପୃଷ୍ଠରେ ଐରାବତୀ ନାମକ ଏକ ନଗରୀ ଅଛି । ଉକ୍ତ ନଗରୀର ଶୋଭା ଓ ସମ୍ପଦ କୁବେରପୁରୀକୁ ମଧ ପରାସ୍ତ କରୁଥିବା ପରି ମନେହୁଏ । ପୂର୍ବକାଳରେ ପରିତ୍ୟାଗ ସେନ ନାମକ ଜଣେ ବିକ୍ରମଶାଳୀ ରାଜା ସେହି ନଗରୀରେ ରାଜତ୍ୱ କରୁଥିଲେ । ତାଙ୍କର ଦୁଇଜଣ ରାଣୀଙ୍କ ମଧରୁ ଅଧିକସଙ୍ଗମା ଥିଲେ ସେହି ରାଜ୍ୟର ମନ୍ତ୍ରୀଙ୍କ କନ୍ୟା ଏବଂ ଦ୍ୱିତୀୟା କାବ୍ୟାଳଙ୍କାରା କୌଣସି ରାଜପରିବାରସମ୍ଭୂତା ।

ରାଜା ବହୁଦିନ ଧରି ପୁତ୍ର ସନ୍ତାନ ଲାଭ ନକରି ରାଣୀମାନଙ୍କ ସହିତ ଦେବୀ ଅମ୍ବିକାଙ୍କର ଉପାସନା କରୁଥାଆନ୍ତି । କୁଶଶଯ୍ୟାରେ ଶୟନ କରି ଏବଂ ବହୁଦିନ ଉପବାସ ରହି ଭବାନୀଙ୍କର ଆରାଧନା କରନ୍ତେ ଭକ୍ତବତ୍ସଳା ସ୍ୱପ୍ନରେ ଦର୍ଶନ ଦେଇ ଦୁଇଟି ଫଳ ପ୍ରଦାନ ପୂର୍ବକ ରାଜାଙ୍କୁ କହିଲେ, 'ବତ୍ସ, ଏ ଦୁଇଟି ଫଳ ଦୁଇଜଣ ରାଣୀଙ୍କୁ ଖାଇବାକୁ ଦେ । ଏହାର ପ୍ରଭାବରେ ତୋର ଦୁଇଟି ପୁତ୍ର ସନ୍ତାନ ଲାଭହେବ ।' ଏହା କହି ଦେବୀ ଅନ୍ତର୍ହିତା ହୁଅନ୍ତେ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ପରିତ୍ୟାଗ କରି ରାଜା ଦେଖିଲେ ତାଙ୍କର ଉଭୟ ହସ୍ତରେ ଦୁଇଟି ସୁମିଷ୍ଟ ଫଳ ବିଦ୍ୟମାନ ଅଛି । ଏହାଦେଖି ରାଜା ପ୍ରସନ୍ନ ଚିତ୍ତରେ ରାଣୀମାନଙ୍କୁ ସ୍ୱପ୍ନ ସମାଚାର କହି ସେମାନଙ୍କ ସହିତ ବ୍ରତ ପାରଣା କଲେ ।

ଉକ୍ତଦିନ ରଜନୀରେ ରାଜା ଅଧିକସଙ୍ଗମା ନାମ୍ନୀ ରାଣୀଙ୍କ ଅନ୍ତଃପୁରକୁ ଯାଇ ତାଙ୍କୁ ଗୋଟିଏ ଫଳ ପ୍ରଦାନ କଲେ । ରାଜ୍ୟର ମୁଖ୍ୟ ମନ୍ତ୍ରୀଙ୍କ କନ୍ୟା ଥିବା ଯୋଗୁଁ ରାଜା ପ୍ରଥମ ରାତ୍ରିଟି ତାଙ୍କ ସହିତ ବିତାଇ ଦେଲେ ଏବଂ ଦ୍ୱିତୀୟ ରାଣୀଙ୍କ ନିମନ୍ତେ ଥିବା ଅନ୍ୟ ଫଳଟିକୁ ଉପାଧାନ ତଳେ ରଖି ସେଠାରେ ଶୟନ କଲେ । ରାଜା ସୁଷୁପ୍ତି ଲାଭ କରିବା ପରେ ରାଣୀ ଅଧିକସଙ୍ଗମା ଜାଗ୍ରତ ହୋଇ ଏକ ସଙ୍ଗେ ଦୁଇଟି ସମାନ

ପୁତ୍ର ଲାଭ କରିବା ନିମନ୍ତେ ଦ୍ୱିତୀୟ ଫଳଟିକୁ ମଧ ଭକ୍ଷଣ କଲେ । ନାରୀମାନଙ୍କର ସପତ୍ନୀପ୍ରତି ବିଦ୍ୱେଷ ସ୍ୱାଭାବିକ ।

**ନିସର୍ଗସିଦ୍ଧୋ ନାରୀଣାଂ ସପତ୍ନୀଷୁ ହି ମତ୍ସରଃ ।**

ରାଜା ପ୍ରଭାତରୁ ଶଯ୍ୟା ତ୍ୟାଗକରି ଫଳଟିର ଅନୁସନ୍ଧାନ କରନ୍ତେ ରାଣୀ ନିଜେ ତାହା ଭକ୍ଷଣ କରିଥିବା କଥା ପ୍ରକାଶ କଲେ । ଏଥିରେ ଦୁଃଖିତମନା ପରିତ୍ୟାଗସେନ ସମଗ୍ର ଦିବସ ରାଜକାର୍ଯ୍ୟରେ ବ୍ୟସ୍ତରହି ରାତ୍ରିରେ ଦ୍ୱିତୀୟା ରାଣୀଙ୍କ ଭବନରେ ଯାଇ ଉପସ୍ଥିତ ହେଲେ । ରାଣୀ ଦ୍ୱିତୀୟ ଫଳଟି ନିମିତ୍ତ କରପ୍ରସାରଣ କରନ୍ତେ ରାଜା ଦୁଃଖର ସହିତ ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ ବ୍ୟକ୍ତ କଲେ । ଏଥିରେ କାବ୍ୟାଳଙ୍କାରା ପୁତ୍ର ଉତ୍ପତ୍ତିର କାରଣଭୂତ ଫଳଟି ଲାଭ ନକରି ଅତ୍ୟନ୍ତ ଦୁଃଖରେ କେବଳ ମୌନ ରହିଲେ ।

କିଛି ଦିନ ବିତିଗଲା । ରାଣୀ ଅଧିକସଙ୍ଗମା ଗର୍ଭଧାରଣ କରି ଦଶମ ମାସ ଶେଷରେ ଦୁଇଟି ପୁତ୍ର ପ୍ରସବ କଲେ । ରାଜା ମଧ ନିଜର ମନୋରଥ ସଫଳ ହୋଇଥିବା ଦେଖି ରାଜ୍ୟରେ ବିବିଧ ଉତ୍ସବ ପାଳନ କଲେ । ଜ୍ୟେଷ୍ଠ ପୁତ୍ରର ବିକଚ କମଳ ତୁଲ୍ୟ ନୟନ ଯୁଗଳ ଏବଂ ଅନିନ୍ଦ୍ୟ ଶାରୀରିକ ସୌନ୍ଦର୍ଯ୍ୟ ଦର୍ଶନ କରି ରାଜା ତାର ନାମକରଣ କଲେ ଇନ୍ଦିବରସେନ । ରାଜାଙ୍କର ଅନିଚ୍ଛାସତ୍ତ୍ୱେ ରାଣୀ ଦ୍ୱିତୀୟ ଫଳଟି ଭକ୍ଷଣ କରି ଦ୍ୱିତୀୟ ପୁତ୍ରଟିକୁ ଜନ୍ମ ଦେଇଥିବା ଯୋଗୁଁ ତାର ନାମକରଣ କରାଗଲା ଅନିଚ୍ଛାସେନ ।

ଏ ସବୁ ଦେଖି ରାଜାଙ୍କର ଦ୍ୱିତୀୟା ରାଣୀ କାବ୍ୟାଳଙ୍କାରା ଈର୍ଷ୍ୟା ଓ କ୍ରୋଧରେ ଜର୍ଜ୍ଜରିତା ହୋଇ ଚିନ୍ତାକଲେ 'ମୋର ଏହି ସପତ୍ନୀ ମୋତେ ପୁତ୍ର ଲାଭରୁ ବଞ୍ଚିତା କରିଅଛି । ଏଣୁ ଏହାର ପ୍ରତିଶୋଧ ନେବା ମୋ ପକ୍ଷରେ ଏକାନ୍ତ ଉଚିତ । ଏ ଉଭୟ ସନ୍ତାନର ବିନାଶ ସାଧନ କଲେ କେବଳ ମୋର ଅନ୍ତରାତ୍ମା ତୃପ୍ତିଲାଭ କରିବ ।' ଏହିପରି ଚିନ୍ତାକରି ସେ ସୁଯୋଗର ପ୍ରତୀକ୍ଷା କରିବାକୁ ଲାଗିଲେ । ଉଭୟ ସନ୍ତାନ କ୍ରମଶଃ ବୃଦ୍ଧି ଲାଭ କରିବା ସଙ୍ଗେ ସଙ୍ଗେ ରାଣୀଙ୍କର କ୍ରୋଧ ମଧ କ୍ରମଶଃ ବଢ଼ିବାକୁ ଲାଗିଲା ।

ଯୌବନରେ ପଦାର୍ପଣ କରି ଶକ୍ତିଶାଳୀ ଉଭୟ ରାଜକୁମାର ଦିଗ୍‌ବିଜୟ କରିବା ନିମନ୍ତେ ଅଭିଳାଷ ପୋଷଣ ପୂର୍ବକ ରାଜାଙ୍କ ନିକଟକୁ ଯାଇ କହିଲେ 'ମହାରାଜ, ଆମ୍ଭେମାନେ ସମସ୍ତ ଧନୁର୍ବେଦ ଅଧ୍ୟୟନ କରିସାରିଅଛୁ । ଯୌବନାବସ୍ଥାରେ ଏହାର ପରୀକ୍ଷା ନକଲେ ଏହା ବ୍ୟର୍ଥ ହେବ । ରାଜ୍ୟ ଜୟର ଅଭିଳାଷ ପୋଷଣ କରୁନଥିବା କ୍ଷତ୍ରିୟମାନଙ୍କର ଭୁଜବଳ ଓ ଯୌବନ ବ୍ୟର୍ଥ । ତେଣୁ ଆମ୍ଭମାନଙ୍କୁ ଦିଗ୍‌ବିଜୟ ଯାତ୍ରାର ଅନୁକୂଳ ନିମନ୍ତେ ଅନୁମତି ପ୍ରଦାନ କରନ୍ତୁ ।'

ରାଜକୁମାରମାନଙ୍କର ଏ ପ୍ରକାର କ୍ଷତ୍ରିୟୋଚିତ ଆକାଂକ୍ଷା ଦେଖି ପିତା ପରିତ୍ୟାଗସେନ ଯଥେଷ୍ଟ ଆନନ୍ଦଲାଭ କଲେ । ପୁତ୍ରମାନଙ୍କର ସାହାଯ୍ୟ ନିମିତ୍ତ ସମସ୍ତ ଆବଶ୍ୟକୀୟ ସୈନ୍ୟ ଓ ସାମଗ୍ରୀ ପ୍ରସ୍ତୁତ କରି ସେ ସେମାନଙ୍କୁ କହିଲେ, ''ତୁମ୍ଭେମାନେ ଭଗବତୀ ପାର୍ବତୀଙ୍କ ଆଶୀର୍ବାଦରୁ ଜନ୍ମ ଲାଭ କରିଅଛ । ଏଣୁ ଯଦି ପଥ ମଧ୍ୟରେ କୌଣସି ବିଘ୍ନର ସମ୍ମୁଖୀନ ହୁଅ, ତେବେ ଭଗବତୀଙ୍କୁ ସ୍ମରଣ କଲେ ସେ ତୁମର ସମସ୍ତ ବିଘ୍ନ ଦୂର କରିବେ ।''

ଏହିପ୍ରକାର ଉପଦେଶ ପ୍ରଦାନ କରି ରାଜା ସୈନ୍ୟବାହିନୀ ସହ ରାଜକୁମାରମାନଙ୍କୁ ବିଦାୟ ଦେଲେ । ରାଜ୍ୟର ବୃଦ୍ଧ ପ୍ରଧାନମନ୍ତ୍ରୀ ତଥା ରାଜକୁମାରମାନଙ୍କର ମାତାମହ ମଧ୍ୟ ଉପଦେଶ ଓ ପରାମର୍ଶ ଦେବା ନିମିତ୍ତ ସେମାନଙ୍କ ସହିତ ପ୍ରେରିତ ହେଲେ । ମାତା ଅଧିକସଙ୍ଗମା ମଧ୍ୟ ପୁତ୍ରମାନଙ୍କ ମଙ୍ଗଳ କାମନା କରି ଦେବଉପାସନା ପ୍ରଭୃତି ଶୁଭକାର୍ଯ୍ୟ ସମ୍ପାଦନ କରିବାକୁ ଲାଗିଲେ ।

ପ୍ରଥମେ ପୂର୍ବ ଦିଗର ସମସ୍ତ ରାଜାଙ୍କୁ ଜୟକରି ଅପ୍ରତିହତଶକ୍ତି ରାଜକୁମାରମାନେ ବିଜିତ ରାଜାମାନଙ୍କ ସହିତ ଦକ୍ଷିଣ ଦିଗ ପ୍ରତି ଅଗ୍ରସର ହେଲେ । ପୁତ୍ରମାନଙ୍କର ଏ ପ୍ରକାର ଗୌରବ ପିତାମାତାଙ୍କୁ ଯଥେଷ୍ଟ ଆନନ୍ଦିତ କଲା । କିନ୍ତୁ ବିମାତା କାବ୍ୟାଲଙ୍କାରା ଈର୍ଷ୍ୟାରେ ଜଳି ଉଠିଲେ । ସେ ରାଜାଙ୍କ ମୋହର ଥିବା ଏକ ଆଜ୍ଞା ପତ୍ରିକା କୌଣସି କାୟସ୍ଥ ସାହାଯ୍ୟରେ ଲେଖାଇ ନେଲେ ଏବଂ ଅର୍ଥ ବଳରେ ବଶୀଭୂତ କରି କୌଣସି ରାଜଦୂତଦ୍ୱାରା ତାହା ରାଜପୁତ୍ରମାନଙ୍କ ସେନାବାହିନୀର ସାନ୍ଧିବିଗ୍ରହିକଙ୍କ (ମୁଖ୍ୟ ସେନାପତି) ନିକଟକୁ ଗୁପ୍ତଭାବରେ ପ୍ରେରଣ କଲେ । ଏଥିରେ ଲେଖାଥିଲା, ''ମୋର ପୁତ୍ରମାନେ ସମଗ୍ର ପୃଥିବୀ ଜୟ କରିବା ପରେ ମୋତେ ହତ୍ୟାକରି ମୋର ରାଜ୍ୟ ଅଧିକାର କରିବା ପାଇଁ ନିଶ୍ଚୟ କରିଅଛନ୍ତି । ତେଣୁ ତୁମେ ଯଦି ମୋର ପ୍ରକୃତ ସ୍ନେହୀ ଓ ଭକ୍ତ ହୋଇଥାଅ, ତାହାହେଲେ ବିନା ବିଚାରରେ ଏ ଉଭୟଙ୍କୁ ହତ୍ୟା କିରବ ।''

ଏହି ପତ୍ରନେଇ ଦୂତ ସେନାପତିଙ୍କୁ ପ୍ରଦାନ କଲା । ସେ ଅନ୍ୟମାନଙ୍କ ସହିତ ବିଚାର କରି ଏବଂ ରାଜନୀତି ଅତ୍ୟନ୍ତ କଠୋର ବୋଲି ଜାଣି ରାଜାଙ୍କର ଆଦେଶ ଉକ୍ତ ରାତ୍ରିରେ ପାଳନ କରିବା ନିମିତ୍ତ ନିଶ୍ଚୟ କଲେ । ସେନାପତିମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ପ୍ରଧାନମନ୍ତ୍ରୀଙ୍କର ଘନିଷ୍ଠ ବନ୍ଧୁ । ସେ ଚକ୍ରାନ୍ତର ଆଶଙ୍କା କରି ବନ୍ଧୁଙ୍କ ନିକଟରେ ଏ ରହସ୍ୟ ପ୍ରକାଶ କଲେ । ଏହାର ସୂଚନା ପାଇବା ମାତ୍ରେ ମାତାମହ ତଥା ମନ୍ତ୍ରୀ ଉଭୟ ରାଜପୁତ୍ରଙ୍କୁ ସଙ୍ଗରେ ନେଇ ବେଗଗାମୀ ଅଶ୍ୱପୃଷ୍ଠରେ ଶିବିରରୁ ପଳାୟନ କଲେ । ବହୁଦୂର ପଥ

ଅତିକ୍ରମ କରିଯିବା ପରେ ସେମାନେ ପଥଭ୍ରଷ୍ଟ ହୋଇ ବିନ୍ଧ୍ୟାରଣ୍ୟ ମଧ୍ୟରେ ପ୍ରବେଶ କଲେ । ମଧ୍ୟାହ୍ନର ପ୍ରଖର ସୂର୍ଯ୍ୟ କିରଣ ଏବଂ କ୍ଷୁଧା ଓ ତୃଷାରେ ବ୍ୟାକୁଳ ଅଶ୍ୱଗୁଡ଼ିକର ମୃତ୍ୟୁହେଲା ଏବଂ ଅତ୍ୟନ୍ତ ପଥକ୍ଳାନ୍ତି ସହ୍ୟ କରିନପାରି ବୃଦ୍ଧ ପ୍ରଧାନ ମନ୍ତ୍ରୀଙ୍କର ମଧ୍ୟ ସ୍ୱର୍ଗ ପ୍ରାପ୍ତି ହେଲା ।

'ପିତା ନିଜର କନିଷ୍ଠାରାଣୀଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ଆମ୍ଭମାନଙ୍କୁ ଏ ପ୍ରକାର କଷ୍ଟପ୍ରଦାନ କରିଅଛନ୍ତି' ବୋଲି ଚିନ୍ତାକରି ଉଭୟ ରାଜକୁମାର ଅରଣ୍ୟ ମଧ୍ୟରେ ଇତସ୍ତତଃ ବିଚରଣ କରିବାକୁ ଲାଗିଲେ । ହଠାତ୍ ପିତାଙ୍କର ପୂର୍ବଉପଦେଶ ସ୍ମରଣ ହେବାରୁ ସେମାନେ ଭଗବତୀ ଅମ୍ବିକାଙ୍କୁ ଧ୍ୟାନ କଲେ । ଭକ୍ତବତ୍ସଳା ପାର୍ବତୀଙ୍କୁ ସ୍ମରଣ ମାତ୍ରେ ଉଭୟଙ୍କର କ୍ଷୁଧା ତୃଷା ଦୂରୀଭୂତ ହେଲା; ସେମାନେ ଅପୂର୍ବ ଶକ୍ତି ଲାଭକଲେ । ସେମାନଙ୍କ ପ୍ରତି ଭଗବତୀଙ୍କର ଏ ପ୍ରକାର କୃପାଦୃଷ୍ଟି ଥିବା ଅନୁଭବ କରି ପଥଭ୍ରଷ୍ଟ ହେଲେ ସୁଦ୍ଧା ସେମାନେ ଦେବୀ ବିନ୍ଧ୍ୟବାସିନୀଙ୍କ ମନ୍ଦିର ଅଭିମୁଖରେ ଅଗ୍ରସର ହେଲେ ।

କିଛିଦିନ ମଧ୍ୟରେ ଉଭୟ ରାଜକୁମାର ଯାଇ ବିନ୍ଧ୍ୟବାସିନୀଙ୍କ ଦେବାଳୟରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ କଠୋର ତପସ୍ୟା ଅବଲମ୍ବନ କଲେ ।

ଏଣେ ସେନାପତି ରାଜକୁମାରମାନଙ୍କୁ ହତ୍ୟା କରିବା ପାଇଁ ଶିବିର ନିକଟକୁ ଆସି ଦେଖିଲେ ଯେ ସେମାନେ ପୂର୍ବରୁ ସେଠାରୁ ପଳାୟନ କରି ଅଛନ୍ତି । ଚତୁର୍ଦ୍ଦିଗରେ ଅନୁସନ୍ଧାନ କରି ସେମାନେ ଶେଷରେ ବୃଦ୍ଧ ମନ୍ତ୍ରୀଙ୍କ ସହିତ ରାଜକୁମାରମାନଙ୍କର ପଳାୟନରେ ନିଶ୍ଚିତ ହେଲେ । ରାଜାଙ୍କର ଗୁପ୍ତପତ୍ର ପ୍ରକଟିତ ହେଲା । ତେଣୁ ସେନାପତିମାନେ ଭୟଭୀତ ହୋଇ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ରାଜାଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ଜ୍ଞାପନ କଲେ । ରାଜା ଏସବୁ ଶୁଣି କ୍ରୋଧ ଓ ଦୁଃଖରେ ଅଧୀର ହୋଇ କହିଲେ, 'ଏ ପତ୍ର ମୋଦ୍ୱାରା ଲେଖାଯାଇ ନାହିଁ । ମୋତେ ଏସବୁ ଇନ୍ଦ୍ରଜାଲପରି ବୋଧ ହେଉଅଛି । ତୁମେମାନେ ଏତିକି ଚିନ୍ତାକରି ପାରିଲ ନାହିଁ ଯେ କଠୋର ତପସ୍ୟା କରି ଲାଭ କରିଥିବା ପୁତ୍ରମାନଙ୍କୁ ମୁଁ କିପରି ସ୍ୱହସ୍ତରେ ହତ୍ୟା କରିବି ? ତୁମ୍ଭେମାନେ ତ ସେମାନଙ୍କୁ ହତ୍ୟା କରିଥିଲ ! କେବଳ ନିଜର ପୁଣ୍ୟ ପ୍ରଭାବରୁ ସେମାନେ ତୁମ କବଳରୁ ମୁକ୍ତିଲାଭ କରିଅଛନ୍ତି । ସେମାନଙ୍କର ପିତାମହ ମଧ୍ୟ ନିଜର ମନ୍ତ୍ରିତ୍ୱ ସାର୍ଥକ କରି ଅଛନ୍ତି ।' ଏହା କହି ରାଜା ସମସ୍ତ ସେନାପତି ତଥା ମିଥ୍ୟା ଲେଖନକାରଙ୍କୁ ଗୋଟି ଗୋଟି କରି ହତ୍ୟାକଲେ ଏବଂ ଏ ପ୍ରକାର ନୀଚକାର୍ଯ୍ୟ କରିଥିବା ପୁତ୍ରଘାତିନୀ ପତ୍ନୀ କାବ୍ୟାଳଙ୍କାରାଙ୍କୁ ମଧ୍ୟ ଭୂଗର୍ଭରେ ନିକ୍ଷେପ କଲେ ।

ଦ୍ୱେଷ ଓ କ୍ରୋଧରେ ଅନ୍ଧୀଭୂତ ହୋଇ ଯେଉଁମାନେ କୁକର୍ମ କରନ୍ତି, ସେମାନଙ୍କର ଶେଷଗତି ଏହାହିଁ ହୋଇଥାଏ ।

**ଅବିଚାର୍ଯ୍ୟ ତୁ ପର୍ଯ୍ୟନ୍ତମତିଦ୍ୱେଷାନ୍ଧୟା ଧିୟା**
**ସହସା ହି କୃତଂ ପାପଂ କଥଂ ମାଭୂଦ୍‌ବିପତ୍ତୟେ ।**

ରାଜା ପରିତ୍ୟାଗସେନ ରାଜକୁମାରମାନଙ୍କ ସହିତ ଯାଇଥିବା ସମସ୍ତ ସେନା ଓ ପରିଚାରକଙ୍କୁ ବହିଷ୍କାର କରି ସେମାନଙ୍କ ସ୍ଥାନରେ ଅନ୍ୟମାନଙ୍କୁ ନିଯୁକ୍ତି ଦେଲେ । ଏହାପରେ ରାଜା ଓ ରାଣୀ ପୁତ୍ରମାନଙ୍କର ନିର୍ବିଘ୍ନ ପ୍ରତ୍ୟାବର୍ତ୍ତନ ନିମିତ୍ତ ଦେବୀ ଅମ୍ବିକାର ଧ୍ୟାନରେ ନିମଜ୍ଜିତ ରହି ଏବଂ ସେମାନଙ୍କର ଅନୁସନ୍ଧାନ ନିମିତ୍ତ ଚତୁର୍ଦିଗକୁ ଦୂତ ପ୍ରେରଣ କରି ଅତି ଦୁଃଖରେ କାଳଯାପନ କରିବାକୁ ଲାଗିଲେ ।

ଏଣେ ରାଜକୁମାର ଇନ୍ଦିବରସେନ କନିଷ୍ଠ ଭ୍ରାତାଙ୍କ ସହିତ ବିନ୍ଧ୍ୟବାସିନୀଙ୍କର ଆରାଧନା କରୁଥାଆନ୍ତି । ଦେବୀ ସେମାନଙ୍କ କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱପ୍ନରେ ଏକ ଖଡ୍‌ଗ ପ୍ରଦାନ କରି କହିଲେ, "ତୁମ୍ଭେମାନେ ଏହି ଖଡ୍‌ଗ ପ୍ରଭାବରେ ସମସ୍ତ ଦୁର୍ଜୟ ଶତ୍ରୁଙ୍କୁ ପରାସ୍ତ କରିପାରିବ । ଏହାକୁ ଧାରଣ କରି ତୁମେ ଯାହା ଅଭିଳାଷ କରିବ ତାହା ସଙ୍ଗେ ସଙ୍ଗେ ପରିପୂର୍ଣ୍ଣ ହେବ । କେବଳ ସେତିକି ନୁହେଁ, ଏହାଦ୍ୱାରା ତୁମ୍ଭେମାନେ ଇଷ୍ଟସିଦ୍ଧି ମଧ୍ୟ ଲାଭକରି ପାରିବ ।" ଏ ପ୍ରକାର ବର ପ୍ରଦାନ କରି ଦେବୀ ଅନ୍ତର୍ହିତା ହୁଅନ୍ତେ ଇନ୍ଦିବରସେନ ନିଦ୍ରାତ୍ୟାଗ କରି ଦେଖିଲେ ତାଙ୍କ ହସ୍ତରେ ଏକ ବିଶାଳ ତରବାରି ବିଦ୍ୟମାନ । ସ୍ୱପ୍ନ ସମାଚାର କନିଷ୍ଠ ଭ୍ରାତାଙ୍କଠାରେ ପ୍ରକାଶ କରି ସେ ପ୍ରସନ୍ନ ଚିତ୍ତରେ ଅରଣ୍ୟ ମଧ୍ୟରୁ ସୁମିଷ୍ଟ ଫଳ ସଂଗ୍ରହ ପୂର୍ବକ ବ୍ରତ ପାରଣା କଲେ ।

ଏହାପରେ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଇନ୍ଦିବରସେନ ଖଡ୍‌ଗ ଧାରଣ ପୂର୍ବକ ଭ୍ରାତା ଅନିଚ୍ଛାସେନଙ୍କ ସହିତ ସେଠାରୁ ପ୍ରସ୍ଥାନ କଲେ । ବହୁଦୂର ପଥ ଅତିକ୍ରମ କରିବା ପରେ, ଏକ ବିଶାଳ ନଗର ସେମାନଙ୍କର ଦୃଷ୍ଟିଗୋଚର ହେଲା । ନଗର ମଧ୍ୟସ୍ଥିତ ରତ୍ନ ନିର୍ମିତ ପ୍ରାସାଦଗୁଡ଼ିକ ଦର୍ଶକ ମନରେ ସୁମେରୁ ଶିଖରର ଭ୍ରାନ୍ତି ଜାତ କରୁଥିଲା । ନଗର ଦ୍ୱାରରେ ଗୋଟିଏ ରାକ୍ଷସକୁ ପହରା ଦେଉଥିବା ଦେଖି ସେମାନେ ନଗର ଓ ରାଜାଙ୍କର ନାମ ଜିଜ୍ଞାସା କଲେ ଏବଂ ତା'ଠାରୁ ନଗରର ନାମ ଶୈଳପୁର ଏବଂ ରାଜାଙ୍କର ନାମ ଯମଦଂଷ୍ଟ୍ର ବୋଲି ଜାଣିବାକୁ ପାଇଲେ । ରାକ୍ଷସ ରାଜାଙ୍କୁ ହତ୍ୟା କରିବା ନିମିତ୍ତ ନଗର ମଧ୍ୟରେ ପ୍ରବେଶ କରିବା ପାଇଁ ଉଦ୍ୟତ ହେଲାବେଳେ ଦ୍ୱାରପାଳ ସେମାନଙ୍କର ପ୍ରତିରୋଧ କଲା । ଏଥିରେ କ୍ରୁଦ୍ଧ ହୋଇ ଇନ୍ଦିବରସେନ ଦେବୀପ୍ରଦତ୍ତ ଖଡ୍‌ଗଦ୍ୱାରା ତାକୁ ହତ୍ୟା କଲେ । ଦ୍ୱାରପାଳର ମୃତ୍ୟୁ ପରେ ସେମାନେ ନଗର ମଧ୍ୟରେ

ପ୍ରବେଶ କରି ଦେଖିଲେ ରାକ୍ଷସ ଯମଦଂଷ୍ଟ୍ର ଏକ ରତ୍ନ ସିଂହାସନ ଉପରେ ଆସୀନ । ବିକଟାଳ ଦନ୍ତପଂକ୍ତିଦ୍ୱାରା ତାର ରୂପ ଅତ୍ୟନ୍ତ କୁତ୍ସିତ ଦେଖାଯାଉଥାଏ । ରାକ୍ଷସର ବାମ ଦିଗରେ ଏକ ସୁନ୍ଦରୀ ରମଣୀ ଏବଂ ଦକ୍ଷିଣ ଦିଗରେ ଏକ ଦିବ୍ୟ ରୂପବତୀ କୁମାରୀ ଶୋଭା ପାଉଥାଆନ୍ତି । ରାକ୍ଷସକୁ ଦେଖିବା ମାତ୍ରେ ଜ୍ୟେଷ୍ଠ ରାଜକୁମାର ଦେବୀପ୍ରଦତ୍ତ ତରବାରି ଉନ୍ମୁକ୍ତ କରି ତାକୁ ଯୁଦ୍ଧ ନିମିତ୍ତ ଆହ୍ୱାନ କଲେ । ରାକ୍ଷସ ମଧ୍ୟ ନିଜର ଖଡ୍‌ଗ ନେଇ ସିଂହାସନରୁ ଅବତରଣ କଲା । ଦ୍ୱନ୍ଦ୍ୱ ଯୁଦ୍ଧରେ ଇନ୍ଦିବରସେନ ବାରମ୍ବାର ରାକ୍ଷସର ମସ୍ତକ ଛେଦନ କଲେ ସୁଦ୍ଧା ଅତି ଆଶ୍ଚର୍ଯ୍ୟଜନକ ଭାବରେ ତାହା ପୁଣି ଆସି ତାର ଶରୀରରେ ଯୋଡ଼ି ହୋଇଯାଉଥାଏ । ରାକ୍ଷସର ଏ ପ୍ରକାର ମାୟା ଦେଖି ସିଂହାସନ ଉପରେ ବସିଥିବା ଏବଂ ରାଜପୁତ୍ର ପ୍ରତି ଆସକ୍ତ ହୋଇପଡ଼ିଥିବା କୁମାରୀ ଇଙ୍ଗିତଦ୍ୱାରା ସୂଚନା ପ୍ରଦାନ କରନ୍ତେ ରାଜକୁମାର ରାକ୍ଷସର ଶରୀରରୁ ମସ୍ତକକୁ ଛିନ୍ନକରି ସଙ୍ଗେ ସଙ୍ଗେ ତାକୁ ପୁଣି ଖଣ୍ଡବିଖଣ୍ଡିତ କରିଦେଲେ । ଫଳରେ ମସ୍ତକଟି ଶରୀରରେ ଆଉ ଯୁକ୍ତ ହୋଇପାରିଲା ନାହିଁ ଏବଂ ରାକ୍ଷସର ମୃତ୍ୟୁ ଘଟିଲା ।

ରାକ୍ଷସର ମୃତ୍ୟୁରେ ପୂର୍ବୋକ୍ତ ସୁନ୍ଦରୀ ରମଣୀ ଓ କୁମାରୀ ଅତ୍ୟନ୍ତ ଆନନ୍ଦିତ ହେଲେ । ଉଭୟ ରାଜକୁମାର ସେମାନଙ୍କଦ୍ୱାରା ସତ୍କୃତ ହୋଇ ସୁସ୍ଥ ହେବାରୁ ଏକମାତ୍ର ଦ୍ୱାରପାଳଦ୍ୱାରା ରକ୍ଷିତ ରାକ୍ଷସ ଏବଂ ତା'ର ମୃତ୍ୟୁରେ ଆନନ୍ଦ ଲାଭ କରୁଥିବା ସୁନ୍ଦରୀମାନଙ୍କର ପରିଚୟ ଜାଣିବାପାଇଁ ଚାହିଁବାରୁ ଉତ୍ତରରେ ସେହି ଦିବ୍ୟ ରୂପଶାଳୀ କୁମାରୀ କହିଲା—

''ଏହି ଶୈଳପୁର ନଗରରେ ବୀରଭୁଜ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ଏ ହେଉଛନ୍ତି ସେହି ରାଜାଙ୍କର ମଦନଦଂଷ୍ଟ୍ରା ନାମ୍ନୀ ରାଣୀ । ଏହି ରାକ୍ଷସ ଶୈଳପୁର ଆକ୍ରମଣ କରି ରାଜା ବୀରଭୁଜ ଏବଂ ତାଙ୍କର ଅନ୍ୟାନ୍ୟ ପରିବାର ଓ ପରିଜନମାନଙ୍କୁ ଭକ୍ଷଣ କଲା । କିନ୍ତୁ ରାଣୀଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ତାଙ୍କୁ ପତ୍ନୀରୂପେ ଗ୍ରହଣ କଲା । ଏହି ନିର୍ଜନ ନଗର ମଧ୍ୟରେ ଏକ ସୁବର୍ଣ୍ଣ ପ୍ରାସାଦ ନିର୍ମାଣ କରି ସେ ଏହାଙ୍କ ସହିତ ଭୋଗ ବିଳାସରେ ଜୀବନଯାପନ କରୁଥାଏ । ମୁଁ ଏହି ରାକ୍ଷସର କନିଷ୍ଠା ଭଗିନୀ । ମୋର ନାମ ଖଡ୍‌ଗଦଂଷ୍ଟ୍ରା । ମୁଁ ତୁମକୁ ଦେଖିବା ମାତ୍ରେ ତୁମ ପ୍ରତି ଆସକ୍ତ ହୋଇପଡ଼ିଅଛି । ତେଣୁ ରାକ୍ଷସର ମୃତ୍ୟୁରେ ଆମେ ଉଭୟେ ଆନନ୍ଦିତ । ବର୍ତ୍ତମାନ ଆପଣଙ୍କୁ ମୁଁ ମନେ ମନେ ପତିରୂପେ ବରଣ କରିସାରିଅଛି, ତେଣୁ ମୋତେ ଗ୍ରହଣ କରନ୍ତୁ ।'' ଏହାଶୁଣି ଇନ୍ଦିବରସେନ ଗାନ୍ଧର୍ବ ବିଧିରେ ଖଡ୍‌ଗଦଂଷ୍ଟ୍ରା ସହିତ ବିବାହ କଲେ

ଏବଂ ଖଡ୍‌ଗ ପ୍ରଭାବରୁ ଅଭିଳଷିତ ସମସ୍ତ ବିଳାସ ସାମଗ୍ରୀ ଲାଭକରି ନିଜର କନିଷ୍ଠଭ୍ରାତା ଅନିଚ୍ଛାସେନ ସହିତ ସେଠାରେ ବାସ କରିବାକୁ ଲାଗିଲେ ।

ଏକଦା ସେ ଦେବୀଦତ୍ତ ଖଡ୍‌ଗ ଧାରଣ ପୂର୍ବକ ଏକ ଆକାଶଚାରୀ ବିମାନ ସ୍ମରଣ କଲେ । ସଙ୍ଗେ ସଙ୍ଗେ ବିମାନଟି ଆସି ସେଠାରେ ଅବତରଣ କଲା । ସେଥିରେ ଅନିଚ୍ଛାସେନଙ୍କୁ ଆସୀନ କରାଇ ନିଜର ସମସ୍ତ ସମ୍ବାଦ ମାତାପିତାଙ୍କ ନିକଟରେ ଜଣାଇବା ନିମିତ୍ତ ସେ ତାଙ୍କୁ ଐରାବତୀ ନଗରୀ ଅଭିମୁଖରେ ପ୍ରେରଣ କଲେ । ଯାନ ଆରୋହଣ କରି ବିନା କଷ୍ଟରେ କନିଷ୍ଠ ରାଜକୁମାର ଅବିଳମ୍ୱେ ଆସି ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ପୂର୍ଣ୍ଣଚନ୍ଦ୍ର ଦର୍ଶନରେ ଚକୋର ଚକୋରୀଙ୍କ ତୁଲ୍ୟ ରାଜା ଓ ରାଣୀ କନିଷ୍ଠ ପୁତ୍ରକୁ ଦେଖି ଅପାର ଆନନ୍ଦ ଲାଭ କଲେ । ପ୍ରଣାମ କରୁଥିବା ପୁତ୍ରକୁ ଆଲିଙ୍ଗନକରି ମାତାପିତାଙ୍କର ଶୋକସନ୍ତପ୍ତ ହୃଦୟ ଶୀତଳ ହେଲା । ଜ୍ୟେଷ୍ଠଭ୍ରାତାଙ୍କ ସହିତ ଯେ ପ୍ରକାର ଦୁଃଖଲାଭ କରି ଶେଷରେ କିପରି ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ ହେଲେ ସେ ସମସ୍ତ ବୃତ୍ତାନ୍ତ ଅନିଚ୍ଛାସେନ ମାତା ପିତାଙ୍କ ନିକଟରେ ଆମୂଳଚୂଳ ବର୍ଣ୍ଣନା କଲେ । ପିତା ମଧ୍ୟ ରାଣୀ କାବ୍ୟାଳଙ୍କାରାଙ୍କର ସମସ୍ତ ଚକ୍ରାନ୍ତ ପୁତ୍ର ନିକଟରେ ପ୍ରକାଶ କଲେ । ଏହାପରେ ଅନିଚ୍ଛାସେନ ନିଜ ରାଜ୍ୟରେ ବହୁଦିନ ଧରି ଆନନ୍ଦରେ ବାସ କରିବାକୁ ଲାଗିଲେ ।

ଦିନେ ସେ ଏକ ଅଶୁଭ ସ୍ୱପ୍ନ ଦର୍ଶନ କରି ଜ୍ୟେଷ୍ଠଭ୍ରାତାଙ୍କର ଅନିଷ୍ଟ ଆଶଙ୍କାରେ ଉତ୍କଣ୍ଠିତ ହୋଇ ଉଠିଲେ । ତାଙ୍କୁ ଦେଖିବା ପାଇଁ ଅନିଚ୍ଛାସେନଙ୍କ ମନ ବ୍ୟାକୁଳ ହୋଇ ଉଠିଲା । ପିତାଙ୍କଠାରୁ ଅନୁଜ୍ଞା ପ୍ରାର୍ଥନା କରି ସେ କହିଲେ, 'ଆପଣମାନଙ୍କ ସମ୍ବାଦ ଇନ୍ଦିବରସେନଙ୍କୁ ପ୍ରଦାନ କରି ତାଙ୍କୁ ଏଠାକୁ ନେଇ ଆସିବା ନିମନ୍ତେ ମୋତେ ଅନୁମତି ପ୍ରଦାନ କରନ୍ତୁ ।' ପିତାମାତା ମଧ୍ୟ ନିଜର ଜ୍ୟେଷ୍ଠପୁତ୍ରକୁ ଦେଖିବା ନିମନ୍ତେ ଉତ୍ସୁକ ଥିବାରୁ ଏଥିରେ ସମ୍ମତ ହେଲେ । ଅନିଚ୍ଛାସେନ ଗୁରୁଜନମାନଙ୍କୁ ପ୍ରଣାମ କରି ପୂର୍ବୋକ୍ତ ବିମାନ ସାହାଯ୍ୟରେ ଶୈଳପୁର ନଗର ଅଭିମୁଖରେ ଯାତ୍ରାକଲେ ।

ପରଦିନ ପ୍ରାତଃକାଳରୁ ସେ ଶୈଳପୁର ନଗରରେ ଉପସ୍ଥିତ ହୋଇ ଦେଖିଲେ ଯେ ଇନ୍ଦିବରସେନ ମୂର୍ଚ୍ଛିତ ହୋଇ ଭୂମି ଉପରେ ପଡ଼ିଅଛନ୍ତି ଏବଂ ତାଙ୍କ ନିକଟରେ ଖଡ୍‌ଗଦଂଷ୍ଟ୍ରା ଓ ମଦନଦଂଷ୍ଟ୍ରା ବସି କ୍ରନ୍ଦନ କରୁଅଛନ୍ତି । ଏହାର କାରଣ ଜିଜ୍ଞାସା କରନ୍ତେ ଅବନତମୁଖୀ ମଦନଦଂଷ୍ଟ୍ରାଙ୍କୁ ଆକ୍ଷେପ କରି ଖଡ୍‌ଗଦଂଷ୍ଟ୍ରା କହିଲେ, ''ତୁମେ ଚାଲିଯିବା ପରେ ମୁଁ ଦିନେ ସ୍ନାନ କରିବା ନିମନ୍ତେ ଯାଇଥାଏ । ଏ ସମୟରେ ତୁମର ଜ୍ୟେଷ୍ଠଭ୍ରାତା ମଦନଦଂଷ୍ଟ୍ରାଙ୍କୁ ଏକାନ୍ତରେ ଉପଭୋଗ କଲେ । ଶୀଘ୍ର ସ୍ନାନ ଶେଷକରି ଫେରିଆସନ୍ତେ

ଏମାନଙ୍କୁ ଏପ୍ରକାର ଅବସ୍ଥାରେ ଦେଖି ମୁଁ ଭର୍ତ୍ସନା କରିବାରେ ଲାଗିଲି । ସେମାନେ ମୋତେ ଆଶ୍ୱାସନା ଦେବାପାଇଁ ବହୁ ଚେଷ୍ଟା କଲେ, କିନ୍ତୁ ମୁଁ ଈର୍ଷ୍ୟାଫଳରେ ସେତେବେଳେ କିଛି ଶୁଣିବା ପାଇଁ ପ୍ରସ୍ତୁତ ନଥିଲି । ମୋର ବିନାନୁମତିରେ ଏବଂ ମୋର ଅନୁପସ୍ଥିତିରେ ଅନ୍ୟ ସ୍ତ୍ରୀ ସହବାସ କରିଥିବା ଯୋଗୁଁ ପ୍ରଥମେ ରଜାଙ୍କ ପ୍ରତି ଏବଂ ପରେ ସେହି ଅଦ୍ଭୁତ ତରବାରିଟି ପ୍ରତି ମୋର କ୍ରୋଧ ଜାତହେଲା । ତେଣୁ ମୁଁ ସେହିଦିନ ରାତିରେ ସମସ୍ତେ ଶୋଇଯିବା ପରେ ଖଡ୍‌ଗଟିକୁ ନେଇ ଅଗ୍ନିରେ ନିକ୍ଷେପ କଲି । ଫଳରେ ଖଡ୍‌ଗଟି କଳଙ୍କିତ ହେବା ସଙ୍ଗେ ସଙ୍ଗେ ଏହାଙ୍କର ଏପ୍ରକାର ଦୁର୍ଦ୍ଦଶା ଘଟିଲା । ଏହାଦେଖି ଆମ୍ଭେ ଦୁହେଁ ଆତ୍ମାହୁତି ଦେବା ନିମିତ୍ତ ପ୍ରସ୍ତୁତ ହେଉଥିଲା ବେଳେ ତୁମେ ଆସି ଉପସ୍ଥିତ ହେଲ । ବର୍ତ୍ତମାନ ଏହି ନୃଶଂସ କର୍ମର ଏକମାତ୍ର ଦଣ୍ଡ ସ୍ୱରୂପ ତୁମେ ମୋତେ ହତ୍ୟା କରିପାର ।'

ତାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ଅନିଚ୍ଛାସେନ ମନେ ମନେ ବିଚାର କଲେ "ଏମାନେ ଅତ୍ୟନ୍ତ ଶୋକ ଓ ଦୁଃଖରୁ ଏପ୍ରକାର କହୁଅଛନ୍ତି, ତେଣୁ ଏମାନଙ୍କୁ ହତ୍ୟା କରିବା ଉଚିତ ହେବନାହିଁ । ଭାଇଙ୍କ ମୃତ୍ୟୁ ପାଇଁ ମୁଁ କେବଳ ଏକମାତ୍ର ଦାୟୀ । ମୁଁ ଯଦି ଏଠାରୁ ଚାଲିଯାଇ ନଥାନ୍ତି ତାହାହେଲେ ତାଙ୍କର ଏପ୍ରକାର ଅବସ୍ଥା ହୋଇ ନଥାନ୍ତା । ତେଣୁ ମୋ ପକ୍ଷରେ ହିଁ ଆତ୍ମହତ୍ୟା କରିବା ଏକାନ୍ତ ଉଚିତ ହେବ ।"

ଏପ୍ରକାର ଚିନ୍ତାକରି ଅନିଚ୍ଛାସେନ ଆତ୍ମହତ୍ୟା କରିବା ପାଇଁ ଉଦ୍ୟତ ହେଲାବେଳେ ଶୂନ୍ୟବାଣୀ ହେଲା, 'ରାଜକୁମାର ! ଏଥିରୁ କ୍ଷାନ୍ତହୁଅ । ତୁମର ଜ୍ୟେଷ୍ଠଭ୍ରାତା ମୃତ ନୁହନ୍ତି । ଦେବୀଙ୍କ ତରବାରିକୁ ଅପମାନିତ କରିବା ଫଳରେ ତାଙ୍କର କ୍ରୋଧବଶରୁ ସେ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି ମାତ୍ର । ଏ ବିଷୟରେ ଖଡ୍‌ଗଦଂଷ୍ଟ୍ରାଙ୍କୁ ମଧ୍ୟ ତୁମେ ଅପରାଧିନୀ ବୋଲି ଭାବନାହିଁ । ଏମାନେ ଶାପଗ୍ରସ୍ତା । ଏ ଉଭୟେ ପୂର୍ବ ଜନ୍ମରେ ତୁମ ଭାଇଙ୍କର ପତ୍ନୀ ଥିଲେ । ତେଣୁ ତୁମେ ନିଜର ଅଭୀଷ୍ଟ ସିଦ୍ଧି ପାଇଁ ଭଗବତୀ ବିନ୍ଧ୍ୟବାସିନୀଙ୍କର ଉପାସନା କର ।'

ଏହା ଶୁଣି ଅନିଚ୍ଛାସେନ ଆତ୍ମହତ୍ୟାରୁ ନିବୃତ୍ତ ହୋଇ ବିମାନ ଆରୋହଣ ପୂର୍ବକ ଦେବୀ ବିନ୍ଧ୍ୟବାସିନୀଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ସେଠାରେ ଦେବୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ନିଜର ମସ୍ତକ ଛେଦନ କରିବାକୁ ଉଦ୍ୟତ ହେଉଥିବା ଅନିଚ୍ଛାସେନଙ୍କୁ ଦେବୀଙ୍କ ମନ୍ଦିର ମଧ୍ୟରୁ ଶୁଣାଗଲା, "ବତ୍ସ ! ଏ ପ୍ରକାର ଦୁଃସାହସ କରନାହିଁ । ତୁ ବର୍ତ୍ତମାନ ଫେରିଯା, ଜ୍ୟେଷ୍ଠଭ୍ରାତା ସଂଜ୍ଞାଲାଭ କରିବ ଏବଂ ଖଡ୍‌ଗଟି ମଧ୍ୟ ନିର୍ମଳ ହେବ । ମୁଁ ତୁମମାନଙ୍କ ପ୍ରତି ପ୍ରସନ୍ନ ଅଛି ।" ଦେବୀଙ୍କର ଏ ପ୍ରକାର ଶୂନ୍ୟବାଣୀ ଶ୍ରବଣ କରି

ଏବଂ ହସ୍ତସ୍ଥିତ ଖଡ଼୍‌ଗଟିକୁ କଳଂକହୀନ ଦେଖି ରାଜକୁମାର ଦେବୀଙ୍କୁ ପ୍ରଦକ୍ଷିଣ ପୂର୍ବକ ପ୍ରଣିପାତ କଲେ ।

ଏହାପରେ ନିଜର ମନୋରଥ ସିଦ୍ଧ ହୋଇଥିବା ଦେଖି ସେ ବିମାନ ସାହାଯ୍ୟରେ ଶୈଳପୁରରେ ଆସି ଉପସ୍ଥିତ ହେଲେ । ସେତେବେଳକୁ ଇନ୍ଦିବରସେନ ସଂଜ୍ଞାଲାଭ କରିଥାଆନ୍ତି । ତାଙ୍କୁ ଦେଖି କନିଷ୍ଠଭ୍ରାତା ତାଙ୍କ ଚରଣ ସ୍ପର୍ଶ କରନ୍ତେ ସେ ତାଙ୍କୁ କୋଳାଗ୍ରତ କଲେ । ଉଭୟ ମଦନଦଂଷ୍ଟ୍ରା ଓ ଖଡ଼୍‌ଗଦଂଷ୍ଟ୍ରା ମଧ୍ୟ ସେମାନଙ୍କର ଓ ସେମାନଙ୍କ ପତିଙ୍କର ଜୀବନ ରକ୍ଷା କରିଥିବା ଯୋଗୁଁ ଅନିଚ୍ଛାସେନଙ୍କୁ ସ୍ନେହାଶିଷ ଜଣାଇଲେ ।

ଏହାପରେ ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ଅନିଚ୍ଛାସେନ ସମସ୍ତ ବୃତ୍ତାନ୍ତ ଆମୂଳଚୂଳ ବର୍ଣ୍ଣନା କଲେ । ଇନ୍ଦିବରସେନ ସମସ୍ତ ସମାଚାର ଶ୍ରବଣ କରି ଖଡ଼୍‌ଗଦଂଷ୍ଟ୍ରାଙ୍କ ପ୍ରତି ବିରକ୍ତି ପ୍ରକାଶ କଲେ ନାହିଁ, କନିଷ୍ଠ ଭ୍ରାତାର ପ୍ରଶଂସା କରୁଥିବା ଯୋଗୁଁ ସେ ବରଂ ଆନନ୍ଦିତ ହେଲେ । ଏ ସମୟରେ ଅନିଚ୍ଛାସେନ ବିମାତାଙ୍କ ଚକ୍ରାନ୍ତ, ପିତାମାତାଙ୍କ ଉତ୍କଣ୍ଠା ଏବଂ ତାଙ୍କୁ ଦେଖିବା ନିମନ୍ତେ ସେମାନଙ୍କର ବ୍ୟଗ୍ରତା ପ୍ରଭୃତି ସୂଚିତ କରିବା ଫଳରେ ଜ୍ୟେଷ୍ଠ ରାଜକୁମାର ଖଡ଼୍‌ଗଧାରଣ ପୂର୍ବକ ସ୍ମରଣ କରନ୍ତେ ଏକ ବିଶାଳ ବିମାନ ଆସି ଉପସ୍ଥିତ ହେଲା । ନିଜର ଉଭୟ ପତ୍ନୀ, କନିଷ୍ଠଭ୍ରାତା ଏବଂ ସୁବର୍ଣ୍ଣ ନିର୍ମିତ ଶୈଳପୁର ନଗରୀକୁ ସଙ୍ଗରେ ନେଇ ସେ ଐରାବତୀ ନଗରୀ ଅଭିମୁଖରେ ଯାତ୍ରାକଲେ ।

ଜନତାର ବିସ୍ମୟ ସମ୍ପାଦନପୂର୍ବକ ଇନ୍ଦିବରସେନ ଅନ୍ୟମାନଙ୍କ ସହ ବିମାନରୁ ଅବତରଣ କରି ପିତାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ପିତାଙ୍କର ପୁତ୍ର ବିଚ୍ଛେଦ ଜନିତ ଦୁର୍ବଳ ଶରୀର ଓ ଚିନ୍ତାକ୍ଲିଷ୍ଟ ମୁଖମଣ୍ଡଳ ଦର୍ଶନ କରି ଶୋକାକୁଳ ଇନ୍ଦିବରସେନ ସେମାନଙ୍କ ଚରଣରେ ପ୍ରଣିପାତ ଜଣାଇଲେ । ରାଜା ଓ ରାଣୀ ଉଭୟ ପୁତ୍ରଙ୍କୁ ନିକଟରେ ଦେଖି ସମସ୍ତ ଦୁଃଖ ଓ ସନ୍ତାପ ବିସ୍ମୃତ ହେଲେ ଏବଂ ଦିବ୍ୟ ରୂପବତୀ ଉଭୟ ପୁତ୍ରବଧୂଙ୍କୁ ପାଦ ବନ୍ଦନା କରୁଥିବା ଦେଖି ଆଶୀର୍ବାଦ ପ୍ରଦାନ ପୂର୍ବକ କୋଳାଗ୍ରତ କଲେ । ରାଜ୍ୟବାସୀ ଏବଂ ରାଜା ଜ୍ୟେଷ୍ଠ ରାଜକୁମାରଙ୍କ ଏ ପ୍ରକାର ପ୍ରଭାବ ଓ ସୌଭାଗ୍ୟ ସନ୍ଦର୍ଶନକରି ନିଜକୁ ଧନ୍ୟ ମନେ କଲେ ।

ଏକଦା ରାଜା ପରିତ୍ୟାଗସେନଙ୍କର ଅନୁମତି ନେଇ ଉଭୟ ରାଜକୁମାର ପୁଣି ଦିଗ୍‌ବିଜୟରେ ବହିର୍ଗତ ହେଲେ । କିଛିଦିନ ମଧ୍ୟରେ ଦେବୀଙ୍କ ଖଡ଼୍‌ଗ ପ୍ରଭାବରୁ ସମସ୍ତ ପୃଥିବୀକୁ ନିଜର କରକବଳିତ କରି ସେମାନେ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରନ୍ତେ ରାଜା ଓ ରାଣୀଙ୍କ ଦ୍ୱାରା ନଗରରେ ବିବିଧ ଉତ୍ସବ ପାଳିତ ହେଲା । ବିଜିତ ରାଜାମାନଙ୍କର

ଯଥୋଚିତ ସତ୍କାର କରି ଏବଂ ରାଜ୍ୟବାସୀଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ସଂବୃଦ୍ଧି କରି ଇନ୍ଦିବରସେନ ଆନନ୍ଦରେ ଜୀବନ ବିତାଇବାକୁ ଲାଗିଲେ ।

ଦିନେ ହଠାତ୍ ସମସ୍ତ ପୃଥିବୀ ପିତାଙ୍କ ହସ୍ତରେ ଅର୍ପଣ କରିଦେଇ ସେ ତାଙ୍କର ପୂର୍ବ ଜନ୍ମ ସ୍ମରଣ କରିପାରିଥିବା କଥା ପିତାଙ୍କ ନିକଟରେ ନିବେଦନ କଲେ ।

ହିମାଳୟର ଶିଖର ପ୍ରଦେଶରେ ମୁକ୍ତପୁର ନାମକ ଏକ ନଗର ଅଛି । ସେଠାରେ ବିଦ୍ୟାଧର ରାଜା ମୁକ୍ତସେନ ରାଜତ୍ୱ କରନ୍ତି । କମ୍ବୁବତୀ ନାମ୍ନୀ ରାଣୀଙ୍କ ଗର୍ଭରୁ ପଦ୍ମସେନ ଓ ରୂପସେନ ନାମକ ଦୁଇଟି ଗୁଣବାନ୍ ପୁତ୍ର ସନ୍ତାନ ସେ ଲାଭ କରିଥିଲେ । ଏହି ଉଭୟଙ୍କ ମଧ୍ୟରୁ ପଦ୍ମସେନଙ୍କୁ ବିଦ୍ୟାଧର କୁମାରୀ ଆଦିତ୍ୟପ୍ରଭା ସ୍ୱୟଂ ବରଣ କରିଥିଲା । ଏହା ଜାଣିପାରି ଆଦିତ୍ୟପ୍ରଭାର ପ୍ରିୟ ସଖି ଚନ୍ଦ୍ରାବତୀ ମଧ୍ୟ କାମ ପୀଡ଼ିତା ହୋଇ ତାଙ୍କୁ ବରଣ କଲା । ଏହି ଉଭୟ ପତ୍ନୀଙ୍କ ସହ ପଦ୍ମସେନ ଦିନ ଯାପନ କରୁଥାଆନ୍ତି । କିନ୍ତୁ ଆଦିତ୍ୟପ୍ରଭା ସର୍ବଦା ସପତ୍ନୀ ସହିତ କଳହ କରୁଥିବା ଯୋଗୁଁ ତାଙ୍କ ଜୀବନ ଦୁଃଖମୟ ହୋଇ ଉଠିଥିଲା । ସେ ଏକଦା ପିତା ମୁକ୍ତସେନଙ୍କୁ ଯାଇ କହିଲେ, ପିତା, ମୁଁ ଏ କଳହର ନିରାକରଣ ନିମିତ୍ତ ତପୋବନକୁ ଯାଉଅଛି । ଏପ୍ରକାର ଅଶାନ୍ତି ସହ୍ୟ କରିବା ମୋ ପକ୍ଷରେ ଆଉ ସମ୍ଭବପର ନୁହେ । ପଦ୍ମସେନଙ୍କର ଏତାଦୃଶ ଅଭିଳାଷରେ ମୁକ୍ତସେନ କ୍ରୋଧାନ୍ୱିତ ହୋଇ କହିଲେ, 'ତପୋବନକୁ ଯାଇ କ'ଣ କରିବ ? ମର୍ତ୍ତ୍ୟଲୋକକୁ ଗମନକର । ସେଠାରେ ମଧ୍ୟ ତୁମର ଏହି କଳହକାରିଣୀ ପତ୍ନୀ ଆଦିତ୍ୟପ୍ରଭା ରାକ୍ଷସ ଗୃହରେ ଜନ୍ମଲାଭ କରି ତୁମର ପତ୍ନୀ ହେବ । ତୁମର ଏହି ଦ୍ୱିତୀୟ ପତ୍ନୀ ଚନ୍ଦ୍ରାବତୀ ମଧ୍ୟ ରାକ୍ଷସ ଔରସରୁ ଜନ୍ମ ଗ୍ରହଣ କରି ଅନ୍ୟରାଜାଙ୍କୁ ବିବାହ କରିଥିଲେ ସୁଦ୍ଧା ତୁମକୁ ପତିରୂପରେ ବରଣ କରିବ । ତୁମର ସଙ୍ଗୀହେବା ନିମିତ୍ତ ଇଚ୍ଛା କରୁଥିବା ରୂପସେନ ମଧ୍ୟ ସେଠାରେ ତୁମର କନିଷ୍ଠ ଭ୍ରାତା ରୂପରେ ଜନ୍ମଗ୍ରହଣ କରିବ । ତୁମ୍ଭେମାନେ ମର୍ତ୍ତ୍ୟଲୋକରେ ଏହି ନାରୀମାନଙ୍କ ପାଇଁ ଯଥେଷ୍ଟ ଦୁଃଖଲାଭ କରି ଜୀବନ ଅତିବାହନ କରିବ ।'

ପିତା ଆମ୍ଭମାନଙ୍କୁ ଏହିପରି ଶାପଗ୍ରସ୍ତ କରି କିଛି ସମୟ ପରେ ପ୍ରକୃତିସ୍ଥ ହୁଅନ୍ତେ ଆମ୍ଭେମାନେ କିପରି ଶାପ ମୁକ୍ତହେବୁ ବୋଲି ଜିଜ୍ଞାସା କରନ୍ତେ ସେ କହିଲେ, ''ତୁମେ ରାଜପୁତ୍ର ରୂପରେ ସମଗ୍ର ପୃଥିବୀ ବିଜୟ କରି ଯେତେବେଳେ ପିତାଙ୍କୁ ଅର୍ପଣ କରିବ ସେତେବେଳେ ତୁମର ଏହି ଜନ୍ମ କଥା ସ୍ମରଣ ହେବ । ଫଳରେ ତୁମ୍ଭେମାନେ ଶାପ ମୁକ୍ତ ହେବ ।'' ପିତାଙ୍କଦ୍ୱାରା ଏ ପ୍ରକାର ଶାପଗ୍ରସ୍ତ ହୋଇ ପଦ୍ମସେନ ପତ୍ନୀ ଓ ଭ୍ରାତାଙ୍କ ସହିତ ପୃଥିବୀରେ ଅବତୀର୍ଣ୍ଣ ହେଲେ ।

ତେଣୁ ପିତା ! ସେହି ପଦ୍ମସେନ ଇନ୍ଦିବରସେନ ନାମରେ ତୁମର ପୁତ୍ର ରୂପେ ଜନ୍ମଗ୍ରହଣ କରିଅଛି । ଏହି ଦ୍ୱିତୀୟ ବିଦ୍ୟାଧର ରୂପସେନ ଅନିଚ୍ଛାସେନ ବ୍ୟତୀତ ଅନ୍ୟ କେହି ନୁହେ । ପୂର୍ବ ଜନ୍ମରେ ମଧ୍ୟ ସେ ମୋର କନିଷ୍ଠ ଭ୍ରାତା ଥିଲା । ଆଦିତ୍ୟପ୍ରଭା ଓ ଚନ୍ଦ୍ରାବତୀ ଏ ଜନ୍ମରେ ଖଡ଼୍‌ଗଦଂଷ୍ଟ୍ରା ଓ ମଦନଦଂଷ୍ଟ୍ରା ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ବର୍ତ୍ତମାନ ଆମ୍ଭମାନଙ୍କର ଶାପର ଅବଧି ଶେଷହେଲା । ତେଣୁ ବର୍ତ୍ତମାନ ଆମ୍ଭେମାନେ ବିଦ୍ୟାଧର ନଗରୀକୁ ପ୍ରତ୍ୟାବର୍ତ୍ତନ କରିବୁ ।'

ଏହା କହି ପୂର୍ବ ଜନ୍ମ ସ୍ମରଣ କରିପାରିଥିବା ଇନ୍ଦିବରସେନ ନିଜର ଭ୍ରାତା ଓ ପତ୍ନୀମାନଙ୍କ ସହିତ ବିଦ୍ୟାଧର ଶରୀର ଧାରଣ କଲେ ଏବଂ ପିତାମାତାଙ୍କୁ ପ୍ରଣିପାତ କରି ବିଦ୍ୟାଧର ନଗର ଅଭିମୁଖରେ ଯାତ୍ରାକଲେ । ବିଦ୍ୟାଧରରାଜ ମୁକ୍ତସେନ ପୁତ୍ର ଓ ପୁତ୍ରବଧୂମାନଙ୍କୁ ଦେଖି ପ୍ରଭୂତ ଆନନ୍ଦିତ ହେଲେ । ଈର୍ଷାରହିତ ଆଦିତ୍ୟପ୍ରଭା ଓ ଚନ୍ଦ୍ରାବତୀଙ୍କ ସହିତ ପଦ୍ମସେନ ଆନନ୍ଦରେ ଅବଶିଷ୍ଟ ଜୀବନଯାପନ କରିବାକୁ ଲାଗିଲେ ।

ଏହିପରି ମହତ୍ ବ୍ୟକ୍ତିମାନେ ମଧ୍ୟ ବହୁ ଦୁଃଖକଷ୍ଟ ସ୍ୱୀକାର କରିଥାଆନ୍ତି । ସାଧାରଣ ଲୋକଙ୍କର କେତେ ଯେ ଉତ୍‌ଥାନ ପତନ ହୋଇଥାଏ ତାହା କଳନା କରିବା ସମ୍ଭବପର ନୁହେ । କିନ୍ତୁ ରାଣୀ ରତ୍ନପ୍ରଭାଙ୍କ ବିଦ୍ୟାଧରୀ ବିଦ୍ୟାଶକ୍ତିଦ୍ୱାରା ସୁରକ୍ଷିତ ହୋଇ ଆପଣ ବିନାକଷ୍ଟରେ ରାଜକୁମାରୀ କର୍ପୂରିକାଙ୍କୁ ଲାଭକରି ପାରିବେ ।'

ଗୋମୁଖଙ୍କ ଠାରୁ ଏ ପ୍ରକାର ବିଚିତ୍ର କଥା ଶ୍ରବଣ କରି ନରବାହନଦତ୍ତ ପଥଶ୍ରାନ୍ତି ଅନୁଭବ କରିପାରିଲେ ନାହିଁ । ଏ ମଧ୍ୟରେ ଦୀର୍ଘପଥ ଅତିକ୍ରମ କରି ସେମାନେ ସନ୍ଧ୍ୟା ସମୟରେ ଏକ ସୁନ୍ଦର ପୁଷ୍କରିଣୀ ନିକଟରେ ଆସି ପହଞ୍ଚିଲେ । ସରୋବରଟି ରାଜହଂସମାନଙ୍କର ସୁମଧୁର କଳରବରେ ମୁଖରିତ ହୋଇ ଉଠୁଥିଲା । ତାର ଜଳ ଯେପରି ନିର୍ମଳ ସେହିପରି ତୃପ୍ତିଦାୟକ ମଧ୍ୟ ଥିଲା । ଚୂତ, ପନସ ଓ ଅନ୍ୟ ବହୁବିଧ ବୃକ୍ଷଦ୍ୱାରା ଏହାର ତଟଦେଶ ଅତ୍ୟନ୍ତ ରମଣୀୟ ଦେଖାଯାଉଥିଲା । ଏଥିରେ ସ୍ନାନ ସମାପନ କରି ଉଭୟେ ଭକ୍ତି ଭାବରେ ତୀରବର୍ତ୍ତୀ ମନ୍ଦିରରେ ମହାଦେବଙ୍କର ଉପାସନା କଲେ । ଅରଣ୍ୟ ମଧ୍ୟରୁ ବିବିଧ ତୃପ୍ତିକାରକ ସୁମିଷ୍ଟ ଫଳ ଭକ୍ଷଣ ପୂର୍ବକ ନରବାହନଦତ୍ତ କୋମଳ ପତ୍ର ଶଯ୍ୟାରେ ମିତ୍ର ଗୋମୁଖଙ୍କ ସହିତ ଶୟନ କରି ଉକ୍ତ ରଜନୀ ଅତିବାହନ କଲେ ।



# ନବମ ତରଙ୍ଗ

ଏହିପରି ରାତ୍ରିଟି ଅତିବାହନ କରି ଯୁବରାଜ ନରବାହନଦତ୍ତ ପ୍ରଭାତରୁ ଶଯ୍ୟାତ୍ୟାଗ କଲେ । ନିତ୍ୟକର୍ମ ସମାପନ ପୂର୍ବକ କର୍ପୂରସମ୍ଭବ ଦ୍ୱୀପ ଅଭିମୁଖରେ ଅଗ୍ରସର ହେଲାବେଳେ ମନ୍ତ୍ରୀ ଗୋମୁଖ କହିଲେ, ''ମିତ୍ର ! ପୂର୍ବ ରାତ୍ରିରେ ମୁଁ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଅଛି । ଶ୍ୱେତବସ୍ତ୍ର ପରିଧାନ କରିଥିବା ଜଣେ ସୁନ୍ଦରୀ କୁମାରୀ ମୋତେ କହିଲେ, 'ବତ୍ସ, ତୁମେ କୌଣସି ଚିନ୍ତା କରିବା ଅନାବଶ୍ୟକ । ଏଠାରୁ ଯାଇ ତୁମେ ସମୁଦ୍ର ତଟରେ ଥିବା ଏକ ଆଶ୍ଚର୍ଯ୍ୟମୟ ନଗରରେ ପହଞ୍ଚିବା ପରେ ସେଠାରେ କିଛି ସମୟ ବିଶ୍ରାମ କରି ନିର୍ବିଘ୍ନରେ କର୍ପୂରସମ୍ଭବ ଦ୍ୱୀପ ମଧ୍ୟରେ ଯାଇ ଉପସ୍ଥିତ ହେବ ଏବଂ ରାଜକୁମାରୀ କର୍ପୂରିକାଙ୍କ ଦର୍ଶନ ଲାଭ କରିବ ।' ଏହାକହି ସେ ଅନ୍ତର୍ହିତା ହେଲେ ଏବଂ ସଙ୍ଗେ ସଙ୍ଗେ ମୋର ନିଦ୍ରା ଭଙ୍ଗହେଲା । ଏଥିରୁ ମନେ ହେଉଛି ଦେବତାମାନେ ଆପଣଙ୍କ ଉପରେ ସନ୍ତୁଷ୍ଟ ଅଛନ୍ତି, ଫଳରେ ଶୀଘ୍ର ଆପଣଙ୍କର ମନୋରଥ ସଫଳ ହେବ ।''

ଗୋମୁଖଙ୍କଠାରୁ ଏହି ସ୍ୱପ୍ନ ବୃତ୍ତାନ୍ତ ଶୁଣି ଯୁବରାଜ ଅଧିକ ଉତ୍ସାହ ଲାଭ କଲେ । ତାଙ୍କର ଗତି କ୍ରମଶଃ ବଢ଼ିବାକୁ ଲାଗିଲା । କିଛି ସମୟ ପରେ ସେମାନେ ଆସି ସମୁଦ୍ରତଟରେ ଉପସ୍ଥିତ ହେଲେ । ସେଠାରେ ଏକ ବିଶାଳ ନଗର ତାଙ୍କର ଦୃଷ୍ଟିଗୋଚର ହେଲା । ନଗର ମଧ୍ୟରେ ଥିବା ପର୍ବତାକାର ଅଟ୍ଟାଳିକା ଓ ସୁଶୋଭିତ ଗୋପୁର ତଥା ପ୍ରାଚୀର ବିମଣ୍ଡିତ ସୁମେରୁ ପର୍ବତତୁଲ୍ୟ ସୁବର୍ଣ୍ଣ ନିର୍ମିତ ରାଜଭବନ ଦର୍ଶକ ମନରେ ନୂତନ ଭୂମଣ୍ଡଳର ପ୍ରତୀତି ଜାତ କରୁଥିଲା । ନଗର ମଧ୍ୟରେ ପ୍ରବେଶ କରି ସେମାନେ ଦେଖିଲେ ନଗରର ସମସ୍ତ ଜୀବଜନ୍ତୁ କାଷ୍ଠ ନିର୍ମିତ, କିନ୍ତୁ ସଜୀବ ପ୍ରାଣୀ ତୁଲ୍ୟ ସମସ୍ତେ ନିଜ ନିଜର କର୍ମକରି ଯାଉଅଛନ୍ତି । ସେମାନେ ବ୍ୟବସାୟୀ, ବେଶ୍ୟା, ନାଗରିକ ପ୍ରଭୃତି ଭାବରେ ଯେପରି କର୍ମ ସମ୍ପାଦନ କରି ଯାଉଥିଲେ, ତାହା ଦର୍ଶକ ମନରେ ଘୋର ବିସ୍ମୟ ସୃଷ୍ଟି କରୁଥିଲା । କିନ୍ତୁ କେବଳ ଶବ୍ଦ ଉଚ୍ଚାରଣ କରି ନ ପାରୁଥିବା ଯୋଗୁଁ ସେମାନେ

ନିର୍ଜୀବ ବୋଲି ଜଣାଯାଉଥିଲେ। ଯୁବରାଜ ନଗରର ରାଜପଥରେ ଏ ପ୍ରକାର କାଷ୍ଠ ନିର୍ମିତ ବହୁ ଅଶ୍ୱ ଓ ହସ୍ତୀ ବିଚରଣ କରୁଥିବା ଦେଖି ଦେଖି ରାଜଭବନ ନିକଟରେ ଆସି ଉପସ୍ଥିତ ହେଲେ ।

ସୁବର୍ଣ୍ଣ ନିର୍ମିତ ଏହି ବିଶାଳ ରାଜଭବନ ନଗରୀ ରାଣୀର ଶିରୋଭୂଷା ତୁଲ୍ୟ ଶୋଭା ପାଉଥିଲା । ତା' ମଧ୍ୟରେ ପ୍ରବେଶ କରି ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ । ଯନ୍ତ୍ରଚାଳିତ ଓ କାଷ୍ଠନିର୍ମିତ ଦ୍ୱାରପାଳ, ନର୍ତ୍ତକୀ, ମନ୍ତ୍ରୀ ପରିଷଦ ପ୍ରଭୃତିଙ୍କ ଦ୍ୱାରା ରାଜସଭା ପରିପୂର୍ଣ୍ଣ ଥିଲା । ସମସ୍ତେ ନିଜ ନିଜର କର୍ତ୍ତବ୍ୟ ପାଳନ କରୁଥିଲେ । ସେମାନଙ୍କ ମଧ୍ୟରେ ଏହି ସମସ୍ତ ଜଡ଼ ବସ୍ତୁର ଆତ୍ମା ସ୍ୱରୂପ ଏକମାତ୍ର ସଜୀବ ବ୍ୟକ୍ତି ରତ୍ନସିଂହାସନ ଉପରେ ଆସୀନ ଥିଲେ । ସେ ନରବାହନଦତ୍ତଙ୍କର ସର୍ବ ସୁଲକ୍ଷଣ ଯୁକ୍ତ ଶରୀର କାନ୍ତି ଅବଲୋକନରେ ତାଙ୍କୁ ଜଣେ ମହାପୁରୁଷ ବୋଲି ମନେକରି ସ୍ୱାଗତ ସମ୍ଭାଷଣ ଜଣାଇଲେ । ଯୁବରାଜ ଉକ୍ତ ପୁରୁଷଙ୍କ ପ୍ରଦତ୍ତ ଆସନରେ ଉପବେଶନ କରନ୍ତେ ସେ 'ଆପଣମାନେ କିଏ ? ଏବଂ ଏ ଅଗମ୍ୟ ନଗର ମଧ୍ୟରେ ଆସି କିପରି ଉପସ୍ଥିତ ହେଲେ' ? ବୋଲି ଜିଜ୍ଞାସା କଲେ । ଉତ୍ତରରେ ନରବାହନଦତ୍ତ ସମଗ୍ର ବୃତ୍ତାନ୍ତ ଆମୂଳଚୂଳ ବ୍ୟକ୍ତକରି ନମ୍ରତାର ସହିତ ଏହି ନଗର ଏବଂ ସେହି ପୁରୁଷଙ୍କର ପରିଚୟ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରନ୍ତେ ଉକ୍ତ ବ୍ୟକ୍ତି ନିଜର ପୂର୍ବ ବୃତ୍ତାନ୍ତ ଏପରି ବର୍ଣ୍ଣନା କଲେ—

## ରଥକାର ରାଜ୍ୟଧର କଥା

ପୃଥିବୀ ରାଣୀର କଟିମେଖଳା ତୁଲ୍ୟ କାଞ୍ଚି ନାମରେ ଏକ ନଗର ଅଛି । ଏଠାରେ ବାହୁବଳ ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ସେ ନିଜର ବାହୁବଳରେ ଚିର ଚଞ୍ଚଳା ମହାଲକ୍ଷ୍ମୀଙ୍କୁ ମଧ୍ୟ ନିଜର ଧନଭଣ୍ଡାର ମଧ୍ୟରେ ବନ୍ଦିନୀ କରି ରଖିପାରିଛନ୍ତି । ଦାନବ ଶିଳ୍ପୀ ମୟଙ୍କ ଦ୍ୱାରା ଆବିଷ୍କୃତ ଯନ୍ତ୍ର ନିର୍ମାଣରେ ପ୍ରବୀଣତା ଅର୍ଜନ କରି ଆମେ ଦୁଇଭାଇ ଏହି ରାଜ୍ୟରେ ବାସ କରୁଥିଲୁ । ବଢ଼େଇ କୁଳରେ ଆମ୍ଭମାନଙ୍କର ଜନ୍ମ ହୋଇଥିଲା । ମୋର ଜ୍ୟେଷ୍ଠଭ୍ରାତା ପ୍ରାଣଧର ବେଶ୍ୟାସକ୍ତ ଓ ବ୍ୟସନୀ ଥିଲେ । ମୁଁ ତାଙ୍କର କନିଷ୍ଠ ଭ୍ରାତା ରାଜ୍ୟଧର । ସେ ନିଜର ସମସ୍ତ ଅର୍ଜିତ ସମ୍ପତ୍ତି ବିଳାସବ୍ୟସନରେ ନିଃଶେଷ କରି ପିତୃଅର୍ଜିତ ସମ୍ପତ୍ତି ମଧ୍ୟ ଶେଷ କରି ଦେଲେ । ଭ୍ରାତୃସ୍ନେହରୁ ମୁଁ ମୋର ଅର୍ଜିତ ଧନ ସମ୍ପତ୍ତି ମଧ୍ୟ ତାଙ୍କୁ ପ୍ରଦାନ କଲି । ତଥାପି ଦ୍ୟୂତ ଓ ମଦ୍ୟପାନରେ ତାହା ନିଃଶେଷ ହେଲା । ତେଣୁ ବେଶ୍ୟାମାନଙ୍କ ପାଇଁ ଅର୍ଥ ସଂଗ୍ରହ କରିବା ନିମନ୍ତେ ସେ ଏକ କୌଶଳ ଉଦ୍ଭାବନ କଲେ । ନିଜର ଅପୂର୍ବ ପ୍ରତିଭା ବଳରେ ସେ ଦୁଇଟି ହଂସ ପ୍ରସ୍ତୁତ କରି ସେମାନଙ୍କୁ

ଗୋଟିଏ ସୂତ୍ରଦ୍ୱାରା ବନ୍ଧନ କଲେ । ଏହି ସୂତ୍ରଟିକୁ ଧୀରେ ଧୀରେ ଟାଣିଲେ ହଂସ ଦୁଇଟି ଦ୍ୱାରପାଳମାନଙ୍କ ଅଗୋଚରରେ ରାଜକୋଷ ମଧ୍ୟରେ ପ୍ରବେଶ କରି ସେମାନଙ୍କ ଚଞ୍ଚୁଦ୍ୱାରା ବିଭିନ୍ନ ମଣିମାଣିକ୍ୟ ଖଣ୍ଡ ତାଙ୍କ ନିକଟକୁ ନେଇ ଆସିପାରୁଥିଲେ । ଏହି ଅଳଙ୍କାରଗୁଡ଼ିକୁ ବିକ୍ରୟ କରି ପ୍ରାଣଧର ଯେଉଁ ଅର୍ଥଲାଭ କରୁଥିଲେ ତା' ଦ୍ୱାରା ସେ ବେଶ୍ୟାମାନଙ୍କର ମନସ୍ତୁଷ୍ଟି କରିପାରୁଥିଲେ । ମୁଁ ଏ ପ୍ରକାର ଅନୁଚିତ କାର୍ଯ୍ୟରୁ ନିବୃତ୍ତ ହେବା ପାଇଁ ତାଙ୍କୁ ଯେତେ ପ୍ରକାର ପ୍ରବର୍ତ୍ତାଇଲି ସେ ସେଥିରେ କର୍ଣ୍ଣପାତ ସୁଦ୍ଧା କଲେନାହିଁ । ବ୍ୟସନ ଦ୍ୱାରା ଅନ୍ଧୀଭୂତ ବ୍ୟକ୍ତି ସାଧାରଣତଃ ନିଜ କର୍ମର ଫଳାଫଳ ବିବେଚନା କରିପାରେ ନାହିଁ ।

କୋ ହି ମାର୍ଗମମାର୍ଗଂ ବା ବ୍ୟସନାନ୍ଧୋ ନିରୀକ୍ଷତେ ।

ପ୍ରତିଦିନ ରାଜଭଣ୍ଡାରରୁ ଏ ପ୍ରକାର ବହୁ ଧନରତ୍ନ ଅପହୃତ ହୁଅନ୍ତେ ଭଣ୍ଡାର ରକ୍ଷକ ସତର୍କ ହୋଇ ଭଣ୍ଡାରର ଦ୍ୱାର ଦେଶରେ ସୁଦୃଢ଼ ଅର୍ଗଳର ବ୍ୟବସ୍ଥା କଲା । ତଥାପି କୌଣସି ସୁଫଳ ମିଳିଲା ନାହିଁ । ବହୁଦିନ ଧରି ଏପରି ଚେଷ୍ଟାକରି ଏହାର କାରଣ ନିର୍ଣ୍ଣୟ କରିବା ପାଇଁ ସେ ଅସମର୍ଥ ହେଲା । ଦୁଃଖ ଓ ଭୟରେ ଦିନେ ସେ ରାଜାଙ୍କ ନିକଟରେ ଏ ସମ୍ବାଦ ନିବେଦନ କରନ୍ତେ ରାଜା ବିଭିନ୍ନ ସ୍ଥାନରେ ଗୁପ୍ତ ପ୍ରହରୀ ନିଯୁକ୍ତ କଲେ । ସେମାନେ ଦେଖିଲେ ରାତିରେ ଦୁଇଟି ହଂସ ଗବାକ୍ଷମାର୍ଗରେ ଭଣ୍ଡାର ମଧ୍ୟରେ ପ୍ରବେଶ କରି ଚଞ୍ଚୁଦ୍ୱାରା ବହୁ ଅଳଙ୍କାର ନେଇ ଚାଲି ଯାଉଛନ୍ତି । ଏଥିରେ ବିସ୍ମିତ ହୋଇ ସେମାନେ ସେ ଦୁଇଟିକୁ ଧରି ନେଇ ଯନ୍ତ୍ର ସାହାଯ୍ୟରେ ବିଚରଣ କରୁଥିବା, ଚଞ୍ଚୁରେ ବିଭିନ୍ନ ଅଳଙ୍କାର ଧାରଣ କରିଥିବା ଏବଂ ସୂତ୍ରରୁ ଛିନ୍ନ ହୋଇଥିବା ଏହି ଅଦ୍ଭୁତ କାଷ୍ଠ ନିର୍ମିତ ହଂସ ଯୁଗଳକୁ ରାଜାଙ୍କ ନିକଟରେ ପେଶ୍ କରିବା ପାଇଁ ପ୍ରାତଃକାଳର ଅପେକ୍ଷାରେ ରହିଲେ ।

ଏ ସମୟରେ ଜ୍ୟେଷ୍ଠ ଭ୍ରାତା ଆସି ମୋ ନିକଟରେ ଏକଥା ପ୍ରକାଶ କଲେ । ରଜ୍ଜୁଟି ଶିଥିଳ ହୋଇପଡ଼ିଥିବା ଯୋଗୁଁ ହଂସ ଯୁଗଳ ଅନ୍ୟର କବଳିତ ହୋଇଛନ୍ତି ବୋଲି ଜାଣିପାରି ସେ ଭୟରେ ସେଠାରୁ ଅନ୍ୟତ୍ର ପଳାୟନ କରିବା ନିମନ୍ତେ ପ୍ରସ୍ତାବ ଦେଲେ । ଆମ୍ଭମାନଙ୍କ ବ୍ୟତୀତ ରାଜ୍ୟର ଅନ୍ୟ କୌଣସି ଶିଳ୍ପୀ ଏ ପ୍ରକାର ଅଦ୍ଭୁତ ଯନ୍ତ୍ର ନିର୍ମାଣ କରିବାରେ ସମର୍ଥ ନଥିବା ଯୋଗୁଁ ଆମ୍ଭେମାନେ ଯେ ନିଶ୍ଚୟ ଦଣ୍ଡଲାଭ କରିବୁ ଏଥିରେ ସନ୍ଦେହ ନଥିଲା । ପ୍ରାଣଧର ଏକ ମାୟାମୟ ଯନ୍ତ୍ରଯୁକ୍ତ ବିମାନ ଆଣି ମୋତେ କହିଲେ 'ରାତ୍ରି ଶେଷରେ ରାଜା ନିଶ୍ଚୟ ଆମ୍ଭମାନଙ୍କୁ ପ୍ରାଣଦଣ୍ଡ ଦେବେ । ତେଣୁ ବର୍ତ୍ତମାନହିଁ ଏଠାରୁ ପଳାୟନ କରିବା ବିଜ୍ଞତାର କାର୍ଯ୍ୟ ହେବ । ଏହି ଯନ୍ତ୍ର ଯାନରେ ଥରେ ମାତ୍ର

ଚାବି ଦେଲେ ଏହା ଏକ ସମୟରେ ଆଠଶହ ଯୋଜନ ପଥ ଅତିକ୍ରମ କରିପାରିବ । ଏହାଦ୍ୱାରା ଆମେ ଅତି ଅଳ୍ପ ସମୟ ମଧ୍ୟରେ ଯାଇ ବହୁ ଦୂରରେ ପହଞ୍ଚି ପାରିବା । ହିତାକାଂକ୍ଷୀମାନଙ୍କର ଉପଦେଶ ବାକ୍ୟ ପ୍ରତି କର୍ଣ୍ଣପାତ ନକରି ଯେଉଁମାନେ ପାପ କର୍ମରେ ଲିପ୍ତ ହୁଅନ୍ତି ସେମାନଙ୍କ ଭାଗ୍ୟରେ କେବେ ହେଲେ ସୁଖଭୋଗ ସମ୍ଭବପର ହୁଏନାହିଁ ।

**ପାପେ କର୍ମଣ୍ୟବଞ୍ଚାତେ ହିତବାକ୍ୟେ କୁତଃ ସୁଖମ୍ ।**

ତୁମର ବାକ୍ୟ ପ୍ରତି ଭ୍ରୂକ୍ଷେପ ନକରି ମୁଁ ବେଶ୍ୟାସକ୍ତ ଓ ମଦ୍ୟପାୟୀ ହୋଇ ପଡ଼ିଥିବା ଫଳରେ ବର୍ତ୍ତମାନ ଆମ୍ଭମାନଙ୍କୁ ଏହି ପ୍ରକାର ଦୁଃଖ ଭୋଗ କରିବାକୁ ପଡୁଅଛି ।'

ଏହା କହି ମୋର ଜ୍ୟେଷ୍ଠଭ୍ରାତା ପ୍ରାଣଧର ନିଜର ପରିବାର ସହିତ ଉକ୍ତ ବିମାନ ଆରୋହଣ କଲେ । କିନ୍ତୁ ଏହା କୌଣସି ଦୂର ଦେଶକୁ ନେଇ ଚାଲିଯିବ ବୋଲି ଆଶଙ୍କା କରି ମୁଁ ଏଥିରେ ଆରୋହଣ କଲିନାହିଁ । ପ୍ରାଣଧର ନିଜର ନାମକୁ ସାର୍ଥକ କରିବା ନିମନ୍ତେ ଜୀବନ ରକ୍ଷାପାଇଁ ଆକାଶ ମାର୍ଗରେ ପଳାୟନ କଲେ ।

ପ୍ରଭାତରୁ ମୁଁ ମଧ୍ୟ ପ୍ରାଣରକ୍ଷା ପାଇଁ ମୋ ନିର୍ମିତ ବାୟୁ ଯନ୍ତ୍ରଯୁକ୍ତ ବିମାନ ଆରୋହଣ କରି ଦୁଇଶହ କ୍ରୋଶ ଦୂରକୁ ଚାଲିଗଲି । ସେଠାରୁ ପୁଣି ବିମାନରେ ଚାବିଦେଇ ଆଉ ପଚାଶ ଯୋଜନ ମାର୍ଗ ଅତିକ୍ରମ କଲି । ଏହିପରି ଚାରିଶତ କ୍ରୋଶ ମାର୍ଗ ଅତିକ୍ରମ କଲା ପରେ ମୁଁ ସମୁଦ୍ର ତଟରେ ଆସି ଉପସ୍ଥିତ ହେଲି । ଏଠାରେ ବିମାନରୁ ଅବତରଣ କରି ସଶଙ୍କ ଚିତ୍ତରେ ଏଣେ ତେଣେ ଭ୍ରମଣ କରୁଥିବା ବେଳେ ରାଜଭବନ, ବସ୍ତ୍ର, ଆଭୂଷଣ, ଶଯ୍ୟା ଇତ୍ୟାଦି ଦ୍ୱାରା ପରିପୂର୍ଣ୍ଣ ଏହି ଶୂନ୍ୟ ନଗରୀ ମୋର ଦୃଷ୍ଟିଗୋଚର ହେଲା । ସୂର୍ଯ୍ୟ ଅସ୍ତ ହୁଅନ୍ତେ ମୁଁ ଉପବନସ୍ଥିତ ପୁଷ୍କରିଣୀରେ ସ୍ନାନସାରି ଏବଂ ଉପବନର ବିଭିନ୍ନ ବୃକ୍ଷରୁ ବହୁ ସୁମିଷ୍ଟ ଫଳ ଭକ୍ଷଣ କରି ଶୟନାଗାର ମଧ୍ୟରେ ଥିବା ବହୁମୂଲ୍ୟ ଶଯ୍ୟାରେ ଆସି ଶୟନ କଲି । ଏହି ନିର୍ଜନ ନଗର ମଧ୍ୟରେ ଏକାକୀ ଶୟନ କରିଥିଲେ ସୁଦ୍ଧା ମୋ ଚିତ୍ତରେ ବିଶେଷ ଭୟ ଜାତ ହୋଇ ନଥିଲା ।

ପରଦିନ ନଗର ମଧ୍ୟରେ ଥିବା ବିଭିନ୍ନ ସ୍ଥାନ ଭ୍ରମଣ କରି ଦେଖିବା ନିମନ୍ତେ ଚିନ୍ତା କରୁଥିବା ବେଳେ ମୁଁ ନିଦ୍ରାଭିଭୂତ ହୋଇପଡ଼ିଲି । ରାତ୍ରି ଶେଷରେ ଜଣେ ପୁରୁଷ ମୟୂର ଉପରେ ଆସୀନ ହୋଇ ମୋତେ କହିଲେ, 'ଭଦ୍ର, ତୁମେ ନିଶ୍ଚିନ୍ତରେ ଏଠାରେ ଅବସ୍ଥାନ କର । ଭୋଜନ ସମୟରେ ରାଜଭବନର ମଧ୍ୟମ ପୁରରେ ଉପସ୍ଥିତ ହେଲେ ତୁମେ ବିଭିନ୍ନ ସୁମିଷ୍ଟ ଖାଦ୍ୟ ଲାଭ କରିପାରିବ ।' ଏହା କହି ସେ ଅନ୍ତର୍ହିତ ହୁଅନ୍ତେ ମୁଁ ଚିନ୍ତାକଲି ଯେ ଏହି ଦିବ୍ୟ ପୁରୁଷ ନିଶ୍ଚିତ ଭାବରେ କାର୍ତ୍ତିକେୟ

ଏବଂ ଏହି ପବିତ୍ର ସ୍ଥଳ ତାଙ୍କଦ୍ୱାରା ହିଁ ନିର୍ମିତ । ମୋର ପୂର୍ବ ଜନ୍ମର ପ୍ରଭାବରୁ ସେ ମୋ ପ୍ରତି ଏ ପ୍ରକାର ଅନୁଗ୍ରହ କରି ଅଛନ୍ତି । ତେଣୁ ଏଠାରେ ରହିବା ଦ୍ୱାରା ମୋର ନିଶ୍ଚୟ କଲ୍ୟାଣ ସାଧିତ ହେବ ! ଏହିପରି ଚିନ୍ତାକରି ମୁଁ ଦୈନନ୍ଦିନ କୃତ୍ୟ ସମାପନ ପୂର୍ବକ ଭୋଜନ ସମୟ ଉପସ୍ଥିତ ହେବାରୁ ମଝି ମହଲାରେ ଯାଇ ପ୍ରବେଶ କଲି । ସୁବର୍ଣ୍ଣ ପାତ୍ରରେ ଘୃତ କ୍ଷୀର ପ୍ରଭୃତି ସହିତ ଦିବ୍ୟ ଭୋଜନ ସାମଗ୍ରୀ ସେଠାରେ ରଖାଯାଇଥାଏ । ଭୋଜନ ସମୟରେ ମୁଁ ଯାହା ଇଚ୍ଛା କରୁଥିଲି ତାହା ସଙ୍ଗେ ସଙ୍ଗେ ଆସି ପରିବେଷିତ ହେଉଥିଲା । ତେଣୁ ଏ ପ୍ରକାର ଦିବ୍ୟ ଭୋଜନରେ ମୁଁ ସମ୍ପୂର୍ଣ୍ଣ ପରିତୃପ୍ତ ହେଲି ।

ବିଶାଳ ରାଜନବର ମଧ୍ୟରେ ଇଚ୍ଛା କରିବା ମାତ୍ରେ ଆସି ଉପସ୍ଥିତ ହେଉଥିବା ପରିଚାରିକା, ନର୍ତ୍ତକୀ ଏବଂ ବିବିଧ ରାଜକୀୟ ଆଡ଼ମ୍ବର ସହ ମୁଁ ଏଠାରେ ଆନନ୍ଦରେ ବାସ କରିବାକୁ ଲାଗିଲି । ବିଧାତାର ଅନୁକୂଳତାରୁ ମୁଁ ରଥକାର କୁଳରେ ଜନ୍ମ ଗ୍ରହଣ କରିଥିଲେ ସୁଦ୍ଧା ବର୍ତ୍ତମାନ ରାଜଭୋଗ ଲାଭକରି ଆନନ୍ଦରେ ଜୀବନ ଯାପନ କରୁଅଛି । ତେଣୁ ଆପଣ ଆଜି ଦିନକ ପାଇଁ ମୋର ଆତିଥ୍ୟ ସ୍ୱୀକାର କରନ୍ତୁ । ମୁଁ ଆପଣଙ୍କର ସେବାକରି ଆନନ୍ଦ ଲାଭ କରିବି ।'

ଏହା କହି ରାଜ୍ୟଧର ମନ୍ତ୍ରୀ ଗୋମୁଖଙ୍କ ସହିତ ନରବାହନଦତ୍ତଙ୍କୁ ସଙ୍ଗରେ ନେଇ ରାଜୋଦ୍ୟାନ ମଧ୍ୟରେ ପ୍ରବେଶ କଲା । ସେଠାରେ ନରବାହନଦତ୍ତ ସ୍ନାନ ଓ ଉପାସନା ଶେଷ କରନ୍ତେ ତାଙ୍କୁ ଭୋଜନାଗାର ମଧ୍ୟରେ ନେଇ ପହଞ୍ଚାଇ ଦିଆଗଲା । ନିଜର ଅଭିଳାଷ ଓ ରୁଚି ଅନୁଯାୟୀ ଆସି ଉପସ୍ଥିତ ହେଉଥିବା ଖାଦ୍ୟ ଗ୍ରହଣ କରି ସେମାନେ ଯଥେଷ୍ଟ ଆନନ୍ଦ ଓ ତୃପ୍ତି ଲାଭ କଲେ । କିଛି ସମୟ ପରେ କୌଣସି ଅଜ୍ଞାତ ବ୍ୟକ୍ତିଦ୍ୱାରା ସ୍ଥାନଟି ନିର୍ମଳ ହୁଅନ୍ତେ ଯୁବରାଜ ମଦ୍ୟପାନ ଓ ତାମ୍ବୁଳ ସେବନ କରି ବିଶ୍ରାମ କରିବାକୁ ଲାଗିଲେ, କିନ୍ତୁ କର୍ପୂରିକାକୁ ଲାଭକରିବା ନିମିତ୍ତ ପ୍ରବଳ ଉତ୍କଣ୍ଠାରୁ ନରବାହନଦତ୍ତଙ୍କ ପକ୍ଷରେ ସୁଖନିଦ୍ରା ଯିବା ସମ୍ଭବପର ହେଲାନାହିଁ ।

ତାଙ୍କୁ ବିନିଦ୍ର ରଜନୀ ଯାପନ କରୁଥିବା ଦେଖି ରାଜ୍ୟଧର କହିଲା ''ମହାରାଜ, ଆପଣ ଚିନ୍ତିତ୍ ହୋଇ ବିନିଦ୍ର ରହିବା ଅନୁଚିତ । କର୍ପୂରିକାକୁ ଆପଣ ନିଶ୍ଚୟ ଲାଭ କରିପାରିବେ । 'ଲକ୍ଷ୍ମୀଙ୍କ ତୁଲ୍ୟ ନାରୀ ମଧ୍ୟ ଉଦାରଚିତ୍ତ ବିଷ୍ଣୁଙ୍କୁ ବରଣ କରିଥିଲେ । ଏ ସମ୍ପର୍କରେ ମୁଁ ନିଜେ ଦର୍ଶନ କରିଥିବା ଗୋଟିଏ ସତ୍ୟ ଘଟଣା ପ୍ରକାଶ କରୁଅଛି—

# ଅର୍ଥଲୋଭ ଓ ମାନପରା କଥା

କାଞ୍ଚି ନଗରରେ ବାହୁବଳ ନାମକ ଯେଉଁ ରାଜା ରାଜତ୍ୱ କରୁଥିବା କଥା ମୁଁ ଆପଣଙ୍କୁ ପୂର୍ବରୁ କହିଥିଲି, ତାଙ୍କରି ରାଜ୍ୟରେ ଅର୍ଥଲୋଭ ନାମକ ଜଣେ ଧନିକ ବୈଶ୍ୟ ବାସ କରୁଥିଲା । ମାନପରା ତା'ରି ରୂପବତୀ ପତ୍ନୀ । ଅର୍ଥଲୋଭ ବାଣିଜ୍ୟ ବ୍ୟବସାୟ ନିମିତ୍ତ କୌଣସି ଭୃତ୍ୟ ବା ପରିଚାରକ ପରିବର୍ତ୍ତେ ନିଜର ରୂପବତୀ ପତ୍ନୀକୁ ଏଥିରେ ନିଯୁକ୍ତ କରିଥିଲା । ମାନପରା ନିଜର ଇଚ୍ଛା ବିରୋଧରେ ସୁନ୍ଦର ରୂପ, ମିଷ୍ଟ ଭାଷଣ ଏବଂ ମଧୁର ବ୍ୟବହାରଦ୍ୱାରା ଗ୍ରାହକମାନଙ୍କୁ ଆକୃଷ୍ଟ କରି ବ୍ୟବସାୟରେ ଯଥେଷ୍ଟ ଅର୍ଥଲାଭ କରୁଥାଏ । ବହୁ ହସ୍ତୀ, ଅଶ୍ୱ, ଅଳଙ୍କାରାଦି ବିକ୍ରୟ କରି ନିଜର ରୂପବତୀ ସ୍ତ୍ରୀ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରୁଥିବାରୁ ଅର୍ଥଲୋଭ ସର୍ବଦା ତାର ପ୍ରଶଂସା କରୁଥାଏ ।

ଏକଦା କୌଣସି ଦୂର ଦେଶାଗତ ସୁଖଧନ ନାମକ ବିଶିଷ୍ଟ ବ୍ୟବସାୟୀ ବହୁ ଅଶ୍ୱ ଓ ବିଭିନ୍ନ ଅଳଙ୍କାର ସହିତ ବାଣିଜ୍ୟ ନିମିତ୍ତ କାଞ୍ଚି ନଗରୀରେ ଆସି ଉପସ୍ଥିତ ହେଲେ । ତାଙ୍କ ଆଗମନ ସମ୍ବାଦ ଲାଭକରି ଅର୍ଥଲୋଭ ଧନ ମୋହରେ ନିଜର ପତ୍ନୀକୁ କହିଲା, ''ପ୍ରିୟେ, ସୁଖଧନ ନାମକ କୌଣସି ସାଧବ ବିଦେଶରୁ ଆସି ଏଠାରେ ଉପସ୍ଥିତ ହୋଇଅଛି । ସେ କୋଡ଼ିଏ ହଜାର ଚୀନଦେଶୀୟ ଅଶ୍ୱ ଏବଂ ଅସଂଖ୍ୟ ଚୀନଦେଶୀୟ ବସ୍ତ୍ର ଏଠାରେ ବିକ୍ରି କରିବା ପାଇଁ ଚାହୁଁଅଛି । ତେଣୁ ତୁମେ ଯାଇ ତାଠାରୁ ଅନ୍ତତଃ ପାଞ୍ଚହଜାର ଅଶ୍ୱ ଓ ଦଶହଜାର ବସ୍ତ୍ର କିଣିନେବା ପାଇଁ ଚେଷ୍ଟାକର । ମୁଁ ଏଥିରୁ ଏକ ସହସ୍ର ଅଶ୍ୱ ଏବଂ କିଛି ବସ୍ତ୍ର ରାଜାଙ୍କୁ ପ୍ରଦାନ କରି ଅନ୍ୟ ଗୁଡ଼ିକଦ୍ୱାରା ବ୍ୟବସାୟ କରିବା ପାଇଁ ଉଦ୍ୟମ କରିବି ।''

ଏହା କହି ଅର୍ଥଲୋଭ ନିଜ ସ୍ତ୍ରୀକୁ ସୁଖଧନଙ୍କ ନିକଟକୁ ପ୍ରେରଣ କଲା । ମାନପରା ଉକ୍ତ ସାଧବଙ୍କ ନିକଟକୁ ଯାଇ ଅଶ୍ୱ ଓ ବସ୍ତ୍ର କ୍ରୟ କରିବା ନିମନ୍ତେ ଅଭିଳାଷ ପ୍ରକାଶ କରନ୍ତେ ସୁଖଧନ ତା'ର ସୌନ୍ଦର୍ଯ୍ୟରେ ବିହ୍ୱଳ ଓ କାମାତୁର ହୋଇ ଏକାନ୍ତରେ କହିଲେ 'ତୁମଠାରୁ ମୂଲ୍ୟ ନେଇ ମୁଁ ଗୋଟିଏ ସୁଦ୍ଧା ଅଶ୍ୱ କିମ୍ବା ବସ୍ତ୍ର ପ୍ରଦାନ କରିପାରିବି ନାହିଁ । କିନ୍ତୁ ଯଦି ତୁମେ ଗୋଟିଏ ରାତ୍ରିପାଇଁ ମୋ ସହିତ ଏକତ୍ର ରହ, ତାହାହେଲେ ମୁଁ ଏକଶତ ଅଶ୍ୱ ଏବଂ ପାଞ୍ଚ ସହସ୍ର ବସ୍ତ୍ର ବିନାମୂଲ୍ୟରେ ତୁମକୁ ଦେଇପାରେ ।' ଏଥିରେ ମାନପରା ଅସମ୍ମତା ହେଉଥିବା ସୂଚନା ଲାଭକରି ସାଧବ ଅଧିକରୁ ଅଧିକ ବସ୍ତୁ ପ୍ରଦାନ କରିବା ପାଇଁ ପ୍ରତିଜ୍ଞା କଲେ । ସ୍ତ୍ରୀମାନଙ୍କର ସ୍ୱତନ୍ତ୍ରତା ଲକ୍ଷ୍ୟକଲେ ଯେକୌଣସି ପୁରୁଷ ତାଙ୍କୁ ଆୟତ୍ତ କରିବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରିଥାଏ ।

ସ୍ତ୍ରୀଷ୍ୱନର୍ଗଳଚେଷ୍ଟାସୁ କସ୍ୟେଚ୍ଛା ନୋପଜାୟତେ ।

ଲୋଭ ସମ୍ବରଣ କରି ନପାରି ମାନପରା ଏ ସମ୍ପର୍କରେ ନିଜର ପତିଙ୍କ ସହିତ ବିଚାରକରି ସଠିକ ଉତ୍ତର ଦେବ ବୋଲି ପ୍ରକାଶ କଲା । ସେ ପୁଣି କହିଲା, 'ଏଥିରେ ତୁମେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ମୁଁ ଜାଣେ ଅର୍ଥଲାଭ ନିମିତ୍ତ ମୋର ପତି ଯେକୌଣସି ଜଘନ୍ୟ ଓ କୁତ୍ସିତ କାର୍ଯ୍ୟ କରିବା ପାଇଁ ଅସମ୍ମତ ହେବେନାହିଁ । ତେଣୁ ଆପଣଙ୍କ ସହ ଗୋଟିଏ ରାତ୍ରି ଯାପନ କରି ବହୁ ଅଶ୍ୱ ଓ ବସ୍ତ୍ର ଲାଭ କରିବା କଥା ଶୁଣିଲେ ସେ ନିଶ୍ଚୟ ମୋତେ ଏଥିପାଇଁ ଉତ୍ସାହିତ କରିବେ ।'

ସୁଖଧନଙ୍କୁ ଏ ପ୍ରକାର ପ୍ରତିଶ୍ରୁତି ପ୍ରଦାନପୂର୍ବକ ମାନପରା ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା । ଏକାନ୍ତରେ ଅର୍ଥଲୋଭ ନିକଟରେ ସମଗ୍ର ସମାଚାର ପ୍ରକାଶ କରନ୍ତେ ଅର୍ଥପିଶାଚ ଅର୍ଥଲୋଭ କହିଲା, 'ପ୍ରିୟେ, ଗୋଟିଏ ରାତ୍ରିପାଇଁ ଯଦି ପାଞ୍ଚ ସହସ୍ର ବସ୍ତ୍ର ଓ ପାଞ୍ଚଶତ ଚୀନ ଦେଶୀୟ ଅଶ୍ୱ ମିଳେ ତାହାହେଲେ ଏଥିରେ ଦୋଷ କ'ଣ ? କିନ୍ତୁ ତୁମେ ପ୍ରଭାତରୁ ଅତି ଚଞ୍ଚଳ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିବ ।' ନୀଚମନା ଓ ଲୋଭଗ୍ରସ୍ତ ପତିର ଏ ପ୍ରକାର ଉପଦେଶ ଶ୍ରବଣ କରି ମାନପରା ବିଷଣ୍ଣ ମନରେ ଚିନ୍ତାକଲା 'ଧନଲାଭ ନିମିତ୍ତ ନିଜ ସ୍ତ୍ରୀକୁ ସୁଦ୍ଧା ଅନ୍ୟ ପୁରୁଷ ନିକଟରେ ବିକ୍ରୟ କରୁଥିବା ପୁରୁଷର ଜୀବନ ଧିକ୍ । ଏହାଠାରୁ ସୁଖଧନ ହିଁ ମୋର ପତିହେବା ନିମନ୍ତେ ଅଧିକ ଉପଯୁକ୍ତ । ଗୋଟିଏ ରାତ୍ରି ପାଇଁ ମୋର ଅଙ୍ଗସଙ୍ଗ ଲାଭକରି ଯେ ପାଞ୍ଚ ସହସ୍ର ବସ୍ତ୍ର ଓ ପାଞ୍ଚଶତ ଅଶ୍ୱ ବିନାମୂଲ୍ୟରେ ପ୍ରଦାନ କରିପାରେ ସେ ଯେ ନିଶ୍ଚିତ ଭାବେ ଉଦାର ଓ ପ୍ରକୃତ ପ୍ରେମିକ ଏଥିରେ ଆଉ ସନ୍ଦେହ କ'ଣ ? ତେଣୁ ସେ ହିଁ ବର୍ତ୍ତମାନଠାରୁ ମୋର ପତି ।' ଏ ପ୍ରକାର ଚିନ୍ତାକରି ମାନପରା ଅର୍ଥଲୋଭର ଅନୁମତି ନେଇ ସୁଖଧନଙ୍କ ନିକଟକୁ ଚାଲିଗଲା । ସୁଖଧନ ମଧ୍ୟ ତାକୁ ଫେରି ଆସିବା ଦେଖି ଏବଂ ତା'ଠାରୁ ତା'ର ପତିର ଅର୍ଥ ପିପାସାର ସ୍ୱରୂପ ଜ୍ଞାତ ହୋଇ ଆଶ୍ଚର୍ଯ୍ୟ ଚକିତ ହେଲେ ଏବଂ ଏ ପ୍ରକାର ସୁନ୍ଦରୀ ନାରୀର ଅଙ୍ଗସଙ୍ଗ ଲାଭ କରିଥିବାରୁ ନିଜକୁ ଧନ୍ୟ ମନେ କଲେ । ଅର୍ଥଲୋଭକୁ ସନ୍ତୁଷ୍ଟ କରିବା ନିମିତ୍ତ ସେ ସଙ୍ଗେ ସଙ୍ଗେ ମାନପରାର ମୂଲ୍ୟ ସ୍ୱରୂପ ବହୁ ଅଶ୍ୱ ଓ ବସ୍ତ୍ର ଅର୍ଥଲୋଭ ନିକଟକୁ ପଠାଇ ଦେଲେ ।

ଏହାପରେ ସୁଖଧନ ଓ ମାନପରା ପରସ୍ପରର ମନ ବିନୋଦନ ପୂର୍ବକ ରାତ୍ରି ଯାପନ କଲେ । ମାନପରାକୁ ଉପଭୋଗ କରି ସୁଖଧନ ଅଜସ୍ର ଅର୍ଥ ବ୍ୟୟ କରିବା ସାର୍ଥକ ହେଲା ବୋଲି ମନେ କଲେ । ରାତ୍ରି ଶେଷ ହୁଅନ୍ତେ ସୂର୍ଯ୍ୟୋଦୟ ପୂର୍ବରୁ ନପୁଂସକ ଅର୍ଥଲୋଭ ନିଜ ସ୍ତ୍ରୀକୁ ଫେରାଇ ନେବା ନିମିତ୍ତ ନିର୍ଲଜ୍ଜ ଭାବରେ ଭୃତ୍ୟମାନଙ୍କୁ ପ୍ରେରଣ

କଲା । କିନ୍ତୁ ମାନପରା ସେମାନଙ୍କୁ କହିଲା 'ଅର୍ଥଲୋଭ ମୋତେ ଅନ୍ୟ ନିକଟରେ ବିକ୍ରୟ କରିଦେଇଛନ୍ତି । ଉଚିତ ମୂଲ୍ୟ ଦାନ କରି ଅନ୍ୟ ଜଣେ ପୁରୁଷ ଯେତେବେଳେ ମୋତେ କ୍ରୟକରି ନେଲେଣି, ସେତେବେଳେ ମୁଁ ଅର୍ଥଲୋଭଙ୍କର ପତ୍ନୀ ହୋଇ ଆଉ ରହିଲି ବା କିପରି ? ମୁଁ ତାଙ୍କ ପରି ନିର୍ଲଜ୍ଜୀ ନୁହେ । ତୁମ୍ଭେମାନେ ମଧ୍ୟ ବିଚାର କର, ମୁଁ ଯାହା କରୁଅଛି ତାହା କ'ଣ ପ୍ରକୃତରେ ଅନୁଚିତ ? ତେଣୁ ତୁମ୍ଭେମାନେ ଫେରିଯାଅ । ମୋତେ ଯେଉଁ ମହାପୁରୁଷ କ୍ରୟ କରିଅଛନ୍ତି, ସେ ହିଁ ଆଜିଠାରୁ ମୋର ପତି ।'

ମାନପରାର ଏ ଉତ୍ତରରେ ଭୃତ୍ୟମାନେ ଫେରିଯାଇ ଅର୍ଥଲୋଭ ନିକଟରେ ସମସ୍ତ ବୃତ୍ତାନ୍ତ ଜ୍ଞାପନ କଲେ । ଏହା ଶୁଣି ନରାଧମ ଅର୍ଥଲୋଭ ବଳପୂର୍ବକ ନିଜର ସ୍ତ୍ରୀକୁ ଫେରାଇ ଆଣିବା ନିମିତ୍ତ ପ୍ରସ୍ତୁତ ହେଲା । ତା'ର ଏ ପ୍ରକାର ଆଚରଣ ଦେଖି ତା'ର ମିତ୍ର ହରବଳ କହିଲା, 'ସୁଖଧନଠାରୁ ତୁମେ ତୁମର ପତ୍ନୀକୁ ଫେରାଇ ଆଣିପାରିବ ନାହିଁ । ତାର ଅପୂର୍ବଶକ୍ତି ନିକଟରେ ତୁମେ ନିଶ୍ଚୟ ପରାସ୍ତ ହେବ । ପୁଣି ତା' ପ୍ରତି ଆସକ୍ତା ଥିବା ତୁମର ପତ୍ନୀ ତା'ର ଶକ୍ତି ସାମର୍ଥ୍ୟକୁ ଆହୁରି ବଢ଼ାଇ ଦେଇଅଛି । ସେ ନିଜେ ବଳବାନ ଏବଂ ତାର ମିତ୍ରମାନେ ମଧ୍ୟ ଅନୁରୂପ ଶକ୍ତିଶାଳୀ । କିନ୍ତୁ ତୁମେ କୃପଣ, ପତ୍ନୀବିକ୍ରେତା ଏବଂ ଅପମାନିତ । ଫଳରେ ତୁମର ସମସ୍ତ ଶକ୍ତି ତୁମେ ହରାଇ ବସିଅଛ । ତୁମେ ନିଜେ ଏବଂ ତୁମର ମିତ୍ରମାନେ ଶକ୍ତିରେ ସେମାନଙ୍କର ସମକକ୍ଷ ନୁହନ୍ତି । ତେଣୁ ଶତ୍ରୁକୁ ପରାଜିତ କରିବା ସାମର୍ଥ୍ୟ ତୁମର ଆଦୌ ନାହିଁ । ପୁଣି ପତ୍ନୀ ବିକ୍ରୟ ରୂପ କାର୍ଯ୍ୟର ସନ୍ଧାନ ପାଇଲେ ରାଜା ମଧ୍ୟ ତୁମପ୍ରତି ରୋଷାନ୍ୱିତ ହେବେ । ଏଣୁ ଅଧିକ ଉପହସିତ ନ ହୋଇ ତୁମେ ମୌନ ରହିବା ହିଁ ଉଚିତ ହେବ ।'

ମିତ୍ରଠାରୁ ଏ ପ୍ରକାର ଉପଦେଶ ଶ୍ରବଣ କରି ସୁଦ୍ଧା ଅପମାନିତ ଅର୍ଥଲୋଭ ନିଜର ରକ୍ଷୀମାନଙ୍କ ସହିତ ଯାଇ ସୁଖଧନଙ୍କୁ ଆକ୍ରମଣ କଲା । କିନ୍ତୁ ତାଙ୍କ ଶକ୍ତିଶାଳୀ ପରିଜନଙ୍କ ନିକଟରେ ପ୍ରତିଦ୍ୱନ୍ଦ୍ୱୀମାନେ ଅଧିକ କ୍ଷଣ ତିଷ୍ଠି ପାରିଲେ ନାହିଁ । ଏହା ଦେଖି ଅର୍ଥଲୋଭ କ୍ରୋଧରେ ରାଜାଙ୍କ ନିକଟରେ ଯାଇ ପହଞ୍ଚିଲା ଏବଂ ସୁଖଧନ ତାର ସ୍ତ୍ରୀକୁ ଅପହରଣ କରିନେଇଥିବା କଥା ପ୍ରକାଶ କଲା । ରାଜା ତା'ର କୁକର୍ମର ବୃତ୍ତାନ୍ତ ଜାଣି ନଥିବା ଯୋଗୁଁ ସୁଖଧନଙ୍କୁ ବନ୍ଦୀ କରି ଆଣିବା ନିମିତ୍ତ ଆଦେଶ ଦେଲେ । କିନ୍ତୁ ରାଜାଙ୍କର ସନ୍ଧାନ ନାମକ ମନ୍ତ୍ରୀ ଏ ସମୟରେ କହିଲେ, ''ମହାରାଜ, ସାଧବ ସୁଖଧନଙ୍କୁ ସହଜରେ ବନ୍ଦୀ କରିବା ସମ୍ଭବପର ନୁହେ । ତାଙ୍କ ସହିତ ତାଙ୍କର ଏକାଦଶ ମିତ୍ର ଏବଂ ଏକଲକ୍ଷ ଚୀନଦେଶୀୟ ଅଶ୍ୱ ରହିଅଛନ୍ତି । ପୁଣି ଏ ସମ୍ପର୍କରେ ବାସ୍ତବ ସତ୍ୟ ମଧ୍ୟ ଆପଣ

ଜାଣିନାହାନ୍ତି । ବିନା କାରଣରେ ଏପରି କାର୍ଯ୍ୟ ସଂଘଟିତ ହେବା ସମ୍ଭବପର ନୁହେ । ତେଣୁ ଦୂତଦ୍ୱାରା ସୁଖଧନଙ୍କୁ ଡାକିଆଣି ତାଙ୍କଠାରୁ ମଧ୍ୟ ଏ ସମ୍ପର୍କରେ କିଛି ଶୁଣିବା ଆବଶ୍ୟକ ।''

ମନ୍ତ୍ରୀଙ୍କର ଉପଦେଶ କ୍ରମେ ରାଜା ସମସ୍ତ ବୃତ୍ତାନ୍ତ ଅବଗତ ହେବା ନିମିତ୍ତ ସୁଖଧନଙ୍କ ନିକଟକୁ ଦୂତପ୍ରେରଣ କଲେ । ରାଜାଙ୍କ ଆଦେଶ ଶ୍ରବଣ କରି ନିଜେ ମାନପରା ହିଁ ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ ପ୍ରକାଶ କଲା । ଏଥିରେ ଆଶ୍ଚର୍ଯ୍ୟ ହୋଇ ରାଜା ମାନପରାଙ୍କୁ ଦର୍ଶନ କରିବା ନିମିତ୍ତ ସୁଖଧନ ସହିତ ଆସି ତା'ର ବାସଭବନରେ ଉପସ୍ଥିତ ହେଲେ । ରାଜା ସୁଖଧନଙ୍କଦ୍ୱାରା ସତ୍‌କୃତ ହୋଇ ଏବଂ ମାନପରାର ଅପୂର୍ବ ଲାବଣ୍ୟ ଦର୍ଶନ କରି ଚିନ୍ତା କଲେ ଯେ ଏ ପ୍ରକାର ସୁନ୍ଦରୀ ସ୍ୱୟଂ ସୃଷ୍ଟିକର୍ତ୍ତାଙ୍କର ମନୋହରଣ କରିପାରେ । ପ୍ରଣିପାତ କରୁଥିବା ମାନପରାଙ୍କୁ ରାଜା ଜିଜ୍ଞାସା କରନ୍ତେ ସେ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ ବ୍ୟକ୍ତ କଲା । ତା'ଠାରୁ ଏହା ଶୁଣି ଅର୍ଥଲୋଭ ମୌନ ରହନ୍ତେ ରାଜା ଘଟଣାର ସତ୍ୟତା ଉପଲବ୍‌ଧ କରି ଏହା ପରେ କଣ କରାଯିବ ବୋଲି ମାନପରାଙ୍କୁ ପ୍ରଶ୍ନ କଲେ । ସେ ଉତ୍ତରରେ କହିଲା, 'ମହାରାଜ, ଯେଉଁ ପିଶାଚ ମୋତେ ବିନା ଆପତ୍ତିରେ ଲୋଭବଶତଃ ଅନ୍ୟ ନିକଟରେ ବିକ୍ରୟ କରି ଦେଇଅଛି, ମୁଁ ପୁଣି ତା ନିକଟକୁ କିପରି ଫେରିଯିବି ?' ରାଜା ଏଥିରେ ସମ୍ମତି ପ୍ରକାଶ କରନ୍ତେ କାମ, କ୍ରୋଧ ଓ ଲଜ୍ଜାରେ ଉନ୍ମତ୍ତ ପ୍ରାୟ ହୋଇ ଅର୍ଥଲୋଭ କହିଲା, 'ମହାରାଜ, ମୁଁ ଓ ସୁଖଧନ ଅନ୍ୟ କାହାରି ସାହାଯ୍ୟ ଗ୍ରହଣ ନକରି ନିଜ ନିଜ ସୈନ୍ୟ ସାମନ୍ତ ଦ୍ୱାରା ଯୁଦ୍ଧ କରିବୁ । ଏଥିରେ ଯେ ଜୟଯୁକ୍ତ ହେବ ସେ ମାନପରାଙ୍କୁ ଲାଭ କରିବ ।' ଅର୍ଥଲୋଭର କଥା ଶୁଣି ସୁଖଧନ ଆନନ୍ଦର ସହିତ କହିଲେ, 'ତାହାହେଲେ ସୈନ୍ୟମାନଙ୍କର ଆବଶ୍ୟକତା କ'ଣ ? ଆମେ ଦୁହେଁ ହିଁ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେବା । ଆମମାନଙ୍କ ମଧ୍ୟରୁ ଯେ ଜୟଯୁକ୍ତ ହେବ, ସେ ମାନପରାଙ୍କୁ ଲାଭ କରିବ ।'

ରାଜା ଏଥିରେ ସମ୍ମତ ହୁଅନ୍ତେ ଉଭୟେ ନିଜ ନିଜର ଅଶ୍ୱାରୋହଣ କରି ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହେଲେ । ଯୁଦ୍ଧରେ କୁନ୍ତ ଅସ୍ତ୍ର ଦ୍ୱାରା ଆଘାତ କରି ଅର୍ଥଲୋଭକୁ ସୁଖଧନ ଅଶ୍ୱପୃଷ୍ଠରୁ ଭୂପତିତ କଲେ । ଏହିପରି ତିନିଥର ତାକୁ ଭୂମି ଉପରେ ନିକ୍ଷେପ କରି ସେ ତାର ଅଶ୍ୱକୁ ନିଧନ କଲେ; କିନ୍ତୁ ଧର୍ମ ଭୟରୁ ଅର୍ଥଲୋଭକୁ ହତ୍ୟା କଲେ ନାହିଁ । ଏଥିରେ ମଧ୍ୟ ନିରସ୍ତ ନ ହୋଇ ଅର୍ଥଲୋଭ ବାରମ୍ବାର ଆକ୍ରମଣ କରନ୍ତେ ପଞ୍ଚମ ବାର ଅଶ୍ୱଦ୍ୱାରା ନିକ୍ଷେପିତ ହୋଇ ତାର ପ୍ରାଣବାୟୁ ଉଡ଼ିଗଲା । ଭୃତ୍ୟମାନେ ତାର ଶବକୁ ନେଇ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ସୁଖଧନଙ୍କର ବୀରତ୍ୱ ଦେଖି ଦର୍ଶକମାନେ ତାହାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିବାକୁ ଲାଗିଲେ ଏବଂ ରାଜା ମଧ ତାଙ୍କର ସମୁଚିତ ସତ୍କାର କରିବା ନିମନ୍ତେ ବିସ୍ମୃତ ହେଲେ ନାହିଁ । ରାଜାଙ୍କଠାରୁ ବହୁ ଉପହାର ଏବଂ ଅର୍ଥଲୋଭର ସମସ୍ତ ଧନସମ୍ପତ୍ତି ଲାଭ କରି ସୁଖଧନ ଆନନ୍ଦରେ ପ୍ରେମମୟୀ ମାନଂପରା ସହିତ ସମୟ ଅତିବାହନ କରିବାକୁ ଲାଗିଲେ ।

ଏହିପରି ଦୁର୍ବଳ ଓ ନୀଚ ପୁରୁଷମାନଙ୍କଠାରୁ ସ୍ତ୍ରୀ ଓ ସମ୍ପତ୍ତି ବିଚ୍ୟୁତ ହୋଇ ଯାଇଥାଏ । କିନ୍ତୁ ଉଦାରଚେତା ପୁରୁଷମାନଙ୍କ ନିକଟରେ ସେ ସବୁ ନିଜେ ନିଜେ ଆସି ଉପସ୍ଥିତ ହୋଇଥାଆନ୍ତି ।

ଏବଂ ଦାରାଃ ପଳାୟନ୍ତେ ହୀନସତ୍ତ୍ୱାତ୍‌ଧନାନି ଚ଼
ସୁସତ୍ତ୍ୱସ୍ୟୋପତିଷ୍ଠନ୍ତେ ସ୍ୱୟମେତ୍ୟ ଯତସ୍ତତଃ ।

ତେଣୁ ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ରାଜକୁମାରୀ କର୍ପୂରିକା ନିଶ୍ଚୟ ଆପଣଙ୍କ ପ୍ରତି ଆକୃଷ୍ଟା ହୋଇ ଆପଣଙ୍କୁ ବରଣ କରିବେ । ବର୍ତ୍ତମାନ ନିଶ୍ଚିନ୍ତ ମନରେ ଶୟନ କରନ୍ତୁ ।

ରାଜ୍ୟଧରଙ୍କଠାରୁ ଏ ପ୍ରକାର ଅର୍ଥପୂର୍ଣ୍ଣ ଗଳ୍ପ ଶ୍ରବଣ କରି ନରବାହନଦତ୍ତ ଗୋମୁଖଙ୍କ ସହିତ ନିଶ୍ଚିନ୍ତରେ ଶୟନ କଲେ । ପରଦିନ ସେ ମଣୋହି ସାରି ବିଶ୍ରାମ କରୁଥିବା ବେଳେ ବୁଦ୍ଧିମାନ ଗୋମୁଖ ରାଜ୍ୟଧରଙ୍କୁ କହିଲେ, 'ତୁମେ ଯୁବରାଜଙ୍କ ନିମିତ୍ତ ଏପରି ଏକ ଯନ୍ତ୍ରମୟ ବିମାନ ନିର୍ମାଣ କର ଯାହାଦ୍ୱାରା ସେ କର୍ପୂରସମ୍ଭବଦ୍ୱୀପକୁ ଯାଇ କର୍ପୂରିକାଙ୍କୁ ଲାଭ କରିପାରିବେ ।'

## ନରବାହନଦତ୍ତଙ୍କ କର୍ପୂରସମ୍ଭବ ଦ୍ୱୀପ ଯାତ୍ରା

ଗୋମୁଖଙ୍କ ଅନୁରୋଧ କ୍ରମେ କୁଶଳୀ ଶିଳ୍ପୀ ରାଜ୍ୟଧର ପୂର୍ବୋକ୍ତ ବାୟୁଯନ୍ତ୍ରଯୁକ୍ତ ବିମାନଟିକୁ ନରବାହନଦତ୍ତଙ୍କ ଯାତ୍ରା ନିମିତ୍ତ ପ୍ରସ୍ତୁତ କରି ନେଇ ଆସିଲା । ଏହି ଶୀଘ୍ରଗାମୀ ବିମାନ ଆରୋହଣ ପୂର୍ବକ ଗୋମୁଖ ଓ ଯୁବରାଜ ନରବାହନଦତ୍ତ ବିଶାଳ ସମୁଦ୍ର ଲଂଘନ ପୂର୍ବକ କ୍ଷଣକ ମଧ୍ୟରେ କର୍ପୂରସମ୍ଭବ ଦ୍ୱୀପରେ ଆସି ଉପସ୍ଥିତ ହେଲେ । କୌତୂହଳବଶତଃ ସେମାନେ ଯାନରୁ ଅବତରଣ କରି ନଗର ମଧ୍ୟରେ ଇତସ୍ତତଃ ଭ୍ରମଣ କରିବାକୁ ଲାଗିଲେ । ନଗରବାସୀଙ୍କଠାରୁ ତାହାହିଁ କର୍ପୂରସମ୍ଭବ ଦ୍ୱୀପ ବୋଲି ଜାଣି ସେମାନେ ନିଃସଂଶୟରେ ରାଜଭବନ ଅଭିମୁଖରେ ବାହାରିଲେ ।

ରାଜଭବନର ସମ୍ମୁଖରେ ଏକ ମନୋରମ ପ୍ରାସାଦ ଥିଲା । ଏହାର ଅଧିକାରିଣୀ ଥିଲା ଏକ ବୃଦ୍ଧା । ନମ୍ରତାର ସହିତ ତାଠାରୁ ଅନୁମତି ଆଣି ସେମାନେ ଉକ୍ତ ଗୃହ ମଧ୍ୟରେ ପ୍ରବେଶ କଲେ । ରାଜକୁମାରୀକୁ ଲାଭ କରିବା ନିମିତ୍ତ ବିଭିନ୍ନ କୌଶଳ ଚିନ୍ତା କରି ଶେଷରେ ସେମାନେ ଉକ୍ତ ଗୃହକର୍ତ୍ତ୍ରୀକୁ ଜିଜ୍ଞାସା କଲେ, 'ଆର୍ଯ୍ୟେ, ଏ ଦେଶର ରାଜା କିଏ ? ଏବଂ ତାଙ୍କର ସନ୍ତାନସନ୍ତତି କେତୋଟି ? ସେମାନେ କଣ ରୂପବାନ୍ । ଆମ୍ଭେମାନେ ବିଦେଶୀ ହୋଇଥିବା ଯୋଗୁଁ ଏ ରାଜ୍ୟ ସମ୍ପର୍କରେ ଆମ୍ଭମାନଙ୍କର କୌଣସି ଧାରଣା ନାହିଁ । ତୁମେ ଆମର ଏ ସନ୍ଦେହ ଦୂର କଲେ ଆମେ ଉପକୃତ ହେବୁ ।'

ବୃଦ୍ଧା ଯୁବରାଜ ନରବାହନଦତ୍ତଙ୍କର ମନୋରମ ରୂପରେ ପ୍ରୀତ ହୋଇ କହିଲା, ''ମହାଭାଗ, ମୁଁ ତୁମ୍ଭମାନଙ୍କର ସନ୍ଦେହ ଦୂର କରିବା ନିମିତ୍ତ ଏ ନଗର ସମ୍ପର୍କରେ ସମସ୍ତ ବୃତ୍ତାନ୍ତ କହୁଅଛି । ଏହା କର୍ପୂରସମ୍ଭବ ନାମକ ଦ୍ୱୀପ । ଏଠାରେ ରାଜା କର୍ପୂରକ ରାଜତ୍ୱ କରନ୍ତି । ବହୁଦିନ ପର୍ଯ୍ୟନ୍ତ ତାଙ୍କର କୌଣସି ସନ୍ତାନ ଜାତ ହୋଇ ନଥିଲା । ତେଣୁ ରାଜା ମହାରାଣୀ ବୁଦ୍ଧିକାର୍ଯ୍ୟାଙ୍କ ସହିତ ସନ୍ତାନ ପ୍ରାପ୍ତି ନିମିତ୍ତ ଭଗବାନ ଗୌରୀପତିଙ୍କର ଉପାସନା କଲେ । ତିନିଦିନ ପର୍ଯ୍ୟନ୍ତ ଉପବାସ ରହି ବିଧିପୂର୍ବକ ଉପାସନା କରନ୍ତେ ତୃତୀୟ ଦିନ ରାତିରେ ଭଗବାନ ଶଙ୍କର ପ୍ରୀତହୋଇ ସ୍ୱପ୍ନରେ ରାଜାଙ୍କୁ କହିଲେ ଯେ ପୁତ୍ର ପରିବର୍ତ୍ତେ ଅଧିକ ରୂପବତୀ ଓ ଗୁଣଶାଳିନୀ ଏକ କନ୍ୟା ସେ ଲାଭ କରିବେ ଏବଂ ଏହି କନ୍ୟା ଯାହାର ପାଣିଗ୍ରହଣ କରିବ ସେ ବିଦ୍ୟାଧରମାନଙ୍କର ଚକ୍ରବର୍ତ୍ତୀ ହୋଇ ବିଶାଳ ସାମ୍ରାଜ୍ୟ ଲାଭ କରିବ । ଏଥିରେ ରାଜା ପ୍ରସନ୍ନ ହୋଇ ପରଦିନ ମହାରାଣୀଙ୍କ ସହିତ ବ୍ରତ ଉଦ୍‌ଯାପନ କଲେ ।

କିଛିଦିନ ପରେ ରାଣୀ ଗର୍ଭବତୀ ହେଲେ ଏବଂ ସମୟ କ୍ରମେ ତାଙ୍କର ଏକ ଉତ୍ତମ ଲକ୍ଷଣଯୁକ୍ତା ତଥା ସର୍ବାଙ୍ଗସୁନ୍ଦରୀ କନ୍ୟା ଜାତ ହେଲା । ଏହି କନ୍ୟାର ଶରୀରକାନ୍ତିରେ ପ୍ରସୂତି ଗୃହର ସମସ୍ତ ଦୀପଶିଖା ନିଷ୍ପ୍ରଭ ହୋଇଗଲେ ଓ ଧୂମରାଶି ବ୍ୟାଜରେ ସେଗୁଡ଼ିକ ଦୀର୍ଘ ନିଶ୍ୱାସ ପରିତ୍ୟାଗ କରୁଥିବା ପରି ମନେହେଲା । ରାଜା କର୍ପୂରକ ରାଜ୍ୟରେ ବିଭିନ୍ନ ଉତ୍ସବ ପାଳନ କରି କନ୍ୟାର ନାମକରଣ କଲେ କର୍ପୂରିକା । ଚନ୍ଦ୍ରକଳା ତୁଲ୍ୟ କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ କର୍ପୂରିକା ବର୍ତ୍ତମାନ ଯୌବନରେ ପଦାର୍ପଣ କରି ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ଶୋଭା ପାଉଅଛନ୍ତି । ରାଜା କର୍ପୂରକ ତାଙ୍କର ବିବାହ ସମ୍ପର୍କରେ ଉଦ୍‌ଯୋଗ କରନ୍ତେ ପୁରୁଷ ବିଦ୍ୱେଷିଣୀ ରାଜକୁମାରୀ ବିବାହ କରିବେ ନାହିଁ ବୋଲି ରାଜାଙ୍କୁ ସେଥିରୁ ନିବୃତ୍ତ କରିଅଛନ୍ତି ।

ମୋର କନ୍ୟା ରାଜକୁମାରୀଙ୍କର ଅନ୍ତରଙ୍ଗା ପରିଚାରିକା । ଦିନେ କଥାପ୍ରସଙ୍ଗରେ ସେ ରାଜକୁମାରୀଙ୍କୁ ପଚାରିଲା 'ସଖି, ନାରୀ ଜନ୍ମର ଏକମାତ୍ର ପରିଣତି ବିବାହ । ତୁମେ ସେଥିରେ କାହିଁକି ପରାଙ୍‌ମୁଖ ହେଉଅଛ ?' ଏହାର ଉତ୍ତରରେ ରାଜକୁମାରୀ କହିଲେ—

'ସଖି, ମୁଁ ଜାତିସ୍ମର । ତେଣୁ ପୂର୍ବଜନ୍ମର ସମସ୍ତ କଥା ମୋର ସ୍ମରଣ ଅଛି । ମୁଁ କାହିଁକି ବିବାହ କରିବାପାଇଁ ଚାହୁଁନାହିଁ ତାର କାରଣ କହୁଛି, ଶୁଣ—

'ସମୁଦ୍ର ତଟରେ ଏକ ବିଶାଳ ଚନ୍ଦନ ବୃକ୍ଷ ଥିଲା ଏବଂ ଏହି ଚନ୍ଦନ ବୃକ୍ଷ ନିକଟରେ ପ୍ରସ୍ଫୁଟିତ କମଳ ପରିପୂର୍ଣ୍ଣ ଏକ ରମଣୀୟ ସରୋବର । ମୁଁ ଏହି ସରୋବର ମଧ୍ୟରେ ପୂର୍ବଜନ୍ମର କର୍ମ ଫଳରୁ ହଂସିନୀ ରୂପରେ ଜନ୍ମଗ୍ରହଣ କରିଥିଲି । ସମୟ କ୍ରମେ କୌଣସି ଏକ ରାଜହଂସ ସହ ବିବାହ କରି ମୁଁ ସେହି ଚନ୍ଦନ ବୃକ୍ଷ ନିକଟରେ ପତିଙ୍କ ସହିତ ବାସ କରୁଥାଏ । ସେଠାରେ ମୋର ସନ୍ତାନସନ୍ତତି ଜାତହେଲେ । କିନ୍ତୁ ସମୁଦ୍ରର ବିଶାଳ ତରଙ୍ଗମାଳା ସେମାନଙ୍କୁ ମୋଠାରୁ ହରଣ କରିନେଲା । ସନ୍ତାନମାନଙ୍କର ବିରହରେ ବିହ୍ୱଳା ହୋଇ ମୁଁ ସର୍ବଦା ରୋଦନ କରିବାକୁ ଲାଗିଲି ଏବଂ ନିରାହାର ପୂର୍ବକ ସମୁଦ୍ର ତଟବର୍ତ୍ତୀ ଏକ ଶିବଲିଙ୍ଗ ନିକଟରେ ଯାଇ ବସି ରହିଲି । ମୋର ଏ ପ୍ରକାର ସ୍ଥିତି ଦେଖି ରାଜହଂସ ଆସି କହିଲେ, 'ମୃତ ସନ୍ତାନମାନଙ୍କ ନିମିତ୍ତ ଏତେ ଶୋକ ବା ଅନୁତାପ କରିବା ଉଚିତ ନୁହେ । ଆମ୍ଭେଦୁହେଁ ଜୀବିତ ଥିଲେ ବହୁ ସନ୍ତାନ ଜାତ ହେବେ, କିନ୍ତୁ ଜୀବନ ପରିତ୍ୟାଗ କଲେ କୌଣସି କାର୍ଯ୍ୟ ସିଦ୍ଧ ହୋଇପାରିବ ନାହିଁ ।' ତାଙ୍କର ଏ ପ୍ରକାର ସାନ୍ତ୍ୱନାବାଣୀ ମୋର ହୃଦୟକୁ ତୀକ୍ଷ୍ଣ ଅସ୍ତ୍ରତୁଲ୍ୟ ବିଦ୍ଧକଲା । ମୁଁ ମନେ ମନେ ତାଙ୍କୁ ଧିକ୍‌କାର କଲି । ନିଜର ସନ୍ତାନମାନଙ୍କ ପ୍ରତି ସ୍ନେହହୀନ ଏବଂ ନିର୍ଦ୍ଦୟ ପୁରୁଷର ସ୍ତ୍ରୀ ରୂପରେ ରହିବା ଅନୁଚିତ ବୋଲି ମୋର ମନେହେଲା । ସେ ସମୟଠାରୁ ମୁଁ ମୋର ଶରୀର, ପତି ଏବଂ ସଂସାର ପ୍ରତି ବିତୃଷ୍ଣ ହୋଇପଡ଼ିଲି । ସମୟ କ୍ରମେ ଶିବଲିଙ୍ଗଙ୍କୁ ପ୍ରଣାମ କରି ପତିଙ୍କ ସମ୍ମୁଖରେ ହିଁ ସମୁଦ୍ର ମଧ୍ୟରେ ମୁଁ ଝାସଦେଲି । ଏ ସମୟରେ ମୋର ଅଭିଳାଷ ଥିଲା ଯେ ପର ଜନ୍ମରେ କୌଣସି ରାଜାଙ୍କର କନ୍ୟା ରୂପରେ ଜନ୍ମଗ୍ରହଣ କରିବି । ତେଣୁ ଏ ଜନ୍ମରେ ମୁଁ ରାଜକୁମାରୀ ରୂପେ ଅବତୀର୍ଣ୍ଣ ହୋଇଅଛି । ପୂର୍ବ ଜନ୍ମରେ ପୁରୁଷମାନଙ୍କ ନୃଶଂସତା ଦର୍ଶନ କରିଥିବାରୁ ଏ ଜନ୍ମରେ ମୁଁ ସେମାନଙ୍କ ପ୍ରତି ଆକୃଷ୍ଟ ହୋଇପାରୁନାହିଁ । ତେଣୁ ମୁଁ ବର୍ତ୍ତମାନ ବିବାହ କରିବା ନିମନ୍ତେ ଇଚ୍ଛୁକ ନୁହେ । ଭବିଷ୍ୟତ ଦୈବାଧୀନ, ତେଣୁ ଭବିଷ୍ୟତରେ କଣ ଘଟିବ ତାହା କହିବା ମୋ ପକ୍ଷରେ ସମ୍ଭବପର ନୁହେ ।'

ରାଜକୁମାରୀଙ୍କଠାରୁ ଏହି ଗୋପନୀୟ ବୃତ୍ତାନ୍ତ ଅବଗତ ହୋଇ ମୋର କନ୍ୟା ଏକାନ୍ତରେ ମୋତେ ସମସ୍ତ କଥା କହି ଶୁଣାଇଲା । ସେ ଯାହା କହିଥିଲା ମୁଁ ତୁମ୍ଭମାନଙ୍କ ନିକଟରେ ପ୍ରକାଶ କଲି, କିନ୍ତୁ, ବତ୍ସ ! କନ୍ୟା ଜନ୍ମ ପୂର୍ବରୁ ସେ କୌଣସି ବିଦ୍ୟାଧର ଚକ୍ରବର୍ତ୍ତୀଙ୍କର ମନୋହାରିଣୀ ହେବ ବୋଲି ଭଗବାନ ପାର୍ବତୀପତି କହିଥିଲେ । ବିଦ୍ୟାଧର ଚକ୍ରବର୍ତ୍ତୀମାନଙ୍କର ଶରୀରରେ ଖଡ୍‌ଗ, ତିଳକ ପ୍ରଭୃତି ଯେଉଁ ସବୁ ଚିହ୍ନ ରହିବା କଥା ତାହା ସବୁ ତୁମ ଶରୀରରେ ଦେଖାଯାଉଅଛି । ତେଣୁ ବିଧାତା କର୍ପୂରିକା ପାଇଁ ତୁମକୁ ଜନ୍ମଦେଇଛି ବୋଲି ମୋର ଧାରଣା । ତୁମେ ବର୍ତ୍ତମାନ ମୋର ଏହି ଗୃହରେ ବାସକରି ଭବିଷ୍ୟତର ପ୍ରତୀକ୍ଷା କର ।' ଏହା କହି ବୃଦ୍ଧା ବିଭିନ୍ନ ଖାଦ୍ୟପାନ ଦ୍ୱାରା ସେମାନଙ୍କୁ ଆପ୍ୟାୟନ କଲା ।

ପରଦିନ ପ୍ରଭାତରୁ ରାଜକୁମାର ନରବାହନଦତ୍ତ ଗୋମୁଖଙ୍କ ସହିତ ଗୁପ୍ତ ମନ୍ତ୍ରଣା କରି ନିଜେ ଜଣେ ମହାଯୋଗୀର ବେଶ ଧାରଣ କଲେ । ଏ ପ୍ରକାର ଛଦ୍ମବେଶ ଗ୍ରହଣ କରି ସେ ''ହା ହଂସିନୀ, ହା ହଂସିନୀ'' ବୋଲି ଚିତ୍କାର ପୂର୍ବକ ରାଜଭବନ ନିକଟରେ ଇତସ୍ତତଃ ଦୌଡ଼ିବାକୁ ଲାଗିଲେ । ତାଙ୍କର ଏହି ପ୍ରକାର ବ୍ୟବହାରରେ ବିସ୍ମିତ ହୋଇ ରାଜ୍ୟବାସୀ କ୍ରମେ କ୍ରମେ ସେଠାରେ ଋଣ୍ଡୀଭୂତ ହେଲେ । କିଛି ସମୟପରେ ଦାସୀମାନେ ଏହା ଦେଖି ରାଜକୁମାରୀ କର୍ପୂରିକାଙ୍କୁ କହିଲେ, ''ରାଜଭବନର ସିଂହଦ୍ୱାର ନିକଟରେ ଜଣେ ମହାବ୍ରତୀ ଯୁବକ ଆସି ପହଞ୍ଚିଛନ୍ତି । ତାଙ୍କ ସହିତ ତାଙ୍କର ଅନ୍ୟଜଣେ ମିତ୍ର ରହିଥିଲେ ସୁଦ୍ଧା ସୌନ୍ଦର୍ଯ୍ୟରେ ସେ ତାଙ୍କର ସମକକ୍ଷ ନୁହେ । ସେହି ଯୁବକ କନ୍ଦର୍ପର ମହାମୋହନ ମନ୍ତ୍ର ତୁଲ୍ୟ ସର୍ବଦା 'ହା ହଂସିନୀ', 'ହା ହଂସିନୀ' ବୋଲି ଉଚ୍ଚାରଣ କରୁଅଛନ୍ତି ।''

ଏହା ଶୁଣି ରାଜକୁମାରୀ ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ ପୂର୍ବକ କୌତୂହଳବଶତଃ ତାଙ୍କୁ ନିମନ୍ତ୍ରଣ କରି ଆଣିଲେ । ଭଗବାନ ଶଙ୍କରଙ୍କର ଆରାଧନା ଫଳରେ ପୁନର୍ଜନ୍ମ ଲାଭ କରିଥିବା କନ୍ଦର୍ପ ତୁଲ୍ୟ ଏହି ଯୁବକଙ୍କର ରୂପଲାବଣ୍ୟ ଦର୍ଶନ କରି ରାଜକୁମାରୀ ସେ କାହିଁକି ବାରମ୍ବାର 'ହା ହଂସିନୀ, 'ହା ହଂସିନୀ' ଉଚ୍ଚାରଣ କରୁଅଛନ୍ତି ବୋଲି ଜିଜ୍ଞାସା କରନ୍ତେ ରାଜକୁମାର ପୁଣି 'ହା ହଂସିନୀ' ବୋଲି କହି ନୀରବ ରହିଲେ । ରାଜକୁମାରୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଗୋମୁଖ କହିଲେ—

'ଦେବି, ତାର କାରଣ ମୁଁ ସଂକ୍ଷେପରେ ଆପଣଙ୍କୁ କହିପାରେ । ନିଜର କର୍ମ ଫଳରୁ ପୂର୍ବଜନ୍ମରେ ଏ ମହାତ୍ମା ରାଜହଂସ ରୂପରେ ଜନ୍ମ ଗ୍ରହଣ କରିଥିଲେ । ସମୁଦ୍ର

ତଟବର୍ତ୍ତୀ କୌଣସି ଏକ ବିଶାଳ ପୁଷ୍କରିଣୀ ନିକଟସ୍ଥ ଏକ ଚନ୍ଦନବୃକ୍ଷରେ ନୀଡ଼ରଚନା କରି ସେ ପୂର୍ବଜନ୍ମରେ ନିଜର ପତ୍ନୀ ସହିତ ସେଠାରେ ବାସ କରୁଥାଆନ୍ତି । କାଳକ୍ରମେ ତାଙ୍କ ଔରସରୁ କେତୋଟି ସନ୍ତାନ ଜନ୍ମଗ୍ରହଣ କଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ସମୁଦ୍ରର ଲହରୀ ଦ୍ୱାରା ସେହି ଶିଶୁସନ୍ତାନଗୁଡ଼ିକ ନଷ୍ଟ ହୋଇଯାଆନ୍ତେ ସେହି ଶୋକରେ ତାଙ୍କର ପ୍ରିୟତମା ହଂସିନୀ ସମୁଦ୍ର ଜଳରେ ଆତ୍ମହତ୍ୟା କଲେ । ବିରହ ବେଦନାରେ ବ୍ୟାକୁଳ ହୋଇ ସେହି ରାଜହଂସ ସଙ୍କଳ୍ପ କଲେ ଯେ ପରଜନ୍ମରେ ସେ ଜାତିସ୍ମର ରାଜକୁମାର ରୂପେ ଜନ୍ମଗ୍ରହଣ କରିବେ ଏବଂ ତାଙ୍କର ପତ୍ନୀ ସେହିପରି ଜାତିସ୍ମର ରାଜକୁମାରୀ ହେବେ । ଏହିପରି ସଙ୍କଳ୍ପ କରି ଏବଂ ମହାଦେବଙ୍କ ଧ୍ୟାନ ପୂର୍ବକ ସେ ସେହି ସମୁଦ୍ର ମଧ୍ୟରେ ଆତ୍ମହତ୍ୟା କଲେ । ସେହି ରାଜହଂସ ଏହି ଜନ୍ମରେ ବତ୍ସରାଜ ଉଦୟନଙ୍କର ପୁତ୍ର ରୂପରେ ଜନ୍ମଗ୍ରହଣ କରି ଅଛନ୍ତି । ଏହି ନରବାହନଦତ୍ତ ଜାତିସ୍ମର ଏବଂ ଏହାଙ୍କ ଜନ୍ମ ସମୟରେ ରାଜକୁମାର ବିଦ୍ୟାଧର ଚକ୍ରବର୍ତ୍ତୀ ହେବେ ବୋଲି ଶୂନ୍ୟବାଣୀ ଶୁଣାଯାଇଥିଲା । କ୍ରମଶଃ ଏ ଯୌବନ ପ୍ରାପ୍ତହୋଇ ଯୁବରାଜ ପଦରେ ଅଭିଷିକ୍ତ ହେଲେ । କୌଣସି କାରଣବଶତଃ ପିତା ଉଦୟନ ବିଦ୍ୟାଧର କନ୍ୟା ମଦନମଞ୍ଚୁକାଙ୍କ ସହିତ ଏହାଙ୍କର ବିବାହ କରାଇଦେଲେ । କିଛିଦିନ ପରେ ବିଦ୍ୟାଧରପତି ହେମପ୍ରଭଙ୍କ କନ୍ୟା ରତ୍ନପ୍ରଭା ନିଜେ ଆସି ଏହାଙ୍କୁ ପତିପଦରେ ବରଣ କଲେ । ତଥାପି ପୂର୍ବଜନ୍ମର ପ୍ରାଣପ୍ରିୟା ପତ୍ନୀ ସେହି ହଂସିନୀକୁ ସ୍ମରଣ କରି ଯୁବରାଜ ଶାନ୍ତିଲାଭ କରିପାରୁ ନଥାନ୍ତି । ମୁଁ ତାଙ୍କର ଘନିଷ୍ଠ ବନ୍ଧୁ ଥିବାରୁ ସେ ମୋ ନିକଟରେ ଏ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଦିନେ ମୋ ସହିତ ମୃଗୟା ନିମନ୍ତେ ଆସିଥିବା ବେଳେ କୌଣସି ସିଦ୍ଧ ତପସ୍ୱିନୀଙ୍କ ସହିତ ଆମ୍ଭମାନଙ୍କର ସାକ୍ଷାତ ହେଲା । କଥା ପ୍ରସଙ୍ଗରେ ସେ କହିଲେ, 'ବତ୍ସ, ପୂର୍ବଜନ୍ମରେ ତୁମେ ହଂସ ରୂପରେ ଜନ୍ମଗ୍ରହଣ କରିଥିଲ । କିନ୍ତୁ ପ୍ରକୃତରେ ତୁମେ ହେଉଛ ଶାପଗ୍ରସ୍ତ କନ୍ଦର୍ପ । ତୁମର ପତ୍ନୀ ଥିବା ହଂସିନୀ ମଧ୍ୟ କୌଣସି ଶାପଗ୍ରସ୍ତା ଦିବ୍ୟ ରମଣୀ, ତୁମେ ଦୁହେଁ ସମୁଦ୍ର ତଟବର୍ତ୍ତୀ କୌଣସି ଚନ୍ଦନ ବୃକ୍ଷରେ ବାସ କରୁଥିଲ । ସମୁଦ୍ର ଲହରୀ ଦ୍ୱାରା ତୁମର ଶିଶୁଶାବକଗୁଡ଼ିକ ନଷ୍ଟ ହୋଇଯାଆନ୍ତେ ହଂସିନୀ ସେହି ଦୁଃଖରେ ଆତ୍ମହତ୍ୟା କଲା; ଏବଂ ତୁମେ ମଧ୍ୟ ବିରହ ଦୁଃଖ ସହ୍ୟ କରିନପାରି ପ୍ରାଣ ବିସର୍ଜନ କଲ । ବର୍ତ୍ତମାନ ସେହି ଭଗବାନ ମହାଦେବଙ୍କ ଅନୁଗ୍ରହରୁ ତୁମେ ବତ୍ସରାଜ ଉଦୟନଙ୍କ ପୁତ୍ର ରୂପରେ ଜନ୍ମଗ୍ରହଣ କରି ଜାତିସ୍ମର ହୋଇପାରିଅଛ, ତୁମର ପୂର୍ବ ଜନ୍ମର ପତ୍ନୀ ସେହି ହଂସିନୀ ମଧ୍ୟ ସମୁଦ୍ର ପର ପାରରେ ଥିବା କର୍ପୂରସମ୍ଭବ ଦ୍ୱୀପରେ ରାଜା କର୍ପୂରକଙ୍କ କନ୍ୟା କର୍ପୂରିକା ରୂପରେ ଜନ୍ମ ଗ୍ରହଣ କରିଅଛି । ତେଣୁ ବତ୍ସ, ତୁମେ

ବର୍ତ୍ତମାନ ସେଠାକୁ ଯାଇ ତାକୁ ଗ୍ରହଣ କର । ଏହା କହି ସେ ତପସ୍ୱିନୀ ଅନ୍ତର୍ହିତା ହୋଇଗଲେ ।

ସେହି ସମୟଠାରୁ ରାଜକୁମାର ତୁମ ସ୍ନେହରେ ଆକୃଷ୍ଟ ହୋଇ ବହୁ ନଦ, ନଦୀ, ବନ, ପର୍ବତ ଅତିକ୍ରମ କରି ନିଜର ଜୀବନ ବିନିମୟରେ ଆସି ସମୁଦ୍ର ତଟରେ ଉପସ୍ଥିତ ହେଲେ । ସେଠାରେ ହେମପୁର ନାମକ ରାଜ୍ୟର ରାଜା ରାଜ୍ୟଧର ଏକ ଅପୂର୍ବ ଯନ୍ତ୍ର ନିର୍ମିତ ବିମାନ ପ୍ରଦାନ କରନ୍ତେ ତା'ରି ସାହାଯ୍ୟରେ ଆମ୍ଭେମାନେ ଏହି ଦୁର୍ଗମ ଦ୍ୱୀପରେ ଆସି ଅବତରଣ କଲୁ । ତେଣୁ ମୋର ପ୍ରଭୁ ତୁମ ପ୍ରେମରେ ବ୍ୟାକୁଳ ହୋଇ 'ହା ହଂସିନୀ; ହା ହଂସିନୀ' ଉଚ୍ଚାରଣ ପୂର୍ବକ ଏଠାରେ ଆସି ଉପସ୍ଥିତ ହୋଇଅଛନ୍ତି । ବର୍ତ୍ତମାନ ତୁମର ଆନନ୍ଦଦାୟକ ମୁଖଚନ୍ଦ୍ର ଦର୍ଶନ ପୂର୍ବକ ତାଙ୍କର ଗଭୀର ଦୁଃଖ ରୂପକ ଅନ୍ଧକାର କ୍ରମେ କ୍ରମେ ଦୂରୀଭୂତ ହେଉଅଛି, ତେଣୁ ବହୁକଷ୍ଟ ସ୍ୱୀକାର କରି ଆସିଥିବା ଏହି ଉତ୍କଣ୍ଠିତ ରାଜଅତିଥିଙ୍କ ଆପଣଙ୍କର କଟାକ୍ଷରୂପୀ ନୀଳକମଳମାଳାଦ୍ୱାରା ସତ୍କାର କରନ୍ତୁ ।'

ରାଜକୁମାରୀ କର୍ପୂରିକା ଗୋମୁଖଙ୍କର ଏହି ଛଳନାପୂର୍ଣ୍ଣ ବାକ୍ୟରେ ବିଶ୍ୱାସ କରି ଏବଂ ତାକୁ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ସହିତ ମିଳାଇ ଚିନ୍ତା କଲେ, 'ପ୍ରକୃତରେ ମୋର ପତିଙ୍କର ମୋ ପ୍ରତି ଅଖଣ୍ଡ ସ୍ନେହ ଥିଲା । ମୁଁ ତାଙ୍କ ପ୍ରତି କୋପାନ୍ୱିତ ହୋଇ ପ୍ରକୃତରେ ଭୁଲ କରିଅଛି ।' ଏହିପରି ଚିନ୍ତାକରି ସେ ସ୍ନେହପୂର୍ଣ୍ଣ ଓ ବିନମ୍ର ଭାବରେ କହିଲେ, ''ମୁଁ ହିଁ ସେହି ହଂସିନୀ । ମୋ ନିମନ୍ତେ ଆର୍ଯ୍ୟପୁତ୍ର ଦୁଇଟି ଜନ୍ମରେ ବହୁକଷ୍ଟ ସହ୍ୟ କରିଥିବାରୁ ମୁଁ ଧନ୍ୟ । ବର୍ତ୍ତମାନ ମୁଁ ଆପଣଙ୍କ ପ୍ରେମରେ କ୍ରୀତ, ଆପଣ ମୋତେ ଦୟାପୂର୍ବକ ଗ୍ରହଣ କରନ୍ତୁ ।''

ଏହା କହି ସେ ନରବାହନଦତ୍ତଙ୍କୁ ସ୍ନାନ, ଭୋଜନ ଇତ୍ୟାଦି ଦ୍ୱାରା ସତ୍କୃତ କଲେ । ଦାସଦାସୀମାନଙ୍କଦ୍ୱାରା ପିତାଙ୍କ ନିକଟକୁ ଏ ସମ୍ବାଦ ପ୍ରେରଣ କରି ସେ ନିଜେ ଯାଇ ତାଙ୍କ ନିକଟରେ ଉପସ୍ଥିତ ହେଲେ । ରାଜାମଧ କନ୍ୟାର ବିବାହ ଅଭିଳାଷ ଜ୍ଞାତ ହୋଇ ଏବଂ ତାର ଉପଯୁକ୍ତ ପାତ୍ର ସ୍ୱୟଂ ଉପସ୍ଥିତ ଥିବା ଦେଖି, ସର୍ବୋପରି ନରବାହନଦତ୍ତଙ୍କ ଶରୀରରେ ବିଦ୍ୟାଧର ଚକ୍ରବର୍ତ୍ତୀ ସୂଚକ ଚିହ୍ନ ସବୁ ଲକ୍ଷ୍ୟ କରି ନିଜକୁ ଧନ୍ୟ ମନେ କଲେ । ଶୁଭ ତିଥିରେ ରାଜା ଆନନ୍ଦର ସହିତ କର୍ପୂରିକାଙ୍କୁ ନରବାହନଦତ୍ତଙ୍କ ହସ୍ତରେ ବିଧିପୂର୍ବକ ଅର୍ପଣ କଲେ । ପ୍ରତ୍ୟେକ ଥର ଅଗ୍ନିପ୍ରଦକ୍ଷିଣ କରିବା ପରେ ବିବାହ ବେଦୀରେ ରାଜା ନିଜର ଜାମାତାଙ୍କୁ ତିନିକୋଟି ସ୍ୱର୍ଣ୍ଣମୋହର ଏବଂ ତତ୍ତୁଲ୍ୟ କର୍ପୂର ଦାନ କରୁଥିଲେ । ରାଜପ୍ରଦତ୍ତ ସୁବର୍ଣ୍ଣ ଓ କର୍ପୂର ରାଶି ଦେଖିଲେ ମନେ ହେଉଥିଲା

ସତେ ଯେପରି ପାର୍ବତୀଙ୍କର ବିବାହ ଉତ୍ସବରେ ଯୋଗଦେବା ନିମିତ୍ତ ସୁମେରୁ ଓ କୈଳାସ ପର୍ବତ ସେଠାରେ ଆସି ଉପସ୍ଥିତ ହୋଇଅଛନ୍ତି । ଏହାପରେ ବହୁକୋଟିବସ୍ତ୍ର ଏବଂ ତିନିଶତ ଅଳଙ୍କୃତ ଦାସୀ ରାଜା କର୍ପୂରକ ଜାମାତାଙ୍କୁ ଦାନ କଲେ । ଏହିପରି ବହୁ ଧନରତ୍ନ ଓ ଦାସଦାସୀ ଲାଭ କରି ନରବାହନଦତ୍ତ କର୍ପୂରସମ୍ଭବ ଦ୍ୱୀପରେ ବାସ କରିବାକୁ ଲାଗିଲେ । ମାଧବୀଲତା ଓ ବସନ୍ତର ସଂଯୋଗ ତୁଲ୍ୟ ଏମାନେ ଆନନ୍ଦରେ ଦିନ ଯାପନ କରୁଥାଆନ୍ତି ।

ଦିନେ ସଫଳ ମନୋରଥ ନରବାହନଦତ୍ତ କର୍ପୂରିକାଙ୍କ ନିକଟରେ ନିଜ ରାଜ୍ୟକୁ ଫେରିଯିବା ନିମନ୍ତେ ପ୍ରସ୍ତାବ ଆଗତ କରନ୍ତେ କର୍ପୂରିକା କହିଲେ, 'ଯଦି ଯିବା କଥା, ତାହାହେଲେ ଆକାଶଗାମୀ ବିମାନରେ କାହିଁକି ନ ଯିବା ? ଆପଣ ଆଣିଥିବା ବିମାନଟି ଯଦି କ୍ଷୁଦ୍ର ହୋଇଥାଏ, ତାହାହେଲେ ମୁଁ ଅନ୍ୟ ଏକ ବୃହତ୍ତର ବିମାନ ମଗାଇ ଦେଉଅଛି । ଏହି ଦ୍ୱୀପରେ ପ୍ରାଣଧର ନାମକ ଶିଳ୍ପୀ ଯନ୍ତ୍ରଯୁକ୍ତ ବିମାନ ନିର୍ମାଣ କରିବାରେ କୁଶଳ । ସେ କୌଣସି ଦୂର ଦେଶରୁ ଆସି ଏଠାରେ ଅବସ୍ଥାନ କରୁଅଛନ୍ତି । ମୁଁ ତାଙ୍କଦ୍ୱାରା ଅନ୍ୟ ଏକ ବିମାନ ନିର୍ମାଣ କରାଇବାର ବ୍ୟବସ୍ଥା କରୁଅଛି ।' ଏହା କହି ରାଜକୁମାରୀ ଦ୍ୱାରପାଳ ପ୍ରବନ୍ଧକଦ୍ୱାରା ପ୍ରାଣଧର ନିକଟକୁ ଏକ ବିଶାଳ ଯନ୍ତ୍ରଯୁକ୍ତ ବିମାନ ନିର୍ମାଣ କରିବା ନିମିତ୍ତ ଆଜ୍ଞା ପତ୍ର ପ୍ରେରଣ କଲେ ।

ପ୍ରାଣଧରଙ୍କୁ ଏ ପ୍ରକାର ନିର୍ଦ୍ଦେଶ ଦେଇ କର୍ପୂରିକା ଦାସୀମାନଙ୍କଦ୍ୱାରା ଏହି ସମ୍ବାଦ ପିତାଙ୍କ ନିକଟରେ ଜ୍ଞାପନ କଲେ । ଏହାଶୁଣି ରାଜା ମଧ୍ୟ ସେଠାରେ ଉପସ୍ଥିତ ହେଲେ । ନରବାହନଦତ୍ତ, ପ୍ରାଣଧର ରାଜ୍ୟଧରଙ୍କ ଜ୍ୟେଷ୍ଠ ଭ୍ରାତା ହୋଇଥିବେ ବୋଲି ଚିନ୍ତା କରୁଥିବା ସମୟରେ ସେ ନିଜେ ସେଠାରେ ଆସି ଉପସ୍ଥିତ ହୋଇ କହିଲେ 'ଦେବି, ମୁଁ ଏକ ବିଶାଳ ବାୟୁଯାନ ନିର୍ମାଣ କରି ରଖିଅଛି । ସେଥିରେ ଅନ୍ୟୂନ ସହସ୍ର ବ୍ୟକ୍ତି ଅନାୟାସରେ ଯାଇପାରିବେ ।' ପ୍ରାଣଧରଙ୍କଠାରୁ ଏହା ଶୁଣି ନରବାହନଦତ୍ତ ତାଙ୍କୁ ଅଭିନନ୍ଦନ କରି କହିଲେ, 'ଆପଣ ବୋଧହୁଏ ସେହି ରାଜ୍ୟଧରଙ୍କ ଜ୍ୟେଷ୍ଠ ଭ୍ରାତା ଯେ କି ବିଭିନ୍ନ ପ୍ରକାର ଅଦ୍ଭୁତ ଯନ୍ତ୍ରଯାନ ନିର୍ମାଣ କରିବାରେ ଧୁରୀଣ' । ଏଥିରେ ବିସ୍ମିତ ହୋଇ ପ୍ରାଣଧର ''ମୁଁ ହିଁ ସେହି ରାଜ୍ୟଧରଙ୍କ ଜ୍ୟେଷ୍ଠ ଭ୍ରାତା । କିନ୍ତୁ ଆପଣ ଆମମାନଙ୍କ ପରିଚୟ ପାଇଲେ କିପରି ?'' ବୋଲି ବିନମ୍ର ଭାବେ ଜିଜ୍ଞାସା କରନ୍ତେ, ନରବାହନ ଦତ୍ତ ରାଜ୍ୟଧରଙ୍କଠାରୁ ଶୁଣିଥିବା ସମସ୍ତ ସମାଚାର ଆମୂଳଚୂଳ ବର୍ଣ୍ଣନା କଲେ ।

ଏହାପରେ ପ୍ରାଣଧରଙ୍କ ପ୍ରଦତ୍ତ ମହାବିମାନ ଉପରେ ନରବାହନଦତ୍ତ ଶ୍ୱଶୁରଙ୍କ ଠାରୁ ପ୍ରାପ୍ତ ସମସ୍ତ ଦାସଦାସୀ, ସୁବର୍ଣ୍ଣ, କର୍ପୂର, ପ୍ରତିହାର ଏବଂ ବିମାନଚାଳକ

ପ୍ରାଣଧରଙ୍କ ସହିତ ଆରୋହଣ କଲେ । ପୁରନାରୀମାନଙ୍କଦ୍ୱାରା ମଙ୍ଗଳାଚରଣ ପୂର୍ବକ ନବବଧୂ କର୍ପୂରିକା ମଧ୍ୟ ବିମାନରେ ଆରୋହଣ କରି ରାଜକୁମାରଙ୍କ ବାମଭାଗରେ ଯାଇ ଆସନ ଗ୍ରହଣ କଲେ । ଗୋମୁଖ ମଧ୍ୟ ନରବାହନଦତ୍ତଙ୍କର ଆଦେଶରେ ବ୍ରାହ୍ମଣମାନଙ୍କୁ ବହୁ ଧନରତ୍ନଦ୍ୱାରା ସନ୍ତୁଷ୍ଟ କରି ବିମାନ ଆରୋହଣ କଲେ ।

ନରବାହନଦତ୍ତ ପ୍ରଥମେ ସମୁଦ୍ରର ପୂର୍ବ ତଟବର୍ତ୍ତୀ ନଗରରେ ରାଜ୍ୟଧରଙ୍କୁ ଦର୍ଶନ କରି ପରେ ସ୍ୱ ରାଜଧାନୀ ଅଭିମୁଖରେ ପ୍ରସ୍ଥାନ କରିବା ନିମନ୍ତେ ପ୍ରାଣଧରଙ୍କୁ ଅନୁରୋଧ କରନ୍ତେ ସେ ଅଳ୍ପକ୍ଷଣ ମଧ୍ୟରେ ବିମାନଟିକୁ ନେଇ ହେମପୁର ନଗର (ରାଜ୍ୟଧରଙ୍କ) ମଧ୍ୟରେ ଅବତରଣ କରାଇଲେ । ଯୁବରାଜ ବିନମ୍ର ଭାବରେ ପ୍ରଣାମ କରୁଥିବା ରାଜ୍ୟଧରଙ୍କୁ ବହୁ ଦାସଦାସୀଦ୍ୱାରା ଅଭିନନ୍ଦନ କଲେ । ବହୁଦିନ ପରେ ନିଜର ଜ୍ୟେଷ୍ଠଭ୍ରାତାଙ୍କୁ ଦର୍ଶନ କରିଥିବା ଯୋଗୁଁ ରାଜ୍ୟଧର ତାଙ୍କୁ ଏତେ ଶୀଘ୍ର ବିଦାୟ ଦେବା ନିମିତ୍ତ ଅନିଚ୍ଛା ପ୍ରକାଶ କରନ୍ତେ ଯୁବରାଜ ତାଙ୍କୁ ଆଶ୍ୱାସନା ପ୍ରଦାନ ପୂର୍ବକ ପୁଣି ବିମାନ ଯୋଗେ କୌଶାମ୍ବୀ ଅଭିମୁଖରେ ଯାତ୍ରା କଲେ । ବହୁ ଦାସଦାସୀ, ଧନରତ୍ନ ଏବଂ ନବପରିଣୀତା କର୍ପୂରିକାଙ୍କ ସହ ନରବାହନଦତ୍ତ ଅବଲୀଳା କ୍ରମେ ବିମାନପୃଷ୍ଠରୁ ଅବତରଣ କଲାବେଳେ ରାଜ୍ୟବାସୀ ବିସ୍ମୟର ସହିତ ଚାହିଁ ରହିଥାଆନ୍ତି । ସେମାନଙ୍କ କୋଳାହଳ ଏବଂ ପୁତ୍ରର ଆଗମନ ସମ୍ବାଦ ଶୁଣି ପିତା ଉଦୟନ ମହାରାଣୀ, ମନ୍ତ୍ରୀପରିଷଦ ତଥା ପୁତ୍ରବଧୂମାନଙ୍କ ସହ ସେମାନଙ୍କୁ ପାଛୋଟି ଆଣିବା ନିମନ୍ତେ ଅଗ୍ରସର ହେଲେ । ବିମାନ ଆରୋହଣଦ୍ୱାରା ସ୍ୱୀୟ ଚକ୍ରବର୍ତ୍ତିତ୍ୱର ସୂଚନା ଦେଉଥିବା ଯୁବରାଜ ଏବଂ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବା ଯୁବରାଣୀଙ୍କୁ ସେମାନେ ଆଦରର ସହ ଅଭିନନ୍ଦନ କଲେ । ପଦ୍ମାବତୀ ଓ ବାସବଦତ୍ତା ଅଶ୍ରୁପୂର୍ଣ୍ଣ ଲୋଚନରେ ପୁତ୍ର ଓ ପୁତ୍ରବଧୂକୁ କୋଳାଗ୍ରତ କରିନେଲେ । ନରବାହନଦତ୍ତଙ୍କ ଉଭୟ ପତ୍ନୀ ମଦନମଞ୍ଜୁକା ଓ ରତ୍ନପ୍ରଭା ଈର୍ଷ୍ୟା ପରିତ୍ୟାଗ ପୂର୍ବକ ଯୁବରାଜଙ୍କ ଚରଣ ସ୍ପର୍ଶକରି ତାଙ୍କର ହୃଦୟ ହରଣ କରିନେଲେ । ଏହାପରେ ନରବାହନଦତ୍ତ ଯୌଗନ୍ଧରାୟଣ ପ୍ରଭୃତି ପିତାଙ୍କର ମନ୍ତ୍ରୀ ଏବଂ ମରୁଭୂତି ପ୍ରଭୃତି ସ୍ୱୀୟ ମନ୍ତ୍ରୀମାନଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନଦ୍ୱାରା ଆପ୍ୟାୟିତ କଲେ । ପତିଙ୍କ ସହିତ ସମୁଦ୍ର ଲଙ୍ଘନ କରି ଆସିଥିବା ଉଚ୍ଚକୂଳସମ୍ଭୂତା, ଲକ୍ଷ୍ମୀଙ୍କ ସହୋଦରା ଭଗିନୀତୁଲ୍ୟ ରୂପବତୀ ତଥା ସହସ୍ର ପରିଚାରିକା ପରିବୃତା କର୍ପୂରିକା ବତ୍ସରାଜ ଉଦୟନ ପ୍ରଭୃତିଙ୍କ ସ୍ନେହ ପାଶରେ ଆବଦ୍ଧ ହୋଇ ନିଜର ପିତୃକୁଳ ବିସ୍ମୃତ ହେଲେ । ସେମାନଙ୍କ ସହ ଆସିଥିବା କର୍ପୂରକଙ୍କ ପ୍ରତିହାରକୁ ବହୁମୂଲ୍ୟ ଉପଢ଼ୌକନ

ଦ୍ୱାରା ସମ୍ମାନିତ କରାଗଲା । ସେ ମଧ୍ୟ ବିମାନସ୍ଥ ସମସ୍ତ ଧନସମ୍ପଦ ଉଦୟନଙ୍କ କରକମଳରେ ଆଣି ସମର୍ପଣ କଲେ । ନରବାହନଦତ୍ତ ବିମାନ ନିର୍ମାତା ପ୍ରାଣଧରଙ୍କ ସହିତ ସମସ୍ତଙ୍କ ପରିଚୟ କରାଇ ଦିଅନ୍ତେ, ତାଙ୍କୁ ମଧ୍ୟ ଉପଯୁକ୍ତ ମଣିମାଣିକ୍ୟଦ୍ୱାରା ଅଭିନନ୍ଦନ କରାଗଲା ।

ପରିଚୟ ପର୍ବ ସମାପ୍ତ ହେବାପରେ ଉଦୟନ କର୍ପୂରିକାପ୍ରାପ୍ତିର ସମଗ୍ର ବୃତ୍ତାନ୍ତ ସବିସ୍ତୃତ ଶୁଣିବା ନିମିତ୍ତ ଇଚ୍ଛା ପ୍ରକାଶ କରନ୍ତେ ଗୋମୁଖ ମୃଗୟା ବିନୋଦଠାରୁ କୌଶାମ୍ବୀ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସମସ୍ତ ବିବରଣୀ ଆମୂଳଚୂଳ ବର୍ଣ୍ଣନା କରି ସମସ୍ତଙ୍କୁ ପ୍ରୀତ କଲେ । ଏଥିରେ ଗୋମୁଖଙ୍କ ପ୍ରଭୁଭକ୍ତି ପାଇଁ ସମସ୍ତେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ପୁଣି ପଥମଧ୍ୟରେ ଦେଖା ଦେଇଥିବା ସମସ୍ତ ବିଘ୍ନ ଦୂର କରିପାରୁଥିବା ଯୋଗୁଁ ପତିପରାୟଣା ରତ୍ନପ୍ରଭାଙ୍କୁ ମଧ୍ୟ ସମସ୍ତେ ଅକୁଣ୍ଠ ଭାବେ ପ୍ରଶଂସା କରିବାକୁ ଲାଗିଲେ । କିଛି ସମୟ ସେଠାରେ ବିଶ୍ରାମ କରି ନରବାହନଦତ୍ତ ମାତାପିତା ଓ ପତ୍ନୀମାନଙ୍କ ସହ ରାଜଭବନରେ ଯାଇ ଉପସ୍ଥିତ ହେଲେ । ଏଠାରେ ଆଶ୍ରିତ, ସେବକ, ବନ୍ଧୁବାନ୍ଧବ ଏବଂ ପାରିଷଦବୃନ୍ଦଙ୍କୁ ବହୁ ଧନରତ୍ନ ଦାନରେ ଆପ୍ୟାୟିତ କରି ଯୁବରାଜ ନରବାହନଦତ୍ତ ପ୍ରତିହାର ତଥା ବିମାନ ନିର୍ମାତା ପ୍ରାଣଧରଙ୍କୁ ପୁଣି ବିବିଧ ଉପହାର ଦ୍ୱାରା ସନ୍ତୁଷ୍ଟ କଲେ ।

ସ୍ନାନ ଭୋଜନରେ ଶ୍ରାନ୍ତି ଅପନୋଦନ କରି ପ୍ରାଣଧର ବିନମ୍ର ଭାବରେ ଯୁବରାଜଙ୍କୁ ନିବେଦନ କଲେ ଯେ 'ମହାରାଜ, ରାଜା କର୍ପୂରକଙ୍କ ନିର୍ଦ୍ଦେଶ ଅଛି ଯେ ଆପଣମାନଙ୍କୁ ଏଠାରେ ପହଞ୍ଚାଇ ଦେବା ପରେ ଆମେ ଯଥାଶୀଘ୍ର ଫେରିଯାଇ ଆପଣମାନଙ୍କର କୁଶଳବାର୍ତ୍ତା ତାଙ୍କଠାରେ ନିବେଦନ କରିବୁ । ଏଣୁ ବର୍ତ୍ତମାନ ହିଁ ଆମକୁ ଏଠାରୁ ବିଦାୟ ନେବାକୁ ହେବ । ରାଜକୁମାରୀଙ୍କ ସ୍ୱହସ୍ତ ଲିଖିତ ଖଣ୍ଡେ ପତ୍ର ଲାଭକଲେ କର୍ପୂରକଙ୍କ ସ୍ନେହପ୍ରବଣ ହୃଦୟ ଆଶ୍ୱସ୍ତ ହେବ । ବିମାନ ଉପରୁ ପଡ଼ିଯିବା ଭୟ ସର୍ବଦା ତାଙ୍କୁ ଆଶଙ୍କିତ କରୁଥିବ । ଏଣୁ ପତ୍ର ପ୍ରଦାନ ପୂର୍ବକ ଆମ୍ଭମାନଙ୍କୁ ଆପଣ ପ୍ରସ୍ଥାନ କରିବା ନିମିତ୍ତ ଆଦେଶ ଦିଅନ୍ତୁ । ମୁଁ ରାଜାଙ୍କ ନିକଟରେ ଆପଣମାନଙ୍କର କୁଶଳ ସମାଚାର ନିବେଦନ କରି ପୁଣି ସପରିବାର ଏଠାକୁ ଫେରି ଆସିବି । ଆପଣଙ୍କର ଅମୃତମୟ ଚରଣ କମଳ ବ୍ୟତୀତ ଅନ୍ୟତ୍ର ମୋର ମନ ସନ୍ତୋଷ ଲାଭ କରିପାରିବ ନାହିଁ ।'

ପ୍ରାଣଧରଙ୍କଠାରୁ ଏହା ଶୁଣି ନରବାହନଦତ୍ତ ପତ୍ର ଲେଖିବା ସକାଶେ କର୍ପୂରିକାଙ୍କୁ ଅନୁରୋଧ କଲେ । ସେ ମଧ୍ୟ ପତ୍ରଟିଏ ଲେଖି ବସିଲେ, 'ତାତ, ଉତ୍ତମ ପତି ଲାଭକରି

ମୁଁ ଯଥେଷ୍ଟ ଆନନ୍ଦରେ ଅଛି । ତେଣୁ ମୋ ପାଇଁ ଆପଣ ଆଦୌ ଚିନ୍ତିତ ହେବେନାହିଁ । ଉତ୍ତମପୁରୁଷ ହସ୍ତରେ ସମର୍ପଣ କରିଥିବା ଲକ୍ଷ୍ମୀ ପାଇଁ କିଏ କଣ କେବେ ଚିନ୍ତାକରେ ?'

ପତ୍ରଟି ହସ୍ତଗତ ହେବାପରେ ପ୍ରାଣଧର ଓ ପ୍ରତିହାର ଉପଯୁକ୍ତ ଧନ ଓ ସମ୍ମାନଦ୍ୱାରା ସତ୍କୃତ ହୋଇ କୌଶାମ୍ବୀରୁ ବିଦାୟ ନେଲେ । ଜନତାର ବିସ୍ମୟ ଉତ୍ପାଦନ ପୂର୍ବକ ଉଭୟେ ଯନ୍ତ୍ରଚାଳିତ ବିମାନ ସହାୟତାରେ ଆକାଶମାର୍ଗରେ ସମୁଦ୍ର ଲଙ୍ଘନ କରି କର୍ପୂରସମ୍ଭବ ଦ୍ୱୀପରେ ଯାଇ ଉପସ୍ଥିତ ହେଲେ । ସେଠାରେ ରାଜକୁମାରୀଙ୍କ ପତିଗୃହ ଯାତ୍ରା ସମ୍ପର୍କୀୟ ସମସ୍ତ ବୃତ୍ତାନ୍ତ ଜ୍ଞାପନ କରି ଏବଂ କର୍ପୂରିକାଙ୍କ ପତ୍ର ପ୍ରଦାନ ଦ୍ୱାରା ପ୍ରାଣଧର ରାଜା କର୍ପୂରକଙ୍କ ଆନନ୍ଦ ସମ୍ପାଦନ କଲେ ।

ଦ୍ୱିତୀୟ ଦିନ ପ୍ରାଣଧର ରାଜାଙ୍କଠାରୁ ଅନୁମତି ନେଇ ଏବଂ ସପରିବାର କନିଷ୍ଠଭ୍ରାତା ରାଜ୍ୟଧରଦ୍ୱାରା ମାର୍ଗରେ ସତ୍କୃତ ହୋଇ ନରବାହନଦତ୍ତଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ଯୁବରାଜ ମଧ୍ୟ ନିଜର ଉପକାରୀ ମିତ୍ରକୁ ଦେଖି ପ୍ରୀତହେଲେ । ସେ ତାଙ୍କୁ ଉପଯୁକ୍ତ ବୃତ୍ତି ପ୍ରଦାନ ପୂର୍ବକ ନିଜ ବାସଭବନ ସମୀପସ୍ଥ ଅନ୍ୟ ଏକ ପ୍ରାସାଦରେ ନେଇ ରଖାଇଲେ । ପ୍ରତିଦାନରେ ନରବାହନଦତ୍ତ ପ୍ରାଣଧରଙ୍କଠାରୁ ଯେଉଁ ବିଶିଷ୍ଟ ବିମାନ ଲାଭକଲେ, ସେଥିରେ ସ୍ୱୀୟ ପରିଣୀତା ପତ୍ନୀମାନଙ୍କ ସହ ବ୍ୟୋମ ବିହାର କରି ବିଦ୍ୟାଧର ଚକ୍ରବର୍ତ୍ତିତ୍ୱ ଯେପରି ଶିକ୍ଷା କରିବାକୁ ଲାଗିଲେ ।

ଏହିପରି ନିଜର ବନ୍ଧୁସ୍ୱଜନ ଓ ମିତ୍ରମାନଙ୍କ ଆନନ୍ଦ ସମ୍ପାଦନ ପୂର୍ବକ ନରବାହନଦତ୍ତ ପ୍ରୀତିପୂର୍ଣ୍ଣ ଦିବସଗୁଡ଼ିକୁ ମଦନମଞ୍ଜୁକା, ରତ୍ନପ୍ରଭା ଏବଂ କର୍ପୂରିକାଙ୍କ ଗହଣରେ ବିତାଉ ଥାଆନ୍ତି ।





ଚଳଦ୍ କର୍ଣ୍ଣାନିଳୋଦ୍ଧୂତସିନ୍ଦୂରାରୁଣିତାମ୍ବରଃ ।
ଜୟତ୍ୟକାଳେଽପି ସୃଜନ୍ ସନ୍ଧ୍ୟାମିବ ଗଜାନନଃ ।।



# ପ୍ରଥମ ତରଙ୍ଗ

ଯୁବରାଜ ନରବାହନଦତ୍ତ କୌଶାମ୍ବୀ ନଗରୀସ୍ଥିତ ପିତୃଗୃହରେ ନିଜର ତିନିଜଣ ପ୍ରାଣାଧିକା ପତ୍ନୀଙ୍କ ସହିତ ରାଜଭୋଗରେ ନିମଜ୍ଜିତ ରହି ଦିନ ଯାପନ କରୁଥାଆନ୍ତି । ଦିନେ ପିତାଙ୍କ ସହିତ ରାଜଦରବାରରେ ବସିଥିଲାବେଳେ ଆକାଶ ମାର୍ଗରୁ ଅବତରଣ କରୁଥିବା କୌଣସି ଦିବ୍ୟ ପୁରୁଷ ତାଙ୍କର ଦୃଷ୍ଟିଗୋଚର ହେଲା । ସେହି ପୁରୁଷଟି ସେମାନଙ୍କ ନିକଟକୁ ଆସି ପ୍ରଣାମ କରନ୍ତେ ନରବାହନଦତ୍ତ ପିତାଙ୍କ ସହିତ ତାଙ୍କର ଉପଯୁକ୍ତ ସତ୍କାର କରି ପରିଚୟ ଏବଂ ଆଗମନର କାରଣ ଜିଜ୍ଞାସା କଲେ । ଉତ୍ତରରେ ସେହି ଦିବ୍ୟପୁରୁଷ ଜଣକ କହିଲେ–

## ବଜ୍ରପ୍ରଭଙ୍କ ଆତ୍ମକାହାଣୀ

''ହିମାଳୟର ଶିଖର ଦେଶରେ ବଜ୍ରକୂଟ ନାମକ ଏକ ନଗର ଅଛି । ଏହା ହୀରା ଦ୍ୱାରା ନିର୍ମିତ ହୋଇଥିବା ଯୋଗୁଁ ନିଜ ନାମର ସାର୍ଥକତା ପ୍ରତିପାଦନ କରେ । ମୁଁ ଏହି ନଗରରେ ବିଦ୍ୟାଧରମାନଙ୍କୁ ଶାସନ କରି ବାସ କରୁଥିଲି । ମୋର ଶରୀର ବଜ୍ର ପରି କଠୋର ହୋଇଥିବା ଯୋଗୁଁ ମୁଁ ବଜ୍ରପ୍ରଭ ନାମରେ ପରିଚିତ । ମୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ଗୌରୀପତି ଶଙ୍କର ବର ପ୍ରଦାନ କରି କହିଥିଲେ ଯେ ଯଥାସମୟରେ ତାଙ୍କଦ୍ୱାରା ନିର୍ବାଚିତ ବିଦ୍ୟାଧର ଚକ୍ରବର୍ତ୍ତୀଙ୍କର ଆଶ୍ରୟରେ ରହି ତାଙ୍କରି ଅନୁଗ୍ରହରୁ ମୁଁ ଶତ୍ରୁମାନଙ୍କର ଅଜେୟ ହେବି । ତାଙ୍କରି ଆଦେଶ ଅନୁଯାୟୀ ମୁଁ ବର୍ତ୍ତମାନ ଆପଣଙ୍କୁ ମୋର ବିନମ୍ର ପ୍ରଣତି ଜ୍ଞାପନ କରିବା ନିମିତ୍ତ ଏଠାରେ ଆସି ଉପସ୍ଥିତ ହୋଇଅଛି । ମୋର ବିଦ୍ୟା ପ୍ରଭାବରେ ମୁଁ ଜାଣିପାରିଅଛି ଯେ କାମଦେବଙ୍କ ଅଂଶରେ ଜନ୍ମଗ୍ରହଣ କରିଥିବା ବତ୍ସରାଜଙ୍କ ପ୍ରତିଭାଶାଳୀ ପୁତ୍ର ନରବାହନଦତ୍ତ ମାନବ ଲୋକରେ ଜନ୍ମଗ୍ରହଣ କରିଥିଲେ ସୁଦ୍ଧା ଏକ ଦିବ୍ୟ କଳ୍ପ ପର୍ଯ୍ୟନ୍ତ ବିଦ୍ୟାଧରମାନଙ୍କ ଉଭୟ ପୀଠର ଚକ୍ରବର୍ତ୍ତୀ

ରୂପେ ଦେବଦେବ ମହାଦେବଙ୍କ ଦ୍ୱାରା ନିର୍ବାଚିତ ହୋଇଛନ୍ତି । ଏହା ଜାଣିପାରି ମୁଁ ଆପଣଙ୍କ ସାନ୍ନିଧ ଲାଭ କରିବା ନିମନ୍ତେ ଏଠାକୁ ଆସିଅଛି । ପୂର୍ବେ ଈଶ୍ୱରଙ୍କ କୃପାରୁ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରି ସୁଦ୍ଧା ସୂର୍ଯ୍ୟପ୍ରଭ ଏକ ଦିବ୍ୟ କଳ୍ପ ପର୍ଯ୍ୟନ୍ତ ଦକ୍ଷିଣ ପୀଠର ଅର୍ଦ୍ଧଚକ୍ରବର୍ତ୍ତୀ ହୋଇପାରିଥିଲେ । ସେହିପରି ଶ୍ରୁତଶର୍ମା ମଧ ଉତ୍ତର ପୀଠର ଅର୍ଦ୍ଧଚକ୍ରବର୍ତ୍ତୀ ଥିଲେ । କିନ୍ତୁ ଉଭୟ ପୀଠର ଚକ୍ରବର୍ତ୍ତୀ ହୋଇ ଆପଣ ନିଜର ମହନୀୟତା ତଥା ପୁଣ୍ୟବତ୍ତାର ପରିଚୟ ଦେଉଅଛନ୍ତି ।''

ବଜ୍ରପ୍ରଭଙ୍କଠାରୁ ଏହାଶୁଣି କୌତୂହଳବଶତଃ ବତ୍ସରାଜ ଉଦୟନ ଓ ଯୁବରାଜ ନରବାହନଦତ୍ତ ଉଭୟେ ଏକ ସ୍ୱରରେ ପୁଣି ଜିଜ୍ଞାସା କଲେ, 'ସୂର୍ଯ୍ୟପ୍ରଭ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରି ସୁଦ୍ଧା ବିଦ୍ୟାଧର ଚକ୍ରବର୍ତ୍ତୀ ପଦ କିପରି ପ୍ରାପ୍ତ ହୋଇଥିଲେ, ଦୟାକରି ପ୍ରକାଶ କରନ୍ତୁ ।' ଉତ୍ତରରେ ବଜ୍ରପ୍ରଭ ମହାରାଣୀ ଓ ମହାମନ୍ତ୍ରୀଙ୍କ ଉପସ୍ଥିତିରେ ରାଜାଙ୍କର କୌତୂହଳ ନିବାରଣ କରିବା ପାଇଁ ଯାଇ କହିଲେ–

## ସୂର୍ଯ୍ୟପ୍ରଭ କଥା

ପ୍ରାଚୀନକାଳରେ ମଦ୍ରନାମକ ଦେଶରେ ଶାକଳ ବୋଲି ଏକ ନଗର ଥିଲା । ସେଠାରେ ଅଗ୍ନିଙ୍କ ତୁଲ୍ୟ ତେଜସ୍ୱୀ ଅଙ୍ଗାରପ୍ରଭଙ୍କ ପୁତ୍ର ଚନ୍ଦ୍ରପ୍ରଭ ରାଜତ୍ୱ କରୁଥିଲେ । ଚନ୍ଦ୍ରପ୍ରଭ ପ୍ରଜାବୃନ୍ଦଙ୍କୁ ଚନ୍ଦ୍ରତୁଲ୍ୟ ଆନନ୍ଦପ୍ରଦାନ କରୁଥିଲେ ସୁଦ୍ଧା ଶତ୍ରୁମାନଙ୍କ ନିମିତ୍ତ ପ୍ରଜ୍ୱଳିତ ଅଗ୍ନିତୁଲ୍ୟ ଦୁଃଖଦାୟକ ଥିଲେ । ତାଙ୍କର ପଟ୍ଟମହିଷୀ କୀର୍ତ୍ତିମତୀ । କୀର୍ତ୍ତିମତୀଙ୍କ ଗର୍ଭରୁ ସମସ୍ତ ଶୁଭ ଲକ୍ଷଣ ଯୁକ୍ତ ଏକ ପ୍ରଭାବଶାଳୀ ପୁତ୍ର ଜାତ ହୋଇଥିଲା । ଏହି ପୁତ୍ରର ଜନ୍ମ ସମୟରେ ଆକାଶରୁ ଦିବ୍ୟବାଣୀ ଶୁଣାଯାଇଥିଲା ଯେ ଏହି ନବଜାତ ଶିଶୁ ସୂର୍ଯ୍ୟପ୍ରଭଙ୍କୁ ଭଗବାନ ଶଙ୍କର ବିଦ୍ୟାଧରମାନଙ୍କ ଭାବୀଚକ୍ରବର୍ତ୍ତୀ ରୂପେ ନିଯୁକ୍ତ କରି ଅଛନ୍ତି । ଏଥିରେ ପ୍ରସନ୍ନ ହୋଇ ଚନ୍ଦ୍ରପ୍ରଭ ସମଗ୍ର ରାଜ୍ୟରେ ମହାଉତ୍ସବ ପାଳନ କରିଥିଲେ ।

ରାଜକୀୟ ଭୋଗ ବିଳାସ ମଧ୍ୟରେ ସୂର୍ଯ୍ୟପ୍ରଭ କ୍ରମଶଃ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲେ । ତୀକ୍ଷ୍ଣ ବୁଦ୍ଧି ସୂର୍ଯ୍ୟପ୍ରଭ ଶୈଶବରେ ହିଁ ଗୁରୁଜନମାନଙ୍କର ସେବା ଶୁଶ୍ରୂଷା କରି ସମସ୍ତ ବିଦ୍ୟା ଓ ସମସ୍ତ କଳାରେ ପାରଙ୍ଗମ ହେଲେ । ନିଜର ଗୁଣଦ୍ୱାରା ସେ ପ୍ରଜାବୃନ୍ଦଙ୍କୁ ଆକୃଷ୍ଟ କରୁଥିବା ଦେଖି ରାଜା ଚନ୍ଦ୍ରପ୍ରଭ ଷୋଡ଼ଶ ବର୍ଷରେ ପୁତ୍ରକୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଏହା ସଙ୍ଗେ ସଙ୍ଗେ ନିଜର ମନ୍ତ୍ରୀମାନଙ୍କର ପୁତ୍ର ଭାସ, ପ୍ରଭାସ, ସିଦ୍ଧାର୍ଥ, ପ୍ରହସ୍ତ ପ୍ରଭୃତିଙ୍କୁ ମଧ ଯୁବରାଜଙ୍କର ସଚିବ ଭାବେ ନିଯୁକ୍ତ କରିଦେଲେ ।

ସୂର୍ଯ୍ୟପ୍ରଭ ମନ୍ତ୍ରୀ ପୁତ୍ରମାନଙ୍କ ସହିତ ଯୌବରାଜ୍ୟ କରୁଥିବାବେଳେ ଏକଦା ମୟନାମକ ରାକ୍ଷସ ଶିଳ୍ପୀ ଆସି ସେଠାରେ ଉପସ୍ଥିତ ହେଲେ । ଆତିଥ୍ୟ ଲାଭକରି ମୟାସୁର ସୂର୍ଯ୍ୟପ୍ରଭଙ୍କ ସହ ସିଂହାସନାରୂଢ଼ ଚନ୍ଦ୍ରପ୍ରଭଙ୍କୁ ଲକ୍ଷ୍ୟ କରି କହିଲେ ''ମହାରାଜ, ପ୍ରଭୁ ଚନ୍ଦ୍ରଶେଖର ଆପଣଙ୍କ ପୁତ୍ର ସୂର୍ଯପ୍ରଭଙ୍କୁ ବିଦ୍ୟାଧର ଅଧିପତିମାନଙ୍କର ଚକ୍ରବର୍ତ୍ତୀ ପଦରେ ନିଯୁକ୍ତ କରିଅଛନ୍ତି । ତେଣୁ ତାଙ୍କର ଏ ପଦ ସମ୍ଭାଳିବା ନିମିତ୍ତ ଆବଶ୍ୟକୀୟ ବିଦ୍ୟା ସିଦ୍ଧି କରିବା ପ୍ରୟୋଜନ । ଏଥି ନିମିତ୍ତ ଭଗବାନ ଶଙ୍କର ମୋତେ ପ୍ରେରଣ କରିଅଛନ୍ତି । ଆପଣଙ୍କର ଆଦେଶ ହେଲେ ମୁଁ ସୂର୍ଯ୍ୟପ୍ରଭଙ୍କୁ ସଙ୍ଗରେ ନେଇ ବିଦ୍ୟାଧର ଚକ୍ରବର୍ତ୍ତୀ ପଦସିଦ୍ଧି ନିମିତ୍ତ ସମସ୍ତ ଆବଶ୍ୟକୀୟ ବିଦ୍ୟା ଶିକ୍ଷା ଦେବି । ଏହାଙ୍କର ପ୍ରତିଦ୍ୱନ୍ଦ୍ୱୀ ଭାବେ ସମ୍ରାଟ ଶ୍ରୁତଶର୍ମା ଇନ୍ଦ୍ରଙ୍କଦ୍ୱାରା ନିଯୁକ୍ତ ହୋଇ ଅଛନ୍ତି । ତେଣୁ ସୂର୍ଯ୍ୟପ୍ରଭ ବିଦ୍ୟାସିଦ୍ଧିଦ୍ୱାରା ପ୍ରଭାବଶାଳୀ ହୋଇ ଆମ୍ଭମାନଙ୍କୁ ସାହାଯ୍ୟରେ ଶ୍ରୁତଶର୍ମାଙ୍କୁ ପରାଜିତ କରି ବିଦ୍ୟାଧର ଚକ୍ରବର୍ତ୍ତୀ ପଦରେ ଅଧିଷ୍ଠିତ ହେବେ ।''

ଏହା ଶୁଣି ରାଜା ଚନ୍ଦ୍ରପ୍ରଭ ଆନନ୍ଦରେ କହିଲେ, 'ମୋର ଜୀବନ ଆଜି ଧନ୍ୟ, ଏବଂ ମୋର ପୁତ୍ର ସୂର୍ଯ୍ୟପ୍ରଭ ମଧ୍ୟ ଅତ୍ୟନ୍ତ ପୁଣ୍ୟବାନ୍ । ଆପଣ ନିଜର ଇଚ୍ଛାନୁଯାୟୀ ତାକୁ ନେଇଯାଇ ପାରନ୍ତି ।'

ଚନ୍ଦ୍ରପ୍ରଭଙ୍କ ସହିତ ପରାମର୍ଶ କରି ଏବଂ ତାଙ୍କର ଆଦେଶ ପ୍ରାପ୍ତ ହୋଇ ମୟ ସୂର୍ଯ୍ୟପ୍ରଭ ଓ ମନ୍ତ୍ରୀପୁତ୍ରମାନଙ୍କୁ ସଙ୍ଗରେ ନେଇ ପାତାଳପୁରକୁ ପ୍ରତ୍ୟାବର୍ତ୍ତନ କଲେ ।

ପାତାଳପୁରରେ ମୟାସୁର ଯାହାସବୁ ଶିକ୍ଷା ଦେଲେ ସେଗୁଡ଼ିକ ଅକ୍ଳେଶରେ ଆୟତ୍ତ କରି ରାଜକୁମାର ସ୍ୱଳ୍ପ ଦିନ ମଧ୍ୟରେ ସିଦ୍ଧିଲାଭ କଲେ । ଅନ୍ୟାନ୍ୟ ବିଦ୍ୟା ମଧ୍ୟରେ ବିମାନ ସାଧନା ବିଦ୍ୟା ଥିଲା ଅନ୍ୟତମ । ଏହା ପ୍ରୟୋଗ କରି ରାଜକୁମାର ନିଜେ ଭୂତାସନ ନାମକ ଏକ ବିଶାଳ ବିମାନ ନିର୍ମାଣ କରିବା ନିମନ୍ତେ ସମର୍ଥ ହେଲେ । ଉକ୍ତ ବିମାନ ସାହାଯ୍ୟରେ ମୟାସୁର ସୂର୍ଯ୍ୟପ୍ରଭ ଓ ତଦୀୟ ମିତ୍ରମାନଙ୍କ ସହିତ ଚନ୍ଦ୍ରପ୍ରଭଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କଲେ । ଚନ୍ଦ୍ରପ୍ରଭ ଓ କୀର୍ତ୍ତିମତୀଙ୍କ ନିକଟରେ ସେମାନଙ୍କ ପୁତ୍ର ସୂର୍ଯ୍ୟପ୍ରଭଙ୍କୁ ସମର୍ପଣ କରି ମୟ 'ତୁମେ ବର୍ତ୍ତମାନ ସାଂସାରିକ ଭୋଗ ଉପଭୋଗ କର । ପରେ ମୁଁ ପୁଣି ଆସି ତୁମକୁ ଅନ୍ୟାନ୍ୟ ବିଷୟରେ ଉପଦେଶ ଦେବି ।' କହି ପାତାଳ ପୁରକୁ ପ୍ରସ୍ଥାନ କରନ୍ତେ ଚନ୍ଦ୍ରପ୍ରଭ ପୁତ୍ରର ସିଦ୍ଧିଲାଭରେ ଆନନ୍ଦିତ ହୋଇ ସମୟ ଅତିବାହନ କରିବାକୁ ଲାଗିଲେ ।

ବିଦ୍ୟାସିଦ୍ଧି ପ୍ରଭାବରୁ ସୂର୍ଯ୍ୟପ୍ରଭ ମିତ୍ରମାନଙ୍କ ସହିତ ସ୍ୱ ନିର୍ମିତ ବିମାନ ଆରୋହଣ ପୂର୍ବକ ଅନାୟାସରେ ବିଭିନ୍ନ ଦେଶ ଭ୍ରମଣ କରିବାକୁ ଲାଗିଲେ । ବିଭିନ୍ନ ଦେଶର ବହୁ ରାଜକୁମାରୀ ତାଙ୍କୁ ଦେଖିବା ମାତ୍ରେ ମୋହିତ ହୋଇ ତାଙ୍କୁ ପତିପଦରେ ବରଣ କରୁଥାନ୍ତି । ଏମାନଙ୍କ ମଧ୍ୟରେ ତାମ୍ରଲିପ୍ତିର ରାଜା ବୀରଭଟ୍ଟଙ୍କ ଅଦ୍ୱିତୀୟା ସୁନ୍ଦରୀ କନ୍ୟା ମଦନସେନା ସର୍ବପ୍ରଥମା । ଦ୍ୱିତୀୟା ଅପରାନ୍ତର ରାଜା ସୁଭଟଙ୍କ କନ୍ୟା ଚନ୍ଦ୍ରିକାବତୀ । ଏହାଙ୍କୁ ସିଦ୍ଧମାନେ ଆଣି ସୁଭଟଙ୍କ ନିକଟରେ ଲାଳନପାଳନ ପାଇଁ ଛାଡ଼ିଦେଇ ଯାଇଥିଲେ । ତୃତୀୟତଃ କାଞ୍ଚନଗରୀର ରାଜା କୁମ୍ଭୀରଙ୍କର ଅନିନ୍ଦ୍ୟସୁନ୍ଦରୀ କନ୍ୟା ବରୁଣସେନା ସୂର୍ଯ୍ୟପ୍ରଭଙ୍କ ରୂପରେ ମୁଗ୍ଧହୋଇ ତାଙ୍କୁ ସ୍ୱୟଂ ବରଣ କରିଥିଲେ । ଲାବାଣକ ରାଜ୍ୟର ଅଧିପତି ପୌରବଙ୍କର କନ୍ୟା ସୁଲୋଚନା, ଚୀନ ଦେଶର ରାଜା ସୁରୋହଙ୍କର ସୁବର୍ଣ୍ଣ-କାନ୍ତି-ବିନିନ୍ଦିତା କନ୍ୟା ବିଦ୍ୟୁନ୍ମାଳା, ଶ୍ରୀକଣ୍ଠ ଦେଶର ରାଜା କାନ୍ତିସେନଙ୍କର ଅପ୍ସରା-ବିନିନ୍ଦିତା ରୂପବତୀ କୁମାରୀ କାନ୍ତିମତୀ, କୌଶାମ୍ବୀ ରାଜା ଜନ୍ମେଜୟଙ୍କର କନ୍ୟା ମଧୁରଭାଷିଣୀ, ପରପୁଷ୍ଟା ପ୍ରଭୃତି ସୂର୍ଯ୍ୟପ୍ରଭଙ୍କୁ ବରଣ କରି ପିତାମାତାଙ୍କ ଅଜ୍ଞାତସାରରେ ତାଙ୍କ ସହିତ ପଳାୟନ କରିଥିଲେ । ଉପରୋକ୍ତ କନ୍ୟାମାନଙ୍କର ଅଭିଭାବକମାନେ ସୂର୍ଯ୍ୟପ୍ରଭଙ୍କୁ ସେମାନଙ୍କ କନ୍ୟାମାନଙ୍କର ଅପହରଣକାରୀ ବୋଲି ଜାଣିପାରିଲେ ସୁଦ୍ଧା ସୂର୍ଯ୍ୟପ୍ରଭଙ୍କ ବିଦ୍ୟା ପ୍ରଭାବରୁ କୌଣସି କାର୍ଯ୍ୟାନୁଷ୍ଠାନ କରିପାରୁ ନଥିଲେ ।

ସୂର୍ଯ୍ୟପ୍ରଭ ଉପରୋକ୍ତ କନ୍ୟାମାନଙ୍କୁ ନିଜର ସମସ୍ତ ବିଦ୍ୟା ପ୍ରଦାନ କରି ଏବଂ ନିଜେ ମଧ୍ୟ ବିଦ୍ୟାପ୍ରଭାବରୁ ବହୁ ଶରୀର ଧାରଣ କରି ସେମାନଙ୍କ ସହିତ ଏକ ସଙ୍ଗେ କ୍ରୀଡ଼ା କରୁଥିଲେ । ଆକାଶ ବିହାର, ସଙ୍ଗୀତାଳାପ, ଆସବପାନ, ନୃତ୍ୟ ଆସର ଇତ୍ୟାଦିଦ୍ୱାରା ପ୍ରହସ୍ତ ପ୍ରଭୃତି ମନ୍ତ୍ରୀମାନଙ୍କ ସହିତ ଭୋଗବିଳାସରେ ନିମଜ୍ଜିତ ରହି ରାଜକୁମାର କାଳାତିପାତ କରୁଥାଆନ୍ତି । ସମୟେ ସମୟେ ଚିତ୍ରକଳା ପଣ୍ଡିତ ଯୁବରାଜ ନିଜର ଅପୂର୍ବ ପ୍ରତିଭାଦ୍ୱାରା ବିଭିନ୍ନ ବିଦ୍ୟାଧରକୁମାରୀମାନଙ୍କର ଚିତ୍ର ଅଙ୍କନ କରି ପ୍ରିୟତମା ପତ୍ନୀମାନଙ୍କ ମନରେ ପ୍ରଣୟଈର୍ଷ୍ୟା ଜାତ କରାଉଥାନ୍ତି । କ୍ରୋଧଜନିତ ବକ୍ରକଟାକ୍ଷ, ଆରକ୍ତନୟନକମଳ, କମ୍ପିତ ଓଷ୍ଠାଧର ତଥା ଅଭିମାନସୂଚକ ଅସ୍ଫୁଟ ଶବ୍ଦ ସୂର୍ଯ୍ୟପ୍ରଭଙ୍କ ମନରେ ପ୍ରଭୂତ ଆନନ୍ଦ ସଞ୍ଚାର କରୁଥାଏ । ଦିନେ ଦିନେ ସେ ଆକାଶ ମାର୍ଗରେ ତାମ୍ରଲିପ୍ତି ନଗରୀକୁ ଯାଇ ମଦନସେନାଙ୍କ ସହିତ ତାଙ୍କ ଭବନରେ ପ୍ରଣୟ କ୍ରୀଡ଼ା କରୁଥାନ୍ତି ।

ଦିନେ ସ୍ୱନିର୍ମିତ ଭୂତାସନ ଯାନ ଆରୋହଣ ପୂର୍ବକ ସୂର୍ଯ୍ୟପ୍ରଭ ସମସ୍ତ ପତ୍ନୀଙ୍କ ସହିତ ବଜ୍ରସାର ନାମକ ନଗରୀରେ ଯାଇ ଉପସ୍ଥିତ ହେଲେ । ଏହି ନଗରୀର ରାଜା ରମ୍ଭ ବିସ୍ମୟ ବିମୂଢ଼ ଭାବରେ ଏହାଙ୍କୁ ଚାହିଁ ରହିଥିବାବେଳେ ସୂର୍ଯ୍ୟପ୍ରଭ ତାଙ୍କର କାମାଗ୍ନିସଂତପ୍ତା ରାଜକୁମାରୀ ତାରାବଳୀଙ୍କୁ ତାଙ୍କ ସମ୍ମୁଖରୁ ହିଁ ଅପହରଣ କରିନେଲେ । ସେଠାରୁ ପ୍ରତ୍ୟାବର୍ତ୍ତନ କରୁଥିବାବେଳେ ସେ ତାମ୍ରଲିପ୍ତି ନଗରୀରୁ ଅନ୍ୟତମ ରାଜକୁମାରୀ ବିଳାସିନୀଙ୍କୁ ଅପହରଣ କଲେ । ଏ ସମ୍ବାଦ ଲାଭ କରି ବିଳାସିନୀଙ୍କ ଭ୍ରାତା କୋପାନ୍ୱିତ ହୋଇ ଯୁବରାଜଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ଉଦ୍ୟତ ହେବାରୁ ସୂର୍ଯ୍ୟପ୍ରଭ ନିଜର ବିଦ୍ୟାପ୍ରଭାବରେ ତାଙ୍କୁ ଶକ୍ତିହୀନ କରିଦେଲେ । ସୈନ୍ୟ ବାହିନୀର ସେନାପତି ଥିବା ବିଳାସିନୀଙ୍କ ମାତୁଳଙ୍କୁ ବନ୍ଧନ କରି ତାଙ୍କର ମସ୍ତକ ମୁଣ୍ଡନ କଲେ ଏବଂ ଦର୍ପଭଙ୍ଗ ଓ ବିଲକ୍ଷ ନାମକ ଅନ୍ୟ ଦୁଇଜଣ ଶାଳକଙ୍କୁ ପରାସ୍ତ କରି ପରିହାସ ପୂର୍ବକ ମୁକ୍ତି ପ୍ରଦାନ କଲେ ।

ଏହାପରେ ପିତାଙ୍କ ଆଦେଶ କ୍ରମେ ସୂର୍ଯ୍ୟପ୍ରଭ ନିଜର ନବପରଣୀତା ପତ୍ନୀଙ୍କ ସହିତ ଶକଳପୁର ନଗରକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ଅବସ୍ଥାନ କରୁଥିବା ବେଳେ ତାମ୍ରଲିପ୍ତିର ରାଜା ବୀରଭଦ୍ର ଦୂତ ପ୍ରେରଣ କରି ରାଜା ଚନ୍ଦ୍ରପ୍ରଭଙ୍କୁ ଏକ ପତ୍ରଦ୍ୱାରା ଜଣାଇଲେ ଯେ ସୂର୍ଯ୍ୟପ୍ରଭ ତାଙ୍କର ଦୁଇଟି କନ୍ୟାକୁ ଅପହରଣ କରିନେଇଛନ୍ତି; କିନ୍ତୁ ସୂର୍ଯ୍ୟପ୍ରଭଙ୍କ ବିଦ୍ୟା, ବୁଦ୍ଧି ଓ ଶକ୍ତି ସାମର୍ଥ୍ୟ ଦେଖି ସେ ତାଙ୍କପ୍ରତି ବରଂ ସନ୍ତୁଷ୍ଟ । ତେଣୁ ଶୀଘ୍ର ତାମ୍ରଲିପ୍ତି ଯାଇ ଏମାନଙ୍କର ବିବାହସଂସ୍କାରଦ୍ୱାରା ସେ ତାଙ୍କ ସହିତ ମିତ୍ରତା ସ୍ଥାପନ କରନ୍ତୁ । ଏ ପ୍ରକାର ସମ୍ବାଦ ଲାଭ କରି ଚନ୍ଦ୍ରପ୍ରଭ ଦ୍ୱିତୀୟ ଦିବସରେ ହିଁ ତାମ୍ରଲିପ୍ତି ଯିବାପାଇଁ ନିଶ୍ଚୟ କଲେ । କିନ୍ତୁ ବୀରଭଦ୍ରଙ୍କ ପ୍ରକୃତ ମନୋରଥ ଜ୍ଞାତ ହେବା ନିମନ୍ତେ ସେ ପ୍ରଥମେ ପ୍ରହସ୍ତଙ୍କୁ ସେଠାକୁ ପ୍ରେରଣ କଲେ । ପ୍ରହସ୍ତ ମଧ୍ୟ ତାମ୍ରଲିପ୍ତି ନରପତିଙ୍କଦ୍ୱାରା ଯଥୋଚିତ ଭାବରେ ସତ୍କୃତ ହୋଇ ଚନ୍ଦ୍ରପ୍ରଭଙ୍କ ଆଗମନବାର୍ତ୍ତା ପ୍ରଦାନ କଲେ । ଚନ୍ଦ୍ରପ୍ରଭଙ୍କ ଦୂତଠାରୁ ସମ୍ବାଦ ପ୍ରାପ୍ତ ହେବାର କିଛିକ୍ଷଣ ମଧରେ ପ୍ରହସ୍ତଙ୍କ ଆଗମନ ଏବଂ ବହୁଦୂର ପଥ ଅତିକ୍ରମ କରି ପରଦିନ ସୂର୍ଯ୍ୟପ୍ରଭ ତାମ୍ରଲିପ୍ତିରେ ଉପସ୍ଥିତ ହେଉଥିବା ସମ୍ବାଦ ଶ୍ରବଣରେ ବୀରଭଦ୍ର ବିସ୍ମୟ ବିସ୍ତାରିତ ନେତ୍ରରେ ପ୍ରହସ୍ତଙ୍କୁ ଚାହିଁରହିଥିବା ବେଳେ ସେ ପୁଣି ଦିବ୍ୟ ଆକାଶଯାନ ଆରୋହଣ ପୂର୍ବକ ସେଠାରୁ ପ୍ରସ୍ଥାନ କଲେ ।

ବୀରଭଦ୍ରଙ୍କର ପ୍ରକୃତ ମନୋଭାବ ଜ୍ଞାତ ହୋଇ ଚନ୍ଦ୍ରପ୍ରଭ ମନ୍ତ୍ରୀ ପ୍ରହସ୍ତଙ୍କୁ ସାଧୁବାଦ ଅର୍ପଣ କଲେ ଏବଂ ପରଦିନ ପ୍ରଭାତରୁ ପତ୍ନୀ, ପୁତ୍ର ଓ ତାମ୍ରଲିପ୍ତି ରାଜ୍ୟର

ଉଭୟ ରାଜକୁମାରୀ ମଦନସେନା ଓ ବିଳାସିନୀଙ୍କୁ ସଙ୍ଗରେ ନେଇ ଭୂତାସନ ଆରୋହଣ ପୂର୍ବକ ସେ ମହା ଆଡ଼ମ୍ବରରେ ତାମ୍ରଲିପ୍ତିନଗରୀ ଅଭିମୁଖରେ ଅଗ୍ରସର ହେଲେ ।

ଦିନର ପ୍ରଥମ ପ୍ରହରରେ ତାମ୍ରଲିପ୍ତିର ଅସଂଖ୍ୟ ରାଜ୍ୟବାସୀଙ୍କୁ ବିସ୍ମିତ କରି ରାଜା ସୂର୍ଯ୍ୟପ୍ରଭ ପୁତ୍ର, ପତ୍ନୀ, ପୁତ୍ରବଧୂ, ମନ୍ତ୍ରୀ ଏବଂ ବହୁପରିଚାରକଙ୍କ ସହିତ ସେଠାରେ ଯାଇ ଉପସ୍ଥିତ ହେଲେ । ଏମାନଙ୍କର ଆଗମନରେ ରାଜା ବୀରଭଟ୍ଟ ଯଥୋଚିତ ସତ୍କାର ପୂର୍ବକ ଏମାନଙ୍କୁ ରାଜଭବନ ମଧ୍ୟରେ ପ୍ରବେଶ କରାଇଲେ । ନଗରୀର ସମସ୍ତ ମାର୍ଗ ଚନ୍ଦନ ମିଶ୍ରିତ ଜଳଦ୍ୱାରା ସିକ୍ତ ହେବାଫଳରେ ସୁବାସିତ ହୋଇ ଉଠିଲା ଏବଂ ନଗରବାସିନୀ ରମଣୀମାନଙ୍କର ସତୃଷ୍ଣ ଦୃଷ୍ଟିପାତରେ ସ୍ଫଟିକ ନିର୍ମିତ ରାଜପଥ ପୁଷ୍ପମୟ ହେଲା । ରାଜା ବୀରଭଟ୍ଟ ବିଧିପୂର୍ବକ କନ୍ୟାଦାନ କରି ଦକ୍ଷିଣା ସ୍ୱରୂପ ଜାମାତାଙ୍କୁ ଦଶଭାର ବିଶୁଦ୍ଧ ସୁବର୍ଣ୍ଣ, ସପ୍ତ ସହସ୍ର ଅଶ୍ୱ, ପଞ୍ଚ ସହସ୍ର ହସ୍ତୀ, ବିଭିନ୍ନ ଅଳଙ୍କାର ଓ ବସ୍ତ୍ର ଭାରବାହୀ ଛ' ଶତ ଉଷ୍ଟ୍ର ଏବଂ ରତ୍ନାଳଙ୍କାର ବିଭୂଷିତା ଏକ ସହସ୍ର ରୂପବତୀ ଦାସୀ ପ୍ରଦାନ କଲେ । ଏହା ବ୍ୟତୀତ ସମ୍ବନ୍ଧୀ ଓ ଜାମାତାଙ୍କୁ ବହୁ ରତ୍ନ, ବସ୍ତ୍ର ଓ ଭୂମି ପ୍ରଦାନଦ୍ୱାରା ସତ୍କାର କଲେ । ଏହିପରି ବିବାହ ଉତ୍ସବରେ ଆନନ୍ଦ ଉନ୍ମତ୍ତ ଥିବା ନାଗରିକ ତଥା ପ୍ରହସ୍ତ ପ୍ରଭୃତି ମନ୍ତ୍ରୀମାନଙ୍କୁ ମଧ୍ୟ ବିଧିପୂର୍ବକ ସମ୍ମାନିତ କରାଗଲା । ଏହି ଅବସରରେ ସୂର୍ଯ୍ୟପ୍ରଭ ସ୍ୱମାତାପିତାଙ୍କ ସହିତ ବିବିଧ ପାନ, ଭୋଜନ, ଗାନ, ବାଦନ ଇତ୍ୟାଦି ଦ୍ୱାରା ପ୍ରଭୂତ ଆନନ୍ଦ ଲାଭ କଲେ ।

ଏ ସମୟରେ ବଜ୍ରସାର ରାଜ୍ୟର ରାଜା ରମ୍ଭଙ୍କ ଦୂତ ସେଠାରେ ଆସି ଉପସ୍ଥିତ ହେଲା । ସିଂହାସନ ଉପରେ ଉପବିଷ୍ଟ ଚନ୍ଦ୍ରପ୍ରଭଙ୍କୁ ସେ ନିଜ ପ୍ରଭୁଙ୍କର ସନ୍ଦେଶ ପ୍ରଦାନ କରି କହିଲା, ''ମହାରାଜ, ବିଦ୍ୟା ବଳରେ ମଦୋନ୍ମତ୍ତ ସୂର୍ଯ୍ୟପ୍ରଭ ମୋର କନ୍ୟାକୁ ଅପହରଣକରି ମୋତେ ଅପମାନିତ କରିଅଛନ୍ତି । ମୁଁ ଜାଣିବାକୁ ପାଇଲି ଯେ ମୋର ସମଦଶାପନ୍ନ ରାଜା ବୀରଭଟ୍ଟ ଆଜି ଆପଣଙ୍କର ମିତ୍ରତା ସ୍ୱୀକାର କରିଅଛନ୍ତି । ତେଣୁ ଆପଣ ମୋ ସହିତ ସନ୍ଧିକରିବା ନିମିତ୍ତ ଆଜି ମୋ ରାଜ୍ୟରେ ଆସି ପଦାର୍ପଣ କରନ୍ତୁ ନୋଚେତ୍ ଆପଣଙ୍କର ଶିରଚ୍ଛେଦ କରି ମୁଁ ଏହି ଅପମାନର ପ୍ରତିଶୋଧ ନେବି ।'' ଏହାଶୁଣି ରାଜା ଚନ୍ଦ୍ରପ୍ରଭ ଦୂତର ଯଥୋଚିତ ସତ୍କାର କରି ମନ୍ତ୍ରୀ ପ୍ରହସ୍ତଙ୍କୁ କହିଲେ, ''ତୁମେ ଏହି ମୁହୂର୍ତ୍ତରେ ହିଁ ରାଜା ରମ୍ଭଙ୍କ ନିକଟକୁ ଯାଇ ତାଙ୍କୁ ମୋ ପକ୍ଷରୁ ଅଧିକ ସନ୍ତପ୍ତ ନ ହେବାପାଇଁ ଉପଦେଶ ପ୍ରଦାନ କର । ସୂର୍ଯ୍ୟପ୍ରଭଙ୍କୁ ଭଗବାନ ଗୌରୀପତି ବିଦ୍ୟାଧରମାନଙ୍କର ଭାବୀ ଚକ୍ରବର୍ତ୍ତୀ ରୂପେ ନିଯୁକ୍ତ କରିଅଛନ୍ତି । ତେଣୁ ସେ ରାଜା

ରମ୍ଭଙ୍କର କନ୍ୟା ଏବଂ ଅନ୍ୟ ରାଜାମାନଙ୍କର କନ୍ୟାମାନଙ୍କୁ ମଧ୍ୟ ନିଜର ପତ୍ନୀ ରୂପେ ଲାଭ କରିବେ । ଏଣୁ ତାଙ୍କରି କନ୍ୟା ବର୍ତ୍ତମାନ ଉପଯୁକ୍ତ ପାତ୍ର ହସ୍ତରେ ଅର୍ପିତ ହୋଇଅଛି । ସେ ଅତ୍ୟନ୍ତ କଠୋର ପ୍ରକୃତିର ବ୍ୟକ୍ତି ହୋଇଥିବା ଯୋଗୁଁ ବିବାହ ପାଇଁ ତାଙ୍କର ଅନୁମତି ନିଆଯାଇ ନାହିଁ । ତେଣୁ ସେ ପ୍ରସନ୍ନ ହୋଇ ଆମ୍ଭମାନଙ୍କ ମିତ୍ରତା ସ୍ୱୀକାର କରନ୍ତୁ । ଆମେ ମଧ୍ୟ ନିକଟରେ ତାଙ୍କ ରାଜ୍ୟରେ ଯାଇ ଉପସ୍ଥିତ ହେବୁ ।''

ଚନ୍ଦ୍ରପ୍ରଭଙ୍କର ଏହି ଆଦେଶ ନେଇ ପ୍ରହସ୍ତ ଏକ ପ୍ରହର ମଧ୍ୟରେ ବଜ୍ରସାର ରାଜ୍ୟରେ ଯାଇ ଉପସ୍ଥିତ ହେଲେ । ସେଠାରେ ରାଜା ରମ୍ଭଙ୍କୁ ଚନ୍ଦ୍ରପ୍ରଭଙ୍କ ସନ୍ଦେଶ ପ୍ରଦାନ କରି ଏବଂ ତାଙ୍କର ସମ୍ମତି ନେଇ ପୁଣି ଏକ ପ୍ରହର ମଧ୍ୟରେ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ଚନ୍ଦ୍ରପ୍ରଭ ତାଙ୍କର ଅନ୍ୟତମ ମନ୍ତ୍ରୀ ପ୍ରଭାସକୁ ପ୍ରେରଣ କରି ଶାକଳ ନଗରୀରେ ଅବସ୍ଥାନ କରୁଥିବା ରମ୍ଭଙ୍କ କନ୍ୟା ତାରାବଳୀଙ୍କୁ ନେଇ ତାଙ୍କ ପିତାଙ୍କ ନିକଟରେ ପହଞ୍ଚାଇ ଦେଲେ ।

ଏହାପରେ ରାଜା ଚନ୍ଦ୍ରପ୍ରଭ ସମସ୍ତ ବରଯାତ୍ରୀ, ତାମ୍ରଲିପ୍ତିର ରାଜା ବୀରଭଟ୍ଟ ଏବଂ ଅନ୍ୟାନ୍ୟ ସହଯାତ୍ରୀଙ୍କ ସହିତ କିଛି ଦିନ ମଧ୍ୟରେ ଯାଇ ବଜ୍ରସାର ଦେଶରେ ଉପସ୍ଥିତ ହେଲେ । ରାଜା ରମ୍ଭଙ୍କଦ୍ୱାରା ସେଠାରେ ଯଥାଯୋଗ୍ୟ ସମ୍ମାନ ଲାଭ କରି ସେମାନେ ତାଙ୍କ ରାଜଧାନୀରେ ପ୍ରବେଶ କଲେ । ତାରାବଳୀଙ୍କ ସହିତ ଯୁବରାଜ ସୂର୍ଯ୍ୟପ୍ରଭଙ୍କ ବିବାହ ଉତ୍ସବ ମହାସମାରୋହରେ ସମାହିତ ହେଲା । ବିବିଧ ଧନରତ୍ନ, ବସ୍ତ୍ର ଆଭୂଷଣ ପ୍ରଭୃତିଦ୍ୱାରା ରାଜା ରମ୍ଭ ସୂର୍ଯ୍ୟପ୍ରଭଙ୍କର ଏ ପ୍ରକାର ସେବା ଓ ସତ୍କାର କଲେ ଯେ ସୂର୍ଯ୍ୟପ୍ରଭ ପୂର୍ବରୁ ଉପଭୋଗ କରି ଆସୁଥିବା ସମସ୍ତ ବିଳାସ ଐଶ୍ୱର୍ଯ୍ୟକୁ ସମ୍ପୂର୍ଣ୍ଣ ରୂପେ ବିସ୍ମୃତ ହେଲେ ।

ସେଠାରେ ଆନନ୍ଦର ସହିତ ବାସ କରୁଥିବାବେଳେ କାଞ୍ଚନଗରୀର ରାଜା କୁମ୍ଭୀରଙ୍କ ଦୂତ ଆସି ରାଜା ରମ୍ଭଙ୍କ ନିକଟରେ ଉପସ୍ଥିତ ହେଲା । ତା'ଠାରୁ ସମସ୍ତ ବିଷୟ ଶ୍ରବଣ କରି ରାଜା ରମ୍ଭ ଚନ୍ଦ୍ରପ୍ରଭଙ୍କୁ କହିଲେ ଯେ, କାଞ୍ଚିରାଜା କୁମ୍ଭୀର ତାଙ୍କର ଜ୍ୟେଷ୍ଠ ଭ୍ରାତା । ସେ ତାଙ୍କ ନିକଟକୁ ନିଜର ବିଶ୍ୱସ୍ତ ଦୂତଦ୍ୱାରା ବାର୍ତ୍ତାପ୍ରେରଣ କରି ଅଛନ୍ତି ଯେ ସୂର୍ଯ୍ୟପ୍ରଭ ତାରାବଳୀଙ୍କୁ ଅପହରଣ କରିବା ପୂର୍ବରୁ ତାଙ୍କ କନ୍ୟାକୁ ମଧ୍ୟ ଅପହରଣ କରି ନେଇଅଛନ୍ତି । ମୋ ସହିତ ଆପଣଙ୍କର ମିତ୍ରତା ସ୍ଥାପିତ ହେବା ଶୁଣି ସେ ମଧ୍ୟ ଆପଣଙ୍କ ସହ ମିତ୍ରତା ସ୍ଥାପନ ପାଇଁ ତତ୍ପର ହୋଇ ଉଠିଅଛନ୍ତି । ସେ ଆପଣମାନଙ୍କୁ ଅନୁରୋଧ କରିଅଛନ୍ତି ଯେ ଆପଣମାନେ ଯଦି ତାଙ୍କର ଆତିଥ୍ୟ ସ୍ୱୀକାର କରନ୍ତି,

ତାହାହେଲେ ସେ ତାଙ୍କର କନ୍ୟା ବରୁଣସେନାଙ୍କୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ଅର୍ପଣ କରିବେ । ଏଥିରେ ରାଜା ଚନ୍ଦ୍ରପ୍ରଭ ଆନନ୍ଦିତ ହୋଇ ପ୍ରହସ୍ତଙ୍କ ସହିତ ଶାକଳ ଦ୍ୱୀପରୁ ବରୁଣସେନାଙ୍କୁ ତାଙ୍କ ପିତାଙ୍କ ନିକଟକୁ ପଠାଇ ଦେଲେ ଏବଂ ଦ୍ୱିତୀୟ ଦିନ ସେ ନିଜର ପୁତ୍ର ସୂର୍ଯ୍ୟପ୍ରଭ, ସମ୍ବନ୍ଧୀ ରମ୍ଭ, ବୀରଭଟ୍ଟ ଓ ନିଜର ସମସ୍ତ ଅନୁଚରଙ୍କ ସହିତ ବିମାନ ସାହାଯ୍ୟରେ ରାଜା କୁମ୍ଭୀରଙ୍କ ବିଭବଶାଳୀ ରାଜଧାନୀ କାଞ୍ଚନଗରୀରେ ଯାଇ ଉପସ୍ଥିତ ହେଲେ । ସେଠାରେ ରାଜା କୁମ୍ଭୀର ସୂର୍ଯ୍ୟପ୍ରଭଙ୍କ ହସ୍ତରେ ନିଜର କନ୍ୟାକୁ ଅର୍ପଣ କରି ଯୌତୁକ ସ୍ୱରୂପ ବହୁ ଧନରତ୍ନ ପ୍ରଦାନ କଲେ ।

ବିବାହୋତ୍ସବ ସମ୍ପନ୍ନ ହେଲା, ଉପସ୍ଥିତ ସମସ୍ତେ ପାନ ଭୋଜନ ସମାପ୍ତ କରି ବିଶ୍ରାମ ନେଲେ । ଏହି ସମୟରେ ପ୍ରହସ୍ତ ସମସ୍ତଙ୍କ ସମ୍ମୁଖରେ ରାଜା ଚନ୍ଦ୍ରପ୍ରଭଙ୍କୁ କହିଲେ, ‘‘ମହାରାଜ, ମୁଁ ବିଭିନ୍ନ ସ୍ଥାନ ଭ୍ରମଣ କରି ଶ୍ରୀକଣ୍ଠ ଦେଶରେ ଯାଇ ଉପସ୍ଥିତ ହେଲି । ସେଠାରେ ରାଜା କାନ୍ତିସେନଙ୍କ ସହିତ ମୋର ସାକ୍ଷାତ ହେଲା । ସେ ପ୍ରସଙ୍ଗ କ୍ରମେ ମୋତେ କହିଲେ ଯେ ସୂର୍ଯ୍ୟପ୍ରଭ ଯଦି କାନ୍ତିମତୀଙ୍କୁ ନେଇ ତାଙ୍କ ଆତିଥ୍ୟ ସ୍ୱୀକାର କରନ୍ତି, ତାହାହେଲେ ସେ ଉଭୟଙ୍କର ବିବାହ ମହାସମାରୋହରେ ସମ୍ପନ୍ନ କରିବେ । ନୋଚେତ୍ କନ୍ୟା ନିମନ୍ତେ ବ୍ୟାକୁଳ ହୋଇ ସେ ପ୍ରାଣତ୍ୟାଗ କରିବେ । ତାଙ୍କର ଏପ୍ରକାର ବ୍ୟାକୁଳତା ଦେଖି ମୁଁ ଆପଣଙ୍କୁ ଏହା ଜଣାଇବା ପାଇଁ ବାଧ୍ୟ ହେଲି ।’’ ପ୍ରହସ୍ତଙ୍କଠାରୁ ଏହାଶୁଣି ଚନ୍ଦ୍ରପ୍ରଭ କାନ୍ତିମତୀଙ୍କୁ ନେଇ କାନ୍ତିସେନଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ତାଙ୍କୁ ଆଦେଶ ଦେଲେ । ତତ୍କ୍ଷଣାତ୍ ପ୍ରହସ୍ତଙ୍କଦ୍ୱାରା ତାଙ୍କ ଆଦେଶ ପରିପାଳିତ ହେଲା ।

ପରଦିନ ପ୍ରାତଃକାଳରୁ ସେ ବରଯାତ୍ରୀମାନଙ୍କ ସହିତ ଯାଇ ଶ୍ରୀକଣ୍ଠ ଦେଶରେ ଉପସ୍ଥିତ ହେଲେ । କାନ୍ତିସେନ ତାଙ୍କର ସ୍ୱାଗତ କରି ନିଜର କନ୍ୟାସହ ସୂର୍ଯ୍ୟପ୍ରଭଙ୍କୁ ଏତେ ପରିମାଣରେ ଧନରତ୍ନ ଅର୍ପଣ କଲେ ଯେ ସେଥିରେ ଅନ୍ୟ ରାଜାମାନଙ୍କର ବିସ୍ମୟର ସୀମା ରହିଲା ନାହିଁ । ଶ୍ରୀକଣ୍ଠ ନଗରରେ ଏପରି ଭାବରେ ଆନନ୍ଦ ଉତ୍ସବ ପରିପାଳିତ ହେଉଥିବା ସମୟରେ କୌଶାମ୍ବୀ ନଗରୀରୁ ଆସିଥିବା ଜନୈକ ରାଜଦୂତ ଚନ୍ଦ୍ରପ୍ରଭଙ୍କ ନିକଟରେ ନିବେଦନ କଲା, ‘‘ରାଜା ଜନ୍ମେଜୟ ଆପଣଙ୍କୁ ଜଣାଇବା ପାଇଁ ମୋତେ କହିଛନ୍ତି ଯେ କିଛିଦିନ ହେଲା ତାଙ୍କ କନ୍ୟା ପରପୁଷ୍ଟାକୁ କେହି ଅପହରଣ କରି ନେଇ ଯାଇଥିଲେ । ବର୍ତ୍ତମାନ ସେ ଜାଣିପାରିଛନ୍ତି ଯେ ଏହି ଅପହର୍ତ୍ତା ଆପଣଙ୍କ ପୁତ୍ର ସୂର୍ଯ୍ୟପ୍ରଭ ବ୍ୟତୀତ ଅନ୍ୟ କେହି ନୁହନ୍ତି । ତେଣୁ ଆପଣ ତାଙ୍କ କନ୍ୟା ଓ ଆପଣଙ୍କ ପୁତ୍ର ସୂର୍ଯ୍ୟପ୍ରଭ ସହିତ ନିଃଶଙ୍କ ଚିତ୍ତରେ ଆସି ତାଙ୍କରି ଆତିଥ୍ୟ ଗ୍ରହଣ କରନ୍ତୁ । ଏହାଦ୍ୱାରା ସେ ସ୍ୱହସ୍ତରେ ସ୍ୱୀୟ କନ୍ୟାକୁ ସୂର୍ଯ୍ୟପ୍ରଭଙ୍କ କରକମଳରେ ସମର୍ପଣ କରିପାରିବେ । ଏହା ଯଦି

ସମ୍ଭବପର ନହୁଏ, ତାହାହେଲେ ଆପଣ ତାଙ୍କରି ଘୋର ଶତ୍ରୁ ବୋଲି ସେ ମନେ କରିବେ ।''

ଦୂତ ନିଜର ବାର୍ତ୍ତା ପ୍ରଦାନ କରି ମୌନତା ଅବଲମ୍ବନ କରନ୍ତେ ଚନ୍ଦ୍ରପ୍ରଭ ଅନ୍ୟ ସମ୍ବନ୍ଧୀ ରାଜାମାନଙ୍କୁ କହିଲେ, 'ଏପ୍ରକାର ଅହଙ୍କାର ପ୍ରକାଶ କରୁଥିବା ରାଜାଙ୍କ ଗୃହରେ ଅତିଥି ହେବା ସମ୍ଭବପର ନୁହେ ।' ଏହା ଶୁଣି ସିଦ୍ଧାର୍ଥନାମକ ଜଣେ ମନ୍ତ୍ରୀ କହିଲେ, 'ମହାରାଜ ଆପଣ ତାଙ୍କ କଥାକୁ ଭୁଲ୍ ବୁଝନ୍ତୁ ନାହିଁ । ସେ ଏପରି କହିବା ପାଇଁ ଯୋଗ୍ୟ । ରାଜା ଜନ୍ମେଜୟ ପାଣ୍ଡବମାନଙ୍କ ବଂଶରେ ଜନ୍ମଗ୍ରହଣ କରିଅଛନ୍ତି । ସେ ଯେପରି ଦାନଶୀଳ ସେହିପରି ବୁଦ୍ଧିମାନ ମଧ୍ୟ । ସେ ପୂର୍ବେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି ନିଜର ବୀରତ୍ୱର ପରିଚୟ ପ୍ରଦାନ କରିଅଛନ୍ତି । ଜୀବନରେ ସେ କୌଣସି ଶତ୍ରୁରାଜାଙ୍କଦ୍ୱାରା ପରାଜିତ ହୋଇ ନାହାନ୍ତି । ସୁତରାଂ ସେ ଆପଣଙ୍କୁ ଯେଉଁ ସନ୍ଦେଶ ପ୍ରଦାନ କରିଅଛନ୍ତି ସେଥିରେ ଅଯୌକ୍ତିକତା ଆଦୌ ନାହିଁ । ତେଣୁ ଆପଣ ତାଙ୍କ ଗୃହରେ ଅତିଥିହେବା ଅନୁଚିତ ହେବନାହିଁ । ସେ ଦୃଢ଼ପ୍ରତିଜ୍ଞ ଏବଂ ଶକ୍ତିଶାଳୀ; ତେଣୁ ତାଙ୍କର ମନୋରଥ ଜ୍ଞାତ ହେବା ନିମିତ୍ତ ଆପଣ ପୂର୍ବରୁ କୌଣସି ଗୁପ୍ତଚରକୁ ପ୍ରେରଣ କରନ୍ତୁ ।'

ମନ୍ତ୍ରୀ ସିଦ୍ଧାର୍ଥଙ୍କ କଥା ସମସ୍ତଙ୍କ ମନକୁ ସ୍ପର୍ଶକଲା । ରାଜା ଚନ୍ଦ୍ରପ୍ରଭ ମଧ୍ୟ ଜନ୍ମେଜୟଙ୍କର ମନୋରଥ ଜ୍ଞାତହେବା ନିମିତ୍ତ ସିଦ୍ଧାର୍ଥଙ୍କୁ ଦୂତ ରୂପରେ ପ୍ରେରଣ କଲେ ଏବଂ ଜନ୍ମେଜୟଙ୍କ ଦୂତର ଉଚିତ ସତ୍କାର କରି ସେଠାରେ କିଛିକାଳ ଅବସ୍ଥାନ କରିବା ନିମିତ୍ତ ଅନୁରୋଧ କଲେ । ଏ ମଧ୍ୟରେ ପ୍ରହସ୍ତ କୌଶାମ୍ବୀ ରାଜାଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କରି ଜନ୍ମେଜୟଙ୍କ ରାଜ୍ୟ ଅଭିମୁଖରେ ଗମନ କରିବା ନିମନ୍ତେ ଚନ୍ଦ୍ରପ୍ରଭଙ୍କୁ ପ୍ରୋତ୍ସାହିତ କଲେ ।

ଚନ୍ଦ୍ରପ୍ରଭ ଶେଷରେ ପ୍ରହସ୍ତଙ୍କ ସହିତ ଶାକଳ ଦ୍ୱୀପରେ ଥିବା ପରପୁଷ୍ଟାଙ୍କୁ ଜନ୍ମେଜୟଙ୍କ ନିକଟକୁ ପଠାଇଦେଲେ ଏବଂ ପରଦିନ ସୂର୍ଯ୍ୟପ୍ରଭ ଓ ସମସ୍ତ ସମ୍ବନ୍ଧୀ ରାଜାଙ୍କ ସହିତ ଯାଇ ଜନ୍ମେଜୟଙ୍କ ରାଜ୍ୟରେ ଉପସ୍ଥିତ ହେଲେ । ଉଦାର ଚରିତ ଜନ୍ମେଜୟ ନମ୍ରତାର ସହିତ ଆଗନ୍ତୁକମାନଙ୍କର ସତ୍କାର କରି ସେମାନଙ୍କୁ ନିଜ ରାଜପ୍ରାସାଦକୁ ବରଣ କରିନେଲେ । ବିବାହ ଉତ୍ସବରେ ସେ ସୂର୍ଯ୍ୟପ୍ରଭଙ୍କୁ ପଞ୍ଚସହସ୍ର ହସ୍ତୀ, ଏକଲକ୍ଷ ଶ୍ରେଷ୍ଠ ଅଶ୍ୱ, ପଞ୍ଚସହସ୍ର ଉଷ୍ଟ୍ର ଏବଂ ବହୁ ବହୁମୂଲ୍ୟ ରତ୍ନ, ସୁବର୍ଣ୍ଣ, ବସ୍ତ୍ର, କର୍ପୂର ପ୍ରଭୃତି ପ୍ରଦାନ କଲେ । ସଙ୍ଗୀତ, ନୃତ୍ୟ ଓ ବାଦ୍ୟରେ ସମଗ୍ର ରାଜ୍ୟ ପ୍ରକମ୍ପିତ ହୋଇ ଉଠିଲା । ବ୍ରାହ୍ମଣ ଓ ଯାଚକମାନଙ୍କ ଦାରିଦ୍ର୍ୟ ଦୂରୀଭୁତ ହେଲା ।

ଏହି ସମୟରେ ସମଗ୍ର ଆକାଶ ଅରୁଣ ବର୍ଣ୍ଣ ଧାରଣ କଲା । ମନେହେଲା ଏହା ଯେପରି ଭାବୀ ରକ୍ତାକ୍ତ ଯୁଦ୍ଧର ପୂର୍ବ ସୂଚନା । ଚତୁର୍ଦ୍ଦିଗ ଭୀଷଣ ହାହାକାର ଶବ୍ଦରେ ମୁଖରିତ ହୋଇ ଉଠିଲା । ଶତ୍ରୁମାନଙ୍କ ଭୟରେ ଚତୁର୍ଦ୍ଦିଗ ଯେପରି ଇତସ୍ତତଃ ଦୌଡ଼ିବାକୁ ଲାଗିଲେ । ଆକାଶରୁ ଭୟଙ୍କର ବାତ୍ୟା ଭୂପୃଷ୍ଠ ପ୍ରତି ପ୍ରବାହିତ ହେଲା । ଏହା ସହିତ ବିଦ୍ୟାଧରମାନଙ୍କର ଭୟଙ୍କର ତଥା ବିଶାଳ ସୈନ୍ୟବାହିନୀ ଦୃଷ୍ଟିଗୋଚର ହେଲା । ଏହି ସୈନ୍ୟବାହିନୀ ମଧ୍ୟରେ ଏକ ସୁନ୍ଦର ଓ ତେଜସ୍ୱୀ ବିଦ୍ୟାଧର ଶୋଭା ପାଉଥିଲେ । ଆକାଶରୁ ଶୁଣାଗଲା 'ଆଷାଢ଼େଶ୍ୱରଙ୍କର ପୁତ୍ର ଯୁବରାଜ ଦାମୋଦରଙ୍କର ଜୟ । ରେ ମର୍ତ୍ତ୍ୟବାସୀ ସୂର୍ଯ୍ୟପ୍ରଭ, ତୁ ଏହାଙ୍କର ଚରଣରେ ପ୍ରଣିପାତ କର । ରେ ଜନ୍ମେଜୟ, ତୁ ମଧ୍ୟ ଏହାଙ୍କ ନିକଟରେ କ୍ଷମାପ୍ରାର୍ଥନା କର । ତୋର କନ୍ୟାକୁ ଏହି ମାନବ ହସ୍ତରେ ଅର୍ପଣ କରି ଯେଉଁ ପାପ କରିଅଛୁ ତାକୁ କ୍ଷାଳନ କରିବା ନିମିତ୍ତ ଦାମୋଦରଙ୍କୁ ପ୍ରସନ୍ନ କର । ନୋଚେତ୍ ସେ କଦାପି ତୋତେ କ୍ଷମା ଦେବେ ନାହିଁ ।'

ଆକାଶଚାରୀ ବିଦ୍ୟାଧରଙ୍କ ଅନୁଚରମାନେ ଏହା କହୁଥିବା ଶୁଣି ସୂର୍ଯ୍ୟପ୍ରଭ ଖଡ୍‌ଗ ଧାରଣ ପୂର୍ବକ ନିଜର ବିଦ୍ୟାପ୍ରଭାବରେ ଆକାଶ ମାର୍ଗରେ ଯାଇ ଉପସ୍ଥିତ ହେଲେ । ଏହାଙ୍କୁ ଅନୁସରଣ କରି ପ୍ରହସ୍ତ, ପ୍ରଭାସ, ସିଦ୍ଧାର୍ଥ, ପ୍ରଜ୍ଞାଢ଼୍ୟ, ସର୍ବଗମନ, ବୀତଭୀତି, ଶମ୍ଭୂକର ପ୍ରଭୃତି ମନ୍ତ୍ରୀମାନେ ମଧ୍ୟ ନିଜ ନିଜର ଅସ୍ତ୍ରଶସ୍ତ୍ର ଧାରଣ କରି ଆକାଶ ପଥରେ ଯାଇ ଉପନୀତ ହେଲେ । ସେଠାରେ ଭୟଙ୍କର ଯୁଦ୍ଧ ସଙ୍ଘଟିତ ହେଲା । କବଚ ଦ୍ୱାରା ନିଜ ଶରୀରକୁ ରକ୍ଷା କରି ଏବଂ ଖଡ୍‌ଗଦ୍ୱାରା ବହୁ ଶତ୍ରୁ ସଂହାର କରି ସୂର୍ଯ୍ୟପ୍ରଭ ଦାମୋଦରଙ୍କ ପ୍ରତି ଅଗ୍ରସର ହେଲେ । ବହୁସଂଖ୍ୟକ ଆକାଶଚାରୀ ବିଦ୍ୟାଧରଙ୍କ ସହିତ ସ୍ୱଳ୍ପସଂଖ୍ୟକ ମାନବ ଯୁଦ୍ଧ କରୁଥିଲେ ହେଁ ସେମାନେ ଦ୍ୱନ୍ଦ୍ୱ ଯୁଦ୍ଧରେ ବିଦ୍ୟାଧରମାନଙ୍କର ସମକକ୍ଷ ବୋଲି ମନେ ହେଉଥିଲେ । ରକ୍ତରଞ୍ଜିତ ତରବାରିଗୁଡ଼ିକ କରାଳ କାଳତୁଲ୍ୟ ଶତ୍ରୁମାନଙ୍କ ଶରୀର ଉପରେ ନିପତିତ ହୋଇ ସେମାନଙ୍କୁ ସମୂଳେ ବିନାଶ କରୁଥିଲେ । ଭୂମି ଉପରେ ଦଣ୍ଡାୟମାନ ସୂର୍ଯ୍ୟପ୍ରଭଙ୍କ ଚତୁର୍ଦ୍ଦିଗରେ ଯେଉଁ ଅସଂଖ୍ୟ ବିଦ୍ୟାଧରଙ୍କ ଛିନ୍ନ ମସ୍ତକ ନିପତିତ ହେଉଥିଲା ସେଗୁଡ଼ିକୁ ଦେଖିଲେ ମନେ ହେଉଥିଲା ସତେ ଯେପରି ବିଦ୍ୟାଧରମାନେ ତାଙ୍କର ଆଶ୍ରୟ ପ୍ରାର୍ଥନା କରୁଅଛନ୍ତି । ଆକାଶମାର୍ଗରେ ଯୁଦ୍ଧ କରୁଥିବା ସୂର୍ଯ୍ୟପ୍ରଭ ପୃଥିବୀସ୍ଥିତ ଲୋକମାନଙ୍କ ଦୃଷ୍ଟିରେ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲେ । ରକ୍ତ ରଞ୍ଜିତ ନଭଃପ୍ରଦେଶ କୁଙ୍କୁମଲିପ୍ତ ହେଲାପରି ମନେ ହେଉଥିଲା ।

ନିଜର ଶକ୍ତିଦ୍ୱାରା ବହୁ ବିଦ୍ୟାଧରଙ୍କର ଜୀବନ ହରଣ କରି ସୂର୍ଯ୍ୟପ୍ରଭ ଶେଷରେ ଦାମୋଦରଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ତାଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ଛିନ୍ନଭିନ୍ନ

କରି ସେ ସେମାନଙ୍କୁ ଶକ୍ତିରହିତ କରିଦେଲେ । ଏହାପରେ ସେ ଯେତେବେଳେ ଦାମୋଦରଙ୍କ ଶିରଚ୍ଛେଦ କରିବା ପାଇଁ ଉଦ୍ୟତ ହେଲେ ସେତେବେଳେ ଭଗବାନ ନାରାୟଣ ସ୍ୱୟଂ ସେଠାରେ ଉପସ୍ଥିତ ହୋଇ ହୁଂକାର ପୂର୍ବକ ସେଥିରୁ ତାଙ୍କୁ ନିବୃତ୍ତ କଲେ । ଭଗବାନଙ୍କର ସାକ୍ଷାତ ଦର୍ଶନ ଲାଭ କରି ଏବଂ ତାଙ୍କର ହୁଂକାର ଶ୍ରବଣ କରି ସୂର୍ଯ୍ୟପ୍ରଭ ଦାମୋଦରଙ୍କୁ ହତ୍ୟା କରିବାରୁ କ୍ଷାନ୍ତ ହେଲେ । ମୃତ୍ୟୁମୁଖରୁ ଦାମୋଦରଙ୍କୁ ମୁକ୍ତିଦେଇ ଭଗବାନ ବିଷ୍ଣୁ ତାଙ୍କ ସହିତ ସେଠାରୁ ଅନ୍ତର୍ହିତ ହେଲେ । ଭଗବାନ ଭକ୍ତମାନଙ୍କୁ ଏହିପରି ହିଁ ଇହଲୋକ ଓ ପରଲୋକରେ ସାହାଯ୍ୟ କରିଥାଆନ୍ତି ।

ଦାମୋଦର ଅଦୃଶ୍ୟ ହୁଅନ୍ତେ ତାଙ୍କ ସୈନ୍ୟମାନେ ଇତସ୍ତତଃ ପଳାୟନ କରିବାକୁ ଲାଗିଲେ । ସୂର୍ଯ୍ୟପ୍ରଭ ମଧ୍ୟ ଅକ୍ଷତ ଶରୀରରେ ପିତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ପିତା ପୁତ୍ରର ବୀରତ୍ୱ ଦେଖି ଯଥେଷ୍ଟ ଆନନ୍ଦ ଲାଭ କଲେ । ଅନ୍ୟାନ୍ୟ ରାଜାମାନେ ମଧ୍ୟ ତାଙ୍କ ବୀରତ୍ୱର ପ୍ରଶଂସାରେ ଶତମୁଖ ହୋଇ ଉଠିଲେ ।

ଏହି ସମୟରେ ରାଜା ସୁଭଟଙ୍କ ଠାରୁ ଦ୍ୱିତୀୟ ଦୂତ ଆସି ସେଠାରେ ଉପସ୍ଥିତ ହେଲା । ସେ ଚନ୍ଦ୍ରପ୍ରଭଙ୍କ ହସ୍ତରେ ସୁଭଟଙ୍କର ଏକ ପତ୍ର ପ୍ରଦାନ କରନ୍ତେ ଚନ୍ଦ୍ରପ୍ରଭ ତାକୁ ଉପସ୍ଥିତ ଜନତା ସମ୍ମୁଖରେ ପାଠକଲେ । ସେଥିରେ ଲେଖାଥିଲା 'କୋଙ୍କଣର ରାଜା ସୁଭଟ, ଉଚ୍ଚବଂଶ ସମ୍ଭୂତ ତଥା ସର୍ବଗୁଣଯୁକ୍ତ ରାଜା ଚନ୍ଦ୍ରପ୍ରଭଙ୍କୁ ନମ୍ରତାର ସହିତ ଜଣାଉଅଛନ୍ତି ଯେ ଦିନେ କୌଣସି ବ୍ୟକ୍ତିଦ୍ୱାରା ଅପହୃତା ମୋର କନ୍ୟା ଆପଣଙ୍କ ପୁତ୍ରର ହସ୍ତଗତ ହୋଇଅଛି ବୋଲି ଦୂତ ମୁଖରୁ ଜ୍ଞାତ ହେଲି । ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ । ତେଣୁ ଆପଣ ମୋର କନ୍ୟା ଏବଂ ଆପଣଙ୍କ ପୁତ୍ର ସୂର୍ଯ୍ୟପ୍ରଭଙ୍କ ସହିତ ଅନୁଗ୍ରହ ପୂର୍ବକ ମୋର କୁଟୀରରେ ଉପସ୍ଥିତ ହେବେ ବୋଲି ଅନୁରୋଧ । ଫଳରେ ଆମେ ଆମ କନ୍ୟାକୁ ପରଲୋକରୁ ଫେରିଆସିଲା ବୋଲି ମନେ କରିବୁ ଏବଂ ତାର ବିବାହ କାର୍ଯ୍ୟ ମଧ୍ୟ ସମ୍ପନ୍ନ କରିବୁ ।' ଚନ୍ଦ୍ରପ୍ରଭ ଏହି ପତ୍ରପାଠ କରି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ପତ୍ରବାହକର ଯଥୋଚିତ ସତ୍କାର କଲେ । ଚନ୍ଦ୍ରପ୍ରଭଙ୍କ ଆଦେଶରେ ମନ୍ତ୍ରୀ ପ୍ରହସ୍ତ କୋଙ୍କଣ ରାଜାଙ୍କ କନ୍ୟା ଚନ୍ଦ୍ରାବତୀଙ୍କୁ ସଙ୍ଗେ ସଙ୍ଗେ ତାଙ୍କ ପିତୃଗୃହରେ ପହଞ୍ଚାଇ ଦେଲେ ।

ପରଦିନ ପ୍ରାତଃକାଳରୁ ରାଜା ଚନ୍ଦ୍ରପ୍ରଭ, ଜନ୍ମେଜୟ, ଯୁବରାଜ ସୂର୍ଯ୍ୟପ୍ରଭ ଏବଂ ଅନ୍ୟାନ୍ୟ ପାରିଷଦବୃନ୍ଦ ବିମାନ ଆରୋହଣ ପୂର୍ବକ କୋଙ୍କଣ ରାଜ୍ୟରେ ଯାଇ ଉପସ୍ଥିତ ହେଲେ । ଅପହୃତା କନ୍ୟାକୁ ଲାଭକରି ସୁଭଟ ଓ ତାଙ୍କ ପରିବାର ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲେ । ସେମାନେ ବର୍ତ୍ତମାନ କନ୍ୟାର ରକ୍ଷାକର୍ତ୍ତାଙ୍କୁ ଏବଂ ତାଙ୍କର ପିତା ଓ ବନ୍ଧୁ

ସ୍ୱଜନଙ୍କୁ ଆଦର ପୂର୍ବକ ସ୍ୱାଗତ ସମ୍ଭାଷଣ ଜଣାଇ ବିବାହ ଉତ୍ସବର ଆୟୋଜନ କଲେ । କନ୍ୟା ଚନ୍ଦ୍ରାବତୀଙ୍କ ବିବାହରେ ରାଜା ସୁଭଟ ଏତେ ଧନରତ୍ନ ସୂର୍ଯ୍ୟପ୍ରଭଙ୍କୁ ଯୌତୁକ ସ୍ୱରୂପ ପ୍ରଦାନ କଲେ ଯେ ସେଥିରେ ତାଙ୍କର ଅନ୍ୟାନ୍ୟ ଶ୍ୱଶୁରମାନେ ଲଜ୍ଜିତ ହେଲେ ।

ସୂର୍ଯ୍ୟପ୍ରଭ ସୁଭଟଙ୍କ ରାଜଭବନରେ ବାସ କରୁଥିବା ବେଳେ ଲାବାଣକର ରାଜା ପୌରବଙ୍କ ଦୂତ ଆସି ସେଠାରେ ଉପସ୍ଥିତ ହେଲା । ସେ ଚନ୍ଦ୍ରପ୍ରଭଙ୍କୁ ନିଜ ପ୍ରଭୁଙ୍କର ସନ୍ଦେଶ ଜ୍ଞାପନ କରି କହିଲା, ''ଆପଣଙ୍କ ପୁତ୍ର ସୂର୍ଯ୍ୟପ୍ରଭ ପୌରବଙ୍କ କନ୍ୟା ସୁଲୋଚନାଙ୍କୁ ଅପହରଣ କରିଥିବା ଜାଣିପାରି ରାଜା ପୌରବ ଦୁଃଖଲାଭ କରିବା ପରିବର୍ତ୍ତେ ଆନନ୍ଦିତ ହୋଇଅଛନ୍ତି । ଆପଣ ଅନୁଗ୍ରହ ପୂର୍ବକ ତାଙ୍କର ଆତିଥ୍ୟ ସ୍ୱୀକାର କଲେ ସେ ଆପଣଙ୍କ ପୁତ୍ର ହସ୍ତରେ ତାଙ୍କ କନ୍ୟାକୁ ଅର୍ପଣ କରିବେ ।'' ଏ ସମ୍ବାଦରେ ପ୍ରୀତହୋଇ ଚନ୍ଦ୍ରପ୍ରଭ ବାର୍ତ୍ତାବହର ସତ୍କାର କଲେ ଏବଂ ପ୍ରହସ୍ତ ଦ୍ୱାରା ସୁଲୋଚନାଙ୍କୁ ତାଙ୍କ ପିତାଙ୍କ ନିକଟରେ ପହଞ୍ଚାଇ ଦେଲେ । ପରଦିନ ଚନ୍ଦ୍ରପ୍ରଭ ପୁତ୍ର ସହିତ ଲାବାଣକରେ ଉପସ୍ଥିତ ହୁଅନ୍ତେ ପୌରବ କନ୍ୟାର ବିବାହ କାର୍ଯ୍ୟ ସମ୍ପନ୍ନ କରି ଉପସ୍ଥିତ ରାଜନ୍ୟବର୍ଗଙ୍କୁ ବହୁ ସମ୍ମାନିତ କଲେ । ସେଠାରେ ଅବସ୍ଥାନ କରୁଥିବାବେଳେ ଚୀନ ଦେଶର ଅଧିପତି ସୁରୋହଙ୍କଠାରୁ ଏକ ଦୂତ ଆସି ଚନ୍ଦ୍ରପ୍ରଭଙ୍କୁ ସୂର୍ଯ୍ୟପ୍ରଭ ଓ ବିଦ୍ୟୁନ୍‌ମାଳାଙ୍କ ସହିତ ତାଙ୍କ ରାଜ୍ୟରେ ଉପସ୍ଥିତ ହେବା ପାଇଁ ନିବେଦନ କଲା ।

ରାଜା ଚନ୍ଦ୍ରପ୍ରଭ ପ୍ରଥମେ ବିଦ୍ୟୁନ୍‌ମାଳାଙ୍କୁ ପ୍ରହସ୍ତଙ୍କ ସଙ୍ଗେ ତାଙ୍କ ପିତାଙ୍କ ନିକଟକୁ ପ୍ରେରଣ କରି ପରଦିନ ନିଜେ ସୂର୍ଯ୍ୟପ୍ରଭ ଓ ପୌରବଙ୍କ ସହ ସେଠାରେ ଯାଇ ଉପସ୍ଥିତ ହେଲେ । ସୁରୋହ ଏମାନଙ୍କର ଯଥୋଚିତ ସତ୍କାର କରି ବିଦ୍ୟୁନ୍‌ମାଳାଙ୍କ ସହିତ ସୂର୍ଯ୍ୟପ୍ରଭଙ୍କ ବିବାହ ସଂଘଟିତ କଲେ । ଦକ୍ଷିଣା ସ୍ୱରୂପ ସୁରୋହ ଅସଂଖ୍ୟ ରତ୍ନ, ସୁବର୍ଣ୍ଣ ଏବଂ ଚୀନାଂଶୁକ ପ୍ରଦାନ କଲେ । ବିବାହ ପରେ ଚନ୍ଦ୍ରପ୍ରଭ ସୁରୋହଙ୍କ ସେବା ସତ୍କାର ପ୍ରାପ୍ତ ହୋଇ କିଛିଦିନ ଚୀନ ଦେଶରେ ଅବସ୍ଥାନ କଲେ । ବର୍ଷାକାଳୀନ ଜଳପୂର୍ଣ୍ଣ ମେଘ ଯେପରି ଚଞ୍ଚଳା ବିଜୁଳି ସହିତ କ୍ରୀଡ଼ାକରେ, ସେହିପରି ଯୌବନୋନ୍ମତ୍ତ ସୂର୍ଯ୍ୟପ୍ରଭ ଚୀନ ରାଜକନ୍ୟା ବିଦ୍ୟୁନ୍ମାଳାଙ୍କ ସହିତ ବିଭିନ୍ନ ଆମୋଦ ପ୍ରମୋଦ କରି ଶ୍ୱଶୁରାଳୟରେ ଦିନ ଯାପନ କରିବାକୁ ଲାଗିଲେ ।

କିଛି ଦିନ ଅତୀତ ହେଲା । ସିଦ୍ଧାର୍ଥ ପ୍ରଭୃତି ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ଚନ୍ଦ୍ରପ୍ରଭ ସମ୍ବନ୍ଧୀ ରାଜାମାନଙ୍କୁ ବହୁ ସୈନ୍ୟ ସାମନ୍ତ ପ୍ରଦାନ ପୂର୍ବକ ନିଜ ନିଜ ରାଜ୍ୟକୁ ପ୍ରସ୍ଥାନ କରିବା ନିମନ୍ତେ ବିଦାୟ ଦେଲେ । ନିଜେ ସୁରୋହଙ୍କ ଅନୁମତି ନେଇ ପୁତ୍ର,

ପୁତ୍ରବଧୂ, ମନ୍ତ୍ରୀ ଓ ଅନ୍ୟାନ୍ୟ ପରିଜନଙ୍କ ସହିତ ଭୂତାସନ ନାମକ ବିମାନ ଆରୋହଣ ପୂର୍ବକ ନିଜର ରାଜଧାନୀ ଶାକଳ ନଗରୀରେ ଆସି ଉପସ୍ଥିତ ହେଲେ ।

ସୂର୍ଯ୍ୟପ୍ରଭଙ୍କ ଆଗମନରେ ସମଗ୍ର ନଗରୀ ଆନନ୍ଦରେ ଅଭିଭୂତ ହୋଇ ଉଠିଲା । ନୃତ୍ୟଗୀତ ବାଦିତ୍ରଦ୍ୱାରା ସମଗ୍ର ରାଜ୍ୟ ମୁଖରିତ ହେଲା । ନାଗରିକମାନେ ପାନକ୍ରୀଡ଼ାରେ (ମଦ୍ୟପାନ) ଉନ୍ମତ୍ତହୋଇ ଏବଂ ସ୍ତ୍ରୀମାନେ ବେଶଭୂଷା ଧାରଣ କରି ଇତସ୍ତତଃ ସଞ୍ଚରଣ କରିବାରେ ନଗରୀ ସ୍ୱର୍ଗୀୟ ଶୋଭା ଧାରଣ କଲା । ବନ୍ଦୀ ଓ ଚାରଣମାନେ ପ୍ରଚୁର ପୁରସ୍କାର ପ୍ରାପ୍ତହୋଇ ରାଜବଂଶର ପ୍ରଶସ୍ତି ଗାନ କରିବାରେ ବାଚାଳ ପ୍ରାୟ ହୋଇ ଉଠିଲେ ।

ସୂର୍ଯ୍ୟପ୍ରଭ ରାଜଧାନୀରେ ଉପସ୍ଥିତ ହୋଇ ନିଜର ନବବିବାହିତା ପତ୍ନୀମାନଙ୍କୁ ସେମାନଙ୍କର ପିତୃଗୃହରୁ ନିଜ ନିକଟକୁ ନେଇ ଆସିଲେ । ଏହି ରାଣୀମାନଙ୍କ ସହିତ ଆସିଥିବା ଅସଂଖ୍ୟ ହସ୍ତୀ, ଅଶ୍ୱ, ଉଷ୍ଟ୍ର, ଦାସ, ଦାସୀ, ଧନ, ରତ୍ନ ପ୍ରଭୃତି ଦର୍ଶନ କରି ନାଗରିକମାନଙ୍କର ବିସ୍ମୟର ସୀମା ରହିଲା ନାହିଁ । ବିଭିନ୍ନ ଧନରତ୍ନ ପରିପୂର୍ଣ୍ଣ ରାଜକୋଷ ଏବଂ ମହାଭୋଗୀ ସୂର୍ଯ୍ୟପ୍ରଭଙ୍କୁ ଧାରଣ କରି ଶାକଳ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ସମ୍ମିଶ୍ରଣରେ ଗଠିତ ଏକ ନବୀନ ନଗର ପରି ପ୍ରତିଭାତ ହେଲା । ଯୁବରାଜ ସୂର୍ଯ୍ୟପ୍ରଭ ପଟ୍ଟମହିଷୀ ମଦନସେନା ତଥା ଅନ୍ୟାନ୍ୟ ରାଣୀମାନଙ୍କ ସହିତ ବିଭିନ୍ନ ଭୋଗ ବିଳାସରେ ନିମଜ୍ଜିତ ରହି ପିତା ଓ ମନ୍ତ୍ରୀମାନଙ୍କ ସହିତ ମୟ ଦାନବଙ୍କ ପ୍ରତୀକ୍ଷା କରିବାକୁ ଲାଗିଲେ ।



# ଦ୍ୱିତୀୟ ତରଙ୍ଗ

## ଚନ୍ଦ୍ରପ୍ରଭଙ୍କ ସଭାକୁ ମୟଦାନବଙ୍କ ଆଗମନ

ଦିନେ ରାଜସଭାରେ ସୂର୍ଯ୍ୟପ୍ରଭ ଓ ଚନ୍ଦ୍ରପ୍ରଭ ବସି ସିଦ୍ଧାର୍ଥ ପ୍ରଭୃତି ମନ୍ତ୍ରୀମାନଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କରୁଥାଆନ୍ତି । ପ୍ରସଙ୍ଗ କ୍ରମେ ଦାନବଶିଳ୍ପୀ ମୟଙ୍କର ନାମ ଉଚ୍ଚାରଣ କରିବା ମାତ୍ରେ ସଭାସ୍ଥଳ ସହସା ବିଦୀର୍ଣ୍ଣ ହେଲା । ପ୍ରଥମେ ତା' ମଧ୍ୟରୁ ସୁନ୍ଦର ଓ ସୁଶ୍ରାବ୍ୟ ଶବ୍ଦ ଶୁଣାଗଲା, ତାପରେ ତନ୍ମଧ୍ୟରୁ ସୁଗନ୍ଧିତ ବାୟୁ ଉତ୍‌ଥିତ ହେଲା ଏବଂ କିଛି ସମୟ ମଧ୍ୟରେ ସେହି ଭୂଗର୍ଭରୁ ଦାନବଶିଳ୍ପୀ ମୟାସୁରଙ୍କ ଆବିର୍ଭାବ ଘଟିଲା । ଦାନବଶ୍ରେଷ୍ଠ ମୟ ପର୍ବତ ତୁଲ୍ୟ ଦେଖାଯାଉଥିଲେ । ତାଙ୍କର କୃଷ୍ଣବର୍ଣ୍ଣ ଉନ୍ନତ ମସ୍ତକ ରୂପ ଶିଖର ଉପରେ ଉଜ୍ଜ୍ୱଳ କେଶରାଶି ମହୌଷଧି-ବୃକ୍ଷତୁଲ୍ୟ ଜାଜ୍ୱଲ୍ୟମାନ ହେଉଥିଲା ଏବଂ ରକ୍ତବର୍ଣ୍ଣ ବସ୍ତ୍ର ଦ୍ୱାରା ଆବୃତ ହୋଇ ତାଙ୍କ ଶରୀର ହିଙ୍ଗୁଳ ରସ ଲିପ୍ତ ହେଲାପରି ମନେ ହେଉଥିଲା । ରାଜା ଚନ୍ଦ୍ରପ୍ରଭଙ୍କ ଦ୍ୱାରା ଯଥୋଚିତ ସତ୍କୃତ ହୋଇ ଦାନବରାଜ ମୟ ତାଙ୍କୁ ଉଦ୍ଦେଶ୍ୟ କରି କହିଲେ, 'ବର୍ତ୍ତମାନ ପର୍ଯ୍ୟନ୍ତ ତୁମେ ସାଂସାରିକ ସମସ୍ତ ସମ୍ପଦ ଉପଭୋଗ କଲ । ବର୍ତ୍ତମାନ ଦିବ୍ୟଭୋଗ ଉପଭୋଗ କରିବା ସମୟ ଆସିଗଲା । ତେଣୁ ତୁମେ ସେ ସମ୍ପର୍କରେ ଉଦ୍‌ଯୋଗ କର । ଦୂତ ପ୍ରେରଣଦ୍ୱାରା ସମସ୍ତ ବନ୍ଧୁରାଜାମାନଙ୍କୁ ନିମନ୍ତ୍ରଣ କରି ଏଠାକୁ ନେଇ ଆସିଲେ ଆମ୍ଭେମାନେ ବିଦ୍ୟାଧର ଅଧିପତି ସୁମେରୁଙ୍କ ସହିତ ସାକ୍ଷାତ କରିବା । ଏହାପରେ ଶ୍ରୁତଶର୍ମାଙ୍କୁ ପରାସ୍ତ କରି ବିଦ୍ୟାଧରମାନଙ୍କର ସାମ୍ରାଜ୍ୟ ହସ୍ତଗତ କରିହେବ । ସୁମେରୁ ତୁମର ସହାୟତା କରିବା ଏବଂ ତୁମକୁ ସମ୍ବନ୍ଧୀ ରୂପରେ ଲାଭ କରିବା ସକାଶେ ପ୍ରତୀକ୍ଷା କରୁଅଛନ୍ତି । ଭଗବାନ ଶଙ୍କର ତାଙ୍କୁ ଆଦେଶ ପ୍ରଦାନ କରିଅଛନ୍ତି ଯେ ସେ ତୁମର ପୁତ୍ର ସୂର୍ଯ୍ୟପ୍ରଭଙ୍କ ହସ୍ତରେ ତାଙ୍କ କନ୍ୟାଙ୍କୁ ପ୍ରଦାନ କରିବା ସଙ୍ଗେ ସଙ୍ଗେ ତୁମକୁ ସର୍ବଦା ସାହାଯ୍ୟ କରିବେ ।

ମୟଙ୍କଠାରୁ ଏ ପ୍ରକାର ଉପଦେଶ ଶ୍ରବଣ କରି ଚନ୍ଦ୍ରପ୍ରଭ ସଙ୍ଗେ ସଙ୍ଗେ ବନ୍ଧୁରାଜାମାନଙ୍କୁ ନିମନ୍ତ୍ରଣ କରିଆଣିବା ଉଦ୍ଦେଶ୍ୟରେ ପ୍ରହସ୍ତ, ପ୍ରଭାସ ପ୍ରଭୃତି ଆକାଶଚାରୀ ଦୂତମାନଙ୍କୁ ପ୍ରେରଣ କଲେ । ସୂର୍ଯ୍ୟପ୍ରଭ ମଧ ମୟଙ୍କ ଉପଦେଶାନୁସାରେ ଯେଉଁ ପତ୍ନୀ ଓ ମନ୍ତ୍ରୀମାନଙ୍କୁ ଇନ୍ଦ୍ରଜାଲ ପ୍ରଭୃତି ବିଦ୍ୟା ଶିକ୍ଷା ଦେଇନଥିଲେ, ସେମାନଙ୍କୁ ସେ ସମସ୍ତ ବିଦ୍ୟା ପ୍ରଦାନ କଲେ ।

## ଚନ୍ଦ୍ରପ୍ରଭଙ୍କ ରାଜସଭାରେ ନାରଦଙ୍କ ପ୍ରବେଶ

ସଭା ଗୃହରେ ଏ ପ୍ରକାର ଆଲୋଚନା ଚାଲିଥିବା ବେଳେ ମୁନିଶ୍ରେଷ୍ଠ ନାରଦ ନିଜର ତପଃ ପ୍ରଭାବରେ ଚତୁର୍ଦ୍ଦିଗ ଆଲୋକିତ କରି ସେଠାରେ ଆସି ଅବତରଣ କଲେ । ସେ ଉପସ୍ଥିତ ସମସ୍ତଙ୍କଦ୍ୱାରା ସସମ୍ମାନ ସତ୍କୃତ ହୋଇ ଆସନ ଗ୍ରହଣ ପୂର୍ବକ ରାଜା ଚନ୍ଦ୍ରପ୍ରଭଙ୍କୁ କହିଲେ, ''ରାଜନ୍ ! ମୁଁ ଇନ୍ଦ୍ରଙ୍କ ଆଦେଶରେ ଏଠାକୁ ଆସିଅଛି । ସେ ଜାଣିପାରିଛନ୍ତି ଯେ ତୁମେ ସମସ୍ତେ ମହାଦେବଙ୍କ ଆଦେଶରେ ଏବଂ ମୟଦାନବଙ୍କ ସହାୟତା କ୍ରମେ ଅଜ୍ଞାନତାବଶତଃ ମାନବ ଶରୀରଧାରୀ ସୂର୍ଯ୍ୟପ୍ରଭଙ୍କୁ ସମଗ୍ର ବିଦ୍ୟାଧରକୁଳର ଚକ୍ରବର୍ତ୍ତୀ ପଦରେ ଅଧିଷ୍ଠିତ କରିବା ପାଇଁ ଚେଷ୍ଟା କରୁଅଛ । କିନ୍ତୁ ଇନ୍ଦ୍ର କହିଛନ୍ତି ତୁମର ଏ ପ୍ରଚେଷ୍ଟା ଆଦୌ ଯଥାର୍ଥ ନୁହେ । ସେ ପୂର୍ବରୁ ଶ୍ରୁତଶର୍ମାଙ୍କୁ ବିଦ୍ୟାଧର ଚକ୍ରବର୍ତ୍ତୀ ପଦରେ ନିଯୁକ୍ତ କରିଅଛନ୍ତି । ଶ୍ରୁତଶର୍ମା ବିଦ୍ୟାଧର କୁଳରୂପ କ୍ଷୀରସମୁଦ୍ରର ଚନ୍ଦ୍ରମାତୁଲ୍ୟ । ତେଣୁ କୁଳପରମ୍ପରା କ୍ରମେ ସେ ଏହି ପଦବୀ ଲାଭ କରିବା କଥା । ଇନ୍ଦ୍ର ପୁଣି କହିଛନ୍ତି ଯଦି ତୁମ୍ଭେମାନେ ଧର୍ମବିରୁଦ୍ଧ କାର୍ଯ୍ୟକରି ତାଙ୍କର ଶତ୍ରୁତା ଆଚରଣ କର ତାହାହେଲେ ଭବିଷ୍ୟତରେ ତୁମର ନିଶ୍ଚିତ ଭାବରେ ଅମଙ୍ଗଳ ଘଟିବ । ପୂର୍ବେ ସେ ତୁମ୍ଭମାନଙ୍କୁ ଅଶ୍ୱମେଧ ଯଜ୍ଞ କରିବା ପାଇଁ କହିଥିଲେ; କିନ୍ତୁ ତୁମ୍ଭେମାନେ ତାଙ୍କର ଆଦେଶ ଲଂଘନ କରି ରୁଦ୍ରଯଜ୍ଞ ଅନୁଷ୍ଠାନ କରିଅଛ । ଅନ୍ୟ ଦେବତାମାନଙ୍କୁ ଉପେକ୍ଷା କରି କେବଳ ରୁଦ୍ରଙ୍କର ଉପାସନା କରିବାଦ୍ୱାରା ତୁମର ମଙ୍ଗଳ ହେବନାହିଁ ।''

ନାରଦଙ୍କଠାରୁ ଇନ୍ଦ୍ରଙ୍କର ଏ ପ୍ରକାର ବାର୍ତ୍ତା ଶ୍ରବଣ କରି ମୟ ହାସ୍ୟ ପ୍ରକାଶ ପୂର୍ବକ କହିଲେ 'ମହାମୁନି, ଦେବେନ୍ଦ୍ର ଯାହା କହିଛନ୍ତି ତାହା ଆଦୌ ଯଥାର୍ଥ ନୁହେ । ତାଙ୍କ ମତରେ ସୂର୍ଯ୍ୟପ୍ରଭ ମନୁଷ୍ୟ, କିନ୍ତୁ ଏହା ସତ୍ୟ ନୁହେ । ଦାମୋଦରଙ୍କ ସହିତ ସଂଗ୍ରାମ କରୁଥିବାବେଳେ ସୂର୍ଯ୍ୟପ୍ରଭଙ୍କୁ ଇନ୍ଦ୍ର ଦେଖିଅଛନ୍ତି । ସେ ଯେ ଜଣେ ଅଲୌକିକ ମାନବ ଏଥିରେ ଆଉ ସନ୍ଦେହର ଅବକାଶ ନାହିଁ । ମନୁଷ୍ୟ ସତ୍ତ୍ୱବାନ ପ୍ରାଣୀ; ତେଣୁ ସେ

ସମସ୍ତ ସିଦ୍ଧିର ଅଧିକାରୀ ହୋଇପାରେ । ରାଜା ନହୁଷ ପ୍ରଭୃତି ମଧ୍ୟ ଇନ୍ଦ୍ରପଦ ଲାଭ କରିପାରିଥିଲେ ।

'ସେ ଶ୍ରୁତଶର୍ମାଙ୍କୁ ବିଦ୍ୟାଧର ଚକ୍ରବର୍ତ୍ତୀ ପଦ ପ୍ରଦାନ କରିଅଛନ୍ତି ଏବଂ ଉକ୍ତ ପଦ ତାଙ୍କର କୁଳ ପରମ୍ପରା କ୍ରମେ ଚଳି ଆସିଅଛି ବୋଲି ଇନ୍ଦ୍ର ଯାହା କହିଛନ୍ତି, ତାହା ମଧ୍ୟ ସତ୍ୟ ନୁହେ । ଭଗବାନ ମହେଶ୍ୱର ଯେଉଁ ପଦ ପ୍ରଦାନ କରିଅଛନ୍ତି, ତା'ପାଇଁ ଆଉ ପ୍ରମାଣର ଆବଶ୍ୟକତା କ'ଣ ? ପୁଣି ଜ୍ୟେଷ୍ଠଭ୍ରାତା ହିରଣ୍ୟାକ୍ଷଙ୍କୁ ଇନ୍ଦ୍ରପଦ ମିଳିବା କଥା । କିନ୍ତୁ ସେ କନିଷ୍ଠ ହେଲେ ସୁଦ୍ଧା ଇନ୍ଦ୍ରପଦ ଅଧିକାର କରି କି ପ୍ରକାର ଧର୍ମ ଆଚରଣ କରି ଅଛନ୍ତି ?

'ପୁଣି ଇନ୍ଦ୍ର, ଆମ୍ଭେମାନେ ତାଙ୍କ ସହିତ ଶତ୍ରୁତା କରୁଅଛୁ ବୋଲି ଯାହା କହିଛନ୍ତି ତାହା ମଧ୍ୟ ସତ୍ୟବୋଲି ମନେ ହେଉନାହିଁ । ସେ ହିଁ ନିଜର ପ୍ରତିଶ୍ରୁତି ରକ୍ଷା କରିବା ପାଇଁ ଆମ୍ଭମାନଙ୍କ ସହିତ ଶତ୍ରୁତା କରୁଅଛନ୍ତି । ଆମ୍ଭେମାନେ କୌଣସି ଅଧର୍ମ ଆଚରଣ କରିବାକୁ ଯାଉନାହୁଁ । ଶତ୍ରୁକୁ ପରାସ୍ତ କରି କ୍ଷତ୍ରିୟ ଧର୍ମ ପାଳନ କରିବା ହିଁ ଆମର ଅଭିପ୍ରାୟ । କିନ୍ତୁ ତାଙ୍କ ତୁଲ୍ୟ ମୁନିପତ୍ନୀ (ଅହଲ୍ୟା) ହରଣ କରି କିମ୍ବା ବ୍ରହ୍ମହତ୍ୟା କରି (ବୃତ୍ରାସୁର) ପାପ ଅର୍ଜନ କରିବା ପାଇଁ ଆମେ ଚାହୁଁ ନାହୁଁ ।

'ପୁଣି ଇନ୍ଦ୍ର, ଆମ୍ଭେମାନେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ନ କରି ତାଙ୍କର ଆଦେଶ ଲଂଘନ ପୂର୍ବକ ଦେବତାମାନଙ୍କୁ ଅପମାନିତ କରିଛୁ ବୋଲି ଯାହା କହିଅଛନ୍ତି ତାହା ମଧ୍ୟ ତାଙ୍କର ପ୍ରଳାପ ମାତ୍ର । କାରଣ ରୁଦ୍ରଯଜ୍ଞ କରିବାପରେ ଅନ୍ୟ କୌଣସି ଯଜ୍ଞ ଅନୁଷ୍ଠାନର ଆବଶ୍ୟକତା ନାହିଁ । ଦେବାଧିଦେବ ମହାଦେବଙ୍କର ଅର୍ଚ୍ଚନା କରିବା ପରେ ଆଉ କେଉଁ ଦେବତା ବା ଅପୂଜ୍ୟ ରହିଲେ ? ପୁଣି ସେ ଯାହା କହିଛନ୍ତି, ଚନ୍ଦ୍ରପ୍ରଭ ଏକମାତ୍ର ଶିବଙ୍କ ପ୍ରତି ଆସ୍ଥା ରଖିବା ଦ୍ୱାରା ନିଜର ମଙ୍ଗଳ କରୁନାହାନ୍ତି, ତାହା ମଧ୍ୟ ଅଯଥାର୍ଥ । କାରଣ ଯେଉଁଠାରେ ସ୍ୱୟଂ ମହାଦେବ ପ୍ରସନ୍ନ, ସେଠାରେ ଅନ୍ୟ ଦେବତାମାନଙ୍କର ଆଉ କ'ଣ ବା କର୍ତ୍ତୃତ୍ୱ ଅଛି ? ସୂର୍ଯ୍ୟ ଉଦୟ ହେଲେ ଅନ୍ୟ ଜ୍ୟୋତିଷ୍କଗୁଡ଼ିକ ଆପେ ଆପେ ନିଷ୍ପ୍ରଭ ହୋଇଯାଇଥାଆନ୍ତି ।

'ତେଣୁ ମୁନିବର, ଆପଣ ଦେବରାଜଙ୍କୁ ଯାଇ କହନ୍ତୁ ଯେ ଆମ୍ଭେମାନେ ଆମ୍ଭମାନଙ୍କର ବିଧିସମ୍ମତ କାର୍ଯ୍ୟ କରିବା ପାଇଁ ଉଦ୍ୟମ କରୁଅଛୁ । ସେ ତାଙ୍କର ଅଭିଳାଷ ଅନୁଯାୟୀ ତାଙ୍କ କର୍ତ୍ତବ୍ୟ କରିଯାଆନ୍ତୁ ।'

ମୟାସୁରଙ୍କ ଠାରୁ ଏହି ପ୍ରତି-ସନ୍ଦେଶ ନେଇ ମୁନିବର ନାରଦ ଇନ୍ଦ୍ରଙ୍କ ନିକଟକୁ ପ୍ରସ୍ଥାନ କଲେ । ନାରଦ ଅନ୍ତର୍ହିତ ହେବା ପରେ ଇନ୍ଦ୍ରଙ୍କ ସମ୍ବାଦରେ ଶଙ୍କିତ ଚନ୍ଦ୍ରପ୍ରଭଙ୍କୁ ଧୈର୍ଯ୍ୟ ପ୍ରଦାନ କରି ମୟ କହିଲେ, 'ତୁମେ ଇନ୍ଦ୍ର କିମ୍ବା ଶ୍ରୁତଶର୍ମ୍ମାଙ୍କୁ ଲେଶମାତ୍ର ଭୟ କରିବା ଉଚିତ ନୁହେ । ଆମ୍ଭମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ଶ୍ରୁତଶର୍ମ୍ମା ଯଦି ଦେବତାମାନଙ୍କୁ ସଙ୍ଗରେ ନେଇ ଆସନ୍ତି, ତାହାହେଲେ ମହାରାଜ ପ୍ରହ୍ଲାଦଙ୍କ ଅଧ୍ୟକ୍ଷତାରେ ମୁଁ ମଧ୍ୟ ଆପଣଙ୍କ ନିମିତ୍ତ ଅସଂଖ୍ୟ ଦାନବ ସେନା ସଂଗ୍ରହ କରି ଆଣିବି । ଦେବାଧିଦେବ ମହାଦେବ ଯେତେବେଳେ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ଅଛନ୍ତି, ସେତେବେଳେ ତ୍ରିଭୁବନର କେଉଁ ଶକ୍ତି ଆମ୍ଭମାନଙ୍କର ସମ୍ମୁଖୀନ ହେବାର ସାହସ କରିବ ! ତେଣୁ ତୁମେ ନିର୍ଭୟ ଚିତ୍ତରେ କାର୍ଯ୍ୟ ସିଦ୍ଧି ନିମିତ୍ତ ଉଦ୍‌ଯୋଗ କର ।'

ମୟଙ୍କର ଏ ପ୍ରକାର ଉତ୍ସାହପୂର୍ଣ୍ଣ ବାକ୍ୟରେ ସମସ୍ତେ ଆନନ୍ଦିତ ହୋଇ ତାଙ୍କର ଉପଦେଶ ଅନୁଯାୟୀ କର୍ମ ସାଧନ କରିବା ନିମନ୍ତେ ସ୍ୱୀକୃତ ହେଲେ । ଦୂତମାନଙ୍କଠାରୁ ସମ୍ବାଦ ଶ୍ରବଣ କରି ବୀରଭଟ ପ୍ରଭୃତି ମିତ୍ରରାଜାମାନେ କ୍ରମେ କ୍ରମେ ଆସି ଶାକଳ ନଗରୀରେ ଉପସ୍ଥିତ ହେବାକୁ ଲାଗିଲେ । ରାଜା ଚନ୍ଦ୍ରପ୍ରଭ ସ୍ୱାଗତ ସତ୍କାର କରି ସେମାନଙ୍କର ରହିବା ପାଇଁ ସୁବ୍ୟବସ୍ଥା କଲେ । ସୈନ୍ୟବାହିନୀ ପ୍ରସ୍ତୁତ ହେବା ପରେ ମୟ ପୁଣି ରାଜା ଚନ୍ଦ୍ରପ୍ରଭଙ୍କୁ କହିଲେ, ''ରାଜନ୍, ତୁମେ ଆଜି ରାତ୍ରିରେ ରୁଦ୍ରଙ୍କ ପାଇଁ ମହାବଳି ପ୍ରସ୍ତୁତ କର । ତା' ପରେ ଯାହା କରିବା କଥା ମୁଁ ତାର ସୂଚନା ଦେବି ?''

ମୟଙ୍କର ଉପଦେଶ ଅନୁଯାୟୀ ବଳି ନିମିତ୍ତ ସମସ୍ତ ସାମଗ୍ରୀ ପ୍ରସ୍ତୁତ ହେଲା । ସୂର୍ଯ୍ୟାସ୍ତ ପରେ ଅରଣ୍ୟ ମଧ୍ୟକୁ ଯାଇ ମୟଙ୍କର ଉପଦେଶ ଅନୁସାରେ ଚନ୍ଦ୍ରପ୍ରଭ ନିଜେ ଭକ୍ତି ପୂର୍ବକ ବଳିଦାନ କଲେ । ରାଜା ଯଜ୍ଞକ୍ରିୟା ନିଃଶଙ୍କ ଚିତ୍ତରେ କରୁଥିବା ବେଳେ ଶିବସେନାର ଅଧିପତି ନନ୍ଦୀ ଅଗ୍ନି ମଧ୍ୟରୁ ନିର୍ଗତ ହୋଇ ରାଜାଙ୍କ ସମ୍ମୁଖରେ ଆସି ଦଣ୍ଡାୟମାନ ହେଲେ । ରାଜା ତାଙ୍କର ଯଥାବିଧି ଉପାସନା କରିବା ପରେ ସେ ପ୍ରସନ୍ନ ଚିତ୍ତରେ କହିଲେ, 'ମହାରାଜ ! ସ୍ୱୟଂ ଭଗବାନ ରୁଦ୍ର ମୋ ଦ୍ୱାରା ଆପଣଙ୍କୁ ନିର୍ଦ୍ଦେଶ ଦେଇଅଛନ୍ତି ଯେ ଆପଣ ତାଙ୍କର ଅନୁଗ୍ରହରୁ ଶତ ଶତ ଇନ୍ଦ୍ରଙ୍କୁ ମଧ୍ୟ ଭୟ କରିବେ ନାହିଁ । ସୂର୍ଯ୍ୟପ୍ରଭ ନିଶ୍ଚିତ ଭାବରେ ବିଦ୍ୟାଧରମାନଙ୍କର ଚକ୍ରବର୍ତ୍ତୀ ହେବେ ।'

ରୁଦ୍ରଙ୍କର ଆଦେଶ ଶୁଣାଇ ନନ୍ଦୀ ରାଜପ୍ରଦତ୍ତ ବଳି ସ୍ୱୀକାର ପୂର୍ବକ ରୁଦ୍ରଗଣଙ୍କ ସହିତ ଅନ୍ତର୍ହିତ ହେଲେ । ରାଜା ମଧ୍ୟ ପୁତ୍ରର ଭବିଷ୍ୟତ ସମ୍ପର୍କରେ ନିଶ୍ଚିତ ହୋଇ ବଳିକ୍ରିୟା ସମାପନ ପୂର୍ବକ ସ୍ୱଭବନକୁ ପ୍ରତ୍ୟାବର୍ତ୍ତନ କଲେ ।

ପରଦିନ ପ୍ରଭାତରୁ ମହାରାଣୀ, ପୁତ୍ର ଓ ମନ୍ତ୍ରୀମାନଙ୍କ ସହିତ ଏକାନ୍ତ ଆଲୋଚନାରେ ପ୍ରବୃତ୍ତ ଥିବା ରାଜା ଚନ୍ଦ୍ରପ୍ରଭଙ୍କୁ ମୟ କହିଲେ 'ଚନ୍ଦ୍ରପ୍ରଭ, ବହୁଦିନରୁ ତୁମ ନିକଟରେ ଗୁପ୍ତକରି ରଖିଥିବା ଏକ ରହସ୍ୟ ଆଜି ପ୍ରକାଶ କରୁଅଛି । ତୁମେ ପୂର୍ବ ଜନ୍ମରେ ମୋର ପୁତ୍ର ଥିଲ । ସେତେବେଳେ ତୁମେ ଥିଲ ସୁନୀଥ ନାମକ ମହାବଳଶାଳୀ ଦାନବ । ସୂର୍ଯ୍ୟପ୍ରଭ ସୁମୁଣ୍ଡିକ ନାମ ଧାରଣ କରି ତୁମର କନିଷ୍ଠ ଭ୍ରାତା ରୂପରେ ରହିଥିଲେ । ତୁମେ ଦୁହେଁ ଯୁଦ୍ଧରେ ଦେବତାମାନଙ୍କଦ୍ୱାରା ନିହତ ହୋଇ ଏ ଜନ୍ମରେ ପିତା ପୁତ୍ର ରୂପେ ପୃଥିବୀରେ ଅବତୀର୍ଣ୍ଣ ହୋଇଅଛ । ମୁଁ ତୁମ୍ଭମାନଙ୍କର ଦାନବ ଶରୀରକୁ ଦିବ୍ୟ ଔଷଧୀ ଓ ଘୃତ ପ୍ରଲେପଦ୍ୱାରା ସୁରକ୍ଷିତ କରି ରଖିଅଛି । ତେଣୁ ତୁମ୍ଭେମାନେ ମୋ ପ୍ରଦର୍ଶିତ ବିବର ମାଧ୍ୟମରେ ପାତାଳପୁରରେ ପ୍ରବେଶ କରି ମୋଦ୍ୱାରା ପ୍ରଦତ୍ତ ସିଦ୍ଧି ସାହାଯ୍ୟରେ ନିଜ ନିଜ ଶରୀରରେ ପ୍ରବେଶ କର । ପୂର୍ବ ଶରୀରରେ ପ୍ରବେଶ କରିବା ଫଳରେ ତୁମର ତେଜ, ପରାକ୍ରମ ଓ ଶକ୍ତି ଏତେ ପରିମାଣରେ ବୃଦ୍ଧିପ୍ରାପ୍ତ ହେବ ଯେ ଦେବତା ଓ ବିଦ୍ୟାଧରମାନେ ତୁମକୁ ଯୁଦ୍ଧରେ ପରାସ୍ତ କରିପାରିବେ ନାହିଁ । ସୂର୍ଯ୍ୟପ୍ରଭ ମଧ୍ୟ ସୁମୁଣ୍ଡିକର ସେହି ସୁନ୍ଦର ଶରୀର ମଧ୍ୟରେ ରହି ଚିରକାଳ ବିଦ୍ୟାଧର ଚକ୍ରବର୍ତ୍ତୀ ରୂପେ ଶୋଭା ପାଇବ ।'

ରାଜା ଓ ଯୁବରାଜ ମୟଙ୍କ ଉପଦେଶ ସ୍ୱୀକାର କଲେ ସୁଦ୍ଧା ମନ୍ତ୍ରୀ ସିଦ୍ଧାର୍ଥ କହିଲେ, 'ଦାନବ ଶ୍ରେଷ୍ଠ, ରାଜା ଦାନବଶରୀରରେ ପ୍ରବେଶ କରିବା ଫଳରେ ରାଜ୍ୟବାସୀ ତାଙ୍କର ମୃତ୍ୟୁ ହେଲା ବୋଲି ମନେ କରିବେ । ସେମାନଙ୍କୁ କିପରି ଭାବରେ ଆମ୍ଭେମାନେ ସାନ୍ତ୍ୱନା ପ୍ରଦାନ କରିବୁ ? ପୁଣି ଅନ୍ୟ ଶରୀର ଧାରଣ କରି ରାଜା ଯଦି ଏ ଜନ୍ମର ସମସ୍ତ କଥା ବିସ୍ମୃତ ହୁଅନ୍ତି ତାହାହେଲେ ତାଙ୍କ ସହିତ ଆମର ସମସ୍ତ ସମ୍ପର୍କ ଛିନ୍ନ ହେବ । ତା'ପରେ ସେ କିଏ ଓ ଆମେ କିଏ ?'

ଏହାଶୁଣି ମୟାସୁର ସିଦ୍ଧାର୍ଥଙ୍କୁ ସାନ୍ତ୍ୱନା ପ୍ରଦାନ କରି କହିଲେ, 'ଯୋଗ ବଳରେ ନିଜର ଅଭିଳାଷ ଅନୁଯାୟୀ ରାଜା ଅନ୍ୟଶରୀରରେ ପ୍ରବେଶ କରୁଥିବାରୁ ସେ ଅକ୍ଷୁଣ୍ଣ ଶରୀରରେ ତୁମମାନଙ୍କ ନିକଟକୁ ଫେରି ଆସିବେ । ଏହା ଫଳରେ ସେ ତୁମ୍ଭମାନଙ୍କୁ ବିସ୍ମୃତ ହେବେ ନାହିଁ । ତାର କାରଣ ଯେଉଁ ବ୍ୟକ୍ତି କାଳର ବଶୀଭୂତ ହୋଇ ମୃତ୍ୟୁଲାଭ କରେ ସେ ନୂତନ ଗର୍ଭରେ ବାସକରି ଏବଂ ଜନ୍ମପରେ ମୃତ୍ୟୁ, ରୋଗ, ଜରା ଇତ୍ୟାଦି ଦ୍ୱାରା ପୀଡ଼ିତ ହୋଇ ପୂର୍ବ ଜନ୍ମର ସମସ୍ତ କିଛି ବିସ୍ମୃତ ହୋଇଯାଏ । କିନ୍ତୁ ଯେଉଁ ବ୍ୟକ୍ତି ସ୍ୱଇଚ୍ଛାରେ ଅନ୍ୟ ଶରୀର ମଧ୍ୟରେ ଯୋଗ ଶାସ୍ତ୍ର ସମ୍ମତ ଉପାୟଦ୍ୱାରା ପ୍ରବେଶ କରେ

ସେ ପ୍ରଥମେ ଅନ୍ତଃକରଣ ମଧ୍ୟରେ ପ୍ରବେଶ କରି ପରେ ଇନ୍ଦ୍ରିୟମାନଙ୍କ ଭିତରେ ମଧ୍ୟ ପ୍ରବେଶ କରିଥାଏ । ତେଣୁ ତାର ମନ ଓ ବୁଦ୍ଧିରେ କୌଣସି ପରିବର୍ତ୍ତନ ହୁଏନାହିଁ । ଯେପରି କୌଣସି ବ୍ୟକ୍ତି ଗୋଟିଏ ଗୃହରୁ ଅନ୍ୟ ଗୋଟିଏ ଗୃହରେ ପ୍ରବେଶ କଲେ ସେ ପ୍ରଥମ ଗୃହଟିକୁ ବିସ୍ମୃତ ହୁଏନାହିଁ, ସେହିପରି ଜ୍ଞାନବାନ୍ ଓ ଯୋଗେଶ୍ୱର ବ୍ୟକ୍ତି ନିଜର ଇଚ୍ଛା ଅନୁଯାୟୀ ଗୋଟିଏ ଶରୀରରୁ ଅନ୍ୟ ଗୋଟିଏ ଶରୀରରେ ପ୍ରବେଶ କଲେ ପ୍ରଥମ ଶରୀରର ଅନୁଭୂତିଗୁଡ଼ିକ ବିସ୍ମୃତ ହୁଏନାହିଁ । ତେଣୁ ତୁମ୍ଭମାନଙ୍କର ଆଶଙ୍କା ବୃଥା । ବରଂ ଏହାଦ୍ୱାରା ତୁମ୍ଭମାନଙ୍କର ରାଜା ଜରାମରଣରହିତ ଏକ ଦିବ୍ୟ ଓ ମହା ବଳବାନ୍ ଶରୀର ପ୍ରାପ୍ତ ହେବେ । ତୁମ୍ଭେମାନେ ମଧ୍ୟ ପାତାଳ ପୁରରେ ପ୍ରବେଶ କରି ଅମୃତ ପାନ ପୂର୍ବକ ଦିବ୍ୟ ଓ ବ୍ୟାଧିଶୂନ୍ୟ ଶରୀର ଧାରଣ କରିବ ।'

ମୟାସୁରଙ୍କ ଠାରୁ ଏହାଶୁଣି ସମସ୍ତେ ତାଙ୍କ କଥାରେ ବିଶ୍ୱାସ ସ୍ଥାପନ କଲେ । ପରଦିନ ତାଙ୍କ ଉପଦେଶ ଅନୁଯାୟୀ ରାଜା ଚନ୍ଦ୍ରପ୍ରଭ ସମସ୍ତ ବନ୍ଧୁରାଜା ଓ ନିଜର ପରିବାର ସହିତ ଚନ୍ଦ୍ରଭାଗା ଓ ଇରାବତୀ ନଦୀର ସଙ୍ଗମ ସ୍ଥଳରେ ଯାଇ ଉପସ୍ଥିତ ହେଲେ । ସେଠାରେ ସେନା ସହିତ ସମସ୍ତ ରାଜନ୍ୟବୃନ୍ଦଙ୍କୁ ସୂର୍ଯ୍ୟପ୍ରଭଙ୍କ ପତ୍ନୀମାନଙ୍କର ସୁରକ୍ଷା ନିମିତ୍ତ ନିଯୁକ୍ତ କରି ଚନ୍ଦ୍ରପ୍ରଭ ମୟାସୁର ନିର୍ଦ୍ଦିଷ୍ଟ ବିବର ମଧ୍ୟରେ ସୂର୍ଯ୍ୟପ୍ରଭ ତଥା ସିଦ୍ଧାର୍ଥ ପ୍ରଭୃତି ମନ୍ତ୍ରୀ ଏବଂ ନିଜର ରାଣୀମାନଙ୍କ ସହିତ ପ୍ରବେଶ କଲେ । କିଛି ଦୂର ଅଗ୍ରସର ହେବା ପରେ ସେମାନେ ଏକ ଦେବମନ୍ଦିର ନିକଟରେ ଆସି ପହଞ୍ଚିଲେ ଏବଂ ମୟଙ୍କ ନିର୍ଦ୍ଦେଶ କ୍ରମେ ତା' ମଧ୍ୟରେ ପ୍ରବେଶ କଲେ ।

ଏଣେ ସୂର୍ଯ୍ୟପ୍ରଭଙ୍କ ରାଣୀମାନଙ୍କୁ ରକ୍ଷା କରୁଥିବା ରାଜନ୍ୟବୃନ୍ଦ ହଠାତ୍ ବିଦ୍ୟାଧରମାନଙ୍କଦ୍ୱାରା ଆକ୍ରାନ୍ତ ହେଲେ । ନିଜର ବିଦ୍ୟାପ୍ରଭାବରେ ସେମାନେ ରାଜାମାନଙ୍କୁ ବନ୍ଦୀକରି ସୂର୍ଯ୍ୟପ୍ରଭଙ୍କ ସମସ୍ତ ରାଣୀଙ୍କୁ ଅପହରଣ କରିନେଲେ । ଏ ସମୟରେ ହଠାତ୍ ଶୂନ୍ୟବାଣୀ ଶୁଣାଗଲା, 'ରେ ପାପୀ ଶ୍ରୁତଶର୍ମ୍ମା, ଯଦି ତୁ ଚକ୍ରବର୍ତ୍ତୀ ସୂର୍ଯ୍ୟପ୍ରଭଙ୍କ ପତ୍ନୀମାନଙ୍କୁ ସ୍ପର୍ଶକରୁ, ତାହାହେଲେ ବର୍ତ୍ତମାନ ହିଁ ସଦଳବଳେ ତୋର ମୃତ୍ୟୁ ଘଟିବ । ତେଣୁ ଏହି ନାରୀମାନଙ୍କୁ ତୁ ମାତୃବତ୍ ସମ୍ମାନ ପ୍ରଦର୍ଶନ କରି ସେମାନଙ୍କର ସୁରକ୍ଷାର ବ୍ୟବସ୍ଥା କର । ତୋତେ ହତ୍ୟାକରି ଏମାନଙ୍କୁ ମୁକ୍ତ କରିବା ନିମିତ୍ତ ମୁଁ କେତେକ କାରଣବଶତଃ ଚେଷ୍ଟା କଲିନାହିଁ । ବର୍ତ୍ତମାନ ତୁ ଏକ ସ୍ୱତନ୍ତ୍ର ସ୍ଥାନରେ ଏମାନଙ୍କ ରହିବାର ବ୍ୟବସ୍ଥା କର ।' ଏହି ଦିବ୍ୟବାଣୀ ଶ୍ରବଣରେ ବିଦ୍ୟାଧରମାନେ ଭୟରେ ଇତସ୍ତତଃ ପଳାୟନ କଲେ ।

ବୀରଭଟ୍ଟ ପ୍ରଭୃତି ରାଜାମାନେ ଚକ୍ଷୁ ସମ୍ମୁଖରେ ନିଜ ନିଜର କନ୍ୟାମାନଙ୍କୁ ଅପହରଣ କରି ନେଇଯାଉଥିବା ଦେଖି ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ଏବଂ ଆବଶ୍ୟକ ହେଲେ ପ୍ରାଣପାତ କରିବା ନିମିତ୍ତ ପ୍ରସ୍ତୁତ ହେଲେ । କିନ୍ତୁ ପୁଣି ଦିବ୍ୟବାଣୀ ଶୁଣାଗଲା, 'ଏହି କନ୍ୟାମାନଙ୍କର କୌଣସି ଅନିଷ୍ଟ ହେବନାହିଁ । ତୁମ୍ଭେମାନେ ପୁଣି ସେମାନଙ୍କୁ ଫେରି ପାଇବ । ଏଣୁ ଅଯଥା ମୃତ୍ୟୁ ବରଣ କରନାହିଁ । ତୁମମାନଙ୍କର କଲ୍ୟାଣ ହେଉ ।' ଏହି ଶୂନ୍ୟବାଣୀ ଶ୍ରବଣରେ ସେମାନେ ଯୁଦ୍ଧରୁ ନିରସ୍ତ ହୋଇ ଚନ୍ଦ୍ରପ୍ରଭଙ୍କ ପ୍ରତୀକ୍ଷା କରିବାକୁ ଲାଗିଲେ ।

ଏଣେ ଦେବମନ୍ଦିର ମଧ୍ୟରେ ନିଜର ପରିବାର ଓ ମନ୍ତ୍ରୀମାନଙ୍କ ସହିତ ଅବସ୍ଥାନ କରୁଥିବା ଚନ୍ଦ୍ରପ୍ରଭଙ୍କୁ ମୟ କହିଲେ, 'ରାଜନ୍ ! ମୁଁ ତୁମକୁ ଅତ୍ୟନ୍ତ ଉତ୍ତମ ଯୋଗସାଧନ ମାର୍ଗର ଉପଦେଶ ପ୍ରଦାନ କରୁଅଛି; ଏହାଦ୍ୱାରା ତୁମେ ଅନାୟାସରେ ଅନ୍ୟ ଶରୀରରେ ପ୍ରବେଶ କରି ପାରିବ ।'

ଏହାପରେ ସେ ଚନ୍ଦ୍ରପ୍ରଭଙ୍କୁ ସାଂଖ୍ୟ ଓ ଯୋଗଦ୍ୱାରା ପରକାୟ ପ୍ରବେଶ ସିଦ୍ଧିର ଉପଦେଶ ପ୍ରଦାନ କରି କହିଲେ, 'ଏହା ଏକ ବିଶିଷ୍ଟ ସିଦ୍ଧି । ଏହାଦ୍ୱାରା ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ଲାଭ ହୋଇଥାଏ । ଏହି ଐଶ୍ୱର୍ଯ୍ୟ ଲାଭକରି ଦେବତାମାନେ ମୁକ୍ତି ମଧ୍ୟ ବାଞ୍ଛା କରିନଥାନ୍ତି । ଏହାର ଆୟତ୍ତ ନିମିତ୍ତ ମନୁଷ୍ୟମାନେ ବହୁ କଷ୍ଟ ସ୍ୱୀକାର ପୂର୍ବକ ଜପ ତପ ପ୍ରଭୃତି କରିବାପାଇଁ ଚେଷ୍ଟା କରିଥାଆନ୍ତି । ଏହି ଉଦାର ଚରିତ ବ୍ୟକ୍ତିମାନେ ଉକ୍ତ ସିଦ୍ଧି ନିମିତ୍ତ ତପସ୍ୟା ଆଚରଣ କରୁଥିଲାବେଳେ ପ୍ରାପ୍ତ ସ୍ୱର୍ଗସୁଖକୁ ମଧ୍ୟ ଇଚ୍ଛା କରିନଥାନ୍ତି । ଏ ସମ୍ପର୍କରେ ମୁଁ ତୁମକୁ ଗୋଟିଏ ବିଚିତ୍ର ଗଳ୍ପ କହୁଅଛି–

## କାଳ ନାମକ ବ୍ରାହ୍ମଣ କଥା

ପ୍ରାଚୀନ କାଳରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କ ନାମ କାଳ । ସେ ପୁଷ୍କର ତୀର୍ଥରେ ଯାଇ ଦିନ ରାତି ତପସ୍ୟା କରିବାକୁ ଲାଗିଲେ । ତପସ୍ୟାରେ ଦୁଇଶତ ଦିବ୍ୟ ବର୍ଷ ଅତୀତ ହେଲା । କଠୋର ତପସ୍ୟା କରିବାଦ୍ୱାରା ତାଙ୍କ ମସ୍ତକରୁ ଅବିରତ ଏକ ଜ୍ୟୋତି ନିର୍ଗତ ହେବାକୁ ଲାଗିଲା । ସହସ୍ର ସୂର୍ଯ୍ୟର ଜ୍ୟୋତି ଅପେକ୍ଷା ଅଧିକ ଏହି ପ୍ରଚଣ୍ଡ ରଶ୍ମି ଆକାଶ ମାର୍ଗକୁ ଆକ୍ରାନ୍ତ କରି ସିଦ୍ଧ, ବିଦ୍ୟାଧର ପ୍ରଭୃତି ଆକାଶଚାରୀ ପ୍ରାଣୀମାନଙ୍କର ଗତିରୋଧ କଲା । କ୍ରମେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ଭୁବନକୁ ଏହି ଜ୍ୟୋତି ପ୍ରଜ୍ୱଳିତ କରିବାକୁ ଲାଗିଲା । ଏହା ଦେଖି ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ଦେବତାମାନେ

ବ୍ରାହ୍ମଣ କାଳଙ୍କ ନିକଟକୁ ଆସି ତାଙ୍କର ଈପ୍‌ସିତ ବର ଗ୍ରହଣ କରିବା ନିମିତ୍ତ ଅନୁରୋଧ କଲେ ।

ଏଥିରେ ବ୍ରାହ୍ମଣ କହିଲେ, 'ଯଦି ଆପଣମାନେ ମୋ ପ୍ରତି ସନ୍ତୁଷ୍ଟ, ତାହାହେଲେ ମୋତେ ଏହି ବର ପ୍ରଦାନ କରନ୍ତୁ ଯେ ମୋର ମନ ଏହି ତପସ୍ୟା ବ୍ୟତୀତ ଅନ୍ୟ କୌଣସି ବସ୍ତୁପ୍ରତି ଆସକ୍ତ ହେବନାହିଁ । ଏହା ବ୍ୟତୀତ ମୋର ଅନ୍ୟ କୌଣସି ଅଭିଳାଷ ନାହିଁ ।' ଦେବତାମାନେ ତାଙ୍କୁ ଏଥିରୁ ନିବୃତ୍ତ କରିବା ନିମିତ୍ତ ବାରମ୍ବାର ଚେଷ୍ଟା କରନ୍ତେ ସେ ଉତ୍ତର ଦିଗସ୍ଥ ହିମାଳୟର ଗିରି ଶୃଙ୍ଗରେ ଯାଇ ତପସ୍ୟା କରିବାକୁ ଲାଗିଲେ ।

ସେଠାରେ ମଧ୍ୟ ଯେତେବେଳେ ତାଙ୍କ ମସ୍ତକରୁ ପୂର୍ବପରି ବ୍ରହ୍ମଜ୍ୟୋତି ନିର୍ଗତ ହୋଇ ଜୀବଜଗତକୁ ସନ୍ତପ୍ତ କଲା, ଇନ୍ଦ୍ର ତାଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି କରିବା ନିମିତ୍ତ ଅପ୍‌ସରାମାନଙ୍କୁ ପ୍ରେରଣ କଲେ । କିନ୍ତୁ ବ୍ରାହ୍ମଣ ସେମାନଙ୍କୁ ତୃଣତୁଲ୍ୟ ଉପେକ୍ଷା କରନ୍ତେ ଦେବତାମାନେ ଶେଷରେ ମୃତ୍ୟୁକୁ ପ୍ରେରଣ କଲେ । ମୃତ୍ୟୁଯାଇ ତାଙ୍କୁ କହିଲା, 'ହେ ବ୍ରାହ୍ମଣ ଶ୍ରେଷ୍ଠ ! ମନୁଷ୍ୟ ଏତେଦିନ ପୃଥିବୀରେ ଜୀବନଧାରଣ କରେ ନାହିଁ । ତେଣୁ ତୁମେ ଏ ଶରୀର ପରିତ୍ୟାଗ କର । ନୋଚେତ୍ ଈଶ୍ୱରଙ୍କ ମର୍ଯ୍ୟାଦା କ୍ଷୁଣ୍ଣ ହେବ ।' ଏହାଶୁଣି ବ୍ରାହ୍ମଣ କହିଲେ 'ଯଦି ମୋର ଆୟୁଷ ଶେଷହୋଇ ଯାଇଅଛି, ତାହାହେଲେ ତୁମେ ମୋତେ ଏଠାରୁ ନେଇ ନଯାଇ କାହିଁକି ଅପେକ୍ଷା କରୁଅଛ ? ମୁଁ ସ୍ୱଇଚ୍ଛାରେ ପ୍ରାଣ ତ୍ୟାଗକରି କଦାପି ଆତ୍ମଘାତୀ ହେବି ନାହିଁ ।' ବ୍ରାହ୍ମଣଙ୍କ ଠାରୁ ଏହା ଶୁଣି ମୃତ୍ୟୁ ତପଃ ପ୍ରଭାବରୁ ତାଙ୍କ ଜୀବନ ନେବା ସମ୍ଭବପର ନ ଦେଖି ଦୁଃଖିତ ମନରେ ପ୍ରତ୍ୟାବର୍ତ୍ତନ କଲା । ଏଥିରେ ଇନ୍ଦ୍ର ଅନୁତପ୍ତ ହୋଇ କାଳଙ୍କୁ ବଳପୂର୍ବକ ସ୍ୱର୍ଗ ରାଜ୍ୟକୁ ନେଇ ଆସିଲେ । କିନ୍ତୁ କାଳ ସ୍ୱର୍ଗର ବିଭିନ୍ନ ଭୋଗବିଳାସରୁ ବିରକ୍ତ ହୋଇ ସେଠାରେ ମଧ୍ୟ କଠୋର ତପସ୍ୟା ଆଚରଣ କରନ୍ତେ ଦେବତାମାନେ ପୁଣି ତାଙ୍କୁ ପୃଥିବୀକୁ ଫେରାଇ ଦେଲେ । ସେ ପୃଥିବୀକୁ ଫେରି ଆସି ପୁଣି ହିମାଳୟର ଗିରିଶୃଙ୍ଗରେ ତପସ୍ୟା ଆଚରଣ କରିବାକୁ ଲାଗିଲେ । ଇନ୍ଦ୍ର ଏବଂ ଅନ୍ୟାନ୍ୟ ଦେବତାମାନେ ବର ପ୍ରାର୍ଥନା କରିବା ନିମନ୍ତେ ତାଙ୍କୁ ବହୁ ଅନୁନୟ ବିନୟ କଲେ ସୁଦ୍ଧା ସେ ତପସ୍ୟା ବ୍ୟତୀତ ଅନ୍ୟ କୌଣସି ଅଭିଳାଷ ପ୍ରକାଶ କରୁନଥାନ୍ତି ।

ଏକଦା ଇନ୍ଦ୍ର ବ୍ରାହ୍ମଣ କାଳଙ୍କୁ ବର ପ୍ରାର୍ଥନା ପାଇଁ ଅନୁରୋଧ କରୁଥିଲା ବେଳେ ମହାରାଜ ଇକ୍ଷ୍ୱାକୁ ସେଠାରେ ଆସି ଉପସ୍ଥିତ ହେଲେ । ସେ ଦେବତାମାନଙ୍କଠାରୁ ସମସ୍ତ ସମାଚାର ଶ୍ରବଣ କରି ବ୍ରାହ୍ମଣଙ୍କୁ କହିଲେ 'ଆପଣ ଯଦି ଦେବତାମାନଙ୍କଠାରୁ ବର

ଗ୍ରହଣ କରିବା ନିମନ୍ତେ ଅନିଚ୍ଛୁକ, ତାହାହେଲେ ମୋଠାରୁ ନିଜର ଅଭିଳଷିତ ବର ଗ୍ରହଣ କରନ୍ତୁ ।' ଏହା ଶୁଣି ତପସ୍ୱୀ ବ୍ରାହ୍ମଣ ହାସ୍ୟ ପ୍ରକାଶ ପୂର୍ବକ କହିଲେ, 'ମୁଁ ଯେତେବେଳେ ଦେବତାମାନଙ୍କଠାରୁ ବର ଗ୍ରହଣ କରୁନାହିଁ, ସେତେବେଳେ ଆପଣ ବା ମୋତେ କି ବର ପ୍ରଦାନ କରିବେ ?' ଉତ୍ତରରେ ଇକ୍ଷ୍ୱାକୁ କହିଲେ, 'ମୁଁ ଯଦି ବର ଦେବା ନିମନ୍ତେ ଅସମର୍ଥ, ତା'ହେଲେ ଆପଣ ମୋତେ କିଛି ବର ପ୍ରଦାନ କରନ୍ତୁ ।' ବ୍ରାହ୍ମଣ ତାଙ୍କୁ ବର ପ୍ରାର୍ଥନା ପାଇଁ କହନ୍ତେ ରାଜା ଚିନ୍ତା କଲେ, 'ମୁଁ ଦାତା ଏବଂ ବ୍ରାହ୍ମଣ ଗ୍ରହୀତା ହେବା କଥା । କିନ୍ତୁ ଏହାର ବିପରୀତ କ୍ରମ ଉଚିତ ବୋଲି ମନେ ହେଉନାହିଁ ।' ଏପ୍ରକାର ଦ୍ୱନ୍ଦ୍ୱରେ ପଡ଼ି ରାଜା ବିଳମ୍ବ କରୁଥିବା ବେଳେ ସେଠାରେ ଅନ୍ୟ ଦୁଇଜଣ ବ୍ରାହ୍ମଣ ଆସି ଉପସ୍ଥିତ ହେଲେ । କୌଣସି ଏକ ସମସ୍ୟା ନେଇ ସେମାନଙ୍କ ମଧ୍ୟରେ କଟୁବାକ୍ୟ ବିନିମୟ ଚାଲିଥାଏ । ରାଜାଙ୍କୁ ସେଠାରେ ଦର୍ଶନ କରି ଜଣେ କହିଲା ''ମହାରାଜ, ଏ ବ୍ରାହ୍ମଣ ମୋତେ ଦକ୍ଷିଣା ସହିତ ଦୁଇଟି ଗାଈ ପ୍ରଦାନ କରୁଛନ୍ତି । କିନ୍ତୁ ମୁଁ ଯେତେବେଳେ ତାଙ୍କୁ ସେ ଦୁଇଟି ପୁଣି ପ୍ରଦାନ କରୁଛି ସେତେବେଳେ ସେ ତାକୁ ଗ୍ରହଣ କରୁ ନାହାନ୍ତି ।' ଏହା ଶୁଣି ଦ୍ୱିତୀୟ ବ୍ରାହ୍ମଣ ଏଥିରେ ପ୍ରତିବାଦ କରି କହିଲା, 'ମହାରାଜ ମୁଁ ପୂର୍ବରୁ କେବେ ଦାନଗ୍ରହଣ କରିନାହିଁ ଏବଂ ବର୍ତ୍ତମାନ ମଧ୍ୟ ମୋର ଏଦୁଇଟିରେ ଆବଶ୍ୟକତା ନାହିଁ, ଏଗୁଡ଼ିକୁ ନେଇ ମୁଁ କ'ଣ କରିବି ?' ଏହା ଶୁଣି ରାଜା କହିଲେ, ବାଦୀ ଯଥାର୍ଥ ନୁହେ । କାରଣ ସେ ସ୍ୱୟଂ ଦାନ ଗ୍ରହଣ କରି ସେ ଦୁଇଟିକୁ ପୁଣି ପ୍ରତିଦାନ ଦେବା ନିମନ୍ତେ କାହିଁକି ଅନ୍ୟକୁ ବାଧ୍ୟ କରୁଅଛନ୍ତି ।' ରାଜାଙ୍କ ଏହି ନିଷ୍ପତ୍ତିରେ ଇନ୍ଦ୍ର ରାଜାଙ୍କୁ କହିଲେ, 'ରାଜନ୍, ଆପଣ ଯଦି ଏହି ପ୍ରକାର ନ୍ୟାୟ ବିଚାର କରୁଛନ୍ତି, ତାହାହେଲେ ବ୍ରାହ୍ମଣଠାରୁ ନିଜେ ବର ଗ୍ରହଣ କରିବାରେ ଅଯଥା ବିଳମ୍ବ କରୁଛନ୍ତି କାହିଁକି ?'

ଏଥିରେ ରାଜା ଇନ୍ଦ୍ରଙ୍କ ପ୍ରଶ୍ନର କୌଣସି ଉତ୍ତର ପ୍ରଦାନ ନକରି ବ୍ରାହ୍ମଣଙ୍କୁ କହିଲେ, 'ଆପଣଙ୍କ ତପଃ ଫଳରୁ ଅର୍ଦ୍ଧେକ ମୋତେ ପ୍ରଦାନ କରନ୍ତୁ ।' ବ୍ରାହ୍ମଣ ସଙ୍ଗେ ସଙ୍ଗେ ରାଜାଙ୍କୁ ତାଙ୍କର ଅଭୀଷ୍ଟ ବର ପ୍ରଦାନ କଲେ । ଏହି ଦିବ୍ୟ ଫଳ ପ୍ରଭାବରେ ଇକ୍ଷ୍ୱାକୁ ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡରେ ବିଚରଣ କରିବାର ଶକ୍ତି ଲାଭ କଲେ ଏବଂ ବ୍ରାହ୍ମଣଙ୍କର ମଧ୍ୟ ଶିବ ନାମକ ଦେବଲୋକ ପ୍ରାପ୍ତି ହେଲା । ଏହିପରି ବହୁ କଳ୍ପ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଲୋକରେ ଭ୍ରମଣ କରି ବ୍ରାହ୍ମଣ କାଳ ପୁଣି ପୃଥିବୀ ପୃଷ୍ଠକୁ ପ୍ରତ୍ୟାବର୍ତ୍ତନ ପୂର୍ବକ କଠୋର ତପସ୍ୟାରେ ମଗ୍ନ ରହିଲେ ଏବଂ ଶେଷରେ ଅକ୍ଷୟ ସିଦ୍ଧି ଲାଭ କଲେ ।

ଏହିପରି ପଣ୍ଡିତ ଲୋକମାନେ ସ୍ୱର୍ଗଭୋଗ ପ୍ରତି ବିମୁଖ ହୋଇ କେବଳ ସିଦ୍ଧିଲାଭ ନିମନ୍ତେ ଚେଷ୍ଟା କରିଥାଆନ୍ତି । ତୁମେ ବର୍ତ୍ତମାନ ସେହି ସିଦ୍ଧି ଲାଭ କରିଅଛ । ତେଣୁ ତୁମେ ସ୍ୱାଧୀନ । ବର୍ତ୍ତମାନ ତୁମେ ନିଜର ପୂର୍ବ ଶରୀର ମଧ୍ୟରେ ପ୍ରବେଶ କର ।'

ସିଦ୍ଧିଲାଭ କରିଥିବାରୁ ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ମୟ ମଧ୍ୟ ସପରିବାର ରାଜା ଚନ୍ଦ୍ରପ୍ରଭଙ୍କୁ ପାତାଳର ଦ୍ୱିତୀୟ ସ୍ତରରେ ନେଇ ପହଞ୍ଚାଇଲେ । ସେଠାରେ ରାଜା ପୁତ୍ର ପତ୍ନୀ ପ୍ରଭୃତିଙ୍କ ସହିତ ମୟଙ୍କ ପ୍ରଦର୍ଶିତ ଏକ ସୁସଜ୍ଜିତ କୋଠରି ମଧ୍ୟରେ ପ୍ରବେଶ କଲେ । ସେଠାରେ ଉତ୍ତମ ଶଯ୍ୟା ଉପରେ ଶୟନ କରିଥିବା ଏକ ଦିବ୍ୟ ପୁରୁଷକୁ ଦେଖି ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ । ତାର ଶରୀର ବିଭିନ୍ନ ମହୌଷଧୀ ଓ ଘୃତ ଦ୍ୱାରା ଲିପ୍ତ ହୋଇଥିଲା ଏବଂ ତାର ବିକୃତ ଶରୀର ଅତ୍ୟନ୍ତ ଭୟଙ୍କର ଦେଖା ଯାଉଥିଲା, ବିଷଣ୍ଣ ମୁଖରେ ଦୈତ୍ୟରାଜଙ୍କ କନ୍ୟାମାନେ ତାକୁ ବେଷ୍ଟନ କରି ବସି ରହିଥିଲେ । ସେଠାରେ ମୟ ରାଜା ଚନ୍ଦ୍ରପ୍ରଭଙ୍କୁ କହିଲେ 'ଏହାହିଁ ତୁମର ପୂର୍ବ ଶରୀର; ବର୍ତ୍ତମାନ ଏହା ମଧ୍ୟରେ ପ୍ରବେଶ କର ।'

ଏହା ପରେ ଚନ୍ଦ୍ରପ୍ରଭ ମୟଙ୍କ ଦ୍ୱାରା ପ୍ରଦତ୍ତ ଯୋଗ ସିଦ୍ଧି ବଳରେ ନିଜର ମାନବ ଶରୀର ପରିତ୍ୟାଗ କରି ଉକ୍ତ ରାକ୍ଷସ ଶରୀର ମଧ୍ୟରେ ପ୍ରବେଶ କଲେ । ଚନ୍ଦ୍ରପ୍ରଭଙ୍କ ଆତ୍ମା ପ୍ରବେଶ କରନ୍ତେ ଉକ୍ତ ରାକ୍ଷସ ଶରୀର କ୍ରମେ କ୍ରମେ ଚକ୍ଷୁ ଉନ୍ମୀଳନ କରି ଏବଂ ଆଳସ୍ୟ ପରିତ୍ୟାଗ କରି ଉଠି ଠିଆ ହେଲା । 'ଆମ୍ଭମାନଙ୍କର ଅଶେଷ ସୁକୃତ ଫଳରେ ସୁନୀଥ ପୁଣି ଜୀବନ ଲାଭ କଲେ ବୋଲି ପୂର୍ବ ପତ୍ନୀମାନେ ଆନନ୍ଦରେ କୋଳାହଳ କରିବାକୁ ଲାଗିଲେ । ଏଣେ ଚନ୍ଦ୍ରପ୍ରଭଙ୍କ ମୃତ ଶରୀର ସନ୍ଦର୍ଶନରେ ସୂର୍ଯ୍ୟପ୍ରଭ ପ୍ରଭୃତି ବିଷଣ୍ଣତା ଲାଭକଲେ । ରାଜା ଚନ୍ଦ୍ରପ୍ରଭ ସୁନୀଥ ରୂପେ ନବଜନ୍ମ ଗ୍ରହଣ କରି ପିତା ମୟଙ୍କ ଚରଣ ସ୍ପର୍ଶ ପୂର୍ବକ ପ୍ରଣାମ କଲେ । ମୟ ମଧ୍ୟ ସ୍ନେହରେ ଆଲିଙ୍ଗନ କରି ପୂର୍ବ ଦୁଇ ଜନ୍ମର କଥା ତାଙ୍କର ସ୍ମରଣ ଅଛି କି ବୋଲି ଜିଜ୍ଞାସା କରନ୍ତେ ଉତ୍ତରରେ ସୁନୀଥ ପୂର୍ବବର୍ତ୍ତୀ ଉଭୟ ଜନ୍ମର ସମସ୍ତ ବୃତ୍ତାନ୍ତ ପ୍ରକାଶ କରି ଉପସ୍ଥିତ ସମସ୍ତଙ୍କୁ ବିସ୍ମିତ କଲେ । କେବଳ ସେତିକି ନୁହେ, ସେ ପୂର୍ବ ଜନ୍ମର ସମସ୍ତ ରାକ୍ଷସ ପତ୍ନୀ ଏବଂ ସୂର୍ଯ୍ୟପ୍ରଭ ଓ ମନ୍ତ୍ରୀମାନଙ୍କର ନାମ ଉଚ୍ଚାରଣ କରି ସେମାନଙ୍କ ସହିତ ବାର୍ତ୍ତାଳାପ କରିବାକୁ ଲାଗିଲେ । ମୟ ମଧ୍ୟ ଭବିଷ୍ୟତରେ ଉପକାର ହେବା ସମ୍ଭବ ହୋଇପାରେ ବୋଲି ଚନ୍ଦ୍ରପ୍ରଭଙ୍କ ଶରୀରକୁ ବିଭିନ୍ନ ଔଷଧ ଓ ଘୃତ ଦ୍ୱାରା ସୁରକ୍ଷିତ ରଖିଲେ । ଏ ସମସ୍ତ ଦର୍ଶନ କରି ସୂର୍ଯ୍ୟପ୍ରଭଙ୍କର ଯେତେବେଳେ ପୂର୍ଣ୍ଣ ବିଶ୍ୱାସ ଜାତହେଲା, ସେତେବେଳେ ସେ ନୂତନ ଶରୀରଧାରୀ ପିତାଙ୍କୁ ଅଭିବାଦନ ଜଣାଇଲେ ।

ଏସମସ୍ତ ସମାଧାନ କରି ମୟାସୁର ଅତ୍ୟନ୍ତ ପ୍ରସନ୍ନତା ପୂର୍ବକ ସେମାନଙ୍କୁ ଅନ୍ୟ ଏକ ସୁବର୍ଣ୍ଣ ନିର୍ମିତ ନଗରୀକୁ ନେଇଗଲେ । ସେଠାରେ ହୀରକ ନିର୍ମିତ ଏକ ସ୍ୱଚ୍ଛ ଓ ସୁନ୍ଦର ସରୋବର ସେମାନଙ୍କର ଦୃଷ୍ଟିଗୋଚର ହେଲା । ତାର ଅମୃତ ତୁଲ୍ୟ ଜଳରାଶି ପାନ କରିବା ନିମନ୍ତେ ସମସ୍ତେ ସେଠାରେ ଉପବେଶନ କଲେ ଏବଂ ସୁନୀଥଙ୍କ ରାକ୍ଷସୀ ପତ୍ନୀମାନଙ୍କ ଦ୍ୱାରା ମଣିମୟ ପାତ୍ରରେ ପରିବେଷିତ ଅମୃତ ରସ ପାନକରିବାକୁ ଲାଗିଲେ । ତାହା ପାନ କରିବା ମାତ୍ରେ ସମସ୍ତେ ନିଦ୍ରୋତ୍‌ଥିତ ତୁଲ୍ୟ ଅପୂର୍ବ ଶକ୍ତି ଓ ପରାକ୍ରମ ଲାଭକରି ଦିବ୍ୟ ଶ୍ରୀଯୁକ୍ତ ହେଲେ । ଏହାପରେ ମୟାସୁର ସୁନୀଥଙ୍କୁ ତାଙ୍କ ମାତାଙ୍କ ସହିତ ସାକ୍ଷାତ କରାଇବା ପାଇଁ ପାତାଳର ଚତୁର୍ଥ ସ୍ତରକୁ ନେଇ ଚାଲିଲେ । ଏଠାରେ ବିଭିନ୍ନ ବିଚିତ୍ର ଧାତୁ ନିର୍ମିତ ବହୁ ନଗର ପରିଦର୍ଶନ ପୂର୍ବକ ସେମାନେ ଏକ ସୁବର୍ଣ୍ଣ ନିର୍ମିତ ନଗର ମଧ୍ୟରେ ଆସି ଉପସ୍ଥିତ ହେଲେ । ସେଠାରେ ଏକ ରତ୍ନନିର୍ମିତ ଗୃହ ମଧ୍ୟରେ ସେମାନେ ମୟପତ୍ନୀ ଲୀଳାବତୀଙ୍କର ଦର୍ଶନ ଲାଭ କଲେ । ତାଙ୍କର ଶରୀର କାନ୍ତି ଓ ରୂପ ସୌନ୍ଦର୍ଯ୍ୟ ଦେବାଙ୍ଗନାମାନଙ୍କୁ ମଧ୍ୟ ବଳି ଯାଉଥିଲା । ସେ ସୁନୀଥଙ୍କୁ ଦର୍ଶନ କରି ସମ୍ଭ୍ରମର ସହିତ ଆସନ ପରିତ୍ୟାଗ କରନ୍ତେ ସୁନୀଥ ତାଙ୍କର ଚରଣ ସ୍ପର୍ଶକରି ଅଭିବାଦନ କଲେ ।

ମାତା ବହୁଦିନ ପରେ ପୁତ୍ରର ମୁଖ ଦର୍ଶନ କରି ତାକୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ ଏବଂ ତା' ସଙ୍ଗେ ସଙ୍ଗେ ନିଜ ସ୍ୱାମୀଙ୍କ ବୁଦ୍ଧିମତ୍ତାକୁ ମଧ୍ୟ ପ୍ରଶଂସା କରିବାକୁ ଲାଗିଲେ । ମୟ ତାଙ୍କୁ ଲକ୍ଷ୍ୟକରି କହିଲେ, 'ତୁମର ଦ୍ୱିତୀୟ ପୁତ୍ର ସୁମୁଣ୍ଡିକ ମଧ୍ୟ ସୁନୀଥଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରି ସୂର୍ଯ୍ୟପ୍ରଭ ରୂପରେ ତୁମ ନିକଟରେ ଉପସ୍ଥିତ । ତାକୁ ଭଗବାନ ଗୌରୀପତି ବିଦ୍ୟାଧରମାନଙ୍କର ଚକ୍ରବର୍ତ୍ତୀ ରୂପେ ନିର୍ବାଚନ କରି ଅଛନ୍ତି ।' ଏହାଶୁଣି ଲୀଳାବତୀ କନିଷ୍ଠ ପୁତ୍ର ପ୍ରତି ଉତ୍କଣ୍ଠାପୂର୍ଣ୍ଣ ଦୃଷ୍ଟିପାତ କରନ୍ତେ ସୂର୍ଯ୍ୟପ୍ରଭ ନିଜର ମନ୍ତ୍ରୀମାନଙ୍କ ସହିତ ମାତାଙ୍କର ଚରଣ ସ୍ପର୍ଶକଲେ । ପୁତ୍ର ଦର୍ଶନରେ ପ୍ରଫୁଲ୍ଲିତା ଲୀଳାବତୀ ପୁତ୍ରକୁ ଆଶୀର୍ବାଦ ପ୍ରଦାନ ପୂର୍ବକ କହିଲେ, କେବଳ ସୁମୁଣ୍ଡିକର ଶରୀରରେ ମୋର ଆବଶ୍ୟକତା କ'ଣ ? ତୁ ଏହି ଶରୀରରେ ହିଁ ମୋତେ ଅଧିକ ସୁନ୍ଦର ଦେଖାଯାଉ ଅଛୁ ।'

ଏହି ଆନନ୍ଦପୂର୍ଣ୍ଣ ପରିବେଶ ମଧ୍ୟରେ ମୟ ନିଜର କନ୍ୟା ମନ୍ଦୋଦରୀ ଏବଂ ଜାମାତା ବିଭୀଷଣଙ୍କୁ ସ୍ମରଣ କଲେ । ସ୍ମରଣ ମାତ୍ରେ ଉପସ୍ଥିତ ହୋଇ ବିଭୀଷଣ ଯଥୋଚିତ ସତ୍କାର ପ୍ରାପ୍ତି ପୂର୍ବକ ନିଜର ଶ୍ୱଶୁର ମୟଙ୍କୁ କହିଲେ 'ଦାନବରାଜ, ଯଦି ଆପଣ ମୋର କଥା ରକ୍ଷା କରନ୍ତି ତାହାହେଲେ ମୁଁ କହିବା ପାଇଁ ସାହସ କରିବି ।

ଅସୁରମାନଙ୍କ ମଧ୍ୟରେ ଏକ ମାତ୍ର ଆପଣ ହିଁ ପବିତ୍ର ଓ ନିର୍ମଳ ଜୀବନ ଯାପନ କରୁଅଛନ୍ତି, ଏଣୁ ବିନାକାରଣରେ ଦେବତାମାନଙ୍କ ସହିତ ଶତ୍ରୁତା କରିବା ଅନୁଚିତ । ଏମାନଙ୍କ ସହ ଶତ୍ରୁତା ଆଚରଣକରି କ୍ଷତି ବିନା ଲାଭ କିଛିନାହିଁ । ଯୁଦ୍ଧରେ ଦେବତାମାନେ ଅସୁରମାନଙ୍କୁ ହିଁ ନିହତ କରିଥାନ୍ତି; କିନ୍ତୁ ଅସୁରମାନେ ଦେବତାମାନଙ୍କୁ ନୁହେ ।'

ଏହାଶୁଣି ମୟ ବିଭୀଷଣଙ୍କୁ ଉତ୍ତରରେ କହିଲେ, 'ଆମ୍ଭେମାନେ ବଳାତ୍କାରରେ ଦେବତାମାନଙ୍କର ଶତ୍ରୁତା କରୁନାହୁଁ; କିନ୍ତୁ ଇନ୍ଦ୍ରଙ୍କର ନିରର୍ଥକ ଆଦେଶ କିପରି ପାଳନ କରିବୁ ? ଦେବତାମାନେ ଯେଉଁ ଅସୁରମାନଙ୍କୁ ହତ୍ୟାକରି ଅଛନ୍ତି ସେମାନେ ସମସ୍ତେ କୌଣସି ନା କୌଣସି କୁକର୍ମରେ ଲିପ୍ତ ଥିଲେ । କିନ୍ତୁ ବଳି, ପ୍ରହ୍ଲାଦ ପ୍ରଭୃତି ପବିତ୍ରକର୍ମା ଅସୁରମାନେ ସେମାନଙ୍କ ହସ୍ତରେ ମୃତ୍ୟୁ ବରଣ କରି ନାହାନ୍ତି ।' ମୟଙ୍କଠାରୁ ଏ ପ୍ରକାର ବାକ୍ୟ ଶ୍ରବଣ କରି ବିଭୀଷଣ ସମସ୍ତଙ୍କଠାରୁ ବିଦାୟ ଗ୍ରହଣ ପୂର୍ବକ ମନ୍ଦୋଦରୀଙ୍କ ସହ ଲଙ୍କା ନଗରୀକୁ ପ୍ରତ୍ୟାବର୍ତ୍ତନ କଲେ ।

ସେଠାରେ କିଛି ଦିନ ଅବସ୍ଥାନ କରି ଦାନବ ଶ୍ରେଷ୍ଠ ମୟ ସୁନୀଥ ଓ ସୂର୍ଯ୍ୟପ୍ରଭଙ୍କୁ ସଙ୍ଗରେ ନେଇ ରାଜା ବଳିଙ୍କୁ ଦର୍ଶନ କରିବା ନିମିତ୍ତ ପାତାଳର ତୃତୀୟ ସ୍ତରକୁ ଗମନ କଲେ । ଏହା ସ୍ୱର୍ଗ ଅପେକ୍ଷା ଅଧିକ ବିଭବଶାଳୀ ମନେ ହେଉଥିଲା । ଏଠାରେ ବିଭିନ୍ନ ମଣିମୁକ୍ତା ଖଚିତ ମାଳା ଓ ମୁକୁଟ ଧାରଣ କରିଥିବା ଏବଂ ବହୁ ଦୈତ୍ୟ ଓ ଦାନବଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଉପବେଶନ କରିଥିବା ରାଜା ବଳିଙ୍କୁ ସେମାନେ ଦର୍ଶନ କଲେ । ସମସ୍ତେ ତାଙ୍କର ପଦପ୍ରାନ୍ତରେ ପ୍ରଣାମ କରନ୍ତେ ବଳି ସମସ୍ତଙ୍କର ଯଥୋଚିତ ସ୍ୱାଗତ ସତ୍କାର କଲେ । ମୟଙ୍କଠାରୁ ଆମୂଳଚୂଳ ସମଗ୍ର ବୃତ୍ତାନ୍ତ ଶ୍ରବଣ ପୂର୍ବକ ସେ ପ୍ରଭୂତ ଆନନ୍ଦ ଲାଭ କରିବା ସଙ୍ଗେ ସଙ୍ଗେ ପ୍ରହ୍ଲାଦ ପ୍ରଭୃତି ବିଶିଷ୍ଟ ରାକ୍ଷସ ରାଜାମାନଙ୍କୁ ସେଠାରେ ଆସି ଉପସ୍ଥିତ ହେବା ନିମିତ୍ତ ନିମନ୍ତ୍ରଣ ପଠାଇଲେ । ସେମାନେ ଆସି ପହଞ୍ଚନ୍ତେ ସୁନୀଥ ପ୍ରଭୃତି ସସମ୍ମାନ ସେମାନଙ୍କୁ ପ୍ରଣିପାତ କଲେ । ସେମାନେ ମଧ୍ୟ ଏହି ବିନୀତ ବ୍ୟକ୍ତିମାନଙ୍କୁ ଆଶୀର୍ବାଦ ପ୍ରଦାନ କରନ୍ତେ, ରାଜା ବଳି ସେମାନଙ୍କୁ କହିଲେ, ''ଆମ୍ଭମାନଙ୍କର ଏହି ସୁନୀଥ ପୃଥିବୀ ପୃଷ୍ଠରେ ଚନ୍ଦ୍ରପ୍ରଭ ରୂପେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ମୟଙ୍କ ଉପଦେଶ କ୍ରମେ ସେ ତାଙ୍କର ପୂର୍ବ ଶରୀର ଲାଭ କରିଅଛନ୍ତି । ସୂର୍ଯ୍ୟପ୍ରଭ ସୁମୁଣ୍ଡିକ ବ୍ୟତୀତ ଅନ୍ୟକେହି ନୁହନ୍ତି । ଭଗବାନ ମହାଦେବ ତାଙ୍କୁ ବିଦ୍ୟାଧରମାନଙ୍କର ଭାବୀଚକ୍ରବର୍ତ୍ତୀ ରୂପେ ନିଯୁକ୍ତ କରିଅଛନ୍ତି । ତାଙ୍କ ତପସ୍ୟା ପ୍ରଭାବରେ ମୋର ବନ୍ଧନ ଶିଥିଳ ହୋଇପଡୁଅଛି; ଏ ଉଭୟଙ୍କୁ ଲାଭକରି ଆମ୍ଭମାନଙ୍କର ଯଥେଷ୍ଟ ଉନ୍ନତି ହେବ

ବୋଲି ମୋର ଆଶା ।'' ବଳିଙ୍କ ବଚନ ଶ୍ରବଣରେ ରାକ୍ଷସ ଗୁରୁ ଶୁକ୍ର କହିଲେ, 'ଧର୍ମ ଆଚରଣ କରି ସତ୍ୟ ପଥରେ ପରିଚାଳିତ ହେଲେ କଦାପି ଅବନତି ହେବନାହିଁ । ତେଣୁ ମୋର ଉପଦେଶ ଶ୍ରବଣ କରି ତୁମ୍ଭେମାନେ ସତ୍ୟର ଆଶ୍ରୟ ନିଅ ।' ତାଙ୍କରି ଉପଦେଶ କ୍ରମେ ରାକ୍ଷସମାନେ ଧର୍ମ ମାର୍ଗରେ ପରିଚାଳିତ ହେବା ନିମିତ୍ତ ପ୍ରତିଜ୍ଞାବଦ୍ଧ ହେଲେ । ସପ୍ତପାତାଳର ରାଜାମାନଙ୍କ ସହ ରାଜା ବଳି ସୁନୀଥଙ୍କ ପୁନଃପ୍ରାପ୍ତିଜନିତ ଉତ୍ସବ ପାଳନ କଲେ ।

ଏ ସମୟରେ ମହର୍ଷି ନାରଦ ହଠାତ୍ ଆସି ସେଠାରେ ଉପସ୍ଥିତ ହେଲେ । ଉପଯୁକ୍ତ ଭାବେ ସତ୍କୃତ ହୋଇ ସେ ଆସନ ଗ୍ରହଣ ପୂର୍ବକ ରାକ୍ଷସମାନଙ୍କୁ କହିଲେ, 'ମୋତେ ଦେବରାଜ ଇନ୍ଦ୍ର ତୁମ୍ଭମାନଙ୍କ ନିକଟକୁ ପଠାଇ ଅଛନ୍ତି । ସେ ମୋଦ୍ୱାରା ତୁମ୍ଭମାନଙ୍କୁ ଜଣାଇ ଅଛନ୍ତି ସେ ସୁନୀଥଙ୍କୁ ପୁଣି ଲାଭ କରିଥିବା ଯୋଗୁଁ ସେ ଯଥେଷ୍ଟ ଆନନ୍ଦିତ । ତେଣୁ ବିନା କାରଣରେ ତାଙ୍କ ସହିତ ଶତ୍ରୁତା ନ କରିବା ନିମିତ୍ତ ଏବଂ ତାଙ୍କର ଅନୁରୋଧ ଅନୁଯାୟୀ ଶ୍ରୁତଶର୍ମାଙ୍କ ସହିତ ମଧ୍ୟ ବିରୁଦ୍ଧାଚରଣ ନ କରିବା ନିମିତ୍ତ ସେ ଜଣାଇ ଅଛନ୍ତି ।'

ନାରଦଙ୍କଠାରୁ ଇନ୍ଦ୍ରପ୍ରଦତ୍ତ ସନ୍ଦେଶ ଶ୍ରବଣ କରି ପ୍ରହ୍ଲାଦ ତାଙ୍କୁ କହିଲେ, 'ସୁନୀଥଙ୍କ ପୁନର୍ଜୀବନ ଲାଭରେ ଇନ୍ଦ୍ର ପରମ ସନ୍ତୋଷ ଲାଭ କରିବା ଅନୁଚିତ ନୁହେ । କିନ୍ତୁ ଆମ୍ଭେମାନେ ବିନା କାରଣରେ କାହାରି ବିରୁଦ୍ଧାଚରଣ କରୁନାହୁଁ । ଗୁରୁଙ୍କ ସମକ୍ଷରେ ଆମ୍ଭେମାନେ ଆଜି ଏ ସମ୍ପର୍କରେ ପ୍ରତିଜ୍ଞାବଦ୍ଧ ହୋଇଅଛୁ । ଶ୍ରୁତଶର୍ମା ଯଦି ଇନ୍ଦ୍ରଙ୍କ ସହାୟତା ଲାଭକରି ଆମ୍ଭମାନଙ୍କର ବିରୁଦ୍ଧାଚରଣ କରନ୍ତି ତାହାହେଲେ ଆମର ବା ସେଥିରେ ଦୋଷ କ'ଣ ? ସୂର୍ଯ୍ୟପ୍ରଭ ବହୁ ପୂର୍ବରୁ ଦେବଦେବ ମହାଦେବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରିଥିବା ହେତୁ ସେ ତାଙ୍କୁ ବିଦ୍ୟାଧର ଚକ୍ରବର୍ତ୍ତୀ ହେବା ନିମିତ୍ତ ଆଦେଶ ପ୍ରଦାନ କରିଅଛନ୍ତି । ଈଶ୍ୱରଙ୍କ ଆଦେଶ ପାଳନ କରିବା ଆମ୍ଭମାନଙ୍କର ପ୍ରଥମ କର୍ତ୍ତବ୍ୟ । ତେଣୁ ଇନ୍ଦ୍ର ଏ ସମ୍ପର୍କରେ ଆମ୍ଭମାନଙ୍କର ବିରୋଧ କରିବା ଉଚିତ ହେବ ବୋଲି ମନେ ହେଉନାହିଁ ।' ପ୍ରହ୍ଲାଦଙ୍କଠାରୁ ଏ ପ୍ରକାର ନିରାଶବାଣୀ ଶ୍ରବଣ କରି ମହର୍ଷି ଅଦୃଶ୍ୟ ହୋଇଗଲେ ।

ସେ ଚାଲିଯିବା ପରେ ଶୁକ୍ରାଚାର୍ଯ୍ୟ ଦାନବେନ୍ଦ୍ର ପ୍ରହ୍ଲାଦଙ୍କୁ କହିଲେ, 'ଏ କାର୍ଯ୍ୟରେ ଇନ୍ଦ୍ର ଯେ ନିଶ୍ଚିତ ଭାବରେ ଆମର ଶତ୍ରୁତା କରିବେ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଯେତେବେଳ ପର୍ଯ୍ୟନ୍ତ ସ୍ୱୟଂ ମହାଦେବ ଆମ୍ଭମାନଙ୍କର ସପକ୍ଷରେ ଅଛନ୍ତି, ସେତେବେଳ ପର୍ଯ୍ୟନ୍ତ ଆମ୍ଭେମାନେ ନିର୍ଦ୍ୱନ୍ଦ୍ୱରେ ଆମର କର୍ମ ସମ୍ପାଦନ କରିବା ଉଚିତ । ସେମାନେ

ଭଗବାନ ବିଷ୍ଣୁଙ୍କ ଉପରେ ନିର୍ଭର କରି ଏ ପ୍ରକାର ସାହସ କରୁଅଛନ୍ତି । କିନ୍ତୁ ତାହା ମଧ୍ୟ ବୃଥା ବୋଲି ମନେହୁଏ ।' ଆଚାର୍ଯ୍ୟ ଶୁକ୍ରଙ୍କର ଏ ପ୍ରକାର ଉତ୍ସାହପୂର୍ଣ୍ଣ ବାକ୍ୟ ବିନ୍ୟାସ ସମସ୍ତଙ୍କର ହୃଦୟରେ ଅପୂର୍ବ ଉନ୍ମାଦନା ଆଣିଦେଲା । ସେମାନେ ପରବର୍ତ୍ତୀ କାର୍ଯ୍ୟକ୍ରମ ନିମିତ୍ତ ପ୍ରସ୍ତୁତ ହେବାପାଇଁ ପ୍ରହ୍ଲାଦଙ୍କଠାରୁ ଅନୁମତି ଗ୍ରହଣ ପୂର୍ବକ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଏହାପରେ ପ୍ରହ୍ଲାଦ, ବଳି, ସୁନୀଥ, ସୂର୍ଯ୍ୟପ୍ରଭ ପ୍ରଭୃତି ନିଜ ନିଜର ବାସସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଗଲେ ।

ସୁନୀଥ ସ୍ୱ-ଗୃହରେ ବସି ଭୋଜନ କରୁଥିବା ସମୟରେ ମାତା ଲୀଳାବତୀ ସ୍ନେହପୂର୍ଣ୍ଣ ଭାବରେ କହିଲେ, 'ବତ୍ସ ! ତୋର ଏହି ତିନୋଟି ପତ୍ନୀ ଉଚ୍ଚକୁଳ ସମ୍ଭୂତା । ତେଜସ୍ୱତୀ କୁବେରଙ୍କର, ମଙ୍ଗଳାବତୀ ଗନ୍ଧର୍ବରାଜ ତୁମ୍ବୁରୁଙ୍କର ଏବଂ ବସୁମତୀ ପ୍ରଭାସ ନାମକ ବସୁଙ୍କର କନ୍ୟା । ତେଣୁ ତୁ ଏ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ଉଚିତ ।' ଏହା କହି ସେ ଉକ୍ତ ତିନିଜଣ ପୁତ୍ରବଧୂଙ୍କୁ ଆଣି ସୁନୀଥଙ୍କ ସହ ସାକ୍ଷାତ କରାଇଲେ ।

ଉକ୍ତ ଦିନ ରଜନୀରେ ସୁନୀଥ ତେଜସ୍ୱତୀଙ୍କ ସହିତ ସ୍ୱ ଶୟନ କକ୍ଷରେ ପ୍ରବେଶ କଲେ । ପୂର୍ବରୁ ତେଜସ୍ୱତୀଙ୍କ ସମ୍ଭୋଗ ସୁଖ ଆସ୍ୱାଦନ କରିଥିଲେ ସୁଦ୍ଧା ସୁନୀଥ ଉକ୍ତ ରଜନୀରେ ପୁଣି ନୂତନତାର ସ୍ୱାଦୁ ଉପଲବ୍ଧି କଲେ । କିନ୍ତୁ ସୂର୍ଯ୍ୟପ୍ରଭ ନିଜର ମିତ୍ରମାନଙ୍କ ସହିତ ଅନ୍ୟଏକ କକ୍ଷରେ ଏକାକୀ ଶୟନ କଲେ । ବୋଧହୁଏ ନିଦ୍ରା 'ପ୍ରିୟତମା ପତ୍ନୀମାନଙ୍କୁ ଅନ୍ୟତ୍ର ପରିତ୍ୟାଗ କରି ଯେ ଏକାକୀ ଶୟନ କରିପାରେ, ସେ ପ୍ରକାର ସ୍ନେହହୀନ ପୁରୁଷ ନିକଟକୁ ଯିବା ନିଷ୍ଫଳ ମାତ୍ର' ଭାବି ସୂର୍ଯ୍ୟପ୍ରଭଙ୍କ ନିକଟକୁ ଯାଉନାହିଁ । ପ୍ରହସ୍ତ ମଧ୍ୟ ରାଜକାର୍ଯ୍ୟ ଚିନ୍ତାରେ ମଗ୍ନରହି ବିନିଦ୍ର ଭାବରେ ସମୟ ବିତାଉଥାନ୍ତି । କିନ୍ତୁ ଅନ୍ୟ ସମସ୍ତ ପରିଚାରକ ଓ ମିତ୍ର ସୁଷୁପ୍ତ ।

## କଳାବତୀ କଥା

ଏହି ସମୟରେ ଜଣେ ପରିଚାରିକା ସହିତ ପ୍ରକୋଷ୍ଠ ମଧ୍ୟରେ କୌଣସି ଏକ ଅନୁପମ ସୁନ୍ଦରୀ କନ୍ୟା ପ୍ରବେଶ କରୁଥିବା ସୂର୍ଯ୍ୟପ୍ରଭ ଓ ପ୍ରହସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ତାର ସୌନ୍ଦର୍ଯ୍ୟରେ ପିତାମହ ବ୍ରହ୍ମା ତାଙ୍କର ସମଗ୍ର ନାରୀ ସୃଷ୍ଟି ମ୍ଳାନୀଭୂତ ହୋଇପଡ଼ିବ ବୋଲି ବୋଧହୁଏ ଏ କନ୍ୟାଟିକୁ ସୃଷ୍ଟି କରିବା ପରେ ପାତାଳ ମଧ୍ୟରେ ଆଣି ଲୁକ୍କାୟିତ ଭାବେ ରଖିଛନ୍ତି । ତାର ପରିଚୟ ସମ୍ପର୍କରେ ସୂର୍ଯ୍ୟପ୍ରଭ ଚିନ୍ତା କରୁଥିବା ସମୟରେ କନ୍ୟାଟି ଶୟନ କରିଥିବା ତାଙ୍କ ମିତ୍ରମାନଙ୍କୁ ଗୋଟି ଗୋଟି କରି ପରୀକ୍ଷା

କରିବା ଆରମ୍ଭ କଲା । ଏମାନଙ୍କ ମଧ୍ୟରୁ କାହାରିଠାରେ ଚକ୍ରବର୍ତ୍ତୀ ଲକ୍ଷଣ ଦେଖିବାକୁ ନପାଇ ସେ ଶେଷରେ ଆସି ସୂର୍ଯ୍ୟପ୍ରଭଙ୍କ ନିକଟରେ ଉପସ୍ଥିତ ହେଲା ଏବଂ ତାଙ୍କଠାରେ ସମସ୍ତ ଚକ୍ରବର୍ତ୍ତୀ ଚିହ୍ନ ଦର୍ଶନ କରି ସେ ସାତିଶୟ ଆନନ୍ଦରେ ସଖୀକୁ କହିବାକୁ ଲାଗିଲା, 'ସଖି ! ଏ ବୋଧହୁଏ ସେହି । ଜଳସିକ୍ତ ହସ୍ତରେ ଏହାଙ୍କର ପଦସ୍ପର୍ଶ କରି ତୁ ଏହାଙ୍କୁ ଜାଗ୍ରତ କର ।' ଏହାଶୁଣି ସଖୀ ଉପରୋକ୍ତ ଉପାୟରେ ତାଙ୍କର ନିଦ୍ରା ଭଙ୍ଗ କରିବା ପାଇଁ ଚେଷ୍ଟା କଲା । ଚେଇଁ ଶୋଇଥିବା ସୂର୍ଯ୍ୟପ୍ରଭ ମଧ୍ୟ ଧୀରେ ଧୀରେ ଆଖି ଖୋଲିବାର ଅଭିନୟ କଲେ ଏବଂ ଏହି ଉଭୟ କନ୍ୟାଙ୍କୁ ନିକଟରେ ଦେଖି ସେମାନଙ୍କର ପରିଚୟ ଏବଂ ସେଠାକୁ ଆସିବାର ଉଦ୍ଦେଶ୍ୟ ସମ୍ପର୍କରେ ଜିଜ୍ଞାସା କଲେ । ଉତ୍ତରରେ ସଖୀ କହିଲା, 'ମହାଭାଗ ! ଦ୍ୱିତୀୟ ପାତାଳରେ ହିରଣ୍ୟାକ୍ଷଙ୍କର ପୁତ୍ର ମହାଶକ୍ତିଶାଳୀ ଅମିଳ ବାସ କରନ୍ତି । ଏ ରୂପସୀ ତାଙ୍କରି ପ୍ରାଣପ୍ରିୟା କନ୍ୟା କଳାବତୀ । ରାଜା ଅମିଳ ବଳିଙ୍କ ନିକଟରୁ ପ୍ରତ୍ୟାବର୍ତ୍ତନ କରି କହିଲେ ଯେ ଆଜି ସେ ବଡ଼ ଭାଗ୍ୟବାନ୍ । କାରଣ ପୁନର୍ଜୀବିତ ସୁନୀଥ ଏବଂ ସୁମୁଣ୍ଡିକଙ୍କ ଅବତାର ସୂର୍ଯ୍ୟପ୍ରଭଙ୍କୁ ଦର୍ଶନ କରିବାର ସୌଭାଗ୍ୟ ତାଙ୍କର ଲାଭ ହେଲା । ଏହି ଯୁବକ ସୁମୁଣ୍ଡିକ ସୂର୍ଯ୍ୟପ୍ରଭଙ୍କୁ ଭଗବାନ ମହାଦେବ ବିଦ୍ୟାଧରମାନଙ୍କର ଭବିଷ୍ୟତ ଚକ୍ରବର୍ତ୍ତୀ ରୂପେ ନିର୍ବାଚନ କରି ଅଛନ୍ତି । ଏଣୁ ତାଙ୍କର ସମ୍ମାନ ନିମିତ୍ତ ମୋର କନ୍ୟା କଳାବତୀକୁ ତାଙ୍କ ହସ୍ତରେ ଅର୍ପଣ କରିବି । ସୁନୀଥ ଓ ଆମେ ସମଗୋତ୍ରୀ ହୋଇଥିବା ଯୋଗୁଁ ତାଙ୍କୁ କନ୍ୟା ପ୍ରଦାନ କରିବା ଉଚିତ ହେବ ନାହିଁ । ସୂର୍ଯ୍ୟପ୍ରଭ ଯଦିଓ ଏହାଙ୍କର ପୁତ୍ର ତଥାପି ଅସୁର ଜନ୍ମରେ, ମାନବ ଜନ୍ମରେ ନୁହେଁ । ତେଣୁ ସୁନୀଥଙ୍କ ପୁତ୍ରକୁ ସମ୍ମାନିତ କରିବା ତାଙ୍କୁ ସମ୍ମାନିତ କରିବା ତୁଲ୍ୟହିଁ ହେବ । ପିତାଙ୍କ ଠାରୁ ଆପଣଙ୍କର ଏପ୍ରକାର ପ୍ରଶସ୍ତି ଶୁଣି ମୋର ସଖୀ କଳାବତୀ ଆପଣଙ୍କୁ ଦର୍ଶନ କରିବା ନିମିତ୍ତ ଏଠାକୁ ଆସି ଅଛନ୍ତି ।'

ସଖୀଠାରୁ କଳାବତୀଙ୍କର ପରିଚୟ ଲାଭକରି ସେମାନଙ୍କର ଅଭିପ୍ରାୟ ଜ୍ଞାତ ହେବା ନିମିତ୍ତ ସୂର୍ଯ୍ୟପ୍ରଭ ପୁଣି କୃତ୍ରିମ ନିଦ୍ରାରେ ଆବିଷ୍ଟ ହୋଇପଡ଼ିଲେ । ଏହା ଦେଖି କଳାବତୀ ବିନିଦ୍ର ପ୍ରହସ୍ତଙ୍କ ନିକଟକୁ ଯାଇ ଏବଂ ସଖୀଦ୍ୱାରା ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ପ୍ରକୋଷ୍ଠ ମଧ୍ୟରୁ ନିଷ୍କ୍ରାନ୍ତ ହେଲେ ।

ପ୍ରହସ୍ତ ସେମାନଙ୍କୁ ଚାଲିଯିବା ଦେଖି ଧୀରେ ଧୀରେ ସୂର୍ଯ୍ୟପ୍ରଭଙ୍କ ନିକଟକୁ ଯାଇ ସେ ପ୍ରକୃତରେ ଶୋଇ ଯାଇ ଅଛନ୍ତି କି ନାହିଁ ବୋଲି ପ୍ରଶ୍ନ କଲେ । ଉତ୍ତରରେ ସୂର୍ଯ୍ୟପ୍ରଭ କହିଲେ 'ବନ୍ଧୁ, ଏ ଅଭାଗାକୁ ନିଦ ଆସିବ କୁଆଡୁ ? ତୁମକୁ ଏକ ବିଶେଷ ବିଷୟ

କହିବାର ଅଛି । ତୁମଠାରୁ ଗୋପନ ରଖି ମୁଁ ନିଜେ ଏ ସମ୍ପର୍କରେ କୌଣସି ପଦକ୍ଷେପ ନେଇ ପାରିବି ନାହିଁ । ଏହି କିଛି ସମୟ ପୂର୍ବରୁ କୌଣସି ଜଣେ ରୂପସୀ କନ୍ୟା ନିଜର ସଖୀ ସହିତ ଏଠାକୁ ଆସିଥିଲେ । ତାଙ୍କପରି ସୁନ୍ଦରୀ ତ୍ରିଭୁବନରେ ବିରଳ । ମୋର ମନକୁ ଚୋରି କରି ସେ ସଙ୍ଗେ ସଙ୍ଗେ ଅଦୃଶ୍ୟ ହୋଇଗଲେ । ତୁମେ ବର୍ତ୍ତମାନ ତାଙ୍କର ଅନୁସନ୍ଧାନ କରିବା ପାଇଁ ଚେଷ୍ଟାକର ।'

ସୂର୍ଯ୍ୟପ୍ରଭଙ୍କଠାରୁ ଏପ୍ରକାର ଆଦେଶ ପାଇ ପ୍ରହସ୍ତ ପ୍ରକୋଷ୍ଠ ବାହାରେ ସେ ଉଭୟଙ୍କୁ ବାର୍ତ୍ତାଳାପ କରୁଥିବା ଦେଖିବାକୁ ପାଇଲେ । ସେ ସେମାନଙ୍କ ନିକଟକୁ ଯାଇ କହିଲେ, 'ମୁଁ ତୁମ୍ଭମାନଙ୍କର ଅନୁରୋଧ କ୍ରମେ ସୂର୍ଯ୍ୟପ୍ରଭଙ୍କୁ ଜାଗ୍ରତ କଲି । ବର୍ତ୍ତମାନ ତୁମ୍ଭେମାନେ ମୋର ଅନୁରୋଧ କ୍ରମେ ତାଙ୍କୁ ପୁଣି ଥରେ ଦର୍ଶନ ପ୍ରଦାନ କର; ତାଙ୍କର ସୁନ୍ଦର ରୂପ ଦର୍ଶନ କରି ତୁମେ ନିଜ ଚକ୍ଷୁକୁ ସଫଳ କର ଏବଂ ତୁମର ଦର୍ଶନରେ ବଶୀଭୂତ ହୋଇଥିବା ସୂର୍ଯ୍ୟପ୍ରଭ ମଧ୍ୟ ତୁମ୍ଭମାନଙ୍କୁ ପୁଣି ଦର୍ଶନ କରି ଆନନ୍ଦ ଲାଭ କରନ୍ତୁ । ନିଦ୍ରା ତ୍ୟାଗ କରି ସେ ମୋତେ ତୁମ୍ଭମାନଙ୍କ ବିଷୟରେ ହିଁ ପ୍ରଥମ ପ୍ରଶ୍ନ କରିଛନ୍ତି ଏବଂ ତୁମର ପୁନର୍ଦର୍ଶନ ଲାଭ ନକଲେ ପ୍ରାଣ ବିସର୍ଜନ କରିବେ ବୋଲି ସଂକଳ୍ପ କରି ଅଛନ୍ତି । ସେଥିପାଇଁ ବର୍ତ୍ତମାନ ମୁଁ ତୁମ୍ଭମାନଙ୍କ ନିକଟକୁ ଆସିଅଛି । ତେଣୁ ତୁମେ ଯାଇ ତାଙ୍କୁ ପୁଣିଥରେ ଦର୍ଶନ ପ୍ରଦାନ କରିବ ବୋଲି ମୋର ଅନୁରୋଧ ।'

ପ୍ରହସ୍ତଙ୍କ ଅନୁରୋଧ ଶୁଣି କଳାବତୀ ଲଜ୍ଜାବଶତଃ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରି ନପାରି ଇତସ୍ତତଃ ହେଲେ । କିନ୍ତୁ ତାଙ୍କର ଏ ପ୍ରକାର ବ୍ୟବହାର ଦେଖି ପ୍ରହସ୍ତ ହସ୍ତ ଧାରଣ ପୂର୍ବକ ତାଙ୍କୁ ନେଇ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରାଇଲେ । ସୂର୍ଯ୍ୟପ୍ରଭ ପୁଣି କଳାବତୀଙ୍କ ଦର୍ଶନ ଲାଭ କରି କହିଲେ, ତୁମର ଶରୀର ଅତ୍ୟନ୍ତ କୋମଳ ହେଲେ ସୁଦ୍ଧା ତୁମର ହୃଦୟ କଠୋର । ତୁମେ ଆଜି ଯାହା କଲ, ତାହା କ'ଣ ଉଚିତ ହୋଇଅଛି ? ମୁଁ ଶୟନ କରିଥିବା ସମୟରେ ମୋର ହୃଦୟ ଚୋରିକରି ନେଇ ଚାଲିଯିବା କ'ଣ ଅପରାଧ ନୁହେ ? ମୁଁ ତେଣୁ ତୁମକୁ ଏହାଙ୍କଦ୍ୱାରା ବନ୍ଦୀ କରି ଆଣିଛି । ପୁଣି ତୁମକୁ ଏଠାରୁ ଛାଡ଼ିଦେବା ମୋ ପକ୍ଷରେ ଆଉ ସମ୍ଭବପର ନୁହେ ।'

ଉତ୍ତରରେ କଳାବତୀଙ୍କ ଚତୁରା ସଖୀ କହିଲା, 'ଏହି କାରଣରୁ ହିଁ ଏହାଙ୍କ ପିତା ପୂର୍ବରୁ ଏହାଙ୍କୁ ଆପଣଙ୍କ ହସ୍ତରେ ଅର୍ପଣ କରିଦେଇ ଅଛନ୍ତି । ବର୍ତ୍ତମାନ ଆପଣ ଦୋଷ ଅନୁଯାୟୀ ଦଣ୍ଡ ପ୍ରଦାନ ପୂର୍ବକ କ୍ରୋଧ ଶାନ୍ତ କରନ୍ତୁ ।' ସଖୀର କଥା ଶୁଣି ସୂର୍ଯ୍ୟପ୍ରଭ ସାହସର ସହିତ କଳାବତୀଙ୍କୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିବା

ନିମିତ୍ତ ଉଦ୍ୟତ ହୁଅନ୍ତେ ଲଜ୍ଜାଶୀଳା କଳାବତୀ ତାର ପ୍ରତିରୋଧ କରି କହିଲେ, 'ଆର୍ଯ୍ୟପୁତ୍ର, ବର୍ତ୍ତମାନ ସୁଦ୍ଧା ମୁଁ କୁମାରୀ, କନ୍ୟା । ଏଣୁ ଆପଣ ମୋ ପ୍ରତି ଏତାଦୃଶ ଆଚରଣ କରନ୍ତୁ ନାହିଁ ।' ଏଥିରେ ପ୍ରହସ୍ତ କହିଲେ, 'ଦେବି, ଆପଣ କୌଣସି ପ୍ରକାର ଚିନ୍ତା କରନ୍ତୁ ନାହିଁ । କାରଣ ବିବିଧ ବିବାହ ମଧ୍ୟରୁ ଗାନ୍ଧର୍ବ ବିବାହ ସର୍ବୋତ୍ତମ ।'

ପ୍ରହସ୍ତ ଏ ପ୍ରକାର କାଳୋଚିତ ଉପଦେଶ ପ୍ରଦାନ ପୂର୍ବକ ଅନ୍ୟମାନଙ୍କ ସହିତ ଉକ୍ତ ପ୍ରକୋଷ୍ଠ ମଧ୍ୟରୁ ବହିର୍ଗତ ହୁଅନ୍ତେ ସୂର୍ଯ୍ୟପ୍ରଭ ସେହି ସ୍ଥାନରେ ହିଁ କଳାବତୀଙ୍କ ସହ ଗାନ୍ଧର୍ବ ରୀତିରେ ବିବାହ ସମ୍ପନ୍ନ କଲେ ଏବଂ ନବପ୍ରଣୟିନୀଙ୍କ ସହ ମାନବ ଦୁର୍ଲଭ ତଥା ଅବର୍ଣ୍ଣନୀୟ ଆନନ୍ଦ ଉପଭୋଗ କଲେ । ରାତ୍ରିଶେଷରେ କଳାବତୀ ନିଜର ଅନ୍ତଃପୁରକୁ ଫେରିଯିବା ପରେ ସୂର୍ଯ୍ୟପ୍ରଭ ନିତ୍ୟକର୍ମ ସମାପନ ପୂର୍ବକ ସୁନୀଥ ଓ ମୟଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ତା'ପରେ ସମସ୍ତେ ପ୍ରହ୍ଲାଦଙ୍କ ସମୀପରେ ଯାଇ ପହଞ୍ଚିଲେ । ସଭା ସ୍ଥଳରେ ଉପବେଶନ କରିଥିବା ପ୍ରହ୍ଲାଦ ଏମାନଙ୍କର ସମୁଚିତ ସତ୍କାର କଲାପରେ ମୟଙ୍କୁ ଲକ୍ଷ୍ୟ କରି କହିଲେ 'ସୁନୀଥଙ୍କୁ ପୁନଶ୍ଚ ଲାଭ କରିଥିବାରୁ ଆମ୍ଭମାନଙ୍କର ଉତ୍ସବ ପାଳନ କରିବା କଥା । ଏଣୁ ଆମେ ସମସ୍ତେ ଆଜି ଏକତ୍ର ଭୋଜନ କରିବା ଉଚିତ ହେବ ବୋଲି ମୁଁ ମନେ କରୁଅଛି ।' ମୟ ଏଥିରେ ସମ୍ମତି ପ୍ରଦାନ କରନ୍ତେ ପ୍ରହ୍ଲାଦ ସମସ୍ତ ପାତାଳର ସବୁ ରାଜା ଓ ରାଜପୁରୁଷଙ୍କୁ ନିମନ୍ତ୍ରଣ କରି ଆଣିବା ନିମିତ୍ତ ଦୂତ ପ୍ରେରଣ କଲେ ।

ନିମନ୍ତ୍ରିତ ଅତିଥିମାନେ କ୍ରମେ କ୍ରମେ ସେଠାରେ ଆସି ରୁଣ୍ଡୀଭୂତ ହେବାକୁ ଲାଗିଲେ । ସର୍ବପ୍ରଥମେ ରାଜା ବଳି ଅସଂଖ୍ୟ ରାକ୍ଷସଙ୍କ ସହ ଏବଂ ପରେ ପରେ ଦୈତ୍ୟରାଜ ଅମୀଳ ଓ ମହାଶକ୍ତିଶାଳୀ ଦୁରାରୋହ ଆସି ସେଠାରେ ଉପସ୍ଥିତ ହେଲେ । ସୁମାୟ, ତନ୍ତୁକଚ୍ଛ, ବିକଟାକ୍ଷ, ପ୍ରକମ୍ପନ, ଧୂମକେତୁ ପ୍ରଭୃତି ଦାନବମୁଖ୍ୟମାନେ ଅଗଣିତ ଅସୁର ବାହିନୀ ସହ କ୍ରମେ କ୍ରମେ ସେଠାକୁ ଆସିବାକୁ ଲାଗିଲେ । ସମଗ୍ର ସଭାଭବନ ନମସ୍କାର ଓ ପ୍ରତିନମସ୍କାର କରୁଥିବା ଅସୁରମୁଖ୍ୟମାନଙ୍କଦ୍ୱାରା ପରିପୂର୍ଣ୍ଣ ହୋଇ ଉଠିଲା । ପ୍ରହ୍ଲାଦ ମଧ୍ୟ ସମସ୍ତଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ ପୂର୍ବକ ସେମାନଙ୍କର ସ୍ୱାଗତ କରୁଥାଆନ୍ତି ।

ଭୋଜନ ସମୟ ହୁଅନ୍ତେ ସମସ୍ତେ ଗଙ୍ଗା ଜଳରେ ସ୍ନାନ କରି ଆହାର କରିବା ନିମିତ୍ତ ଏକ ବିଶାଳ ପ୍ରକୋଷ୍ଠ ମଧ୍ୟରେ ଯାଇ ପ୍ରବେଶ କଲେ । ଏହି ଭୋଜନ ଭବନ ଚାରିଶତ କୋଶ ବିଶିଷ୍ଟ । ଏହାର ଚଟାଣ ରତ୍ନ ଓ ସୁବର୍ଣ୍ଣ ଜଡ଼ିତ ହୋଇ ଅପୂର୍ବ ଶୋଭା

ଧାରଣ କରିଥିଲା । ତାର ସ୍ତମ୍ଭଗୁଡ଼ିକ ବିଭିନ୍ନ ମଣିମୁକ୍ତାଦ୍ୱାରା ଖଚିତ ହୋଇ ବିଚିତ୍ର ଆଲୋକବର୍ତ୍ତିକାର କାର୍ଯ୍ୟ କରୁଥିଲା । ବିଭିନ୍ନ ମଣିନିର୍ମିତ ଭୋଜନ ପାତ୍ରରେ ସୁମିଷ୍ଟ ଖାଦ୍ୟ ଓ ପେୟ ସୁସଜ୍ଜିତ ହୋଇ ରହିଥିଲା । ସେଠାରେ ମୟ, ସୁନୀଥ, ସୂର୍ଯ୍ୟପ୍ରଭ ପ୍ରଭୃତି ସମସ୍ତ ଦାନବ ବିବିଧ ପ୍ରକାର ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଆଦି ଷଡ୍‌ରସ ଭୋଜନ କରି ଏବଂ ବିବିଧ ପେୟ ପାନ କରି ତୃପ୍ତି ଲାଭ କଲେ ।

ପାନ ଭୋଜନ ସମାପ୍ତ କରି ପରିଶେଷରେ ସମସ୍ତେ ମଣିମୁକ୍ତା ଖଚିତ ସଭା ମଣ୍ଡପ ମଧ୍ୟରେ ବସି ଦୈତ୍ୟ ଓ ଦାନବ କନ୍ୟାମାନଙ୍କର ଅପୂର୍ବ ନୃତ୍ୟ ଦର୍ଶନ କରିବାକୁ ଲାଗିଲେ ।

## ମହଲ୍ଲିକାଙ୍କ ପ୍ରେମ

ଏହି ଅବସରରେ ପ୍ରହ୍ଲାଦଙ୍କ ଆଦେଶରେ ନୃତ୍ୟ କରୁଥିବା ତାଙ୍କର କନ୍ୟା ମହଲ୍ଲିକା ସୂର୍ଯ୍ୟପ୍ରଭଙ୍କ ଦୃଷ୍ଟି ଆକର୍ଷଣ କଲେ । ସେ ନିଜର ରୂପ ବିଭବରେ ଚତୁର୍ଦ୍ଦିଗ ଉଦ୍ଭାସିତ କରୁଥିଲେ ଏବଂ ଦର୍ଶକର ଚକ୍ଷୁରେ ଅମୃତ ବୃଷ୍ଟି କରୁଥିଲେ । ତାଙ୍କୁ ଦେଖିଲେ ମନେ ହେଉଥିଲା ଚନ୍ଦ୍ରମା ଯେପରି ପାତାଳ ପରିଦର୍ଶନ କରିବା ନିମିତ୍ତ ସେଠାରେ ଆସି ଉପସ୍ଥିତ ହୋଇ ଅଛନ୍ତି । ସେ ମସ୍ତକରେ ସୁନ୍ଦର ତିଳକ ବିନ୍ଦୁ, ପାଦରେ ସୁସ୍ୱନ ନୂପୁର ଏବଂ ପାଦୁକା ଧାରଣ କରିଥିଲେ । ଏହି ବେଶଭୂଷାରେ ଭୂଷିତା ହୋଇ ସ୍ମିତହାସ୍ୟ କରୁଥିବା ସମୟରେ ତାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ବିଧାତା ତାଙ୍କୁ ଜନ୍ମରୁ ହିଁ ନୃତ୍ୟମୟୀ କରି ସୃଷ୍ଟି କରିଅଛି । ତାଙ୍କର ଅରାଳକେଶ, ଶୁଭ୍ରଦନ୍ତପଂକ୍ତି ଏବଂ ଉନ୍ନତ ସ୍ତନଯୁଗଳଦ୍ୱାରା ସେ ନବୀନ ତଥା ନୈସର୍ଗିକ ନୃତ୍ୟ ପ୍ରଦର୍ଶନ କରୁଥିଲା ପରି ମନେ ହେଉଥିଲା ।

ମହଲ୍ଲିକା ପ୍ରଥମ ଦୃଷ୍ଟିପାତରେ ହିଁ ବହୁ ନାରୀ ହରଣ କରିଥିବା ସୂର୍ଯ୍ୟପ୍ରଭଙ୍କ ଚିତ୍ତକୁ ହରଣ କରିନେଲେ । ସୂର୍ଯ୍ୟପ୍ରଭ ମଧ୍ୟ ତାଙ୍କ ଦୃଷ୍ଟିରେ ନବଜନ୍ମ ଲାଭ କରିଥିବା ଶିବନେତ୍ରାନଳଦଗ୍ଧ ମଦନ ତୁଲ୍ୟ ପ୍ରତୀୟମାନ ହେଲେ । ତାଙ୍କ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ମହଲ୍ଲିକା ବିଚଳିତ ହୋଇପଡ଼ିଲେ । ତାଙ୍କର ଏ ପ୍ରକାର ଅବିନୟ ଭାବ ସଂଦର୍ଶନ କରି ବୋଧହୁଏ ଆଙ୍ଗିକ ଅଭିନୟ ରୋଷାନ୍ୱିତ ହୋଇ ଭ୍ରଷ୍ଟ ହୋଇଗଲା । ସଭା ମଧ୍ୟରେ ଥିବା ସମସ୍ତ ଦର୍ଶକ ମହଲ୍ଲିକାଙ୍କ ମନୋଭାବ ଜ୍ଞାତ ହୋଇ 'ରାଜକୁମାରୀ ଥକି ପଡ଼ିଲେଣି' ବୋଲି ତାଙ୍କୁ ସେଥିରୁ ନିବୃତ୍ତ କଲେ । ସେ ସୂର୍ଯ୍ୟପ୍ରଭଙ୍କ ପ୍ରତି ପ୍ରେମପୂର୍ଣ୍ଣ କଟାକ୍ଷପାତ

ପୂର୍ବକ ଏବଂ ପିତାଙ୍କର ଅନୁମତି କ୍ରମେ ଅନ୍ୟମାନଙ୍କୁ ପ୍ରଣାମ କରି ସଭା ମଣ୍ଡପରୁ ନିଷ୍କ୍ରାନ୍ତ ହୋଇଗଲେ । ସମସ୍ତ ଦାନବମୁଖ୍ୟ ମଧ୍ୟ ନୃତ୍ୟ ଶେଷ ହେବାରୁ ସ୍ୱ ସ୍ୱ ଭବନକୁ ପ୍ରତ୍ୟାବର୍ତ୍ତନ କଲେ । ସନ୍ଧ୍ୟାଗମରେ ସୂର୍ଯ୍ୟପ୍ରଭ ମଧ୍ୟ ନିଜର ବାସ ଭବନରେ ଆସି ଉପସ୍ଥିତ ହେଲେ ।

ଉକ୍ତ ରଜନୀରେ ସୂର୍ଯ୍ୟପ୍ରଭ ପୁଣି କଳାବତୀଙ୍କ ସହ ଶୟନ କକ୍ଷରେ ପ୍ରବେଶ କଲେ । ମନ୍ତ୍ରୀ ଓ ପରିଚାରକମାନେ ଅନ୍ୟତ୍ର ଶୟନ କରିଥାଆନ୍ତି । ଏ ସମୟରେ ମହଲ୍ଲିକା ମଧ୍ୟ ସୂର୍ଯ୍ୟପ୍ରଭଙ୍କୁ ଏକାନ୍ତରେ ସାକ୍ଷାତ କରିବା ନିମିତ୍ତ ଦୁଇଜଣ ସଖୀଙ୍କ ସହ ଆସି ସେଠାରେ ଉପସ୍ଥିତ ହେଲେ । ଶୟନ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରୁଥିବା ବେଳେ ମନ୍ତ୍ରୀ ପ୍ରଜ୍ଞାଢ଼୍ୟ ହଠାତ୍ ମହଲ୍ଲିକାଙ୍କୁ ଦେଖିପାରି ତାଙ୍କୁ ସେଠାରେ ହିଁ ଅଟକାଇ ରଖି କହିଲେ, 'ଟିକିଏ ଅପେକ୍ଷା କରନ୍ତୁ, ମୁଁ ଭିତରକୁ ଯାଇ ଆସୁଛି ।'

ସେମାନଙ୍କର ପ୍ରବେଶରେ ପ୍ରତିବନ୍ଧକ ସୃଷ୍ଟି କରିବା ଏବଂ ଏପରି ବାହାରେ ଶୟନ କରିବାର କାରଣ ସମ୍ପର୍କରେ ମହଲ୍ଲିକା ପ୍ରଜ୍ଞାଢ଼୍ୟଙ୍କୁ ପ୍ରଶ୍ନ କରନ୍ତେ ସେ ଉତ୍ତରରେ କହିଲେ ଯେ ସ୍ୱତନ୍ତ୍ର ଭାବରେ ଶୟନ କରିଥିବା କୌଣସି ବ୍ୟକ୍ତି ନିକଟକୁ ହଠାତ୍ ଚାଲିଯିବା ଅନୁଚିତ । ପୁଣି ସୂର୍ଯ୍ୟପ୍ରଭ ଏକ ବ୍ରତ ପାଳନ କରୁଥିବା ଯୋଗୁଁ ଏକାକୀ ଶୟନ କରି ଅଛନ୍ତି । ତେଣୁ ଆପଣ ଏଠାରେ ମୁହୂର୍ତ୍ତେ ମାତ୍ର ଅପେକ୍ଷା କରନ୍ତୁ । ମୁଁ ସଙ୍ଗେ ସଙ୍ଗେ ଫେରିଆସୁଛି ।'

ନିଜର ଅତ୍ୟନ୍ତ ଉତ୍ସୁକତା ନିମନ୍ତେ ଲଜ୍ଜିତା ମହଲ୍ଲିକାଙ୍କ ଅନୁମତି ନେଇ ସେ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରି ଦେଖିଲେ କଳାବତୀଙ୍କ ନିକଟରେ ସୂର୍ଯ୍ୟପ୍ରଭ ନିଶ୍ଚିନ୍ତମନରେ ଶୟନ କରିଅଛନ୍ତି । ସେ ଧୀରେ ଧୀରେ ତାଙ୍କୁ ଜାଗ୍ରତ କରାଇ ମହଲ୍ଲିକାଙ୍କ ଆଗମନ ବାର୍ତ୍ତା ପ୍ରଦାନ କଲେ । ଏହାଶୁଣି ସୂର୍ଯ୍ୟପ୍ରଭ ଶଯ୍ୟା ପରିତ୍ୟାଗ ପୂର୍ବକ ପ୍ରକୋଷ୍ଠ ବାହାରକୁ ଆସି ଉଭୟ ସଖୀଙ୍କ ସହ ଅପେକ୍ଷା କରିଥିବା ମହଲ୍ଲିକାଙ୍କୁ ସାକ୍ଷାତ କଲେ ।

ପ୍ରଥମ ଦର୍ଶନରେ ସେ ରାଜକୁମାରୀଙ୍କୁ କହିଲେ, 'ଆପଣ ସ୍ୱୟଂ ଏଠାରେ ଉପସ୍ଥିତ ହୋଇ ଏହି ଅତିଥିକୁ କୃତାର୍ଥ କରି ଅଛନ୍ତି । ବର୍ତ୍ତମାନ ଏଠାରେ ଆସନ ଗ୍ରହଣ କରି ଏହି ସ୍ଥାନକୁ ମଧ୍ୟ କୃତାର୍ଥ କରନ୍ତୁ ।' ମହଲ୍ଲିକା ସଖୀମାନଙ୍କ ସହ ସେଠାରେ ଆସନ ଗ୍ରହଣ କରନ୍ତେ ସୂର୍ଯ୍ୟପ୍ରଭ ମଧ୍ୟ ପ୍ରଜ୍ଞାଢ଼୍ୟଙ୍କ ସହ ସେମାନଙ୍କ ସମ୍ମୁଖରେ ଉପବେଶନ କଲେ ।

ଆସନ ଗ୍ରହଣ କରି ସୂର୍ଯ୍ୟପ୍ରଭ ପ୍ରଥମେ କଥୋପକଥନ ଆରମ୍ଭ କଲେ । 'ସୁନ୍ଦରି, ଯଦ୍ୟପି ତୁମେ ସଭା ଶେଷରେ ଅନ୍ୟମାନଙ୍କୁ ପ୍ରଣାମ କରି ମୋର ଅପମାନ କଲ, ତଥାପି ତୁମର ସୌନ୍ଦର୍ଯ୍ୟ ଅନୁରୂପ ନୃତ୍ୟ ଦର୍ଶନ ଦ୍ୱାରା ମୋର ନୟନ ଯୁଗଳ ସଫଳ ହୋଇଅଛି ।' ଏହାର ଉତ୍ତରରେ ମହଲ୍ଲିକା ତାଙ୍କୁ ଲକ୍ଷ୍ୟ କରି ଅବନତ ବଦନରେ କହିଲେ, 'ଏଥିରେ ମୋର କୌଣସି ଅପରାଧ ନାହିଁ । ମୋର ଅଭିନୟକୁ ବିକୃତ କରି ଯେ ମୋତେ ସଭା ସ୍ଥଳରେ ଲଜ୍ଜିତ କଲେ, ତାଙ୍କର ହିଁ ଦୋଷ ।' ସୂର୍ଯ୍ୟପ୍ରଭ ଏହା ଶୁଣି 'ତେବେ ମୋର ହିଁ ବିଜୟ ହେଲା' କହି ଆନନ୍ଦ ପ୍ରକାଶ କରିବା ସହ ତାଙ୍କର ପ୍ରକମ୍ପିତ ହସ୍ତ ଯୁଗଳକୁ ନିଜର କରକମଳରେ ଧାରଣ କଲେ ।

'ଆର୍ଯ୍ୟପୁତ୍ର, ଆପଣଙ୍କର ଏ ପ୍ରକାର ଆଚରଣ ଶୋଭନୀୟ ନୁହେ । କାରଣ ବର୍ତ୍ତମାନ ସୁଦ୍ଧା ମୁଁ କୁମାରୀ ଏବଂ ପିତାଙ୍କର ସମ୍ପତ୍ତି ।' ମହଲ୍ଲିକା ଏହା କହି ନିଜର ହସ୍ତଯୁଗଳକୁ ମୁକ୍ତ କରିବା ନିମନ୍ତେ ଚେଷ୍ଟା କରନ୍ତେ ପ୍ରଜ୍ଞାଢ଼୍ୟ ସୂର୍ଯ୍ୟପ୍ରଭଙ୍କ କ୍ରିୟାକଳାପକୁ ସମର୍ଥନ କରି କହିଲେ 'ଦେବି, କୁମାରୀ କନ୍ୟାମାନଙ୍କର କଣ ଗାନ୍ଧର୍ବ ବିବାହ ହୁଏ ନାହିଁ ? ପିତା ତୁମର ହୃଦୟର ଭାବ ଜାଣିବା ପରେ ଅନ୍ୟ କାହାରି ହସ୍ତରେ ତୁମକୁ ସମର୍ପଣ କରିବେ ନାହିଁ । ସେ ନିଶ୍ଚିତ ଭାବରେ ସୂର୍ଯ୍ୟପ୍ରଭଙ୍କୁ ଜାମାତା ଭାବେ ଗ୍ରହଣ କରିବେ । ତେଣୁ ତୁମେ ଆଦୌ ବିଚଳିତ ହେବା ଉଚିତ ନୁହେ । ତୁମର ଏହି ମିଳନ କଦାପି ବ୍ୟର୍ଥ ହେବ ନାହିଁ ।'

ପ୍ରଜ୍ଞାଢ଼୍ୟ ମହଲ୍ଲିକାଙ୍କୁ ଏପରି ଆଶ୍ୱାସନା ପ୍ରଦାନ କରୁଥିଲାବେଳେ, ତେଣେ କଳାବତୀ ଜାଗ୍ରତ ହୋଇ ଦେଖିଲେ ନିକଟରେ ସୂର୍ଯ୍ୟପ୍ରଭ ନାହାନ୍ତି । ସେ କିଛି ସମୟ ସେଠାରେ ଅପେକ୍ଷା କଲେ । କିନ୍ତୁ ଅଧିକ ବିଳମ୍ବ ସହ୍ୟ କରି ନପାରି ପ୍ରକୋଷ୍ଠ ବାହାରକୁ ଆସି ଦେଖିଲେ ଯେ ସୂର୍ଯ୍ୟପ୍ରଭ ମହଲ୍ଲିକାଙ୍କ ସହ ପ୍ରେମାଳାପରେ ତନ୍ମୟ । ଏହା ଦେଖି ତାଙ୍କ ମନରେ ଯୁଗପତ୍ କ୍ରୋଧ, ଲଜ୍ଜା ଓ ଭୟ ଉଦୟ ହେଲା । ମହଲ୍ଲିକା ମଧ୍ୟ ହଠାତ୍ ତାଙ୍କୁ ସେଠାରେ ଦେଖି ବିବ୍ରତା ଓ ଲଜ୍ଜିତା ହୋଇପଡ଼ିଲେ । ସୂର୍ଯ୍ୟପ୍ରଭ ଚିତ୍ରାର୍ପିତ ତୁଲ୍ୟ କେବଳ ବସି ରହିଥାଆନ୍ତି ।

ମୋତେ ତ ସମସ୍ତେ ଦେଖି ନେଲେଣି । ତେଣୁ ବର୍ତ୍ତମାନ ଈର୍ଷ୍ୟା ବା ଲଜ୍ଜା ପ୍ରକାଶ କରିବା ସମ୍ଭବ ନୁହେଁ ଭାବି କଳାବତୀ ଆସି ମହଲ୍ଲିକାଙ୍କ ନିକଟରେ ଆସନ ଗ୍ରହଣ କଲେ ଏବଂ ତାଙ୍କର କୁଶଳ ପ୍ରଶ୍ନକରି ଗଭୀର ରଜନୀରେ ଏପରି ଆସିବାର କାରଣ ଜିଜ୍ଞାସା କଲେ । ଏଥିରେ କିଞ୍ଚିତ୍ ଈର୍ଷ୍ୟା ପ୍ରକାଶ କରି ମହଲ୍ଲିକା କହିଲେ,

'ଏ ପାତାଳ ଲୋ଼କ ତ ମୋର ନିଜର ଏବଂ ଏଠାରେ ହିଁ ତ ମୋର ବାସ ଭବନ । ତୁ କିନ୍ତୁ ଦ୍ୱିତୀୟ ପାତାଳରୁ ଏଠାକୁ ଆସିଅଛୁ, ତେଣୁ ତୁ ମୋର ଅତିଥି ।' ଏହାଶୁଣି କଳାବତୀ ହାସ୍ୟ ପ୍ରକାଶ ପୂର୍ବକ କହିଲେ, 'ହଁ ମୁଁ ତ ତାହାହିଁ ଦେଖୁଛି; ତୁ କୌଣସି ବିଶେଷ ଅତିଥିଙ୍କର ସତ୍କାର କରିବା ନିମିତ୍ତ ଏଠାରେ ଆସି ଉପସ୍ଥିତ ହୋଇଅଛୁ ।' କଳାବତୀଙ୍କ ବାକ୍ୟରେ ମହଲ୍ଲିକା ଟିକିଏ ବିଚଳିତ ହୋଇ କହିଲେ, 'ମୁଁ ଯଦି ସ୍ନେହରେ କିଛି କହି ଦେଇଥାଏ, ତାହାହେଲେ ମୋ ପ୍ରତି ଏପରି କଠୋର ବାକ୍ୟ ପ୍ରୟୋଗ କରିବା ତୋର ଉଚିତ ନୁହେ । ମୁଁ କ'ଣ ତୋ ପରି ନିର୍ଲ୍ଲଜ୍ଜୀ ହୋଇଛି ଯେ ପିତାମାତାଙ୍କ ଅଜ୍ଞାତସାରରେ କୌଣସି ପରପୁରୁଷ ନିକଟକୁ ଏକାକିନୀ ଆସି ତା ସହିତ ଏକ ଶଯ୍ୟାରେ ଶୟନ କରିବି ? ମୁଁ ତ ପିତାଙ୍କ ଅତିଥିଙ୍କୁ ସତ୍କାର କରିବାପାଇଁ ଦୁଇଜଣ ସଖୀଙ୍କ ସହ ଆସି ଏଠାରେ ପହଞ୍ଚିଛି । ଯେତେବେଳେ ଆମ୍ଭମାନଙ୍କର ଗତିପଥ ରୋଧ କରି ମନ୍ତ୍ରୀ ପ୍ରଜ୍ଞାଢ଼୍ୟ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ, ସେତେବେଳେ ହିଁ ମୁଁ ଏହା ଅନୁମାନ କରିଥିଲି । ବର୍ତ୍ତମାନ ତୁ ନିଜେ ଆସି ତା'ର ସତ୍ୟତା ପ୍ରତିପାଦନ କରିଦେଇଅଛୁ ।'

ମହଲ୍ଲିକାଦ୍ୱାରା ଏପରି ଭାବରେ ଅପମାନିତା ହୋଇ କଳାବତୀ ସୂର୍ଯ୍ୟପ୍ରଭଙ୍କ ପ୍ରତି ତିର୍ଯ୍ୟକ୍ ଦୃଷ୍ଟିପାତ କରି ସେଠାରୁ ପଳାୟନ କଲେ । ପରେ ପରେ ମହଲ୍ଲିକା ମଧ୍ୟ, 'ହେ ଦକ୍ଷିଣ ନାୟକ ! ବର୍ତ୍ତମାନ ମୁଁ ମଧ୍ୟ ଯାଉଛି' କହି ସେଠାରୁ ପ୍ରସ୍ଥାନ କଲେ ।

ସେମାନଙ୍କର ଏ ପ୍ରକାର ପଳାୟନରେ ସୂର୍ଯ୍ୟପ୍ରଭ ବିଷଣ୍ଣ ହୋଇପଡ଼ିଲେ; କାରଣ ଉଭୟଙ୍କ ପ୍ରତି ଆକୃଷ୍ଟ ତାଙ୍କର ମନ ଓ ହୃଦୟ ମଧ୍ୟ ସେମାନଙ୍କ ସହ ଚାଲିଯାଇଥିଲା ।

କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିବା ପରେ କଳାବତୀଙ୍କ ଖବର ନେବା ପାଇଁ ସୂର୍ଯ୍ୟପ୍ରଭ ମନ୍ତ୍ରୀ ପ୍ରଭାସଙ୍କୁ ତାଙ୍କ ନିକଟକୁ ପ୍ରେରଣ କଲେ । ସେ ଯିବା ପରେ ମନ୍ତ୍ରୀ ପ୍ରହସ୍ତଙ୍କୁ ମହଲ୍ଲିକାଙ୍କ ବୃତ୍ତାନ୍ତ ଜ୍ଞାତ ହେବା ନିମିତ୍ତ ପ୍ରେରଣ କରି ନିଜେ ପ୍ରଜ୍ଞାଢ଼୍ୟଙ୍କ ସହ ସେଠାରେ ପ୍ରତୀକ୍ଷା କରିବାକୁ ଲାଗିଲେ ।

କେତେକ ସମୟ ପରେ ପ୍ରଭାସ କଳାବତୀଙ୍କ ସମାଚାର ନେଇ ପହଞ୍ଚିଲେ । ସୂର୍ଯ୍ୟପ୍ରଭଙ୍କ କୌତୂହଳ ଦମନ କରିବା ନିମନ୍ତେ ସେ କହିଲେ, 'ମୁଁ ମୋର ବିଦ୍ୟା ପ୍ରଭାବରେ ଅଦୃଶ୍ୟ ରୂପେ ଯାଇ କଳାବତୀଙ୍କ ବାସସ୍ଥାନ ଦ୍ୱିତୀୟ ପାତାଳରେ ପ୍ରବେଶ କଲି । ତାଙ୍କ ଗୃହର ବହିଃପ୍ରଦେଶରେ ଅପେକ୍ଷା କରିଥିବା ବେଳେ ଦୁଇଜଣ ସଖୀଙ୍କ ବାର୍ତ୍ତାଳାପ ମୋର ଶ୍ରୁତିଗୋଚର ହେଲା । ଜଣେ କହିଲା, 'ଆଜି କଳାବତୀ କାହିଁକି

ଉଦ୍‌ବିଗ୍ନ ଥିବାପରି ଜଣା ଯାଉଛନ୍ତି ?' ତାର କାରଣ ପ୍ରକାଶ କରିବାକୁ ଯାଇ ଅନ୍ୟ ଜଣକ ଉତ୍ତର ଦେଲା, 'ଆଜି ସୁମୁଣ୍ଡିକଙ୍କ ଅବତାର ଚତୁର୍ଥ ପାତାଳରେ ଆସି ଉପସ୍ଥିତ ହୋଇଛନ୍ତି । ସେ ବର୍ତ୍ତମାନ ସୂର୍ଯ୍ୟପ୍ରଭ ନାମରେ ପରିଚିତ ଏବଂ ତାଙ୍କ ସୌନ୍ଦର୍ଯ୍ୟ କାମଦେବଙ୍କୁ ମଧ୍ୟ ପରାସ୍ତ କରୁଅଛି । କଳାବତୀ ଗୁପ୍ତରେ ଯାଇ ତାଙ୍କ ନିକଟରେ ଆତ୍ମ ସମର୍ପଣ କରିଛନ୍ତି । ଗତ ରାତ୍ରିରେ ସେ ସୂର୍ଯ୍ୟପ୍ରଭଙ୍କ ସହିତ ଥିଲାବେଳେ ପ୍ରହ୍ଲାଦଙ୍କ କନ୍ୟା ମହଲ୍ଲିକା ଯାଇ ସେଠାରେ ଉପସ୍ଥିତ ହେଲେ । ତାଙ୍କ ସହିତ ସପତ୍ନୀ-କ୍ରୋଧରେ କନ୍ଦଳ କରି ଆସିଥିବା ଯୋଗୁଁ କଳାବତୀ ବର୍ତ୍ତମାନ ଆତ୍ମବିସର୍ଜ୍ଜନ ପାଇଁ ପ୍ରସ୍ତୁତ । ତାଙ୍କ ଭଗିନୀ ସୁଖାବତୀ ତାଙ୍କୁ ସେଥିରୁ ନିବର୍ତ୍ତାଇବା ପାଇଁ ଚେଷ୍ଟା କରୁଅଛନ୍ତି ।' ସେବିକାମାନଙ୍କର ଏହି ବାର୍ତ୍ତାଳାପ ଶ୍ରବଣ କରି ମୁଁ ଅନ୍ତଃପୁର ମଧ୍ୟରେ ପ୍ରବେଶ କରି ତାଙ୍କର ଅନୁରୂପ ସୌନ୍ଦର୍ଯ୍ୟଶାଳିନୀ ଭଗିନୀଙ୍କ ସହ ତାଙ୍କୁ ଦର୍ଶନ କଲି ।

ପ୍ରଭାସ ଯେତେବେଳେ ଏକାନ୍ତରେ ସୂର୍ଯ୍ୟପ୍ରଭଙ୍କୁ କଳାବତୀଙ୍କ ସମାଚାର ବର୍ଣ୍ଣନା କରୁଥିଲେ, ସେତେବେଳେ ପ୍ରହସ୍ତ ମହଲ୍ଲିକାଙ୍କ ନିକଟରୁ ଆସି ସେଠାରେ ଉପସ୍ଥିତ ହେଲେ । ସୂର୍ଯ୍ୟପ୍ରଭଙ୍କ ଆତୁର ଜିଜ୍ଞାସାର ଉତ୍ତର ପ୍ରଦାନ ପୂର୍ବକ ସେ ନିବେଦନ କଲେ, 'ମୁଁ ଯାଇ ମହଲ୍ଲିକାଙ୍କ ବାସ ଭବନରେ ପହଞ୍ଚିଲା ବେଳକୁ ସେ ମଧ୍ୟ ଦୁଇଜଣ ସଖୀଙ୍କ ସହ ଆସି ସେଠାରେ ଉପସ୍ଥିତ ହୋଇଥାଆନ୍ତି । ମୋର ବିଦ୍ୟା ପ୍ରଭାବରେ ଅଦୃଶ୍ୟ ଭାବରେ ମୁଁ ତାଙ୍କ ଅନ୍ତଃପୁର ମଧ୍ୟରେ ପ୍ରବେଶ କଲି । ସେଠାରେ ତାଙ୍କ ତୁଲ୍ୟ ତାଙ୍କର ବାରଜଣ ସଖୀ ରହିଥାଆନ୍ତି । ସେମାନେ ସମସ୍ତେ ତାଙ୍କୁ ପରିବେଷ୍ଟନ କରି ରତ୍ନପଲଙ୍କ ଉପରେ ବସିଥାଆନ୍ତି । ସେମାନଙ୍କ ମଧ୍ୟରୁ ଜଣେ ତାଙ୍କୁ କହୁଥାଏ, 'ସଖି ! ତୁମେ ଏପରି ଦୁଃଖରେ ଭାଙ୍ଗି ପଡୁଛ କାହିଁକି ? ବିବାହ ନିମିତ୍ତ ସମସ୍ତ ଯୋଗାଡ଼ ହୋଇ ସାରିବା ପରେ ତୁମର ଏପ୍ରକାର ମନୋବେଦନାର କାରଣ କ'ଣ ହୋଇପାରେ ?' ଏହା ଶୁଣି ପ୍ରହ୍ଲାଦଙ୍କ ପ୍ରାଣପ୍ରିୟା କନ୍ୟା କିଛି ସମୟ ଚିନ୍ତାକରି କହିଲେ, 'ମୋର ବିବାହ କେଉଁଠାରେ ହେଉଛି, କାହା ସହିତ ହେଉଛି, ତୁ ବା ଜାଣିଲୁ କିପରି ?' ଏହାର ଉତ୍ତରରେ ସମସ୍ତ ସଖୀ ଏକସ୍ୱରରେ କହିଲେ, 'ପ୍ରଭାତରେ ତୁମର ବିବାହ ସମ୍ପନ୍ନ ହେବ ଏବଂ ତାହା ପୁଣି ସୂର୍ଯ୍ୟପ୍ରଭଙ୍କ ସହିତ । ତୁମେ ଯିବା ପରେ ପରେ ତୁମର ମାତା ଏହା କହି ଆମ୍ଭମାନଙ୍କୁ ମଙ୍ଗଳକାର୍ଯ୍ୟରେ ନିଯୁକ୍ତ କରିଅଛନ୍ତି । ଏଣୁ ସୂର୍ଯ୍ୟପ୍ରଭଙ୍କ ତୁଲ୍ୟ ପତି ଲାଭ କରି ତୁମେ ଧନ୍ୟ । ଯାହାର ରୂପ ବିଭବ ଦେଖି ସୁନ୍ଦରୀ ନାରୀମାନେ କେତେ ବିନିଦ୍ର ରଜନୀ ଯାପନ କରୁଛନ୍ତି, ତାଙ୍କୁ ପତିରୂପେ ଲାଭ କଲେ କିଏ ବା ଧନ୍ୟ ନହେବ ! କିନ୍ତୁ ଆମର ଦୁଃଖ ଯେ ତୁମେ ବର୍ତ୍ତମାନ ଆମ୍ଭମାନଙ୍କଠାରୁ ଦୂରକୁ ଚାଲିଯିବ, ଏପରି ସୁନ୍ଦର ପତି ଲାଭ କରି ତୁମେ ଆମ୍ଭମାନଙ୍କୁ ପାସୋରି ଯିବ ।'

ସଖୀମାନଙ୍କର କଥାରେ ମହଲ୍ଲିକା କୌତୁକରେ ପଚାରିଲେ, 'କ'ଣ ତୁମେ ତାଙ୍କୁ ଦେଖିଛ ଏବଂ ତାଙ୍କପ୍ରତି ଆକୃଷ୍ଟ ହୋଇ ପଡ଼ିଅଛ ? ସେମାନେ ଉତ୍ତର ଦେଲେ, 'ହଁ, ଆମ୍ଭେମାନେ ତାଙ୍କୁ ଅଟ୍ଟାଳିକା ଉପରୁ ଦେଖିଛୁ ଏବଂ ଏପରି କୌଣସି ସ୍ତ୍ରୀ ନାହିଁ ଯେ କି ତାଙ୍କର ରୂପ ବୈଭବ ଦର୍ଶନକରି ଆକୃଷ୍ଟ ନହେବ ।' ମହଲ୍ଲିକା ସେମାନଙ୍କର ମନୋଭାବ ଜ୍ଞାତ ହୋଇ ସେମାନଙ୍କୁ ଆଶ୍ୱାସନା ପ୍ରଦାନ ପୂର୍ବକ କହିଲେ, 'ଯଦି ଏପରି ହୋଇଥାଏ, ତାହାହେଲେ ମୁଁ ପିତାଙ୍କୁ କହିବି ଯେ ସେ ତୁମ୍ଭମାନଙ୍କୁ ମଧ୍ୟ ତାଙ୍କ ହସ୍ତରେ ସମର୍ପଣ କରିବେ । ଏହାଦ୍ୱାରା ତୁମ୍ଭମାନଙ୍କଠାରୁ ମୋର ବିଚ୍ଛେଦ ହେବ ନାହିଁ ଏବଂ ଆମ୍ଭେମାନେ ଏକତ୍ର ରହିପାରିବା ।' ମହଲ୍ଲିକାଙ୍କ ବାକ୍ୟରେ ସଖୀବୃନ୍ଦ ବିଚଳିତ ହୋଇ ପଡ଼ିଲେ । ଏହା ଅନୁଚିତ ହେବ ଓ ଏହାଦ୍ୱାରା ସେମାନେ ଲଜ୍ଜିତ ହେବେ ବୋଲି ଅନୁନୟ ବିନୟ କରି କହନ୍ତେ ଅସୁର ରାଜପୁତ୍ରୀ ପୁଣି ତାଙ୍କୁ ସାନ୍ତ୍ୱନା ପ୍ରଦାନ ପୂର୍ବକ କହିଲେ, 'ଏଥିରେ ଅନୁଚିତ କଥା କିଛି ନାହିଁ । ସେ କ'ଣ ମୋତେ ଏକା ବିବାହ କରୁଛନ୍ତି ? ତାଙ୍କ ହସ୍ତରେ ସମସ୍ତ ଦୈତ୍ୟ ଓ ଦାନବ ନିଜ ନିଜ କନ୍ୟାମାନଙ୍କୁ ସମର୍ପଣ କରିବେ । ପୁଣି ତାଙ୍କର ବହୁ ବିବାହିତ ରାଜକୁମାରୀ ମର୍ତ୍ତ୍ୟ ଲୋକରେ ବାସ କରୁଅଛନ୍ତି । ସେ ଏମାନଙ୍କ ବ୍ୟତୀତ ଆହୁରି ବହୁ ବିଦ୍ୟାଧର କନ୍ୟା ଭବିଷ୍ୟତରେ ବିବାହ କରିବେ । ତେଣୁ ତୁମ୍ଭେମାନେ ମଧ୍ୟ ଯଦି ତାଙ୍କର ପାଣିଗ୍ରହଣ କର, ତାହାହେଲେ ମୋର କୌଣସି କ୍ଷତି ହେବ ନାହିଁ । ପରନ୍ତୁ ଆମ୍ଭେମାନେ ଏକତ୍ର ବାସ କରିବାଦ୍ୱାରା ମୁଁ ଆନନ୍ଦ ହିଁ ଲାଭ କରିବି । ତୁମ୍ଭେମାନେ ଏଥିରେ ଲଜ୍ଜିତ ହେବାର ମଧ୍ୟ କିଛି କାରଣ ନାହିଁ, ଯାହା କରିବା କଥା ମୁଁ କରିବି ।'

ଆପଣଙ୍କ ପ୍ରତି ଆସକ୍ତ ଏହି କୁମାରୀମାନେ ଯେତେବେଳେ ଏ ପ୍ରକାର ବାର୍ତ୍ତାଳାପ କରୁଥିଲେ, ମୁଁ ସେତେବେଳେ ଅଦୃଶ୍ୟ ଭାବରେ ଚାଲି ଆସିଲି ।'

ପ୍ରହସ୍ତ ମୁଖରୁ ଏସବୁ ସମାଚାର ଶ୍ରବଣ କରି ସୂର୍ଯ୍ୟପ୍ରଭ ବିନିଦ୍ର ଭାବରେ ଉକ୍ତ ରାତ୍ରିଟି ବିତାଇ ଦେଲେ । ପ୍ରଭାତରୁ ଶଯ୍ୟାତ୍ୟାଗ କରି ସେ ସୁନୀଥ, ମୟ ଏବଂ ଅନ୍ୟାନ୍ୟ ମନ୍ତ୍ରୀବୃନ୍ଦଙ୍କ ସହ ପ୍ରହ୍ଲାଦଙ୍କ ରାଜସଭାରେ ଯାଇ ଉପସ୍ଥିତ ହେଲେ । ଏମାନଙ୍କୁ ଦେଖି ପ୍ରହ୍ଲାଦ ଆନନ୍ଦର ସହ ସୁନୀଥଙ୍କୁ କହିଲେ, 'ମୁଁ ନିଜର କନ୍ୟା ମହଲ୍ଲିକାକୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ଅର୍ପଣ କରୁଅଛି । ଏହାଦ୍ୱାରା ତାଙ୍କର ଯଥାର୍ଥ ଅତିଥି ସତ୍କାର ଏବଂ ତୁମର ପ୍ରୀତି ସମ୍ପାଦନ ଏକ ସଙ୍ଗରେ କରାଯାଇ ପାରିବ ।' ଏଥିପାଇଁ ସମସ୍ତେ ଏକସ୍ୱରରେ ସ୍ୱୀକୃତି ପ୍ରଦାନ କରିବାରୁ ବିଭିନ୍ନ ମଣିମୁକ୍ତା-ଖଚିତ ବିବାହ ବେଦୀ ଉପରେ ଦୈତ୍ୟରାଜ ପ୍ରହ୍ଲାଦ ନିଜ କନ୍ୟାକୁ ଭାବୀ ବିଦ୍ୟାଧର ଚକ୍ରବର୍ତ୍ତୀ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ସମର୍ପଣ କଲେ ।

ଦେବତାମାନଙ୍କୁ ଜୟ କରି ଆଣିଥିବା ସୁମେରୁ ଶୃଙ୍ଗ ତୁଲ୍ୟ ମଣିମୁକ୍ତାରାଶି ମଧ୍ୟ ସେ ବରକନ୍ୟାଙ୍କୁ ପ୍ରଦାନ କଲେ ।

ଏ ସମୟରେ ମହଲ୍ଲିକା ସ୍ୱେଚ୍ଛାକୃତ ଭାବେ ପିତାଙ୍କୁ କହିଲେ, 'ପିତା, ମୋର ଏହି ବାରଜଣ ସଖୀଙ୍କୁ ମଧ୍ୟ ଆର୍ଯ୍ୟପୁତ୍ରଙ୍କ ହସ୍ତରେ ସମର୍ପଣ କରନ୍ତୁ ।' କିନ୍ତୁ ସେମାନେ ତାଙ୍କ ଭାଇଙ୍କଦ୍ୱାରା ସ୍ୱର୍ଗପୁରରୁ ଅପହୃତା ହୋଇ ଆସିଥିବାରୁ ସେମାନଙ୍କ ଉପରେ ତାଙ୍କର କୌଣସି କର୍ତ୍ତୃତ୍ୱ ନାହିଁ । ଏଣୁ ଭାଇଙ୍କ ବିନାନୁମତିରେ ସେମାନଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କରିବା ତାଙ୍କ ପକ୍ଷରେ ସମ୍ଭବପର ନୁହେ ବୋଲି ପ୍ରହ୍ଲାଦ ପ୍ରକାଶ କଲେ ।

ବିବାହ ଉତ୍ସବ ସମ୍ପନ୍ନ ହେବା ପରେ ଦିବସ ଶେଷ ହେଲା । ରଜନୀ ପ୍ରବେଶ ହୁଅନ୍ତେ ସୂର୍ଯ୍ୟପ୍ରଭ ମହଲ୍ଲିକାଙ୍କ ସହ ଶୟନାଗାରରେ ପ୍ରବେଶ କରି ବିଭିନ୍ନ ହାସ ପରିହାସ ଓ ଭୋଗବିଳାସରେ ରଜନୀ ଯାପନ କଲେ ।

ପରଦିନ ସୂର୍ଯ୍ୟପ୍ରଭ ପ୍ରହ୍ଲାଦଙ୍କ ରାଜସଭାରେ ଉପସ୍ଥିତ ହୁଅନ୍ତେ ଦାନବରାଜ ଅମୀଳ ତାଙ୍କୁ ଲକ୍ଷ୍ୟକରି ଅନ୍ୟମାନଙ୍କୁ କହିଲେ, 'ଆପଣମାନେ ଆଜି ଆମରି ଗୃହରେ ପଦାର୍ପଣ କରିବେ । ମୁଁ ସେଠାରେ ସୂର୍ଯ୍ୟପ୍ରଭଙ୍କର ଅତିଥି ସତ୍କାର କରିବି । ଯଦି ଆପଣମାନେ ସମର୍ଥନ କରନ୍ତି, ତାହାହେଲେ ମୁଁ ମୋର କନ୍ୟା କଳାବତୀଙ୍କୁ ମଧ୍ୟ ତାଙ୍କ ହସ୍ତରେ ଅର୍ପଣ କରିବି ।' ଏହା ସମସ୍ତଙ୍କର ମନୋନୀତ ହେବାରୁ ମୟ, ସୁନୀଥ ପ୍ରଭୃତି ସମସ୍ତ ଉପସ୍ଥିତ ଦୈତ୍ୟ ଓ ଦାନବ ଯାଇ ଦ୍ୱିତୀୟ ପାତାଳରେ ପ୍ରବେଶ କଲେ । ସେଠାରେ ଅମୀଳ ସ୍ୱୀୟ କନ୍ୟା କଳାବତୀଙ୍କୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ବିଧିପୂର୍ବକ ଅର୍ପଣ କଲେ । ଏହାପରେ ସମସ୍ତ ଦୈତ୍ୟ ଓ ଦାନବଙ୍କ ସହ ରାଜକୁମାର ସୂର୍ଯ୍ୟପ୍ରଭ ପ୍ରହ୍ଲାଦଙ୍କ ପ୍ରାସାଦରେ ଭୋଜନପାନାଦି ସମାପନ କରି ଆନନ୍ଦରେ କାଳ ଯାପନ କରିବାକୁ ଲାଗିଲେ ।

ପରଦିନ ଅସୁର ରାଜ ଦୁରାରୋହ ନିଜର ପଞ୍ଚମ ପାତାଳକୁ ସମସ୍ତଙ୍କୁ ନିମନ୍ତ୍ରଣ କରିନେଲେ ଏବଂ ସେଠାରେ ସେ ନିଜର କନ୍ୟା କୁମୁଦାବତୀଙ୍କୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ପ୍ରଦାନ କରି ବହୁ ଧନସମ୍ପତ୍ତି ଯୌତୁକ ସ୍ୱରୂପ ଦେଲେ । ଉକ୍ତ ଦିବସଟି ବହୁ ଆନନ୍ଦ ଉତ୍ସବରେ ଅତିବାହିତ କରି ସୂର୍ଯ୍ୟପ୍ରଭ ରଜନୀରେ କୁମୁଦାବତୀଙ୍କ ଶୟନାଗାରରେ ପ୍ରବେଶ କଲେ । ନବ ସଂଗମ ପାଇଁ ଉତ୍କଣ୍ଠିତା ତ୍ରୈଲୋକ୍ୟସୁନ୍ଦରୀ କୁମୁଦାବତୀଙ୍କ ସହ ବିବିଧ ଆମୋଦ ପ୍ରମୋଦରେ ରାତ୍ରିଟି ବିତିଗଲା ।

ପ୍ରଭାତରୁ ସପ୍ତମ ପାତାଳର ରାଜା ତନ୍ତୁକଚ୍ଛ ପ୍ରହ୍ଲାଦ ପ୍ରଭୃତିଙ୍କୁ ସ୍ୱପୁରକୁ ନିମନ୍ତ୍ରଣ କରିନେଲେ । ସେଠାରେ ସେ ନିଜର କୁନ୍ଦବର୍ଣ୍ଣ ତଥା ବିବିଧାଳଂକାର ବିଭୂଷିତା କନ୍ୟା ମନୋବତୀଙ୍କୁ ସୂର୍ଯ୍ୟପ୍ରଭଙ୍କ କରକମଳରେ ଅର୍ପଣ କଲେ । ସୂର୍ଯ୍ୟପ୍ରଭ ତାଙ୍କର ମଧୁର ଆଲିଙ୍ଗନ ପାଶରେ ଆବଦ୍ଧ ରହି ରାତ୍ରି ଅତୀତ କଲେ ।

ପରଦିନ ଷଷ୍ଠ ପାତାଳର ରାଜା ସୁମାୟ ସମସ୍ତଙ୍କୁ ନିମନ୍ତ୍ରଣ କରି ନେଲେ । ସେଠାରେ ସେ ନିଜର ଦୂର୍ବାଦଳଶ୍ୟାମଳା କନ୍ୟା ସୁଭଦ୍ରାଙ୍କ ସହ ସୂର୍ଯ୍ୟପ୍ରଭଙ୍କର ବିବାହ ବିଧିପୂର୍ବକ ସମାପନ କଲେ । ସୂର୍ଯ୍ୟପ୍ରଭ ଉକ୍ତ ଦିନଟି ସେହି ଶ୍ୟାମଳାଙ୍ଗୀ ଷୋଡ଼ଶୀଙ୍କ ସହ ବାସ କରି ପ୍ରଭୂତ ଆନନ୍ଦ ଲାଭ କଲେ ।

ତତ୍‌ପର ଦିନ ରାଜା ବଳି ସମସ୍ତଙ୍କୁ ନିମନ୍ତ୍ରଣ କରି ନିଜର ତୃତୀୟ ପାତାଳସ୍ଥିତ ବାସଭବନକୁ ସ୍ୱାଗତ କରିନେଲେ । ସେଠାରେ ସେ ନବପ୍ରବାଳଲତା ତୁଲ୍ୟ ଯୌବନଭାରନମ୍ରା କନ୍ୟା ସୁନ୍ଦରୀଙ୍କୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ପ୍ରଦାନ କରି ନିଜକୁ କୃତାର୍ଥ ମନେ କଲେ । ବିଭିନ୍ନ ଦିବ୍ୟ ଭୋଗ ବିଳାସରେ ନିମଜ୍ଜିତ ରହି ସୂର୍ଯ୍ୟପ୍ରଭ ସୁନ୍ଦରୀଙ୍କ ସହ ମୁହୂର୍ତ୍ତତୁଲ୍ୟ ଉକ୍ତ ଦିବସଟି ବିତାଇ ଦେଲେ ।

ତା' ପରଦିନ ଚତୁର୍ଥ ପାତାଳକୁ ଯାଇଥିବା ସୂର୍ଯ୍ୟପ୍ରଭଙ୍କୁ ଅସୁରରାଜ ମୟ ସ୍ୱଗୃହକୁ ପୁଣି ନିମନ୍ତ୍ରଣ କଲେ । ମୟଙ୍କ ମାୟା ବଳରେ ଏହି ଲୋକରେ ଏକ ବିଚିତ୍ର ମନ୍ଦିର ନିର୍ମିତ ହୋଇଥିଲା ଏବଂ ପ୍ରତି ମୁହୂର୍ତ୍ତରେ ଏଥିରୁ ନବ ନବ ଜ୍ୟୋତି ଉତ୍‌ଥିତ ହେଉଥିଲା । ଏଠାରେ ଦାନବରାଜ ମୟ ଆଶ୍ଚର୍ଯ୍ୟ ରୂପବତୀ ତଥା ମୂର୍ତ୍ତିମତୀ ଶକ୍ତି ସ୍ୱରୂପିଣୀ ତଦୀୟ କନ୍ୟା ସୁମାୟାଙ୍କ ସହ ସୂର୍ଯ୍ୟପ୍ରଭଙ୍କର ବିବାହ କ୍ରିୟା ସମ୍ପାଦନ କଲେ । ସୂର୍ଯ୍ୟପ୍ରଭ ମନୁଷ୍ୟ ଲୋକରେ ଜନ୍ମ ଗ୍ରହଣ କରିଥିବାରୁ ମୟ ତାଙ୍କୁ କନ୍ୟା ପ୍ରଦାନ କରିବାରେ କୌଣସି ଅଯୌକ୍ତିକତା ଉପଲବ୍‌ଧି କଲେ ନାହିଁ । ସୂର୍ଯ୍ୟପ୍ରଭ ମଧ୍ୟ ସୁମାୟାଙ୍କ ସହ ଆନନ୍ଦରେ ବିଳାସ କରିବାକୁ ଲାଗିଲେ । ସେ ନିଜ ବିଦ୍ୟା ପ୍ରଭାବରେ ଭିନ୍ନ ଭିନ୍ନ ରୂପ ଧାରଣ କରି ଏକ ସମୟରେ ସମସ୍ତ ପତ୍ନୀଙ୍କ ସହ କ୍ରୀଡ଼ା କରୁଥିଲେ । କିନ୍ତୁ ନିଜର ପ୍ରକୃତ ଶରୀରରେ ସେ ଅସୁରରାଜ ପ୍ରହ୍ଲାଦଙ୍କ କନ୍ୟା ମହଲ୍ଲିକାଙ୍କ ସହିତ ହିଁ ରହୁଥିଲେ ।

ଏକଦା ରାତ୍ରିରେ ସୂର୍ଯ୍ୟପ୍ରଭ ମହଲ୍ଲିକାଙ୍କୁ ପ୍ରଶ୍ନ କଲେ ଯେ ପୂର୍ବେ ଯେଉଁ ଦୁଇଜଣ ସଖୀ ତାଙ୍କ ସହ ଯାଇଥିଲେ ସେମାନେ କିଏ ଏବଂ କେଉଁଠାରେ ଥାଆନ୍ତି ? ବର୍ତ୍ତମାନ ସେମାନଙ୍କର ଦର୍ଶନ ମିଳୁନାହିଁ କାହିଁକି ? ଏହାର ଉତ୍ତରରେ ମହଲ୍ଲିକା କହିଲେ,

'ସେମାନଙ୍କ ସ୍ମୃତି ଜାଗ୍ରତ କରି ଆପଣ ଠିକ୍ କରିଛନ୍ତି । କେବଳ ସେ ଦୁଇଜଣ ନୁହନ୍ତି ସେମାନଙ୍କପରି ମୋର ବାରଜଣ ସଖୀ ଅଛନ୍ତି । ସେମାନଙ୍କୁ ମୋର କକା ସ୍ୱର୍ଗରୁ ଅପହରଣ କରି ଆଣିଥିଲେ । ଏମାନଙ୍କ ମଧ୍ୟରୁ ଅମୃତପ୍ରଭା ଏବଂ କେଶିନୀ ମହର୍ଷି ପର୍ବତଙ୍କର କନ୍ୟା, କାଳିନ୍ଦୀ, ମୁଦ୍ରିକା ତଥା ଏଣୀନୟନା ଦର୍ପକମାଳା ମହର୍ଷି ଦେବଳଙ୍କ ଔରସରୁ ଜାତ । ସୌଦାମିନୀ ଓ ଉଜ୍ଜ୍ୱଳା ହା ହା ନାମକ ଗନ୍ଧର୍ବଙ୍କର ଏବଂ ପୀବରା ହୁ ହୁ ନାମକ ଗନ୍ଧର୍ବଙ୍କ କନ୍ୟା । ନବମା ଅଞ୍ଜନିକା କାଳଙ୍କର କନ୍ୟା । ପିଙ୍ଗଳଙ୍କ ଔରସରୁ ଜାତ କନ୍ୟା କେଶରାବଳୀ । ମାଳିନୀ କମ୍ପଳଙ୍କର ଔରସରୁ ଜନ୍ମଗ୍ରହଣ କରିଅଛି ଏବଂ ଶେଷ ମଦାଳସା ବସୁଙ୍କ ଔରସରୁ ଏବଂ କୌଣସି ଅପ୍‌ସରା ଗର୍ଭରୁ ଜନ୍ମଗ୍ରହଣ କରିଅଛି । ମୋର ବିବାହ ସମୟରେ ସେମାନଙ୍କୁ ପ୍ରଥମ ପାତାଳକୁ ନେଇ ନିଆଯାଇଛି । ମୁଁ ଏମାନଙ୍କୁ ଆପଣଙ୍କ ହସ୍ତରେ ଅର୍ପଣ କରିବି ବୋଲି ମନସ୍ଥ କରିଅଛି । ଏହାଦ୍ୱାରା ସର୍ବଦା ସେମାନଙ୍କର ସଙ୍ଗସୁଖ ଲାଭ କରି ମୁଁ ଏକାନ୍ତ ଆନନ୍ଦିତ ହୋଇପାରିବି । ମୁଁ ସେମାନଙ୍କ ନିକଟରେ ଏ ପ୍ରକାର ପ୍ରତିଜ୍ଞା କରିସାରିଛି ଏବଂ ସେମାନେ ମଧ ମୋ ପ୍ରତି, ଏଣୁ, ଅଧିକ ସ୍ନେହଶୀଳ ହୋଇ ଉଠିଛନ୍ତି । ଏ ସମ୍ପର୍କରେ ମୁଁ ପିତାଙ୍କୁ ମଧ କହିଥିଲି । ସେ ମଧ ଏଥିରେ ସମ୍ମତି ପ୍ରଦାନ କରିଛନ୍ତି । କେବଳ ତାଙ୍କ ଭ୍ରାତା ଆସି ଉପସ୍ଥିତ ହେଲେ ସେ ଏହା କାର୍ଯ୍ୟକାରୀ କରିବେ ।'

ମହଲ୍ଲିକାଙ୍କଠାରୁ ଏହା ଶ୍ରବଣ କରି ସୂର୍ଯ୍ୟପ୍ରଭ ସଲଜ୍ଜ କଣ୍ଠରେ କହିଲେ, 'ଦେବି, ତୁମେ ପ୍ରଭାବଶାଳିନୀ ତଥା ଉଦାର ହୃଦୟା । ତୁମର ଯାହା ଅଭିଳାଷ ତାହା କରିପାର । ମୁଁ ଆଉ ଅଧିକ କଣ କହିବି ।' ଏଥିରେ ମହଲ୍ଲିକା ମିଥ୍ୟା ରୋଷ ପ୍ରକାଶ କରି କହିଲେ, 'ମୋର ସମ୍ମୁଖରେ ତୁମେ ପ୍ରତ୍ୟହ ନୂତନ ନୂତନ କୁମାରୀ ବିବାହ କରିଯାଉଅଛ, କିନ୍ତୁ ମୋର ସଖୀମାନଙ୍କୁ ଗ୍ରହଣ କରିବାପାଇଁ ତୁମେ କୁଣ୍ଠା ପ୍ରକାଶକରି ମୋ ପ୍ରତି ଅବିଚାର କରୁଛ । ମୁଁ ଏମାନଙ୍କ ବିରହରେ ମୁହୂର୍ତ୍ତ ମାତ୍ର ଜୀବନଧାରଣ କରିପାରିବି ନାହିଁ ।' ତାଙ୍କର ଏ ପ୍ରକାର ମନୋଭାବ ଦେଖି ସୂର୍ଯ୍ୟପ୍ରଭ ସଙ୍ଗେ ସଙ୍ଗେ ସେଥିରେ ସମ୍ମତି ପ୍ରଦାନ କଲେ ।

ଏହାପରେ ମହଲ୍ଲିକା ସୂର୍ଯ୍ୟପ୍ରଭଙ୍କୁ ନେଇ ପ୍ରଥମ ପାତାଳରେ ଯାଇ ପହଞ୍ଚିଲେ ଏବଂ ନିଜର ସଖୀମାନଙ୍କୁ ସପତ୍ନୀ ରୂପେ ପାଇବାର ବ୍ୟବସ୍ଥା କଲେ । ସୂର୍ଯ୍ୟପ୍ରଭ ମଧ ଏହି ଦିବ୍ୟାଙ୍ଗନାମାନଙ୍କୁ ପ୍ରତ୍ୟହ ରାତ୍ରିରେ କ୍ରମଶଃ ଉପଭୋଗ କରି ପ୍ରୀତ୍ ହେଲେ ।

ଏକଦା ପ୍ରଭାତରୁ ସୂର୍ଯ୍ୟପ୍ରଭ ମହଲ୍ଲିକାଙ୍କ ଅନୁମତିକ୍ରମେ ଏହି କନ୍ୟାମାନଙ୍କୁ ମନ୍ତ୍ରୀ ପ୍ରଭାସଙ୍କ ସାହାଯ୍ୟରେ ରସାତଳରେ ନେଇ ଲୁଚ୍ଚାୟିତ କରି ରଖିଲେ । କିନ୍ତୁ ସେ

ନିଜର ବିଦ୍ୟା ପ୍ରଭାବରେ ଅଦୃଶ୍ୟ ଭାବରେ ମହଲ୍ଲିକାଙ୍କ ସହିତ ସେଠାକୁ ନିୟମିତ ଭାବେ ଯାଉଥାନ୍ତି ।

ଦିନେ ପ୍ରହ୍ଲାଦ ମୟ ଏବଂ ସୁନୀଥଙ୍କୁ ମାତା ଦିତି ଓ ଦନୁଙ୍କୁ ଯାଇ ଦର୍ଶନ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ । ତାଙ୍କର ଆଦେଶ ଶିରୋଧାର୍ଯ୍ୟ କରି ମୟ, ସୁନୀଥ ଓ ସୂର୍ଯ୍ୟପ୍ରଭ ଯଥାସମ୍ଭବ ରାକ୍ଷସସେନା ସହିତ ରସାତଳରୁ ନିର୍ଗତ ହେଲେ । ଧ୍ୟାନ କରିବା ସଙ୍ଗେ ସଙ୍ଗେ ଭୂତାସନ ନାମକ ବିମାନ ଆସି ଉପସ୍ଥିତ ହେଲା । ତା' ପୃଷ୍ଠରେ ଆରୋହଣ କରି ସେମାନେ ସୁମେରୁ ଶିଖରସ୍ଥିତ କଶ୍ୟପଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କଲେ ।

ସେଠାରେ ଋଷିମାନଙ୍କଦ୍ୱାରା ପ୍ରଦର୍ଶିତ ମାର୍ଗ ଅବଲମ୍ବନ କରି ସେମାନେ ଏକ ସଙ୍ଗରେ ବସିଥିବା ଦିତି ଓ ଦନୁଙ୍କୁ ଦେଖି ଭକ୍ତିର ସହିତ ଭୂମିଷ୍ଠ ପ୍ରଣିପାତ କଲେ । ସେମାନେ ମଧ୍ୟ ନିଜର ବହୁ ପରିଜନ ସହିତ ଆସିଥିବା ପୁତ୍ର ମୟଙ୍କ ଦର୍ଶନରେ ପ୍ରଭୂତ ଆନନ୍ଦ ଲାଭ କରି ଅଶ୍ରୁ ବିଗଳିତ ଲୋଚନରେ ତାଙ୍କୁ ଆଶୀର୍ବାଦ ପ୍ରଦାନ କଲେ ଏବଂ କହିଲେ, 'ପୁତ୍ର, ପୁନର୍ଜୀବିତ ସୁନୀଥଙ୍କ ସହ ତୋତେ ଦେଖି ଆମ୍ଭେମାନେ ଅପାର ଆନନ୍ଦ ଲାଭ କଲୁ । ତୁମେମାନେ ପ୍ରକୃତରେ ପୁଣ୍ୟବାନ୍ । ଦିବ୍ୟ ତେଜ ଯୁକ୍ତ ଏବଂ ଅସାଧାରଣ ଗୁଣ ସମ୍ପନ୍ନ ସୂର୍ଯ୍ୟପ୍ରଭ ରୂପରେ ସୁମୁଣ୍ଡିକକୁ ଦେଖି ଆମ୍ଭମାନଙ୍କର ଯଥେଷ୍ଟ ସନ୍ତୋଷ ଜାତ ହୋଇଅଛି । ବର୍ତ୍ତମାନ ତୁମେ ଶୀଘ୍ର ଯାଇ ପ୍ରଜାପତି କଶ୍ୟପଙ୍କୁ ଦର୍ଶନକର । ତାଙ୍କ ଆଶୀର୍ବାଦରେ ତୁମର କାର୍ଯ୍ୟ ସିଦ୍ଧ ହେବ ଏବଂ ତାଙ୍କରି ପ୍ରଦର୍ଶିତ ପନ୍ଥା ଅବଲମ୍ବନ କଲେ ତୁମ୍ଭମାନଙ୍କର କଲ୍ୟାଣ ମଧ୍ୟ ହେବ ।'

ମାତାମାନଙ୍କ ନିର୍ଦ୍ଦେଶରେ ସମସ୍ତେ ଦିବ୍ୟ ଆଶ୍ରମ ଅଭିମୁଖରେ ଯାତ୍ରାକଲେ । ସେଠାରେ ପ୍ରଜାପତି କଶ୍ୟପଙ୍କ ସହିତ ସେମାନଙ୍କର ସାକ୍ଷାତ ହେଲା । ମହର୍ଷିଙ୍କ ଶରୀର କାନ୍ତି ବିଶୁଦ୍ଧ ସୁବର୍ଣ୍ଣ ତୁଲ୍ୟ ଜାଜ୍ୱଲ୍ୟମାନ ହେଉଥିଲା । ତାଙ୍କର ମୁଖମଣ୍ଡଳ ଏକ ଦିବ୍ୟ ଦୀପ୍ତିରେ ଉଦ୍ଭାସିତ ହୋଇ ଉଠୁଥିଲା । ଅଗ୍ନିଶିଖା ତୁଲ୍ୟ ପୀତବର୍ଣ୍ଣ ଜଟା ଧାରଣ କରି ସେ ସାକ୍ଷାତ୍ ଅଗ୍ନିଦେବଙ୍କ ତୁଲ୍ୟ ଶୋଭା ପାଉଥିଲେ । ଏମାନେ ସମସ୍ତେ ତାଙ୍କର ଚରଣପ୍ରାନ୍ତରେ ପ୍ରଣିପାତ କରନ୍ତେ ସେ ସମସ୍ତଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ କହିଲେ, ''ଆଜି ମୋର ସମସ୍ତ ସନ୍ତାନଙ୍କୁ ଏକତ୍ର ଦର୍ଶନ କରି ମୁଁ ଅତ୍ୟନ୍ତ ଆନନ୍ଦ ଲାଭ କରୁଅଛି । ମୟ, ତୁ ପ୍ରକୃତରେ ପ୍ରଶଂସନୀୟ । ସମସ୍ତ ବିଦ୍ୟା ଆୟତ୍ତ କରି ତୁ ସତ୍‌ପଥରୁ କଦାପି ବିଚଳିତ ହୋଇ ନାହୁଁ । ସୁନୀଥ ! ତୁ ମଧ୍ୟ ଧନ୍ୟ ଯେ ତୁ ନିଜର ପୁଣ୍ୟ ବଳରୁ ପୁନର୍ଜୀବନ ଲାଭ କରିପାରିଅଛୁ । ସୂର୍ଯ୍ୟପ୍ରଭ, ଆକାଶଚାରୀ ବିଦ୍ୟାଧରମାନଙ୍କର ଚକ୍ରବର୍ତ୍ତୀ ପଦ

ଲାଭ କରିବାକୁ ଯାଉଥିବାରୁ ତୁ ମଧ୍ଯ ଧନ୍ୟ । ତୁମ୍ଭେମାନେ ଧର୍ମମାର୍ଗର ପଥିକ ହେବା ଉଚିତ ଏବଂ ମୋର ଉପଦେଶ ବୁଝିବା ଉଚିତ । ଏହାଦ୍ୱାରା ତୁମେ ଅତ୍ୟୁତ୍ତମ ଐଶ୍ୱର୍ଯ୍ୟ ଲାଭକରି ଶାଶ୍ୱତ ସୁଖ ପ୍ରାପ୍ତ ହେବ.। ତୁମ୍ଭେମାନେ ପୂର୍ବ ପରି ଆଉ ଶତ୍ରୁମାନଙ୍କଦ୍ୱାରା ପରାଜିତ ହେବନାହିଁ । ଧର୍ମପଥରୁ ବିଚ୍ୟୁତ ହୋଇଥିବା ଅସୁରମାନେ ପୂର୍ବେ ବିଷ୍ଣୁଙ୍କ ଚକ୍ରଦ୍ୱାରା ନିହତ ହୋଇଥିଲେ ।

'ସୁନୀଥ, ଦେବତାମାନଙ୍କଦ୍ୱାରା ନିହତ ହୋଇଥିବା ଅସୁରମାନେ ବର୍ତ୍ତମାନ ମାନବ ଲୋକରେ ଜନ୍ମଗ୍ରହଣ କରି ଅଛନ୍ତି । ପୂର୍ବ ଜନ୍ମରେ ଯେଉଁ ସୁମୁଣ୍ଡିକ ତୋର କନିଷ୍ଠ ଭ୍ରାତା ଥିଲା, ସେ ବର୍ତ୍ତମାନ ସୂର୍ଯ୍ୟପ୍ରଭ ରୂପରେ ଅବତୀର୍ଣ୍ଣ ହୋଇଅଛି । ଏହାର ମିତ୍ର ଦୈତ୍ୟ ଓ ଦାନବମାନେ ଏ ଜନ୍ମରେ ତାର ବନ୍ଧୁପରିଜନ ରୂପେ ଜନ୍ମଗ୍ରହଣ କରିଅଛନ୍ତି । ସମ୍ବର ନାମକ ଅସୁର ପ୍ରହସ୍ତ ରୂପେ ଜନ୍ମ ନେଇ ସୂର୍ଯ୍ୟପ୍ରଭର ମନ୍ତ୍ରୀରୂପେ କାର୍ଯ୍ୟ କରୁଅଛି । ତ୍ରିଶିରା ସିଦ୍ଧାର୍ଥ ରୂପେ ଏବଂ ବାତାପି ପ୍ରଜ୍ଞାଢ଼୍ୟ ରୂପେ ଅବତୀର୍ଣ୍ଣ ହୋଇ ସୂର୍ଯ୍ୟପ୍ରଭର ମନ୍ତ୍ରୀ ରୂପେ ରହିଛନ୍ତି । ଭଲୂକ ନାମକ ଦାନବ ସୂର୍ଯ୍ୟପ୍ରଭର ମିତ୍ର ଶୁଭଙ୍କର ବ୍ୟତୀତ ଅନ୍ୟ କେହି ନୁହେ । ଅନ୍ୟତମ ମିତ୍ର ବୀତଭୀତି ପୂର୍ବ ଜନ୍ମରେ କାଳ ନାମକ ଦାନବ ଥିଲା । ଭାସ ମଧ୍ଯ ବୃଷପର୍ବା ଏବଂ ପ୍ରଭାସ ପ୍ରବଳ ନାମକ ଦାନବ ଓ ଦୈତ୍ୟ ଥିଲେ । ରତ୍ନମୟ ପୂର୍ବେ ଦେବତାମାନଙ୍କ ପ୍ରାର୍ଥନାକୁ ଉପେକ୍ଷା କରି ନିଜ ଶରୀରର ମାଂସଖଣ୍ଡଦ୍ୱାରା ତପଃ ସାଧନ କରିଥିବାରୁ ଦେବୀ ଚଣ୍ଡିକା ତା ପ୍ରତି ସନ୍ତୁଷ୍ଟା ହୋଇ ଏ ଜନ୍ମରେ ତାର ସହାୟତା କରୁଅଛନ୍ତି । ତେଣୁ ସେ ଶତ୍ରୁମାନଙ୍କ ପକ୍ଷରେ ଅତ୍ୟନ୍ତ ଦୁଃସହ ହୋଇପଡ଼ିଛି । ପୂର୍ବ ଜନ୍ମରେ ସୁନ୍ଦ ଓ ଉପସୁନ୍ଦ ନାମରେ ଯେଉଁ ଦୁଇଜଣ ଦାନବ ଥିଲେ ସେମାନେ ଏ ଜନ୍ମରେ ସର୍ବଦର୍ଶନ ଓ ଭୟଙ୍କର ରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ହୟଗ୍ରୀବ ଓ ବିକଟାକ୍ଷ ନାମକ ଅସୁର ମନ୍ତ୍ରୀ ସ୍ଥିରବୁଦ୍ଧି ଓ ମହାବୁଦ୍ଧି ରୂପରେ ଜନ୍ମ ନେଇଛନ୍ତି । ଏହା ବ୍ୟତୀତ ସୂର୍ଯ୍ୟପ୍ରଭର ଶ୍ୱଶୁର ପ୍ରଭୃତି ଯେଉଁ ବନ୍ଧୁମାନେ ରହିଛନ୍ତି ସେମାନେ ସମସ୍ତେ ପୂର୍ବ ଜନ୍ମରେ ରାକ୍ଷସ ଥିଲେ । ଏମାନେ ବହୁବାର ଇନ୍ଦ୍ର ପ୍ରଭୃତି ଦେବତାମାନଙ୍କୁ ଯୁଦ୍ଧରେ ପରାଜିତ କରି ଅଛନ୍ତି । ତେଣୁ ତୁମର ପକ୍ଷ କ୍ରମଶଃ ବୃଦ୍ଧି ଲାଭ କରୁଅଛି । ଧୈର୍ଯ୍ୟ ଧାରଣ ପୂର୍ବକ ତୁମେମାନେ ଯଦି ଧର୍ମପଥରେ ଅଗ୍ରସର ହେବ, ତାହାହେଲେ ତୁମର ସମୃଦ୍ଧି ସୁନିଶ୍ଚିତ ।'

ମହର୍ଷି କଶ୍ୟପ ପୁତ୍ରମାନଙ୍କୁ ଏପ୍ରକାର ଉପଦେଶ ପ୍ରଦାନ କରୁଥିବା ବେଳେ ଅଦିତି ପ୍ରଭୃତି ଦକ୍ଷକନ୍ୟାମାନେ ମଧ୍ୟାହ୍ନକାଳୀନ ଧର୍ମ କ୍ରିୟା ସମ୍ପାଦନ କରିବା ନିମିତ୍ତ ସେଠାରେ ଆସି ଉପସ୍ଥିତ ହେଲେ । ମୟ ପ୍ରଭୃତି ଦୈତ୍ୟ ଓ ଦାନବମାନେ ମହର୍ଷିଙ୍କ

ଠାରୁ ଆଶୀର୍ବାଦ ଲାଭ କରି ମାତାମାନଙ୍କୁ ପ୍ରଣାମ କରୁଥିବା ବେଳେ ଲୋକପାଳମାନଙ୍କ ସହିତ ଇନ୍ଦ୍ର ମଧ୍ୟ ସେଠାରେ ଆସି ଉପସ୍ଥିତ ହେଲେ । ସେମାନେ ମଧ୍ୟ ମୁନିଙ୍କୁ ପ୍ରଣିପାତ କରି ମୟ ପ୍ରଭୃତିଙ୍କ ଠାରୁ ପ୍ରଣାମ ଗ୍ରହଣ କଲେ । ହଠାତ୍ ସୂର୍ଯ୍ୟପ୍ରଭଙ୍କ ଉପରେ ଇନ୍ଦ୍ରଙ୍କର ଦୃଷ୍ଟିପାତ ହେବାରୁ ସେ କ୍ରୋଧପ୍ରକାଶ ପୂର୍ବକ କହିଲେ, 'ବୋଧହୁଏ ଏହି ଅର୍ବାଚୀନ ହିଁ ବିଧ୍ୟାଧରମାନଙ୍କର ଚକ୍ରବର୍ତ୍ତୀ ହେବାପାଇଁ ଅଭିଳାଷ ପୋଷଣ କରିଅଛି । କିନ୍ତୁ ଏତେ କମ୍ ଐଶ୍ୱର୍ଯ୍ୟରେ ସନ୍ତୁଷ୍ଟ ନହୋଇ ଇନ୍ଦ୍ରପଦ ଲାଭ କରିବାପାଇଁ କାହିଁକି ଚେଷ୍ଟା କରୁନାହିଁ ?' ଏହା ଶୁଣି ମୟ କହିଲେ, 'ଦେବରାଜ ! ଈଶ୍ୱର ତୁମକୁ ଇନ୍ଦ୍ରପଦ ଏବଂ ଏହାଙ୍କୁ ବିଦ୍ୟାଧର ଚକ୍ରବର୍ତ୍ତୀ ପଦ ପ୍ରଦାନ କରିଅଛନ୍ତି' । ମୟଙ୍କଠାରୁ ଏପ୍ରକାର ଉକ୍ତି ଶ୍ରବଣ କରି ଇନ୍ଦ୍ର ହାସ୍ୟ ପ୍ରକାଶ ପୂର୍ବକ କହିଲେ ଏ ପ୍ରକାର ଲକ୍ଷଣଯୁକ୍ତ ପୁରୁଷ ପାଇଁ ଇନ୍ଦ୍ରପଦ ଅତି କ୍ଷୁଦ୍ର ବୋଲି ମନେ ହେଉଛି । ଏଥିରେ କିଞ୍ଚିତ କୋପାନ୍ୱିତ ହୋଇ ମୟ ବ୍ୟଙ୍ଗପୂର୍ଣ୍ଣ ଭାବେ କହିଲେ, 'ଶ୍ରୁତଶର୍ମା ଯଦି ବିଦ୍ୟାଧର ଚକ୍ରବର୍ତ୍ତୀ ହେବା ଯୋଗ୍ୟ, ତାହାହେଲେ ସୂର୍ଯ୍ୟପ୍ରଭ ନିଃସନ୍ଦେହରେ ଇନ୍ଦ୍ରପଦ ଲାଭ କରିପାରନ୍ତି ।' ମୟଙ୍କ ବାକ୍ୟରେ ଉତ୍ତେଜିତ ହୋଇ ଇନ୍ଦ୍ର ହଠାତ୍ ଆସନ ପରିତ୍ୟାଗ ପୂର୍ବକ ଦଣ୍ଡାୟମାନ ହେଲେ, କିନ୍ତୁ ମହର୍ଷି କଶ୍ୟପଙ୍କର ରୋଷ ହୁଙ୍କାର ତାଙ୍କୁ ଶାନ୍ତ କଲା । ଦିତି, ଦନୁ ପ୍ରଭୃତି ମୁନିପତ୍ନୀମାନେ ଇନ୍ଦ୍ରଙ୍କ ଏ ପ୍ରକାର ଆଚରଣରେ କ୍ରୁଦ୍ଧ ହେଲେ । ଏସବୁ ଦେଖି ଇନ୍ଦ୍ର ଶାପ ଭୟରୁ ଅବନତ ମୁଖରେ ଆସନ ଗ୍ରହଣ କଲେ । ସେ ମୁନିଙ୍କ ଚରଣତଳେ ପଡ଼ି ସ୍ତୁତିପାଠ ପୂର୍ବକ କହିଲେ, 'ଭଗବନ୍ ! ମୁଁ ଶ୍ରୁତଶର୍ମାଙ୍କୁ ଯେଉଁ ବିଦ୍ୟାଧର ଚକ୍ରବର୍ତ୍ତୀ ପଦ ପ୍ରଦାନ କରିଥିଲି, ତାକୁ ସୂର୍ଯ୍ୟପ୍ରଭ ହରଣ କରିନେବାପାଇଁ ଇଚ୍ଛା କରୁଅଛନ୍ତି । ପୁଣି ମୟ ମଧ୍ୟ ତାଙ୍କୁ ସାହାଯ୍ୟ କରିବା ନିମିତ୍ତ ସର୍ବଦା ବଦ୍ଧପରିକର ।'

ଏହା ଶ୍ରବଣ କରି ଦିତି ଓ ଦନୁଙ୍କ ସହିତ କଶ୍ୟପ ଇନ୍ଦ୍ରଙ୍କୁ କହିଲେ, 'ଇନ୍ଦ୍ର, ଶ୍ରୁତଶର୍ମା ତୋର ପ୍ରିୟ ଏବଂ ସୂର୍ଯ୍ୟପ୍ରଭ ମହାଦେବଙ୍କର ପ୍ରିୟପାତ୍ର । ମୁଁ ଯଦିଓ ଏହା ଚାହେଁ ନାହିଁ, ତଥାପି ଭଗବାନ ମହାଦେବ ମୟଙ୍କୁ ଆଦେଶ ପ୍ରଦାନ କରିଅଛନ୍ତି । ଏଥିରେ ମୟର ଦୋଷ ବା କେଉଁଠି ? ମୟ ଧାର୍ମିକ, ଜ୍ଞାନ-ବିଜ୍ଞାନ ସମ୍ପନ୍ନ ଏବଂ ଗୁରୁଜନଙ୍କ ନିକଟରେ ବିନମ୍ର । ଯଦି ତୁ ଏହାର କିଛି ଅମଙ୍ଗଳ କରୁ, ତା'ହେଲେ ମୋର କ୍ରୋଧାଗ୍ନି ତୋତେ ଭସ୍ମୀଭୂତ କରିଦେବ । ତୁ ଏହା ଉପରେ ନିଜର ଆଧିପତ୍ୟ ପ୍ରଦର୍ଶନ କରିପାରିବୁ ନାହିଁ । ତୁ କ'ଣ ଏହାର ପ୍ରଭାବ ଜାଣି ନାହୁଁ ?' ପତ୍ନୀମାନଙ୍କ ସହ ମହର୍ଷି ଏହା କହନ୍ତେ, ଇନ୍ଦ୍ର ଲଜ୍ଜା ଓ ଗ୍ଲାନିରେ ମୁଖ ଅବନତ କରିଦେଲେ । ଏ ସମୟରେ ଦେବମାତା ଅଦିତି ଇନ୍ଦ୍ରଙ୍କୁ ଆଦେଶ ଦେଲେ ଯେ ସେ ଶ୍ରୁତଶର୍ମାଙ୍କୁ ଆଣି ସେଠାରେ ଉପସ୍ଥିତ କରାନ୍ତୁ ।

ଇନ୍ଦ୍ର ଏ ଆଦେଶ ପାଳନ କରିବା ନିମନ୍ତେ ସଙ୍ଗେ ସଙ୍ଗେ ମାତଳିଙ୍କୁ ଡାକି ଆଜ୍ଞା ପ୍ରଦାନ କଲେ । ମାତଳି ମଧ୍ୟ ତତ୍‌କ୍ଷଣାତ୍ ଶ୍ରୁତଶର୍ମାଙ୍କୁ ଆଣି ସେଠାରେ ଉପସ୍ଥିତ କରାଇଲେ । ପ୍ରଣାମ କରୁଥିବା ଶ୍ରୁତଶର୍ମା ଓ ସୂର୍ଯ୍ୟପ୍ରଭଙ୍କ ମଧ୍ୟରୁ କିଏ ଅଧିକ ସୁନ୍ଦର ଓ ଲକ୍ଷଣଯୁକ୍ତ ବୋଲି କଶ୍ୟପଙ୍କୁ ତାଙ୍କ ପତ୍ନୀମାନେ ଜିଜ୍ଞାସା କରନ୍ତେ ମହର୍ଷି ଉତ୍ତରରେ କହିଲେ 'ଶ୍ରୁତଶର୍ମା, ସୂର୍ଯ୍ୟପ୍ରଭଙ୍କ ମନ୍ତ୍ରୀ ପ୍ରଭାସ ସହିତ ମଧ୍ୟ ଲକ୍ଷଣରେ ସମକକ୍ଷ ନୁହେ । ତେବେ ସୂର୍ଯ୍ୟପ୍ରଭ ସହ ସମାନ ହେବ କିପରି ? ସୂର୍ଯ୍ୟପ୍ରଭ ଏପରି ଲକ୍ଷଣଯୁକ୍ତ ଯେ ଉଦ୍ୟୋଗ କଲେ ସେ ଇନ୍ଦ୍ରପଦ ମଧ୍ୟ ଲାଭ କରିବା ଅସମ୍ଭବ ହେବ ନାହିଁ ।' ମହର୍ଷିଙ୍କ ଏ ପ୍ରକାର ବାକ୍ୟ ବିନ୍ୟାସ ସମସ୍ତଙ୍କୁ ଆନନ୍ଦିତ କଲା । ସେ ଇନ୍ଦ୍ରଙ୍କ ସମକ୍ଷରେ ହିଁ ମୟଙ୍କୁ ବରପ୍ରଦାନ ପୂର୍ବକ କହିଲେ, 'ବତ୍ସ, ଇନ୍ଦ୍ର ଶସ୍ତ୍ର ଉତ୍ତୋଳନ କରିବା ପରେ ମଧ୍ୟ ଯେହେତୁ ତୁ ଅପୂର୍ବ ସହିଷ୍ଣୁତା ପ୍ରକଟ କରିଅଛୁ ଅର୍ଥାତ୍ କ୍ରୋଧ ପ୍ରକାଶ କରିନାହୁଁ ତେଣୁ ତୋର ସମସ୍ତ ଅଙ୍ଗ ବଜ୍ରମୟ ହେବ ଏବଂ ତୁ ଅମର ହେବୁ । ତୋର ଏହି ଉଭୟ ପୁତ୍ର ସୁନୀଥ ଏବଂ ସୂର୍ଯ୍ୟପ୍ରଭ ମଧ୍ୟ ମହାବଳଶାଳୀ ଏବଂ ଶତ୍ରୁମାନଙ୍କର ଅଜେୟ ହେବେ । ଚନ୍ଦ୍ରମାତୁଲ୍ୟ ମନୋହର ମୋର ଏହି ପୁତ୍ର ସୁବାସକୁମାର ବିପଦ ସମୟରେ ତୁମର ସହାୟତା କରିବ ।'

ମହର୍ଷି ବରପ୍ରଦାନ କରିବା ଦେଖି ଉପସ୍ଥିତ ଅନ୍ୟାନ୍ୟ ଋଷି ଓ ଋଷିପତ୍ନୀମାନେ ମଧ୍ୟ ସେମାନଙ୍କୁ ଅନ୍ୟାନ୍ୟ ବହୁ ବର ପ୍ରଦାନ କଲେ । ଏ ସବୁ ଦର୍ଶନ କରି ମାତା ଅଦିତି ଇନ୍ଦ୍ରଙ୍କୁ କହିଲେ, 'ତୁ ଉଦ୍ଦଣ୍ଡତା ପରିତ୍ୟାଗ କରି ମୟକୁ ପ୍ରସନ୍ନ କରିବା ନିମନ୍ତେ ଚେଷ୍ଟାକର । ନମ୍ରତାର ମୂଲ୍ୟ ବୋଧହୁଏ ତୁ ଆଜି ଉପଲବ୍ଧି କରିପାରିଥିବୁ । କେବଳ ନମ୍ରତା ଯୋଗୁଁ ମୟ ଏତେଗୁଡ଼ିଏ ବରଲାଭ କରି ପାରିଛି ।'

ଏହା ଶୁଣି ଇନ୍ଦ୍ର ମୟଙ୍କ ହସ୍ତ ଧାରଣ ପୂର୍ବକ ତାଙ୍କୁ ପ୍ରସନ୍ନ କଲେ । ଏ ସମୟରେ ଶ୍ରୁତଶର୍ମା ସୂର୍ଯ୍ୟପ୍ରଭଙ୍କ ନିକଟରେ ଦିବାଦୃଷ୍ଟ ଚନ୍ଦ୍ରମା ତୁଲ୍ୟ ମ୍ଲାନ ଦେଖା ଯାଉଥାଆନ୍ତି ।

ଶେଷରେ ଇନ୍ଦ୍ର ପ୍ରଭୃତି ଦେବତାମାନେ ମହର୍ଷିଙ୍କୁ ପ୍ରଣାମ କରି ସ୍ୱର୍ଗପୁର ଅଭିମୁଖରେ ପ୍ରସ୍ଥାନ କଲେ । ମୟ ମଧ୍ୟ ଭବିଷ୍ୟତ କର୍ମ ସଫଳତାର ସହିତ ସମ୍ପାଦନ କରିବା ପାଇଁ ଆଶ୍ରମରୁ ପାତାଳପୁର ପ୍ରତି ଅଗ୍ରସର ହେଲେ ।



# ତୃତୀୟ ତରଙ୍ଗ

## ସୂର୍ଯ୍ୟପ୍ରଭଙ୍କ ଉଦ୍‌ଯୋଗ

ତଦନନ୍ତର ମୟ, ସୁନୀଥ ଓ ସୂର୍ଯ୍ୟପ୍ରଭ ପ୍ରଭୃତି ସମସ୍ତେ କଶ୍ୟପଙ୍କ ଆଶ୍ରମ ପରିତ୍ୟାଗ କରି ଚନ୍ଦ୍ରଭାଗା ଓ ଇରାବତୀ ନଦୀର ସଙ୍ଗମ ସ୍ଥଳରେ ଆସି ଉପସ୍ଥିତ ହେଲେ । ସେଠାରେ ସୂର୍ଯ୍ୟପ୍ରଭଙ୍କ ମିତ୍ର, ଶ୍ୱଶୁର ଓ ବନ୍ଧୁମାନେ ତାଙ୍କରି ଅପେକ୍ଷାରେ ଥାଆନ୍ତି । ସୂର୍ଯ୍ୟପ୍ରଭଙ୍କୁ ଦେଖି ମରଣକାମୀ ଏହି ବନ୍ଧୁମାନେ ତାଙ୍କ ନିକଟରେ ଆସି ଦଣ୍ଡାୟମାନ ହେଲେ । ଚନ୍ଦ୍ରପ୍ରଭଙ୍କ ଅଦର୍ଶନରେ ବିଭିନ୍ନ ଅଶୁଭ ଆଶଙ୍କା କରୁଥିବା ମିତ୍ରମାନଙ୍କୁ ସୂର୍ଯ୍ୟପ୍ରଭ ସମଗ୍ର ବୃତ୍ତାନ୍ତ କହି ଶୁଣାଇଲେ । ତାଙ୍କର ଜିଜ୍ଞାସା କ୍ରମେ ସେମାନେ ଶ୍ରୁତଶର୍ମାଙ୍କଦ୍ୱାରା ହୋଇଥିବା ସମସ୍ତ ପରାଭବର କଥା ବ୍ୟକ୍ତ କରି କହିଲେ ଯେ ଏହି ଅପମାନ ସହ୍ୟ କରି ନପାରି ଆତ୍ମହତ୍ୟା କରିବା ପାଇଁ ପ୍ରସ୍ତୁତ ହେଉଥିବା ସମୟରେ ଦିବ୍ୟବାଣୀ କେବଳ ସେମାନଙ୍କୁ ସେଥିରୁ ନିବୃତ୍ତ କରି ରଖିଅଛି ।

ଏହି ସମସ୍ତ ସମାଚାର ଶ୍ରବଣ କରି ସୂର୍ଯ୍ୟପ୍ରଭ କ୍ରୋଧରେ ପ୍ରତିଜ୍ଞା କରି ବସିଲେ ଯେ ଯଦି ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ସମସ୍ତ ଦେବତା ଶ୍ରୁତଶର୍ମାର ସୁରକ୍ଷା ପାଇଁ ସହାୟତା କରନ୍ତି, ତା' ହେଲେ ସୁଦ୍ଧା ସେ ତାର ସମୂଳ ବିନାଶ ସାଧନ କରିବେ । ପରସ୍ତ୍ରୀ ହରଣ କରିଥିବା ସେହି ଦୁରାତ୍ମାର ଉପଯୁକ୍ତ ଶାସ୍ତି ବିଧାନ ନ କଲେ ସେ ସନ୍ତୁଷ୍ଟ ହେବେ ନାହିଁ ବୋଲି ଅନ୍ୟମାନଙ୍କୁ ସାନ୍ତ୍ୱନା ପ୍ରଦାନ କଲେ ।

ଏତାଦୃଶ ଦୃଢ଼ ପ୍ରତିଜ୍ଞାରେ ଆବଦ୍ଧ ହୋଇ ସେ ଗଣକମାନଙ୍କଦ୍ୱାରା ସପ୍ତମ ଦିବସରେ ବିଜୟ ଯାତ୍ରାର ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ କଲେ । ଯୁଦ୍ଧ ନିମିତ୍ତ କୃତନିଶ୍ଚୟ ଦେଖି ମୟ ତାଙ୍କୁ ଅଧିକ ଉତ୍ସାହିତ କରିବା ପାଇଁ କହିଲେ, 'ଯଦି ତୁମେ ଯୁଦ୍ଧପାଇଁ ପ୍ରକୃତରେ ପ୍ରଯତ୍ନଶୀଳ, ତାହାହେଲେ ମୁଁ ବର୍ତ୍ତମାନ ପ୍ରକୃତ ରହସ୍ୟ ପ୍ରକାଶ କରିଦେଇପାରେ ଯେ

ମୁଁ ହିଁ ତୁମର ପତ୍ନୀମାନଙ୍କୁ ମୋର ମାୟା ବଳରେ ନେଇ ପାତାଳପୁରରେ ଗୁପ୍ତକରି ରଖିଛି । ଏହାଦ୍ୱାରା ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରିବା ପାଇଁ ତୁମେ ଅଧିକ ଉତ୍ସାହିତ ହେବ ବୋଲି ମୋଦ୍ୱାରା ଏହି ଉପାୟ ଅବଲମ୍ବନ କରାଯାଇଥିଲା । ବାୟୁର ବିନା ସହାୟତାରେ ଅଗ୍ନି ଭୟଙ୍କର ରୂପ ଧାରଣ କରି ପ୍ରଜ୍ୱଳିତ ହୁଏନାହିଁ ।'

ମୟଙ୍କ କଥାରେ ସମସ୍ତେ ଆନନ୍ଦ ଲାଭ କରନ୍ତେ ସେମାନେ ପୁଣି ପାତାଳରେ ପ୍ରବେଶ କଲେ, ସେ ତାଙ୍କ ପତ୍ନୀମାନଙ୍କ ସହ ସାକ୍ଷାତ କରାଇ ଦେଇପାରିବେ ବୋଲି ମୟ କଥା ଦେଲେ । ମୟଙ୍କ କଥା ଅନୁଯାୟୀ ସମସ୍ତେ ଯାଇ ଚତୁର୍ଥ ପାତାଳରେ ପ୍ରବେଶ କଲେ । ସେଠାରେ ଏକ ମଣିମୟ ପ୍ରାସାଦ ମଧ୍ୟରେ ବାସକରୁଥିବା ସୂର୍ଯ୍ୟପ୍ରଭଙ୍କ ସମସ୍ତ ସ୍ତ୍ରୀଙ୍କୁ ଆଣି ମୟ ତାଙ୍କ ସମ୍ମୁଖରେ ଉପସ୍ଥାପନ କଲେ । ସମସ୍ତ ମାନବ ଓ ଦାନବ ପତ୍ନୀଙ୍କ ସହ ମୟଙ୍କ ଉପଦେଶ କ୍ରମେ ସୂର୍ଯ୍ୟପ୍ରଭ ପ୍ରହ୍ଲାଦଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ ।

କଶ୍ୟପଙ୍କ ବରଦାନ କଥା ଶୁଣି ପ୍ରହ୍ଲାଦ ସୂର୍ଯ୍ୟପ୍ରଭଙ୍କୁ ପରୀକ୍ଷା କରିବା ସକାଶେ ମିଥ୍ୟା କ୍ରୋଧ ପ୍ରକାଶ ପୂର୍ବକ କହିଲେ, 'ପାପିଷ୍ଠ, ମୁଁ ଶୁଣିବାକୁ ପାଇଛି ଯେ ମୋର ଭାଇଙ୍କଦ୍ୱାରା ଅପହୃତ ବାରଜଣ କନ୍ୟାଙ୍କୁ ନେଇ ତୁ ଲୁକ୍କାୟିତ କରି ରଖିଅଛୁ । ତେଣୁ ମୁଁ ତୋତେ ଶାସ୍ତି ଦେବି ।' ଏଥିରେ ସୂର୍ଯ୍ୟପ୍ରଭ ଆଦୌ ବିଚଳିତ ନହୋଇ ବିନମ୍ର ଭାବରେ କହିଲେ, 'ମୋର ଶରୀର ଆପଣଙ୍କର ଅଧୀନ । ତେଣୁ ମୋପରି ଉଦ୍ଦଣ୍ଡକୁ ଆପଣ ଶାସନ କରନ୍ତୁ ।' ଏଥିରେ ପ୍ରହ୍ଲାଦ ଉତ୍‌ଫୁଲ୍ଲ ହୋଇ କହିଲେ, 'ମୁଁ ତୁମକୁ ପରୀକ୍ଷା କରିବା ପାଇଁ କେବଳ ଏପରି କହିଥିଲି । କିନ୍ତୁ ତୁମେ ତିଳେ ମାତ୍ର ବିଚଳିତ ହେଲ ନାହିଁ । ବର୍ତ୍ତମାନ ମୁଁ ତୁମ ଉପରେ ପ୍ରସନ୍ନ । ବର ପ୍ରାର୍ଥନା କର ।' ସୂର୍ଯ୍ୟପ୍ରଭ ପ୍ରୀତ ହୋଇ 'ଗୁରୁଜନ ଓ ଶିବଙ୍କ ନିକଟରେ ତାଙ୍କର ଅଚଳା ଭକ୍ତି ରହୁ' ବୋଲି ବର ପ୍ରାର୍ଥନା କରନ୍ତେ ପ୍ରହ୍ଲାଦ ଅତ୍ୟନ୍ତ ଆନନ୍ଦିତ ହୋଇ ବର ସଙ୍ଗେ ସଙ୍ଗେ ତାଙ୍କର ଦ୍ୱିତୀୟା କନ୍ୟା ଯାମିନୀକୁ ମଧ୍ୟ ତାଙ୍କ ହସ୍ତରେ ଅର୍ପଣ କଲେ । କେବଳ ସେତିକି ନୁହେ, ଯୁଦ୍ଧରେ ସହାୟତା କରିବା ଲାଗି ନିଜର ଦୁଇପୁତ୍ରଙ୍କୁ ମଧ୍ୟ ତାଙ୍କ ସହ ପ୍ରେରଣ କଲେ ।

ଏଠାରୁ ସୂର୍ଯ୍ୟପ୍ରଭ ଅମୀଳଙ୍କ ନିକଟକୁ ଗଲେ । ସେ ମଧ୍ୟ ବରପ୍ରାପ୍ତି ସମ୍ବାଦ ଲାଭ କରି ଆନନ୍ଦର ସହିତ ତାଙ୍କର ଦ୍ୱିତୀୟା କନ୍ୟା ସୁଖାବତୀଙ୍କୁ ଅର୍ପଣ ପୂର୍ବକ ଯୁଦ୍ଧରେ ସହାୟତା ନିମିତ୍ତ ଉଭୟ ପୁତ୍ରକୁ ପ୍ରଦାନ କଲେ ।

ଦୈତ୍ୟ ଓ ଦାନବ ମୁଖ୍ୟମାନଙ୍କର ଅକୁଣ୍ଠ ସାହାଯ୍ୟ ନିମିତ୍ତ ସେମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ସକାଶେ ସୂର୍ଯ୍ୟପ୍ରଭ କିଛିଦିନ ପାତାଳପୁରରେ ଅବସ୍ଥାନ କଲେ ।

ସେଠାରେ ମୟଙ୍କଠାରୁ ସେ ଶୁଣିବାକୁ ପାଇଲେ ଯେ ସୁନୀଥଙ୍କ ତିନିଜଣ ପତ୍ନୀଙ୍କ ସହ ସୂର୍ଯ୍ୟପ୍ରଭଙ୍କ ସମସ୍ତ ପତ୍ନୀଙ୍କର ଗର୍ଭୋଦୟ ହୋଇଅଛି । ଦୋହଦ ପୂରଣ କରିବାପାଇଁ ଚାହିଁବାରୁ ସମସ୍ତେ ଏକ ସ୍ୱରରେ କହିଲେ ଯେ ସେମାନେ ଏକ ମହାସମର ଦର୍ଶନ କରିବା ଚାହାଁନ୍ତି । ଏହା ଶୁଣି ମୟ ପ୍ରସନ୍ନ ଚିତ୍ତରେ ପ୍ରକାଶ କଲେ ଯେ ଯେଉଁ ଅସୁରମାନେ ପୂର୍ବେ ଦେବ-ଦାନବ ଯୁଦ୍ଧରେ ନିହତ ହୋଇଥିଲେ, ସେମାନେ ପୁଣି ଆସି ଏହି ପତ୍ନୀମାନଙ୍କ ଗର୍ଭରେ ରହିଅଛନ୍ତି ।

ଏହିପରି ଛଅ ଦିନ ଅତୀତ ହେଲା । ସପ୍ତମ ଦିବସରେ ମୟ, ସୂର୍ଯ୍ୟପ୍ରଭ ପ୍ରଭୃତି ସପରିବାର ରସାତଳରୁ ନିର୍ଗତ ହୋଇ ପୂର୍ବୋକ୍ତ ଗିରିଗହ୍ୱର ପ୍ରାନ୍ତରେ ଆସି ଉପସ୍ଥିତ ହେଲେ । ଏମାନେ ଆସି ସେଠାରେ ଉପସ୍ଥିତ ହେବା ମାତ୍ରେ ଏମାନଙ୍କର ସମସ୍ତ ଉଦ୍ୟମରେ ବିଘ୍ନ ସଂଘଟନ କରିବାପାଇଁ ବିଦ୍ୟାଧରମାନେ ମାୟାବଳରେ ସୁବାସକୁମାରଙ୍କୁ ଆଣି ହତ୍ୟା କଲେ ।

ଏହା ଦର୍ଶନ କରି ମୟ, ସୂର୍ଯ୍ୟପ୍ରଭ ପ୍ରଭୃତି ଚନ୍ଦ୍ରପ୍ରଭଙ୍କର ଦ୍ୱିତୀୟ ପୁତ୍ର ରତ୍ନପ୍ରଭଙ୍କୁ ସସାଗରା ଧରାର ଶାସନଭାର ପ୍ରଦାନ ପୂର୍ବକ ଭୂତାସନ ବିମାନ ପୃଷ୍ଠରେ ବିଦ୍ୟାଧରରାଜ ସୁମେରୁଙ୍କ ଗୃହରେ ଯାଇ ପହଞ୍ଚିଲେ । ସେଠାରୁ ମୟଙ୍କ ନିର୍ଦ୍ଦେଶ କ୍ରମେ ସେମାନେ ଗଙ୍ଗାତଟବର୍ତ୍ତୀ ତପୋବନ ମଧ୍ୟକୁ ଗଲେ । ସୁମେରୁ ମିତ୍ରଭାବରେ ଆସିଥିବା ବନ୍ଧୁମାନଙ୍କୁ ସାଦର ସମ୍ଭାଷଣ ଜଣାଇ ସ୍ୱାଗତ କଲେ ଏବଂ ମୟଙ୍କଠାରୁ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ଈଶ୍ୱରଙ୍କ ପୂର୍ବ ଆଦେଶ ସ୍ମରଣ କଲେ ।

ଏହି ସ୍ଥାନରେ ରହି ସୂର୍ଯ୍ୟପ୍ରଭ ନିଜର ସୈନ୍ୟବାହିନୀକୁ ଏକତ୍ର କରିବାକୁ ଲାଗିଲେ । ସର୍ବପ୍ରଥମେ ମୟଙ୍କ ସାହାଯ୍ୟରେ ସମସ୍ତ ବିଦ୍ୟାରେ ସିଦ୍ଧି ଲାଭ କରିଥିବା ସୂର୍ଯ୍ୟପ୍ରଭଙ୍କ ଶାଳକମାନେ ନିଜ ନିଜର ସେନା ସହ ଆସି ପହଞ୍ଚିଲେ । ସେମାନେ ସଂଖ୍ୟାରେ ଷୋହଳ ଥିଲେ ଏବଂ ପ୍ରତ୍ୟେକେ ଦଶ ଦଶ ହଜାର ରଥ ଏବଂ କୋଡ଼ିଏ କୋଡ଼ିଏ ହଜାର ପଦାତିକ ସେନାର ଅଧ୍ୟକ୍ଷ ଥିଲେ । ଏମାନଙ୍କ ପରେ ପରେ ପୂର୍ବ ପରିକଳ୍ପନା ଅନୁଯାୟୀ ସୂର୍ଯ୍ୟପ୍ରଭଙ୍କ ଶ୍ୱଶୁର, ଅନ୍ୟାନ୍ୟ ଶାଳକ ତଥା ବନ୍ଧୁ ଓ ମିତ୍ର ଦୈତ୍ୟ-ଦାନବମାନେ ଆସି ପୁଞ୍ଜୀଭୂତ ହେଲେ । ଏମାନଙ୍କ ନାମଥିଲା ହୃଷ୍ଟରୋମା, ମହାମାୟା, ସିଂହଦଂଷ୍ଟ୍ର, ପ୍ରକଂପନ, ତନ୍ତୁକଚ୍ଛ, ଦୁରାରୋହ, ସୁମାୟ, ବଜ୍ରପଞ୍ଜର, ଧୂମକେତୁ, ପ୍ରମଥନ, ବିକଟାକ୍ଷ । ଏମାନଙ୍କ ବ୍ୟତୀତ ସପ୍ତ ପାତାଳରୁ ଅନ୍ୟ ବହୁ ଦାନବ ଓ ଦୈତ୍ୟ ଆସିବାକୁ ଲାଗିଲେ । କାହା ସହିତ ଦଶ ହଜାର, କାହା ସହିତ ଆଠ ହଜାର ଏବଂ

ଅନ୍ୟ କାହା ସହିତ ସାତ ହଜାର ରଥ ଥିଲା । କିଏ ନିଜ ସହିତ ଛଅ ଲକ୍ଷ, କିଏ ତିନି ଲକ୍ଷ ଏବଂ କେହି କେହି ଅନ୍ୟୂନ ଛଅ ହଜାର ପଦାତିକ ନେଇ ଆସିଥିଲେ । ଏହା ବ୍ୟତୀତ ପ୍ରତ୍ୟେକଙ୍କ ସହ କିଛି କିଛି ଅଶ୍ୱ ଓ ହସ୍ତୀ ମଧ୍ୟ ଥିଲା । ମୟ ଓ ସୁନୀଥଙ୍କ ପ୍ରକାଣ୍ଡ ସେନାବାହିନୀ ମଧ୍ୟ ଆସି ଏଥିରେ ଯୋଗଦାନ କଲା । ସୂର୍ଯ୍ୟପ୍ରଭଙ୍କ ଅସଂଖ୍ୟ ସେନା, ବସୁଦତ୍ତ ତଥା ସୁମେରୁଙ୍କ ବିଦ୍ୟାଧର ସେନା ଏଥିରେ ସମ୍ମିଳିତ ହୋଇ ଏହାର ପରିମାଣକୁ ଆହୁରି ସମୃଦ୍ଧ କଲା ।

ସେନାବାହିନୀ ଏକତ୍ର ହୁଅନ୍ତେ ମୟ କଶ୍ୟପଙ୍କ ପୁତ୍ର ସୁବାସ କୁମାରଙ୍କୁ ସ୍ମରଣ କଲେ । ସେ ଆସି ଏମାନଙ୍କ ସହ ଯୋଗଦାନ କରନ୍ତେ ସୂର୍ଯ୍ୟପ୍ରଭ ତାଙ୍କୁ ପ୍ରାର୍ଥନା କଲେ, 'ଭଗବନ୍, ମୋର ଏହି ସେନା ଇତସ୍ତତଃ ବିକ୍ଷିପ୍ତ ହୋଇ ରହିଥିବାରୁ ମୁଁ ଏମାନଙ୍କୁ ଏକତ୍ର ଦର୍ଶନ କରିପାରୁନାହିଁ । ତେଣୁ କେଉଁ ସ୍ଥାନରୁ ଏହାକୁ ସମ୍ପୂର୍ଣ୍ଣ ରୂପେ ଦେଖି ହେବ ଦୟାକରି କହିବା ହୁଅନ୍ତୁ ।' ମୁନିକୁମାର ସେ ସ୍ଥାନରୁ ଚାରି ଯୋଜନ ଦୂରରେ ଥିବା କଳାପ ଗ୍ରାମ ନାମକ ଏକ ବିସ୍ତୃତ ଭୂଭାଗ ଉପରେ ଦଣ୍ଡାୟମାନ ହେଲେ ସମଗ୍ର ସେନା ବାହିନୀ ଦୃଷ୍ଟିଗୋଚର ହେବ ବୋଲି ନିର୍ଦ୍ଦେଶ ଦେବାରୁ ସୁମେରୁ ପ୍ରଭୃତି ନିଜ ନିଜ ସେନାବାହିନୀ ସହ ସେଠାରେ ଯାଇ ପହଞ୍ଚିଲେ । ସେଠାରେ ଥିବା ଏକ ଉଚ୍ଚ ସ୍ଥାନ ଉପରୁ ସେମାନେ ଅସୁର ଓ ରାଜାମାନଙ୍କର ସେନାବାହିନୀକୁ ଭିନ୍ନ ଭିନ୍ନ ଭାବରେ ଦେଖିବା ପାଇଁ ସମର୍ଥ ହେଲେ ।

ସୁମେରୁ ସମଗ୍ର ସେନାବାହିନୀ ଉପରେ ଦୃଷ୍ଟିପାତ କରି କହିଲେ, 'ଶ୍ରୁତଶର୍ମାଙ୍କ ସୈନ୍ୟ ସଂଖ୍ୟା ଆମ ଅପେକ୍ଷା ଅଧିକ । ତାଙ୍କ ଅଧୀନରେ ଏକଶତ ଏକ ବିଦ୍ୟାଧର ରାଜା ଅଛନ୍ତି । ଏମାନେ ଜଣେ ଜଣେ ବତିଶ ବତିଶ ବିଦ୍ୟାଧରଙ୍କ ମୁଖ୍ୟ ଅଟନ୍ତି । ମୁଁ ସେମାନଙ୍କ ମଧ୍ୟରୁ କେତେଜଣକୁ ଚେଷ୍ଟାକରି ଆମର ଦଳଭୁକ୍ତ କରିବି । ତେଣୁ ଆମେ କାଲି ପ୍ରାତଃକାଳରୁ ବଲ୍ମୀକ ନାମକ ସ୍ଥାନକୁ ଯିବା । କାଲି ଫାଲ୍‌ଗୁନ କୃଷ୍ଣ ଅଷ୍ଟମୀ । ଏ ତିଥିରେ ସାଧାରଣତଃ ବିଦ୍ୟାଧର ଚକ୍ରବର୍ତ୍ତୀ ଲକ୍ଷଣ ଉତ୍ପନ୍ନ ହୁଏ । ତେଣୁ ସମସ୍ତ ବିଦ୍ୟାଧର ଉକ୍ତଦିନ ସେଠାରେ ଆସି ଏକତ୍ର ହୁଅନ୍ତି ।'

ସୁମେରୁଙ୍କ ବାକ୍ୟରେ ବିଶ୍ୱାସ କରି ସମସ୍ତେ ପ୍ରଭାତରୁ ସେନା ସଜ୍ଜିତ କରି ରଥ ଆରୋହଣ ପୂର୍ବକ ବଲ୍ମୀକ ଗ୍ରାମ ଅଭିମୁଖରେ ଯାତ୍ରା କଲେ । ହିମାଳୟର ଦକ୍ଷିଣ ଶିଖର ଉପରେ ବିଦ୍ୟାଧରମାନଙ୍କର ସେନା ସେମାନଙ୍କର ଦୃଷ୍ଟିଗୋଚର ହେଲା । ସେମାନଙ୍କ ମଧ୍ୟରୁ କେତେକ ଅଗ୍ନିକୁଣ୍ଡ ସ୍ଥାପନା କରି ଯଜ୍ଞ କରୁଥାଆନ୍ତି ଏବଂ ଅନ୍ୟ କେତେକ ଜପ କରୁଥାଆନ୍ତି ।

ସେମାନଙ୍କୁ ଅନୁସରଣ କରି ସୂର୍ଯ୍ୟପ୍ରଭ ମଧ୍ୟ ଅଗ୍ନିକୁଣ୍ଡଟିଏ ସ୍ଥାପନ କଲେ । ଏହାଙ୍କ ବିଦ୍ୟା ପ୍ରଭାବରେ ତାହା ମଧ୍ୟରେ ସ୍ୱୟଂ ଅଗ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠିଲା । ଏଥିରେ ସୁମେରୁ ପ୍ରଭୃତ ଆନନ୍ଦ ଲାଭ କଲେ ଏବଂ ବିଦ୍ୟାଧରମାନେ ଈର୍ଷ୍ୟାରେ ଜଳି ଉଠିଲେ । ସେମାନଙ୍କ ମଧ୍ୟରୁ ଜଣେ ସୁମେରୁ ବିଦ୍ୟାଧର ରାଜତ୍ୱ ପରିତ୍ୟାଗ କରି ମନୁଷ୍ୟମାନଙ୍କୁ ଅନୁସରଣ କରୁଛନ୍ତି ବୋଲି ତାଙ୍କୁ ଧିକ୍କାର କରିବାକୁ ଲାଗିଲା ।

ଏହା ଶୁଣି ସୁମେରୁ ତାକୁ ଯଥେଷ୍ଟ ଭର୍ତ୍ସନା କଲେ ଏବଂ ସୂର୍ଯ୍ୟପ୍ରଭ ତାର ପରିଚୟ ଜିଜ୍ଞାସା କରନ୍ତେ ଉତ୍ତରରେ କହିଲେ, 'ଭୀମ ନାମରେ ଏକ ବିଦ୍ୟାଧର ଅଛି । ତା ସ୍ତ୍ରୀ ସହ ବ୍ରହ୍ମା ଗୁପ୍ତରେ କାମ କ୍ରୀଡ଼ା କରନ୍ତେ ଏହାର ଜନ୍ମ । ଏଣୁ ଏହାର ନାମ ରଖାଯାଇଛି ବ୍ରହ୍ମଗୁପ୍ତ । ତେଣୁ ନିଜର ଜନକ ତୁଲ୍ୟ ଏ ମଧ୍ୟ ବାକ୍ୟ ବ୍ୟବହାର କରୁଅଛି ।'

ଏହା କହି ସୁମେରୁ ନିଜେ ଏକ ଅଗ୍ନିକୁଣ୍ଡ ନିର୍ମାଣ କଲେ । ସୂର୍ଯ୍ୟପ୍ରଭ ଏହାଙ୍କ ସହ ଯୋଗଦାନ କରି ସେହି ଅଗ୍ନିକୁଣ୍ଡ ମଧ୍ୟରେ ଯଜ୍ଞାହୂତି ଦେବାକୁ ଲାଗିଲେ । ମୁହୂର୍ତ୍ତକ ମଧ୍ୟରେ ନିକଟସ୍ଥ ଗୋଟିଏ ବିଳ ମଧ୍ୟରୁ ଏକ ଭୀଷଣାକାର ଅଜଗର ସର୍ପ ନିର୍ଗତ ହେଲା । ତାକୁ ଦେଖିବା ମାତ୍ରେ ବିଦ୍ୟାଧର-ଅଧିପତି ବ୍ରହ୍ମଗୁପ୍ତ (ଯେ ସୁମେରୁଙ୍କୁ ଅପାମନ ସୂଚକ ବାକ୍ୟ କହିଥିଲା) ଗର୍ବର ସହିତ ତାକୁ ଧରିବା ସକାଶେ ଅଗ୍ରସର ହେଲା । କିନ୍ତୁ ଅଜଗରର ଗୋଟିଏ ଫୁତ୍କାରରେ ସେ ଶୁଷ୍କ ପତ୍ର ତୁଲ୍ୟ ଶହେ ହାତ ଦୂରରେ ଯାଇ ପଡ଼ିଲା । ଏହା ଦେଖି ବିଦ୍ୟାଧର ରାଜ ତେଜପ୍ରଭ ତାକୁ ଧରିବା ପାଇଁ ଚେଷ୍ଟା କଲେ । କିନ୍ତୁ ସେ ମଧ୍ୟ ତା'ର ଫୁତ୍କାରରେ ଉଡ଼ିଗଲେ । ଦୁଷ୍ଟଦମନ ମଧ୍ୟ ଧରିବାକୁ ଯାଇ ସେହି ଦଶା ଲାଭ କଲେ । ଏହାଙ୍କ ପରେ ବିରୂପଶକ୍ତି ନାମକ ବିଦ୍ୟାଧର ଅଧିପତି ତା' ନିକଟକୁ ଯାଇ ତୃଣ ତୁଲ୍ୟ ଦୂରକୁ ନିକ୍ଷିପ୍ତ ହେଲେ । ଏହାପରେ ଅନ୍ୟ କେତେକ ବିଦ୍ୟାଧରାଧିପତି ସାହସ ଓ ଗର୍ବର ସହିତ ଉକ୍ତ ସର୍ପଟିକୁ ଆୟତ୍ତ କରିବା ପାଇଁ ପ୍ରଯତ୍ନ କରି ଏପରି ଭାବରେ ପରାହତ ହେଲେ ଯେ ସେମାନେ ଆଉ ଉଠିବା ପାଇଁ ସମର୍ଥ ହେଲେ ନାହିଁ । ଏ ସମସ୍ତ ଅବଲୋକନ କରି ଶେଷରେ ନିଜେ ଶ୍ରୁତଶର୍ମା ତାକୁ ଧରିବା ପାଇଁ ଦୌଡ଼ି ଗଲେ, କିନ୍ତୁ ଅଜଗର ନିଜର ନିଶ୍ୱାସ ବାୟୁଦ୍ୱାରା ତାଙ୍କୁ ବହୁ ଦୂରରେ ନିକ୍ଷେପ କଲା ।

ବିଦ୍ୟାଧର-ଅଧିପତିମାନେ କ୍ଷତବିକ୍ଷତ ଏବଂ ଶ୍ରୁତଶର୍ମା ଅପମାନିତ ଓ ଲଜ୍ଜିତ ହୋଇ ଫେରିବା ପରେ ସୁମେରୁଙ୍କ ନିର୍ଦ୍ଦେଶରେ ସୂର୍ଯ୍ୟପ୍ରଭ ସର୍ପପ୍ରତି ଅଗ୍ରସର ହେଲେ । ଏହା ଦେଖି ବିଦ୍ୟାଧରମାନେ ଉପହାସ କରି କହିଲେ, 'ଦେଖ, ଶେଷରେ ଏହି ମାନବ ମଧ୍ୟ ସର୍ପଟିକୁ ଧରିବା ପାଇଁ ଅଗ୍ରସର ହେଲାଣି । ଏ ମର୍କଟ ତୁଲ୍ୟ ବିଚାରହୀନ । ଅନ୍ୟମାନେ ଯାହା କରୁଛନ୍ତି, ଏ ତାକୁ ଅନୁକରଣ କରିବା ପାଇଁ ଚେଷ୍ଟା କରୁଛି ମାତ୍ର ।'

ଏମାନେ ଏପରି ଉପହାସ କରୁଥିବା ସମୟରେ ସୂର୍ଯ୍ୟପ୍ରଭ ନିର୍ବିକାର ଭାବରେ ଯାଇ ସର୍ପଟିକୁ ବିଳମଧ୍ୟରୁ ବାହାର କରି ଆଣିଲେ । ଏ ସମୟରେ ଆକାଶରୁ ପୁଷ୍ପବୃଷ୍ଟି ହେଲା ଏବଂ ସର୍ପଟି ଗୋଟିଏ ତୂଣୀର (ଶରମୁଣି)ରେ ପରିଣତ ହେବା ସଙ୍ଗେ ସଙ୍ଗେ ଦିବ୍ୟବାଣୀ ଶୁଣାଗଲା, 'ସୂର୍ଯ୍ୟପ୍ରଭ, ଏହି ଅକ୍ଷୟ ତୂଣୀର-ରତ୍ନ ତୁମର ସିଦ୍ଧ ହେଲା; ତୁମେ ଏହାକୁ ଗ୍ରହଣ କର ।' ଏଥିରେ ସମସ୍ତ ବିଦ୍ୟାଧର ମ୍ଳାନ ଓ ଲଜ୍ଜିତ ହୋଇ ପଡ଼ିଲେ । ସୂର୍ଯ୍ୟପ୍ରଭ ତାକୁ ଆଦରର ସହିତ ଗ୍ରହଣ କରନ୍ତେ ମୟ, ସୁନୀଥ ପ୍ରଭୃତି ଅତ୍ୟନ୍ତ ଆନନ୍ଦ ଲାଭ କଲେ ।

ବିଦ୍ୟାଧର ସେନା ସହ ଶ୍ରୁତଶର୍ମା ପରାଜିତ ହୋଇ ଚାଲିଯିବା ପରେ ତାର ଦୂତ ଆସି ସୂର୍ଯ୍ୟପ୍ରଭଙ୍କୁ ଜଣାଇଲେ, 'ମୋର ପ୍ରଭୁ ଶ୍ରୁତଶର୍ମା ଆପଣଙ୍କୁ ଆଦେଶ ପ୍ରଦାନ କରିଅଛନ୍ତି ଯେ ଯଦି ଆପଣଙ୍କର ଜୀବନ ପ୍ରତି ମମତା ଥାଏ, ତା' ହେଲେ ଏହି ତୂଣୀର-ରତ୍ନଟି ତାଙ୍କୁ ସମର୍ପଣ କରନ୍ତୁ ।' ସୂର୍ଯ୍ୟପ୍ରଭ ଏହାର ଉତ୍ତରରେ କହିଲେ, 'ତୁମେ ଯାଇ ତାଙ୍କୁ କହ ଯେ ମୋର ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ତାଙ୍କର ମସ୍ତକ ବିଚ୍ଛିନ୍ନ ହେଲେ, ତାହା ମଧ୍ୟ ଏକ ତୂଣୀରରେ ପରିଣତ ହେବ ।' ଉତ୍ତର ନେଇ ଦୂତ ଫେରିଯିବା ପରେ ଶ୍ରୁତଶର୍ମାଙ୍କ ମୂର୍ଖତାରେ ସମସ୍ତେ ହସିବାକୁ ଲାଗିଲେ ।

ସୁମେରୁ ଆନନ୍ଦାତିଶଯ୍ୟରୁ ସୂର୍ଯ୍ୟପ୍ରଭଙ୍କୁ ଆଲିଙ୍ଗନ କରି କହିଲେ, 'ସୌଭାଗ୍ୟବଶତଃ ଆଜି ହିଁ ଭଗବାନ୍ ଈଶ୍ୱରଙ୍କ ବାକ୍ୟ ଚରିତାର୍ଥ ହେଲା । ଏହି ତୂଣୀର ସିଦ୍ଧ ହେବାଦ୍ୱାରା ବିଦ୍ୟାଧର ଚକ୍ରବର୍ତ୍ତୀ ପଦବୀ ମଧ୍ୟ ସିଦ୍ଧ ହେଲା । ବର୍ତ୍ତମାନ ଆସ ଧନୁଷ-ରତ୍ନ ସିଦ୍ଧ କରିବା ।' ସୁମେରୁଙ୍କ ନିର୍ଦ୍ଦେଶ ଅନୁଯାୟୀ ଅନ୍ୟମାନେ ତାଙ୍କର ଅନୁସରଣ କରି ହେମକୂଟ ପର୍ବତରେ ଯାଇ ପହଞ୍ଚିଲେ । ସେମାନେ ଏହାର ଉତ୍ତର ପ୍ରାନ୍ତରେ ଥିବା ମାନସସରୋବର ଦର୍ଶନ କରି ଭାବିଲେ ଯେ ବିଧାତା ସମୁଦ୍ର ନିର୍ମାଣ ପୂର୍ବରୁ ଏହାକୁ ବୋଧହୁଏ ନମୁନା ରୂପେ ସୃଷ୍ଟି କରିଥିଲା । ଏହା ମଧ୍ୟରେ ଜଳକ୍ରୀଡ଼ା କରୁଥିବା ଦେବାଙ୍ଗନାମାନଙ୍କର ମୁଖକାନ୍ତିକୁ ଗୁପ୍ତ କରିବାପାଇଁ ଏଥିରେ ଅସଂଖ୍ୟ ପ୍ରଫୁଲ୍ଲିତ ରକ୍ତକମଳ ଶୋଭା ପାଉଥିଲା । ସେମାନେ ଏହାର ଶୋଭା ସନ୍ଦର୍ଶନ କରୁଥିବା ସମୟରେ ଶ୍ରୁତଶର୍ମା ପ୍ରଭୃତି ବିଦ୍ୟାଧରମାନେ ସେଠାରେ ଆସି ପୁଣି ଉପସ୍ଥିତ ହେଲେ ।

ସେହି ମାନସସରୋବର ନିକଟରେ ସୂର୍ଯ୍ୟପ୍ରଭ ଓ ବିଦ୍ୟାଧରମାନେ ଘୃତ ଓ କମଳଦ୍ୱାରା ହବନ କରନ୍ତେ କ୍ଷଣକମଧ୍ୟରେ ସରୋବର ମଧ୍ୟରୁ ଏକ ବିଶାଳ ଓ ଭୀଷଣ କୃଷ୍ଣ ମେଘଖଣ୍ଡ ଉତ୍ଥିତ ହେଲା । ଏହି ମେଘ ଆକାଶକୁ ଉଠି ମୂଷଳଧାରାରେ ବୃଷ୍ଟି

କରିବାକୁ ଲାଗିଲା । ଏହି ବୃଷ୍ଟିଧାରା ସହିତ ସେହି ମେଘ ଖଣ୍ଡରୁ ଏକ ଭୟଙ୍କର କୃଷ୍ଣ ସର୍ପ ଭୂପୃଷ୍ଠରେ ନିପତିତ ହେଲା । ସୁମେରୁଙ୍କ ନିର୍ଦ୍ଦେଶରେ ସୂର୍ଯ୍ୟପ୍ରଭ ତାକୁ ଦୃଢ଼ ଭାବରେ ଧାରଣ କରି ବାଣବିଦ୍ଧ କରନ୍ତେ ସର୍ପଟି ଏକ ଧନୁରେ ପରିଣତ ହେଲା । ପ୍ରଥମଟି ଧନୁରେ ପରିଣତ ହେବା ପରେ ସେହି କୃଷ୍ଣମେଘରୁ ଅନ୍ୟ ଏକ ସର୍ପ ଭୂମିଷ୍ଠ ହେଲା । ତାର ମୁଖରୁ ନିର୍ଗତ ହେଉଥିବା ବିଷ ଓ ଅଗ୍ନି ଦେଖି ଆକାଶଚାରୀ ବିଦ୍ୟାଧରମାନେ ଭୟରେ ପ୍ରକମ୍ପିତ ହେବାକୁ ଲାଗିଲେ । ସୂର୍ଯ୍ୟପ୍ରଭ ପ୍ରଥମ ସର୍ପ ତୁଲ୍ୟ ଦ୍ୱିତୀୟଟିକୁ ଧାରଣ କରିବା ମାତ୍ରେ ତାହା ଧନୁର୍ଗୁଣରେ ପରିଣତ ହେଲା ଏବଂ ମେଘଖଣ୍ଡଟି ମଧ୍ୟ ଅଦୃଶ୍ୟ ହୋଇଗଲା । ଏ ସମୟରେ ଦିବ୍ୟବାଣୀ ଶୁଣାଗଲା, 'ସୂର୍ଯ୍ୟପ୍ରଭ, ଏହି ଅନନ୍ତବଳଶାଳୀ ଧନୁଟି ତୁମ ପାଇଁ ସିଦ୍ଧ ହେଲା ଏବଂ ଏହି ଅଚ୍ଛେଦ୍ୟ ଗୁଣ ମଧ୍ୟ ତୁମର ପ୍ରାପ୍ତ ହେଲା । ଏ ଉଭୟକୁ ତୁମେ ସ୍ୱୀକାର କର ।' ଏହା ଶ୍ରବଣ ମାତ୍ରେ ସୂର୍ଯ୍ୟପ୍ରଭ ଏଗୁଡ଼ିକୁ ଗ୍ରହଣ କରି ପ୍ରଭୂତ ଆନନ୍ଦ ଲାଭ କଲେ ଏବଂ ଶ୍ରୁତଶର୍ମା ବ୍ୟାକୁଳ ଓ ଦୁଃଖିତ ହୋଇ ନୈରାଶ୍ୟପୂର୍ଣ୍ଣ ଚିତ୍ତରେ ତପୋବନ ମଧ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ମୟ, ସୁନୀଥ ପ୍ରଭୃତି ମଧ୍ୟ ହର୍ଷ ପ୍ରକାଶ ପୂର୍ବକ ସୂର୍ଯ୍ୟପ୍ରଭଙ୍କୁ ଧନ୍ୟ ଧନ୍ୟ କଲେ ।

ଏ ଧନୁର ଉତ୍ପତ୍ତି ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ସୁମେରୁ ସେମାନଙ୍କୁ କହିଲେ, 'ଏଠାରେ ଏକ ବିଶାଳ ଓ ଦିବ୍ୟ କୀଚକ (ବାଉଁଶ) ବନ ଅଛି । ସେଥିରୁ ବିରାଟ ବିରାଟ ବଂଶଖଣ୍ଡ କର୍ତ୍ତନ କରି ଏହି ସରୋବର ମଧ୍ୟରେ ନିକ୍ଷେପ କଲେ ସେଗୁଡ଼ିକ ଦିବ୍ୟ ଧନୁରେ ପରିଣତ ହୁଅନ୍ତି । ଏହି ଧନୁଗୁଡ଼ିକ ପ୍ରଥମେ ଦେବତା, ଅସୁର, ଗନ୍ଧର୍ବ ତଥା ବିଦ୍ୟାଧରମାନେ ସିଦ୍ଧ କରିଥିଲେ । ଏଗୁଡ଼ିକ ବିଭିନ୍ନ ନାମରେ ପରିଚିତ, ପୂର୍ବେ ଏହି ସରୋବରରେ ଦେବତାମାନେ ଅମୃତବଳ ନାମରେ ଏକ ଧନୁ ରଖିଥିଲେ । ଏହା ଏକ ଚକ୍ରବର୍ତ୍ତୀ ଯୋଗ୍ୟ ଧନୁ, ତାହା ବହୁକଷ୍ଟରେ ଈଶ୍ୱରଙ୍କ କୃପାଲାଭ ଦ୍ୱାରା ଭାବୀଚକ୍ରବର୍ତ୍ତୀମାନଙ୍କ ପାଇଁ ସିଦ୍ଧ ହୋଇଥାଏ । ଏହି ଚକ୍ରବର୍ତ୍ତୀ ଯୋଗ୍ୟ ଧନୁ ଆଜି ସୂର୍ଯ୍ୟପ୍ରଭ ଲାଭ କରିପାରିଛନ୍ତି । ଏଣୁ ବର୍ତ୍ତମାନ ପ୍ରଭାସ ପ୍ରହସ୍ତ ପ୍ରଭୃତି ମିତ୍ରମାନେ ନିଜ ନିଜର ଯଥାଯୋଗ୍ୟ ଧନୁ ନିମିତ୍ତ ସାଧନା କରନ୍ତୁ । ଯେଉଁ ସିଦ୍ଧବିଦ୍ୟାକୁଶଳୀ ବୀରମାନେ ଏଥିପାଇଁ ଯୋଗ୍ୟ ବିବେଚିତ ହେବେ ସେମାନେ ଆଜି ହିଁ ଏହି ଧନୁ ସିଦ୍ଧ କରିପାରିବେ ।'

ସୁମେରୁଙ୍କ ବାକ୍ୟ ଶ୍ରବଣରେ ସୂର୍ଯ୍ୟପ୍ରଭଙ୍କ ମିତ୍ର ପ୍ରଭାସ, ପ୍ରହସ୍ତ ପ୍ରଭୃତି ବାଂଶ ବଣରେ ପ୍ରବେଶ କରି ଏବଂ ଏହାର ରକ୍ଷକ ଚଣ୍ଡ ଦଣ୍ଡଙ୍କୁ ଜୟ କରି କିଛି ବଂଶ ଦଣ୍ଡ

କର୍ତ୍ତନ କରି ଆଣିଲେ ଏବଂ ସେଗୁଡ଼ିକୁ ସରୋବର ମଧ୍ୟରେ ନିକ୍ଷେପ କଲେ । ଏହାପରେ ସେମାନେ ସରୋବର ତଟରେ ବସି ଜପ ଓ ହୋମ ଆରମ୍ଭ କଲେ । ଫଳରେ ଏହି ସତ୍ତ୍ୱଶୀଳ ମିତ୍ରମାନେ ମଧ ଏକ ସପ୍ତାହ ମଧ୍ୟରେ ଧନୁସିଦ୍ଧ ହୋଇଗଲେ । ଏ ସମ୍ବାଦ ଲାଭକରି ସୂର୍ଯ୍ୟପ୍ରଭ ମିତ୍ର ଓ ମୟଙ୍କ ସହ ସୁମେରୁଙ୍କ ତପୋବନକୁ ପ୍ରତ୍ୟାବର୍ତ୍ତନ କରିଗଲେ ।

ସେଠାରେ ସୁମେରୁ ଏମାନଙ୍କ ସିଦ୍ଧି ଲାଭ ସମ୍ବାଦରେ ବିସ୍ମିତ ହୋଇ ସୂର୍ଯ୍ୟପ୍ରଭଙ୍କୁ କହିଲେ, 'ତୁମର ମିତ୍ରମାନେ ବେଣୁଦଣ୍ଡର ରକ୍ଷକ ଚଣ୍ଡଦଣ୍ଡକୁ ଜୟ କରିବା ଆଶ୍ଚର୍ଯ୍ୟର ବିଷୟ । ସେ ମୋହିନୀ ବିଦ୍ୟାର ଅଧିକାରୀ ହୋଇଥିବା ଯୋଗୁଁ ଅଜେୟ । ମୋର ବିଶ୍ୱାସ, ସେ ଏହାକୁ ନିଜର ପ୍ରଧାନ ଶତ୍ରୁ ବିରୁଦ୍ଧରେ ପ୍ରୟୋଗ କରିବେ ବୋଲି ବୋଧହୁଏ ସୁରକ୍ଷିତ ରଖିଛନ୍ତି । ଏଣୁ ତୁମର ମିତ୍ରମାନଙ୍କ ପ୍ରତି ଏହା ପ୍ରୟୋଗ କରାଯାଇନାହିଁ । କାରଣ ସେ ଏହାକୁ ଥରେ ମାତ୍ର ପ୍ରୟୋଗ କରିପାରିବେ, ବାରମ୍ବାର ନୁହେ । ଚଣ୍ଡଦଣ୍ଡ ଏହି ବିଦ୍ୟାର ପରୀକ୍ଷା ନିମିତ୍ତ ପ୍ରଥମେ ଏହାକୁ ଗୁରୁଙ୍କ ଉପରେ ପ୍ରୟୋଗ କରିଥିଲେ । ଏଣୁ ଗୁରୁ ଏ ପ୍ରକାର ଶାପ ପ୍ରଦାନ କରିଛନ୍ତି । ଏହି ବିଦ୍ୟା ବହୁ କଷ୍ଟରେ ଆୟତ୍ତାଧୀନ ହୋଇଥାଏ । ଏହାର କାରଣ ଆପଣ ମୟଙ୍କୁ ପଚାରନ୍ତୁ । ତାଙ୍କ ଉପସ୍ଥିତିରେ ମୁଁ ବା ଏ ସମ୍ପର୍କରେ କ'ଣ କହିବି ? ସୂର୍ଯ୍ୟଙ୍କ ସମ୍ମୁଖରେ ଦୀପର ସ୍ଥିତି କେଉଁଠି ?'

**କଃ ପ୍ରଦୀପୋ ରବେଃ ପୁରଃ ।**

ସୁମେରୁଙ୍କଠାରୁ ଏହା ଶୁଣି ମୟ ଆରମ୍ଭ କଲେ, 'ସୁମେରୁ ଯଥାର୍ଥ କହିଛନ୍ତି । ମୁଁ ଏ ସମ୍ପର୍କରେ ସଂକ୍ଷେପରେ କହୁଛି ଶୁଣନ୍ତୁ । ଅବ୍ୟକ୍ତ ପରମାତ୍ମାଙ୍କଠାରୁ ଶକ୍ତି ଓ ଅନୁଶକ୍ତି ସମୂହ ଉତ୍ପନ୍ନ ହୁଅନ୍ତି । ତାଙ୍କଠାରୁ ପୁଣି ବିନ୍ଦୁମାର୍ଗକୁ ଆଶ୍ରୟ କରି ପ୍ରାଣଶକ୍ତିର ଉଦ୍ଭବ ଘଟେ । ପରତତ୍ତ୍ୱ କଳା ଯୁକ୍ତ ହୋଇ ମନ୍ତ୍ର ବିଦ୍ୟା ରୂପେ ପ୍ରାପ୍ତ ହୁଏ । ଏହି ମନ୍ତ୍ର ବିଦ୍ୟାଗୁଡ଼ିକ ଜ୍ଞାନ, ତପସ୍ୟା କିମ୍ବା ସିଦ୍ଧମାନଙ୍କର ବର ପ୍ରଭାବରେ ଅନତିକ୍ରମ ପ୍ରଭାବାନ୍ୱିତ ହୁଅନ୍ତି । ବତ୍ସ, ତୁମେ ତ ଅଧିକାଂଶ ବିଦ୍ୟା ସାଧନା କରି ସିଦ୍ଧିଲାଭ କରିଅଛ । କିନ୍ତୁ ବର୍ତ୍ତମାନ ସୁଦ୍ଧା ଦୁଇଟି ବିଦ୍ୟା ତୁମର ଆୟତ୍ତ ହୋଇନାହିଁ । ଗୋଟିଏ ମୋହିନୀ ଏବଂ ଅନ୍ୟଟି ପରିବର୍ତ୍ତିନୀ । ଏ ଦୁଇଟି ବିଦ୍ୟା ମହର୍ଷି ଯାଜ୍ଞବଲ୍‌କ୍ୟ ଜାଣନ୍ତି । ତେଣୁ ତାଙ୍କ ନିକଟକୁ ଯାଇ ପ୍ରାର୍ଥନା କର ଏବଂ ଏଥିରେ ସିଦ୍ଧି ଲାଭକର ।'

ସୁମେରୁଙ୍କଠାରୁ ଏହା ଶ୍ରବଣ କରି ସୂର୍ଯ୍ୟପ୍ରଭ ମହର୍ଷି ଯାଜ୍ଞବଲ୍‌କ୍ୟଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ସେ ସୂର୍ଯ୍ୟପ୍ରଭଙ୍କୁ ସାତଦିନ ଭୁଜଗହ୍ରଦ ମଧ୍ୟରେ ଏବଂ ତିନିଦିନ

ଅଗ୍ନି ମଧ୍ୟରେ ତପସ୍ୟା କରାଇଲେ । ଫଳରେ ସେ ସାତଦିନରେ ମୋହିନୀ ଏବଂ ତିନିଦିନରେ ବିପରିବର୍ତ୍ତିନୀ ବିଦ୍ୟାରେ ସିଦ୍ଧି ଲାଭ କଲେ । ଏହାପରେ ମୁନି ପୁଣି ତାଙ୍କୁ ଅଗ୍ନିକୁଣ୍ଡ ମଧ୍ୟରେ ପ୍ରବେଶ କରିବା ପାଇଁ ନିର୍ଦ୍ଦେଶ ପ୍ରଦାନ କଲେ । ଆଦେଶ ପାଳନ କରିବା ମାତ୍ରେ ସେ ମହାପଦ୍ମ ନାମକ ମନୋଗାମୀ ଆକାଶଚାରୀ ବିମାନ ଲାଭ କଲେ । ଏହା ଅଷ୍ଟୋତ୍ତର ଶତ ଦଳବିଶିଷ୍ଟ । ଏହାର ପ୍ରତ୍ୟେକ ଦଳରେ ଗୋଟିଏ ଗୋଟିଏ ନଗର ଶୋଭା ପାଉଥିଲା । ଏ ନଗରଗୁଡ଼ିକ ବିବିଧ ମଣିମୁକ୍ତା ଦ୍ୱାରା ଖଚିତ ହୋଇ ଦର୍ଶକର ବିସ୍ମୟ ଉତ୍ପାଦନ କରୁଥିଲେ । ଏ ବିମାନ ଲାଭ କରିବା ସମୟରେ ଦିବ୍ୟ ବାଣୀ ଶୁଣାଗଲା, 'ଏହି ଚକ୍ରବର୍ତ୍ତୀ ବିମାନ ତୁମର ସିଦ୍ଧ ହେଲା । ଏହାର ପ୍ରତ୍ୟେକ ନଗରରେ ତୁମର ରାଣୀମାନଙ୍କୁ ରକ୍ଷାକଲେ ସେମାନେ କଦାପି ଶତ୍ରୁଦ୍ୱାରା ଆକ୍ରାନ୍ତ ହେବେ ନାହିଁ ।'

ଉଭୟ ବିଦ୍ୟା ଓ ବିମାନ ଲାଭକରି ସୂର୍ଯ୍ୟପ୍ରଭ ମହର୍ଷିଙ୍କୁ ଗୁରୁଦକ୍ଷିଣା ପ୍ରଦାନ କରିବା ସକାଶେ ଚାହିଁବାରେ ସେ କହିଲେ, 'ତୁମର ଚକ୍ରବର୍ତ୍ତୀ ଅଭିଷେକ ସମୟରେ ମୋତେ ସ୍ମରଣ କରିବ; ଏହା ହିଁ ମୋର ଗୁରୁଦକ୍ଷିଣା । ବର୍ତ୍ତମାନ ତୁମେ ତୁମର ଶିବିରକୁ ପ୍ରତ୍ୟାବର୍ତ୍ତନ କର ।'

ମହର୍ଷିଙ୍କ ବାକ୍ୟ ଶ୍ରବଣ କରି ସୂର୍ଯ୍ୟପ୍ରଭ ପ୍ରଣାମ ପୂର୍ବକ ବିମାନ ପୃଷ୍ଠରେ ସୁମେରୁଙ୍କ ଆଶ୍ରମସ୍ଥିତ ନିଜର ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ମୟ, ସୁନୀଥ ପ୍ରଭୃତିଙ୍କୁ ନିଜର ବିଦ୍ୟା ଓ ବିମାନ ପ୍ରାପ୍ତିର ସମାଚାର ବର୍ଣ୍ଣନା କରନ୍ତେ ସେମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ ।

ଏହାପରେ ସୁନୀଥ ସ୍ମରଣ କରିବା ମାତ୍ରେ ସୁବାସକୁମାର ସେଠାରେ ଉପସ୍ଥିତ ହୋଇ ରାଜାମାନଙ୍କୁ କହିଲେ, 'ବର୍ତ୍ତମାନ ତ ସୂର୍ଯ୍ୟପ୍ରଭ ବିମାନ ଲାଭ ପୂର୍ବକ ସମସ୍ତ ବିଦ୍ୟା ସିଦ୍ଧ କଲେଣି । ତୁମେମାନେ ଶତ୍ରୁମାନଙ୍କ ଉପରେ ବିଜୟଲାଭ କରିବା ନିମିତ୍ତ ଆଉ ଉଦାସୀନ କାହିଁକି ?' ମୟ ଉତ୍ତରରେ ପ୍ରକାଶ କଲେ, 'ଆପଣ ଯାହା କହିଛନ୍ତି, ତାହା ଯଥାର୍ଥ । କିନ୍ତୁ ପ୍ରଥମେ ତାଙ୍କ ନିକଟକୁ ଦୂତ ପ୍ରେରଣ କରିବା ବିଧେୟ । ନୋଚେତ୍ ଆମ୍ଭେମାନେ ନୀତି ଲଙ୍ଘନ କରିବା ।' ଏଥିରେ ମୁନିକୁମାର ସମ୍ମତ ହୋଇ କହିଲେ, 'ଏଥିରେ କ୍ଷତି କ'ଣ ? ପ୍ରହସ୍ତଙ୍କୁ ଦୂତ ଭାବରେ ପ୍ରେରଣ କରାଯାଉ । ସେ ପ୍ରତିଭାଶାଳୀ, ବାଗ୍ମୀ, କାର୍ଯ୍ୟ ଓ କାଳଗତିଜ୍ଞ, କଠୋର ଓ ସହିଷ୍ଣୁ—ଏଣୁ ସର୍ବ ଦୂତଗୁଣସମ୍ପନ୍ନ ।'

ସମସ୍ତଙ୍କ ସମ୍ମତିକ୍ରମେ ପ୍ରହସ୍ତଙ୍କଦ୍ୱାରା ଶ୍ରୁତଶର୍ମାଙ୍କ ନିକଟକୁ ବାର୍ତ୍ତା ପ୍ରେରଣ କରାଗଲା । ସେ ପ୍ରସ୍ଥାନ କରିବା ପରେ ସୂର୍ଯ୍ୟପ୍ରଭ ବନ୍ଧୁମାନଙ୍କୁ କହିଲେ, 'ମୁଁ ଆଜି

ଏକ ଅଦ୍ଭୁତ ସ୍ୱପ୍ନ ଦର୍ଶନ କରିଅଛି । ରାତ୍ରି ଶେଷରେ ଦେଖିଲି ଯେ ଆମେ ସମସ୍ତେ ଏକ ପ୍ରବଳ ଜଳସ୍ରୋତରେ ଭାସମାନ ହୋଇ ଯାଉଅଛେ । କିନ୍ତୁ ଭାସିଯାଉଥିବା ସମୟରେ ଆମେ ଜଳସ୍ରୋତ ମଧ୍ୟରେ ନିମଜ୍ଜିତ ନହୋଇ ନୃତ୍ୟ କରୁଅଛୁ । କିଛି ସମୟ ପରେ ସେହି ଜଳସ୍ରୋତ ବିପରୀତ ବାୟୁ ପ୍ରଭାବରୁ ଗତି ପରିବର୍ତ୍ତନ କଲା । ଏ ସମୟରେ କୌଣସି ଏକ ଜାଜ୍ଜ୍ୱଲ୍ୟମାନ ପୁରୁଷ ଆସି ଆମ୍ଭମାନଙ୍କୁ ସେଥିରୁ ଉଦ୍ଧାର କରି ଅଗ୍ନି ମଧ୍ୟରେ ନିକ୍ଷେପ କଲା । ତଥାପି ସେଥିରେ ମଧ୍ୟ ଆମ୍ଭେମାନେ ଦଗ୍ଧ ହେଲୁ ନାହିଁ । ଏହାପରେ ହଠାତ୍ ଭୟଙ୍କର ମେଘଖଣ୍ଡ ଉତ୍‌ଥିତ ହୋଇ ରକ୍ତ ବୃଷ୍ଟି ହେଲା । ଫଳରେ ଚତୁର୍ଦ୍ଦିଗ ରକ୍ତମୟ ହୋଇ ଉଠିଲା । ଏ ସମୟରେ ମୋର ନିଦ୍ରାଭଙ୍ଗ ହେବାରୁ ମୁଁ ଆଉ କିଛି ଦେଖି ପାରିଲି ନାହିଁ ।'

ଏ ସ୍ୱପ୍ନର ବ୍ୟାଖ୍ୟା କରିବାକୁ ଯାଇ ସୁବାସକୁମାର କହିଲେ, 'ଏ ସ୍ୱପ୍ନରୁ କଠିନ ପରିଶ୍ରମ ଦ୍ୱାରା କାର୍ଯ୍ୟସିଦ୍ଧିର ସୂଚନା ମିଳୁଅଛି । ଜଳପ୍ରବାହ ସଂଗ୍ରାମର, ଜଳମଗ୍ନ ନହେବା ଧୈର୍ଯ୍ୟର ସୂଚକ, ଯେଉଁ ପ୍ରତିକୂଳ ବାୟୁ ଜଳସ୍ରୋତର ଗତିପଥ ପରିବର୍ତ୍ତନ କରାଇ ତୁମମାନଙ୍କର ଉଦ୍ଧାର କଲା ତାହା କୌଣସି ଶରଣ ରକ୍ଷକର ସୂଚନା ପ୍ରଦାନ କରୁଛି; ଯେଉଁ ଊର୍ଦ୍ଧ୍ୱରେତା ଜାଜ୍ଜ୍ୱଲ୍ୟମାନ ପୁରୁଷଙ୍କୁ ତୁମେ ଦେଖିଛ ସେ ଭଗବାନ୍ ଭବାନୀପତିଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ସେ ତୁମକୁ ଅଗ୍ନି ମଧ୍ୟରେ ନିକ୍ଷେପ କଲେ ଅର୍ଥାତ୍ ଯୁଦ୍ଧ ପାଇଁ ପ୍ରବର୍ତ୍ତାଇଲେ; ମେଘଖଣ୍ଡ କିଛି ଭୟଭୀତିର ସୂଚନା ଦେଉଥିଲା, କିନ୍ତୁ ରକ୍ତବୃଷ୍ଟି ସେହି ଭୟ ଦୂର ହେବାର ସୂଚନା ପ୍ରଦାନ କଲା । ଚତୁର୍ଦ୍ଦିଗ ରକ୍ତମୟ ହେବା ତୁମ ଅଭ୍ୟୁଦୟର ସୂଚକ ।

ସ୍ୱପ୍ନ ବିଭିନ୍ନ ପ୍ରକାର ହୋଇପାରେ । ଯେପରି ଅନ୍ୟାର୍ଥ, ଯଥାର୍ଥ ଓ ଅପାର୍ଥ । ଯାହା ଶୀଘ୍ର ଫଳ ପ୍ରଦାନ କରେ ତାହା ଅନ୍ୟାର୍ଥ; ଦେବତାମାନଙ୍କର ଆଦେଶ ସୂଚକ ସ୍ୱପ୍ନ ଯଥାର୍ଥ ଏବଂ ଗମ୍ଭୀର ଚିନ୍ତା ବା ଅନୁଭବରୁ ଦୃଷ୍ଟ ସ୍ୱପ୍ନ ଅପାର୍ଥ । ରଜୋଗୁଣପ୍ରଧାନ ଏବଂ ବାହ୍ୟ ବିଷୟ ବିମୁଖ ପ୍ରାଣୀ ନିଦ୍ରାଗତ ହୋଇ ପୂର୍ବୋକ୍ତ କାରଣମାନଙ୍କରୁ ସ୍ୱପ୍ନ ଦର୍ଶନ କରେ । ସ୍ୱପ୍ନ ଦର୍ଶନର ସମୟ ଭେଦରେ ଶୀଘ୍ର କିମ୍ବା ବିଳମ୍ବରେ ଫଳପ୍ରାପ୍ତି ହୋଇଥାଏ । ରାତ୍ରିଶେଷରେ ପରିଦୃଷ୍ଟ ସ୍ୱପ୍ନ ଶୀଘ୍ର ଫଳ ପ୍ରଦାନ କରେ ।' ସୁବାସ କୁମାରଙ୍କଠାରୁ ଏହା ଶ୍ରବଣ କରି ସମସ୍ତେ ମହାଆନନ୍ଦରେ ନିତ୍ୟକର୍ମ ସମାପନ କରିବା ପାଇଁ ଉଠିଗଲେ ।

ଏହି ସମୟରେ ଶ୍ରୁତଶର୍ମାଙ୍କ ନିକଟକୁ ଦୂତରୂପେ ଯାଇଥିବା ପ୍ରହସ୍ତ ଫେରି ଆସିଲେ । ମୟ, ସୁନୀଥ ପ୍ରଭୃତି ତାଙ୍କୁ ଉତ୍କଣ୍ଠାର ସହିତ ପ୍ରଶ୍ନକରନ୍ତେ ସେ ଉତ୍ତରରେ

ଜଣାଇଲେ, 'ଏଠାରୁ ମୁଁ ତ୍ରିକୂଟ ପର୍ବତସ୍ଥିତ ସୁବର୍ଣ୍ଣମୟ ତ୍ରିକୂଟପତାକା ନଗରୀରେ ଯାଇ ଉପସ୍ଥିତ ହେଲି । ସେଠାରେ ପ୍ରତିହାର ଦ୍ୱାରା ବାର୍ତ୍ତା ପ୍ରେରଣ ପୂର୍ବକ ମୁଁ ସଭାଗୃହରେ ପ୍ରବେଶ କରି ବିଦ୍ୟାଧରମାନଙ୍କଦ୍ୱାରା ପରିବେଷ୍ଟିତ ଶ୍ରୁତଶର୍ମାଙ୍କୁ ଦର୍ଶନ କଲି । ପିତା ତ୍ରିକୂଟ, ସେନାପତି ବିକ୍ରମଶକ୍ତି ଓ ଦାମୋଦର ପ୍ରଭୃତି ଶୂରବୀର ତାଙ୍କ ସମ୍ମୁଖରେ ଆସନ ଗ୍ରହଣ କରିଥିଲେ । ମୁଁ ତାଙ୍କ ନିକଟରେ ନିର୍ଦ୍ଦିଷ୍ଟ ଆସନ ଗ୍ରହଣ ପୂର୍ବକ ଶ୍ରୁତଶର୍ମାଙ୍କୁ କହିଲି, 'ମୋତେ ଶ୍ରୀମାନ୍ ସୂର୍ଯ୍ୟପ୍ରଭ ଦୂତ ରୂପେ ଆପଣଙ୍କ ନିକଟକୁ ପ୍ରେରଣ କରି ଅଛନ୍ତି । ସେ କହିଛନ୍ତି ଯେ ଭଗବାନ ଶଙ୍କରଙ୍କ କୃପାରୁ ସେ ବିଦ୍ୟା, ରତ୍ନ, ପତ୍ନୀ ଓ ସହାୟକ ସିଦ୍ଧ କରିଅଛନ୍ତି । ଏଣୁ ଆପଣ ମଧ୍ୟ ନିଜର ସେନାବାହିନୀ ସହ ଆସି ତାଙ୍କ ସହିତ ମିଳିତ ହୁଅନ୍ତୁ । ସେ ଶତ୍ରୁହନ୍ତା ଓ ଶରଣରକ୍ଷକ । ଆପଣ ଅଜ୍ଞାନତାବଶତଃ ସୁନୀଥଙ୍କ ଅଗମ୍ୟା କନ୍ୟା କାମଚୂଡ଼ାମଣିକୁ ଯାହା ଅପହରଣ କରିଅଛନ୍ତି, ତାହା ଆପଣଙ୍କର ମଙ୍ଗଳଦାୟକ ନୁହେ । ତେଣୁ ଶୀଘ୍ର ତାକୁ ମୁକ୍ତ କରନ୍ତୁ ।'

ମୋଠାରୁ ଏହା ଶୁଣି ସେମାନେ କ୍ରୁଦ୍ଧ ହୋଇ କହିଲେ, 'ଦାମ୍ଭିକତାର ସହ କିଏ ସେହି ଅର୍ଭକ ଏପରି ଆଦେଶ ପ୍ରେରଣ କରିଅଛି । ସେହି ମାନବକୁ ଯାଇ କହ ଯେ ବିଦ୍ୟାଧରମାନଙ୍କୁ ଏପରି ସନ୍ଦେଶ ଦେବା ତା' ପକ୍ଷରେ ଦାମ୍ଭିକତା ମାତ୍ର । ଏପରି ଗର୍ବୋଦ୍ଧତ ହୋଇ ସେ ଶେଷରେ ବିନାଶ ପ୍ରାପ୍ତ ହେବ ।' ତାଙ୍କର ରୁକ୍ଷ ବାଣୀ ଶୁଣି ମୁଁ କହିଲି, 'କ'ଣ କହିଲେ, ସେ କିଏ ? ତା ହେଲେ ଶୁଣନ୍ତୁ । ଭଗବାନ୍ ଶଙ୍କର ତାଙ୍କୁ ଆପଣମାନଙ୍କର ଚକ୍ରବର୍ତ୍ତୀ ପଦରେ ନିଯୁକ୍ତ କରିଅଛନ୍ତି । ସେ ମାନବରୂପେ ଜନ୍ମ ଗ୍ରହଣ କରିବାରେ କ'ଣ ଅଛି ? ମାନବମାନେ ମଧ୍ୟ ଦେବତ୍ୱ ସିଦ୍ଧ କରି ପାରନ୍ତି । ଆଉ ଆପଣମାନେ ତ ସେହି ମାନବର ପରାକ୍ରମ ଦେଖି ସାରିଛନ୍ତି, ସେ ଯଦି ଏଠାକୁ ଆସନ୍ତି, ତାହାହେଲେ ଆପଣମାନଙ୍କର ବିନାଶ ସୁନିଶ୍ଚିତ ।' ମୋର ବାକ୍ୟରେ ସେମାନେ ବିକ୍ଷୁବ୍‌ଧ ହୋଇ ମୋତେ ଆକ୍ରମଣ କରିବା ନିମିତ୍ତ ଉଦ୍ୟତ ହେଲେ । ଶ୍ରୁତଶର୍ମା ଓ ଧୁରନ୍ଧରଙ୍କର ଏ ପ୍ରକାର ମନୋଭାବ ଦେଖି ମୁଁ 'ଏହା ହିଁ କି ଆପଣମାନଙ୍କର ବୀରତ୍ୱ ?' ବୋଲି ପ୍ରଶ୍ନ କରନ୍ତେ ଦାମୋଦର ସେମାନଙ୍କୁ ଶାନ୍ତ କରାଇ କହିଲେ, 'ଦୂତ ଓ ବ୍ରାହ୍ମଣ ଉଭୟେ ଅବଧ୍ୟ । ତେଣୁ ଏହାକୁ ହତ୍ୟା କରିବା ଅନୁଚିତ ।' ଏ ସମୟରେ ବିକ୍ରମଶକ୍ତି ମୋତେ ଲକ୍ଷ୍ୟ କରି କହିଲେ, 'ଦୂତ, ତୁମେ ଯାଇ ସୂର୍ଯ୍ୟପ୍ରଭଙ୍କୁ କହ ଯେ ତାଙ୍କ ପରି ଆମ୍ଭେମାନେ ସମସ୍ତେ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ । ସେ ଯଦି ଏଠାକୁ ଆସନ୍ତି, ତା'ହେଲେ ଆମେ ତାଙ୍କର ଯଥାଯୋଗ୍ୟ ଅତିଥି ସତ୍କାର କରିବୁ ।' ତାଙ୍କର ଏତାଦୃଶ ଗର୍ବୋଦ୍ଧତ ବାକ୍ୟର ଉତ୍ତରରେ ମୁଁ ହାସ୍ୟ ସମ୍ବରଣ କରି ନପାରି କହିଲି, 'ଆକାଶରେ ମେଘର ସୂଚନା ନ ପାଇବା

ପର୍ଯ୍ୟନ୍ତ ହଂସ ପଦ୍ମବନ ମଧ୍ୟରେ ଆନନ୍ଦରେ କୂଜନ କରୁଥାଏ ।' ଏହା କହି ମୁଁ ସେଠାରୁ ଚାଲି ଆସିଲି ।

ପ୍ରହସ୍ତଙ୍କଠାରୁ ଏହି ସମ୍ବାଦ ପାଇ ସମସ୍ତେ ଆନନ୍ଦିତ ହେଲେ । ଯୁଦ୍ଧ ନିମନ୍ତେ ପ୍ରସ୍ତୁତି ଚାଲିଲା । ସୂର୍ଯ୍ୟପ୍ରଭ ପ୍ରଭୃତି ଦୁର୍ଜୟ ପ୍ରଭାସଙ୍କୁ ସେନାପତି ପଦରେ ବରଣ କଲେ । ଅନ୍ୟମାନେ ସୁବାସକୁମାରଙ୍କ ନିର୍ଦ୍ଦେଶ କ୍ରମେ ବିଧିପୂର୍ବକ ରଣ-ଦୀକ୍ଷାରେ ଦୀକ୍ଷିତ ହେଲେ ।

ନିୟମାନୁଯାୟୀ ସୂର୍ଯ୍ୟପ୍ରଭ ବ୍ରତଶଯ୍ୟାରେ ଯାଇ ଶୟନ କଲେ । କିନ୍ତୁ ନିଦ୍ରାଦେବୀ ତାଙ୍କ ପ୍ରତି ଅନୁରକ୍ତା ହେଲେ ନାହିଁ । ଏ ସମୟରେ ଏକ ସୁନ୍ଦରୀ କନ୍ୟା ସେଠାରେ ପ୍ରବେଶ କରନ୍ତେ ସେ ଶୟନର ଛଳନା କରି ସେଠାରେ ପଡ଼ି ରହିଲେ ।

କନ୍ୟାଟି ନିକଟକୁ ଆସି ସଙ୍ଗରେ ଥିବା ସଖୀକୁ ଲକ୍ଷ୍ୟକରି କହିଲା 'ସଖି ! ଯଦି ଶାୟିତ ଅବସ୍ଥାରେ ଏହାଙ୍କର ରୂପଶୋଭା ଏ ପ୍ରକାର ମନୋରମ, ତାହାହେଲେ ଜାଗ୍ରତ ଅବସ୍ଥାରେ ତାଙ୍କର ସେ ସୌନ୍ଦର୍ଯ୍ୟ କି ପ୍ରକାର ନ ହୋଇଥିବ ! ଚକ୍ଷୁର କୌତୂହଳ ପରିପୂର୍ଣ୍ଣ ହେଲା; ନିଦ୍ରାଭଙ୍ଗ କରି ବା ଆଉ ଅଧିକ କ'ଣ ହେବ ? ଅଧିକ ଆତ୍ମୀୟତାରେ ଏହାଙ୍କ ସହିତ ହୃଦୟକୁ ବାନ୍ଧି ରଖିବାରେ ଲାଭ କ'ଣ ଅଛି ? ଭବିଷ୍ୟତରେ ଶ୍ରୁତଶର୍ମାଙ୍କ ସହିତ ଏହାଙ୍କର ଯେଉଁ ଯୁଦ୍ଧହେବ ସେଥିରେ କ'ଣ ହେବ, କିଏ ଜାଣେ ? ଯୁଦ୍ଧୋତ୍ସବ ସାଧାରଣତଃ ବୀରମାନଙ୍କର ବିନାଶ ନିମନ୍ତେ ହିଁ ହୋଇଥାଏ । ସୂର୍ଯ୍ୟପ୍ରଭଙ୍କର ମଧ୍ୟ ଏଥିରେ ଅନିଷ୍ଟ ହୋଇପାରେ । କିନ୍ତୁ ତାଙ୍କର ମଙ୍ଗଳ ହେଉ । ଏହି ଆକାଶଚାରୀ ସୂର୍ଯ୍ୟପ୍ରଭଙ୍କୁ ଦେଖି କାମଚୂଡ଼ାମଣିର ଅବସ୍ଥା କ'ଣ ମୋ ପରି ହୋଇ ନଥିବ ?' ତାର ମନୋଭାବ ଜାଣିପାରି ସଖୀ କହିଲା 'ସଖି, ତୁମେ ଏପରି କ'ଣ କହୁଅଛ ? ତୁମେ କ'ଣ ଏହାଙ୍କ ପ୍ରତି ଆସକ୍ତ ନୁହ ? ପ୍ରଥମ ଦର୍ଶନରେ ହିଁ ଯେଉଁ ବ୍ୟକ୍ତି କାମଚୂଡ଼ାମଣିର ହୃଦୟ ହରଣ କରି ପାରନ୍ତି, ସେ ଅନ୍ୟ କେଉଁ ରମଣୀର ବା ହୃଦୟ ହରଣ ନ କରିବେ ? ସେଇ ରମଣୀ ହୁଏତ ଅରୁନ୍ଧତୀ ହୋଇପାରନ୍ତି ।'

'ସଖି, ତୁମେ କ'ଣ ନିଜର ବିଦ୍ୟାପ୍ରଭାବରେ ଯୁଦ୍ଧର ଫଳାଫଳ ଜାଣିପାରୁନାହଁ ? ସିଦ୍ଧମାନେ ତୁମକୁ ଏହି ଚକ୍ରବର୍ତ୍ତୀଙ୍କର ପତ୍ନୀରୂପେ ମନୋନୀତ କରିଛନ୍ତି । କାମଚୂଡ଼ାମଣି, ସୁପ୍ରଭା ଓ ତୁମେ ଏକ ଗୋତ୍ରରେ ଜାତ । ଏ ମହାତ୍ମା ସୁପ୍ରଭାସହିତ ବିବାହ କରିସାରିଛନ୍ତି, ଯୁଦ୍ଧରେ ଯଦି ଏହାଙ୍କର କିଛି ଅକଲ୍ୟାଣ ହୁଏ, ତାହାହେଲେ ସିଦ୍ଧମାନଙ୍କର ବାଣୀ କ'ଣ ବ୍ୟର୍ଥ ହେବ ? ପୁଣି ସୁପ୍ରଭା ଏହାଙ୍କର ମନୋହରଣ କରିଅଛି । ତେଣୁ ଏଥିରେ

ସୂର୍ଯ୍ୟପ୍ରଭଙ୍କର ବା ଦୋଷ କ'ଣ ? ତୁମେ ସୁପ୍ରଭାଙ୍କ ଅପେକ୍ଷା ଅଧିକ ସୁନ୍ଦରୀ । ଏଣୁ ତୁମେ ମଧ୍ୟ ଏହାଙ୍କର ମନୋହରଣ କରିପାରିବ । ବନ୍ଧୁବାନ୍ଧବମାନେ ଯଦି ଏଥିରେ ପ୍ରତିବନ୍ଧକ ସୃଷ୍ଟି କରିବେ ବୋଲି ତୁମେ ଆଶଙ୍କା କରୁଥାଅ, ତାହାହେଲେ ମଧ୍ୟ ଏ ଆଶଙ୍କା ଅମୂଳକ । ସତୀସାଧ୍ୱୀ ସ୍ତ୍ରୀମାନଙ୍କର ପତି ବିନା ଅନ୍ୟ କୌଣସି ବନ୍ଧୁବାନ୍ଧବ ନଥାନ୍ତି ।'

**ଭର୍ତ୍ତାରଂ ହି ବିନା ନାନ୍ୟଃ ସତୀନାମସ୍ତି ବାନ୍ଧବଃ ।**

ସଖୀଠାରୁ ଏହା ଶୁଣି ସେ ସୁନ୍ଦରୀ କହିଲା, 'ତୁ ଯାହା କହିଲୁ ତାହା ଯଥାର୍ଥ । ଅନ୍ୟାନ୍ୟ ବନ୍ଧୁମାନଙ୍କ ଠାରେ ମୋର ବା ପ୍ରୟୋଜନ କ'ଣ ? ମୁଁ ମୋର ବିଦ୍ୟା ପ୍ରଭାବରେ ଜାଣିପାରିଅଛି ଯେ ଭାବୀ ଯୁଦ୍ଧରେ ଆର୍ଯ୍ୟପୁତ୍ର ନିଶ୍ଚିତ ଭାବେ ଜୟଯୁକ୍ତ ହେବେ । ବିଦ୍ୟାଧର ଚକ୍ରବର୍ତ୍ତୀର କାରଣଭୂତ ସମସ୍ତ ରତ୍ନ ଓ ବିଦ୍ୟା ଏହାଙ୍କଦ୍ୱାରା ସିଦ୍ଧ ହୋଇସାରିଛି । କିନ୍ତୁ ବର୍ତ୍ତମାନ ସୁଦ୍ଧା ସେ ଔଷଧି ସିଦ୍ଧି ଲାଭକରି ପାରି ନାହାନ୍ତି, ତେଣୁ ମୋର ମନ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ହୋଇପାରୁନାହିଁ ।'

'ଏ ସମସ୍ତ ଔଷଧି ଚନ୍ଦ୍ରପାଦନାମକ ପର୍ବତରେ ଥିବା ଏକ ଗିରି ଗହ୍ୱର ମଧ୍ୟରେ ସୁରକ୍ଷିତ ଅଛି । ଏସବୁ କୌଣସି ଜଣେ ପୁଣ୍ୟାତ୍ମା ଚକ୍ରବର୍ତ୍ତୀଙ୍କର ସିଦ୍ଧହେବ । ଯେହେତୁ କାଲି ପ୍ରତ୍ୟୁଷରୁ ଯୁଦ୍ଧାରମ୍ଭ ହେବ ତେଣୁ ଆର୍ଯ୍ୟପୁତ୍ର ବର୍ତ୍ତମାନ ହିଁ ଯାଇ ଯଦି ସେଗୁଡ଼ିକୁ ସିଦ୍ଧ କରିପାରନ୍ତେ ତାହାହେଲେ ଯଥେଷ୍ଟ କଲ୍ୟାଣ ସାଧିତ ହୋଇପାରନ୍ତା ?'

ନିଦ୍ରାର ଛଳନା କରୁଥିବା ସୂର୍ଯ୍ୟପ୍ରଭ ଏହା ଶ୍ରବଣ ମାତ୍ରେ ଶଯ୍ୟାତ୍ୟାଗ ପୂର୍ବକ ନମ୍ରତାର ସହିତ କହିଲେ, 'ଚାରୁ ନୟନେ ! ତୁମେ ମୋ ପ୍ରତି ଯଥେଷ୍ଟ ଅନୁଗ୍ରହ ପ୍ରଦର୍ଶନ କରିଅଛ, ମୁଁ ବର୍ତ୍ତମାନହିଁ ଚନ୍ଦ୍ରପାଦଗିରି ଅଭିମୁଖରେ ଯାତ୍ରା କରୁଅଛି । କିନ୍ତୁ ତା ପୂର୍ବରୁ ତୁମର ପରିଚୟ ପାଇ ପାରିଲେ କୃତାର୍ଥ ହେବି ।'

ସୂର୍ଯ୍ୟପ୍ରଭଙ୍କ ଏ ପ୍ରକାର ବ୍ୟବହାରରେ ପୂର୍ବୋକ୍ତ ସୁନ୍ଦରୀ ଲଜ୍ଜିତା ହେଲା । ତାର ମୁଖରୁ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । କିନ୍ତୁ ଏ ଅବସ୍ଥାକୁ ସରଳ କରିବା ପାଇଁ ତାର ସଖୀ ସୂର୍ଯ୍ୟପ୍ରଭଙ୍କୁ କହିଲା, 'ବିଦ୍ୟାଧର ଅଧିପତି ସୁମେରୁଙ୍କ କନିଷ୍ଠ ଭ୍ରାତା ଏହାଙ୍କର ଜନ୍ମଦାତା । ଏହାଙ୍କ ନାମ ବିଳାସିନୀ । ଆପଣଙ୍କୁ ଦର୍ଶନ କରିବା ନିମନ୍ତେ ଏ ଅତ୍ୟନ୍ତ ଉତ୍କଣ୍ଠିତା ଥିଲେ ।' ଏପରି ପରିଚୟ ଦେଉଥିବା ସମୟରେ ବିଳାସିନୀ ସଖୀକୁ ଟାଣିନେଇ ସେଠାରୁ ପ୍ରସ୍ଥାନ କଲା ।

ସୂର୍ଯ୍ୟପ୍ରଭ ପ୍ରଭାସ ପ୍ରଭୃତି ମନ୍ତ୍ରୀମାନଙ୍କୁ ଜାଗ୍ରତ କରାଇ ଔଷଧି ସିଦ୍ଧି ସମ୍ପର୍କରେ ଆଲୋଚନା ଶେଷ କରି ପ୍ରହସ୍ତଙ୍କୁ ସୁମେରୁ, ମୟ ଓ ସୁନୀଥଙ୍କ ନିକଟକୁ ପ୍ରେରଣ କଲେ । ସମସ୍ତେ ଆସି ଏକତ୍ର ହୁଅନ୍ତେ ଏବଂ ବିଳାସିନୀଙ୍କ କଥା ଉପରେ ସମସ୍ତେ ବିଶ୍ୱାସ ସ୍ଥାପନ କରନ୍ତେ ସୂର୍ଯ୍ୟପ୍ରଭ ସେହି ମୁହୂର୍ତ୍ତରେ ହିଁ ମିତ୍ର, ହିତାକାଂକ୍ଷୀ ଓ ବନ୍ଧୁମାନଙ୍କ ସହିତ ଚନ୍ଦ୍ରପାଦଗିରି ପ୍ରତି ଅଗ୍ରସର ହେଲେ । କିଛିଦୂର ଅଗ୍ରସର ହେବା ପରେ କେତେକ ଯକ୍ଷ, ଗୁହ୍ୟକ ଓ କୁଷ୍ମାଣ୍ଡ ଅସ୍ତ୍ରଶସ୍ତ୍ର ନେଇ ସେମାନଙ୍କର ଗତିରୋଧ କଲେ । କିନ୍ତୁ ସୂର୍ଯ୍ୟପ୍ରଭ ଏମାନଙ୍କ ମଧ୍ୟରୁ କେତେକଙ୍କୁ ଆହତ ଓ ଅନ୍ୟ କେତେକଙ୍କୁ ମୋହିତ କରି ଚନ୍ଦ୍ରପାଦ ପର୍ବତରେ ଯାଇ ଉପସ୍ଥିତ ହେଲେ । ଗହ୍ୱର ମୁଖରେ ପହଞ୍ଚିବା ମାତ୍ରେ ବିଚିତ୍ର ଓ ବିକୃତ-ମୁଖ ଶିବଗଣ ତାଙ୍କର ପୁନର୍ବାର ପ୍ରତିରୋଧ କଲେ । କିନ୍ତୁ ତାଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ଉଦ୍ୟତ ହେଉଥିବା ସୂର୍ଯ୍ୟପ୍ରଭଙ୍କୁ ଏଥିରୁ ନିବୃତ୍ତ କରି ସୁବାସକୁମାର କହିଲେ ଯେ ସେମାନଙ୍କ ସହିତ ଯୁଦ୍ଧ କରିବା ଉଚିତ ନୁହେ । କାରଣ ଏହାଦ୍ୱାରା ଭଗବାନ ଶଙ୍କର କ୍ରୋଧାନ୍ୱିତ ହେବେ । ତେଣୁ ଶିବଙ୍କର ଅଷ୍ଟୋତ୍ତରଶତ ନାମ ଜପ ପୂର୍ବକ ଏମାନଙ୍କୁ ପ୍ରସନ୍ନ କରିବା ଉଚିତ ।

ସେଠାରେ ସମସ୍ତେ ଏକ ସ୍ୱରରେ ଅଷ୍ଟୋତ୍ତର ଶତ ଶିବ ନାମ ଜପ କରନ୍ତେ ଗଣମୁଖ୍ୟମାନେ ସନ୍ତୁଷ୍ଟ ହୋଇ କହିଲେ, 'ଆମ୍ଭେମାନେ ବର୍ତ୍ତମାନ ଏଠାରୁ ଅପସୃତ ହେଉଅଛୁ । ତୁମେ ଏହା ମଧ୍ୟରେ ପ୍ରବେଶ କରି ସୁରକ୍ଷିତ ମହୌଷଧିଗୁଡ଼ିକୁ ଗ୍ରହଣ କର; କିନ୍ତୁ ସ୍ୱୟଂ ସୂର୍ଯ୍ୟପ୍ରଭ ଏହା ମଧ୍ୟରେ ପ୍ରବେଶ କରିପାରିବେ ନାହିଁ । ଏକମାତ୍ର ପ୍ରଭାସହିଁ ଏହା ମଧ୍ୟରେ ପ୍ରବେଶ କରିପାରନ୍ତି । କାରଣ ତାଙ୍କ ପାଇଁ ହିଁ ଏହାର ପଥ ସୁଗମ ।

ଗୁରୁଜନମାନଙ୍କର ଉପଦେଶ କ୍ରମେ ପ୍ରଭାସ ସେହି ଅନ୍ଧକାର ଗୁହା ମଧ୍ୟରେ ପ୍ରବେଶ କରନ୍ତେ ତାହା ଆଲୋକିତ ହୋଇ ଉଠିଲା, ତା' ମଧ୍ୟରେ ବସିଥିବା ଚାରୋଟି ଭୟଙ୍କର ରାକ୍ଷସ ତାଙ୍କୁ ପ୍ରଣାମ କରି ସ୍ୱାଗତ କଲେ । ପ୍ରଭାସ ତା' ମଧ୍ୟରୁ ମହୌଷଧି ଗୁଡ଼ିକ ଆଣି ସୂର୍ଯ୍ୟପ୍ରଭଙ୍କ ହସ୍ତରେ ପ୍ରଦାନ କରିବା ସମୟରେ ଶୂନ୍ୟବାଣୀ ହେଲା ଯେ ଏହି ସପ୍ତଔଷଧି ମହାପ୍ରଭାବଶାଳୀ ଏବଂ ଏହା ସୂର୍ଯ୍ୟପ୍ରଭଙ୍କର ସିଦ୍ଧ ହେଲା । ଏହା ଶୁଣି ଉପସ୍ଥିତ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ମନରେ ସୁମେରୁଙ୍କ ଉପବନ ମଧ୍ୟକୁ ପ୍ରତ୍ୟାବର୍ତ୍ତନ କରି ଆସିଲେ ।

ଏଠାରେ ସୁନୀଥ କୌତୂହଳ ଦମନ କରି ନପାରି ସୁବାସକୁମାରଙ୍କୁ ଜିଜ୍ଞାସା କଲେ ଯେ ସୂର୍ଯ୍ୟପ୍ରଭଙ୍କୁ ପ୍ରତିରୋଧ କରି କେବଳ ପ୍ରଭାସଙ୍କୁ କାହିଁକି ସେହି ଗୁହା ମଧ୍ୟରେ

ପ୍ରବେଶ କରିବା ପାଇଁ ଅନୁମତି ଦିଆଗଲା ? ଏ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ କ'ଣ ? ପୁଣି ଗଣ ଓ ରାକ୍ଷସମାନେ ପ୍ରଭାସଙ୍କୁ ଅଭିବାଦନ ପୂର୍ବକ କାହିଁକି ସ୍ୱାଗତ କଲେ ? ଏ ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ମୁନି ସୁବାସକୁମାର ସମସ୍ତଙ୍କ ସମ୍ମୁଖରେ କହିଲେ–

'ପ୍ରଭାସ ସୂର୍ଯ୍ୟପ୍ରଭଙ୍କ ଅତ୍ୟନ୍ତ ହିତାକାଂକ୍ଷୀ । ପ୍ରକୃତରେ ଏ ଦୁହିଁଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ପ୍ରଭାସଙ୍କ ତୁଲ୍ୟ ବୀର ଓ ପ୍ରଭାବଶାଳୀ ଦ୍ୱିତୀୟ ବ୍ୟକ୍ତି ନାହିଁ । ପୂର୍ବଜନ୍ମର ପୁଣ୍ୟ ପ୍ରଭାବରୁ ସେ ଏହି ଗିରିଗହ୍ୱରର ଅଧିକାରୀ ହେଲେ । ମୁଁ ବର୍ତ୍ତମାନ ତାଙ୍କ ପୂର୍ବଜନ୍ମର କଥା ପ୍ରକାଶ କରୁଅଛି, ଶୁଣ–

''ପୂର୍ବକାଳରେ ନମୁଚି ନାମରେ ଏକ ଦାନବ ଥିଲା । ସେ ଏପରି ଦାନଶୀଳ ଥିଲା ଯେ ଶତ୍ରୁମାନଙ୍କ ପ୍ରତି ମଧ କୌଣସି ବସ୍ତୁ ତାର ଅଦେୟ ନଥିଲା । ସେ ଦଶସହସ୍ର ବର୍ଷ କେବଳ ଧୂମପାନକରି ତପସ୍ୟା କରିବା ଫଳରେ ପିତାମହ ତା' ପ୍ରତି ସନ୍ତୁଷ୍ଟ ହୋଇ ବରପ୍ରଦାନ କରିଥିଲେ ଯେ ସେ ଲୌହ, ପ୍ରସ୍ତର ଓ କାଷ୍ଠ ନିର୍ମିତ ଅସ୍ତ୍ରଶସ୍ତ୍ର ଦ୍ୱାରା ନିହତ ହେବ ନାହିଁ । ଫଳରେ ଇନ୍ଦ୍ର ତା' ଦ୍ୱାରା ପରାସ୍ତ ହେଲେ । କିନ୍ତୁ ମହର୍ଷି କଶ୍ୟପ ମଧ୍ୟସ୍ଥତା କରି ଏମାନଙ୍କ ମଧ୍ୟରେ ସନ୍ଧିସ୍ଥାପନ କରିଥିଲେ । କିଛିଦିନ ପରେ ଦେବ ଓ ଦାନବ ପରସ୍ପର ଶତ୍ରୁତା ପରିତ୍ୟାଗ ପୂର୍ବକ ମନ୍ଦରାଚଳଦ୍ୱାରା କ୍ଷୀର ସମୁଦ୍ର ମନ୍ଥନ କଲେ । ସେଥିରୁ ବହୁ ଧନରତ୍ନ ନିର୍ଗତ ହେଲା । ଦେବତାମାନେ ଲକ୍ଷ୍ମୀ ପ୍ରଭୃତି ଉତ୍କୃଷ୍ଟ ବସ୍ତୁଗୁଡ଼ିକୁ ନିଜ ନିଜ ମଧ୍ୟରେ ବାଣ୍ଟି ନେଲେ । ସେ ସମୟରେ ଦାନବ ଶ୍ରେଷ୍ଠ ନମୁଚି ଉଚ୍ଚୈଃଶ୍ରବା ନାମକ ଅଶ୍ୱ ନିଜର ଅଂଶ ସ୍ୱରୂପ ଲାଭ କରିଥିଲେ ।

ମନ୍ଥନ ଶେଷରେ ଯେତେବେଳେ ଅମୃତ ନିର୍ଗତ ହେଲା ସେତେବେଳେ ଦେବତାମାନେ ତାକୁ ଅପହରଣ କରିନେଲେ । ଫଳରେ ଏମାନଙ୍କ ମଧ୍ୟରେ ପୁଣି ଶତ୍ରୁତା ଦେଖାଦେଲା, ସୁର ଓ ଅସୁରଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ସଙ୍ଘଟିତ ହେଲା । ଏଥିରେ ଯେଉଁ ଅସୁରମାନେ ପ୍ରାଣତ୍ୟାଗ କରୁଥିଲେ ସେମାନଙ୍କୁ ଉଚ୍ଚୈଃଶ୍ରବା ଆଘ୍ରାଣ କରି ତତ୍‌କ୍ଷଣାତ୍ ପୁନର୍ଜୀବିତ କରିଦେଉଥିଲା । ତେଣୁ ପ୍ରତ୍ୟେକଂଯୁଦ୍ଧରେ ଦାନବମାନେ ହିଁ ଜୟଯୁକ୍ତ ହେଉଥିଲେ । ଦୁଃଖ ସନ୍ତପ୍ତ ଓ ଚିନ୍ତାନ୍ୱିତ ହୋଇ ଦେବରାଜ ଇନ୍ଦ୍ର ଇତସ୍ତତଃ ଭ୍ରମଣ କରୁଥିବାବେଳେ ଦେବଗୁରୁ ବୃହସ୍ପତି ଏକାନ୍ତରେ ତାଙ୍କୁ କହିଲେ, ବର୍ତ୍ତମାନ ତୁମ ପାଇଁ ଗୋଟିଏ ମାତ୍ର ପଥ ଉନ୍ମୁକ୍ତ ଅଛି । ତୁମେ ଶୀଘ୍ର ତାହା କାର୍ଯ୍ୟକାରୀ ନକଲେ କଦାପି ସ୍ୱର୍ଗଭୋଗ କରିପାରିବ ନାହିଁ । ତାହା ହେଉଛି, ତୁମେ ନିଜେ ଯାଇ ନମୁଚିଙ୍କୁ ଉଚ୍ଚୈଃଶ୍ରବା ଅଶ୍ୱଟି ଦାନ କରିବା ପାଇଁ ପ୍ରାର୍ଥନା କର । ତୁମେ

ତାଙ୍କର ଶତ୍ରୁ ହେଲେ ହେଁ ସେ ନିଜର ଦାନଶୀଳତା ଫଳରେ କଦାପି ତୁମକୁ ବିଫଳ ମନୋରଥ କରିବେ ନାହିଁ । ଜୀବନ ବିନିମୟରେ ମଧ୍ୟ ସେ ନିଜର ପ୍ରଖ୍ୟାତିର ସୁରକ୍ଷା ପାଇଁ ସର୍ବଦା ପ୍ରସ୍ତୁତ ।

'ବୃହସ୍ପତିଙ୍କ କୁଚକ୍ରାନ୍ତ ଫଳରେ ଇନ୍ଦ୍ର ନିଜେ ଦେବତାମାନଙ୍କ ସହିତ ନମୁଚିଙ୍କ ନିକଟକୁ ଯାଇ ଅଶ୍ୱଟିକୁ ଦାନ ସ୍ୱରୂପ ପ୍ରାର୍ଥନା କଲେ । ଏଥିରେ ନମୁଚି ପ୍ରଥମେ କିଞ୍ଚିତ୍ ବିଚଳିତ ହୋଇପଡ଼ିଲେ ହେଁ ପରେ ଚିନ୍ତା କଲେ ଯେ ମୋ ଦ୍ୱାରରୁ କୌଣସି ଯାଚକ ବିଫଳ ମନୋରଥ ହୋଇ ଫେରିନାହିଁ । ସେଥିରେ ପୁଣି ଇନ୍ଦ୍ରଙ୍କ ତୁଲ୍ୟ ଯାଚକ ମିଳିବା ଅତି ସୌଭାଗ୍ୟର ବିଷୟ, ତେଣୁ ମୁଁ ନମୁଚି ହୋଇ ଯାଚକକୁ ନିରାଶ କରିବି କିପରି ? ଯଦି ମୋର ତ୍ରିଭୁବନ ବିଖ୍ୟାତ କୀର୍ତ୍ତି ନଷ୍ଟ ହୁଏ ତାହାହେଲେ ଏ ଧନ ଓ ଜୀବନ ରକ୍ଷା କରି ଲାଭ କ'ଣ ? ଏହିପରି ଚିନ୍ତା କରି ନମୁଚି ଶୁକ୍ରାଚାର୍ଯ୍ୟଙ୍କ ବାରମ୍ବାର ପ୍ରତିରୋଧ ସତ୍ତ୍ୱେ ଇନ୍ଦ୍ରଙ୍କ ହସ୍ତରେ ଅଶ୍ୱଟିକୁ ସମର୍ପଣ କଲେ ।

'କିନ୍ତୁ ଅଶ୍ୱଗ୍ରହଣ କରି ସୁଦ୍ଧା ଇନ୍ଦ୍ର ପରିତୃପ୍ତ ହେଲେ ନାହିଁ । ସେ ନମୁଚିଙ୍କ ହୃଦୟରେ ବିଶ୍ୱାସଜାତ କରାଇ ବଜ୍ର ଉପରେ ରଖାଯାଇଥିବା ଗଙ୍ଗାନଦୀର ଫେଣ ଦ୍ୱାରା ତାଙ୍କୁ ହତ୍ୟା କଲେ, କାରଣ ବ୍ରହ୍ମାଙ୍କ ବର ପ୍ରଭାବରୁ ଅନ୍ୟ କୌଣସି ଅସ୍ତ୍ରଶସ୍ତ୍ରଦ୍ୱାରା ତାଙ୍କର ବଧ ସାଧନ କରିବା ସମ୍ଭବପର ନଥିଲା ।

ବିସ୍ମୟର କଥା ସଂସାରରେ ତୃଷ୍ଣାର ଅନ୍ତ ନାହିଁ । ଲୋଭର ବଶୀଭୂତ ହୋଇ ଦେବତାମାନେ ମଧ୍ୟ ଅନୁଚିତ କର୍ମ ସମ୍ପାଦନ ପୂର୍ବକ ଅପଯଶ ଲାଭ କରିବା ପାଇଁ ପଶ୍ଚାତ୍ପଦ ହୋଇନଥାନ୍ତି ।

'ଏ ସମ୍ବାଦ ଶ୍ରବଣରେ ନମୁଚିଙ୍କ ମାତା ଦନୁ ପୁତ୍ର ବିରହ କାତର ନିଜର ସନ୍ତପ୍ତ ହୃଦୟକୁ ଶାନ୍ତ କରିବା ପାଇଁ ପ୍ରତିଜ୍ଞା କଲେ ଯେ ଏହି ନମୁଚି ପୁଣି ତାଙ୍କ ଗର୍ଭରୁ ଜନ୍ମଲାଭ କରି ଦେବତାମାନଙ୍କର ଅଜେୟ ହେବେ । କିଛିଦିନ ପରେ ନମୁଚି ପୁଣି ଦନୁଙ୍କ ଗର୍ଭରୁ ଜନ୍ମଲାଭ କରି ଅତ୍ୟନ୍ତ ବଳଶାଳୀ ହେବାରୁ ପ୍ରବଳ ନାମରେ ଖ୍ୟାତିଲାଭ କଲେ । ସେ ଇନ୍ଦ୍ରଙ୍କୁ ଶତବାର ପରାଜିତ କରିଥିଲେ ଏବଂ ଯାଚକମାନଙ୍କ ନିମିତ୍ତ ଜୀବନ ସୁଦ୍ଧା ପ୍ରଦାନ କରିବାପାଇଁ ସର୍ବଦା ପ୍ରସ୍ତୁତ ଥିଲେ । ବାରମ୍ବାର ପରାଜିତ ହୋଇ ଦେବତାମାନେ ପୁଣି କୂଟଚକ୍ରାନ୍ତର ଆଶ୍ରୟ ନେଲେ । ସେମାନେ ପ୍ରବଳଙ୍କୁ ଯାଇ ପ୍ରାର୍ଥନା କଲେ 'ଆମ୍ଭେମାନେ ଏକ ନରମେଧ ଯଜ୍ଞର ଆୟୋଜନ କରୁଅଛୁ, ତେଣୁ ଆପଣ ଏହାର ନିର୍ବିଘ୍ନ ପରିସମାପ୍ତି

ନିମିତ୍ତ ଆପଣଙ୍କ ଶରୀର ପ୍ରଦାନ କରନ୍ତୁ ।' ଏହାଶୁଣି ଦାନୀପ୍ରବର ପ୍ରବଳ ଶତ୍ରୁମାନଙ୍କ ହସ୍ତରେ ନିଜ ଶରୀର ଅର୍ପଣ କରିଦେଲେ । ଉଦାର ହୃଦୟ ବ୍ୟକ୍ତିମାନେ ପ୍ରାଣ ବିସର୍ଜନ କରନ୍ତି କିନ୍ତୁ ଯାଚକକୁ ବିମୁଖ କରନ୍ତି ନାହିଁ ।

ପ୍ରାଣାନୁଦାରା ବିସୃଜନ୍ତ୍ୟର୍ଥିନୋ ନ ପରାଙ୍‌ମୁଖାନ୍ ।

'ଏହାପରେ ଦେବତାମାନେ ଅସୁରମାନଙ୍କୁ ଅତି କରୁଣ ଭାବରେ ପରାସ୍ତ କଲେ । ସେହି ଦାନବ ଶ୍ରେଷ୍ଠ ପ୍ରବଳ ଆଜି ପ୍ରଭାସ ରୂପରେ ଜନ୍ମ ଗ୍ରହଣ କରିଅଛନ୍ତି । ପ୍ରଥମେ ନମୁଚି ଦ୍ୱିତୀୟରେ ପ୍ରବଳ ଓ ତୃତୀୟ ଜନ୍ମରେ ପ୍ରଭାସ ରୂପରେ ଜନ୍ମନେଇ ପୁଣ୍ୟ ବଳରେ ସେ ଶତ୍ରୁମାନଙ୍କର ଅଜେୟ ହୋଇ ପାରିଛନ୍ତି । ସେହି ଗିରି ଗହ୍ୱର ପ୍ରବଳଙ୍କର ଅଧୀନରେ ଥିଲା । ତେଣୁ ତାର ଦ୍ୱାରରକ୍ଷୀମାନେ ଏହାଙ୍କର ପୂର୍ବ ପରିଚିତ । ଏହି ଗିରି ଗୁହାର ନିମ୍ନଦେଶରେ ପ୍ରବଳଙ୍କର ବିଶାଳ ବାସଭବନ ରହିଅଛି । ସେଥିରେ ତାଙ୍କର ବାରଜଣ ସ୍ତ୍ରୀ ଅଦ୍ୟାପି ବାସ କରୁଅଛନ୍ତି । ଏହି ଭବନ ବିଭିନ୍ନ ମଣିମୁକ୍ତା ଦ୍ୱାରା ସୁଶୋଭିତ ଏବଂ ବିବିଧ ଅସ୍ତ୍ରଶସ୍ତ୍ର ପରିପୂର୍ଣ୍ଣ । ପୁଣି ଏହା ମଧ୍ୟରେ ଚିନ୍ତାମଣି, ଏକଲକ୍ଷ ଯୋଦ୍ଧା ଓ ଏକଲକ୍ଷ ଅଶ୍ୱ ସୁସଜ୍ଜିତ ହୋଇ ରହିଅଛନ୍ତି । ଏ ସବୁ ବସ୍ତୁ ପ୍ରଭାସଙ୍କ ପୂର୍ବଜନ୍ମରେ ସଂଗୃହୀତ, ତେଣୁ ଏଗୁଡ଼ିକ ତାଙ୍କ ନିମିତ୍ତ ଅଜ୍ଞାତ ବା ବିସ୍ମୟକର ନୁହେ ।''

ସୁବାସକୁମାରଙ୍କ ଠାରୁ ଏହା ଶ୍ରବଣ କରି ସୂର୍ଯ୍ୟପ୍ରଭ, ସୁନୀଥ, ମୟ, ପ୍ରଭାସ ପ୍ରଭୃତି ରତ୍ନ ଓ ସେନା ପ୍ରାପ୍ତି ନିମିତ୍ତ ପ୍ରବଳଙ୍କର ଗିରି ଗହ୍ୱରସ୍ଥିତ ପ୍ରାସାଦ ମଧ୍ୟରେ ପ୍ରବେଶ କଲେ । ପ୍ରଭାସ ପୂର୍ବ ଜନ୍ମାର୍ଜିତ ନାରୀ, ଚିନ୍ତାମଣି, ଅଶ୍ୱ ଓ ସୈନ୍ୟବାହିନୀ ସହ ବହିର୍ଗତ ହୋଇ ସୂର୍ଯ୍ୟପ୍ରଭଙ୍କୁ ଆନନ୍ଦିତ କଲେ ।

ପୂର୍ଣ୍ଣ ମନୋରଥ ସୂର୍ଯ୍ୟପ୍ରଭ ଅନ୍ୟମାନଙ୍କ ସହ ଅଭୀଷ୍ଟ ସିଦ୍ଧି ନିମିତ୍ତ ନିଜ ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ଦାନବ ଓ ମାନବ ରାଜାମାନଙ୍କୁ ନିଜ ନିଜ ଶିବିରକୁ ପ୍ରେରଣ କରି ରଣଦୀକ୍ଷିତ ସୂର୍ଯ୍ୟପ୍ରଭ କୁଶାସନ ଉପରେ ରାତ୍ରିଯାପନ କଲେ ।



# ଚତୁର୍ଥ ତରଙ୍ଗ

## ରଣଭୂମିରେ ସୂର୍ଯ୍ୟପ୍ରଭଙ୍କ ଯୁଦ୍ଧସଜ୍ଜା

ରାତ୍ରି ଯାପନ ପୂର୍ବକ ସୂର୍ଯ୍ୟପ୍ରଭ ପ୍ରଭାତରୁ ନିଜର ବିଶାଳ ସେନାବାହିନୀ ସହିତ ଶ୍ରୁତଶର୍ମାଙ୍କୁ ପରାସ୍ତ କରିବା ନିମିତ୍ତ ସୁମେରୁଙ୍କ ତପୋବନରୁ ନିର୍ଗତ ହେଲେ । ସେମାନେ ଶ୍ରୁତଶର୍ମାଙ୍କ ନିବାସସ୍ଥଳ ତ୍ରିକୂଟ ପର୍ବତରେ ଉପସ୍ଥିତ ହୋଇ ସେଠାରେ ଥିବା ତାଙ୍କର ସେନାବାହିନୀକୁ ବଳପୂର୍ବକ ଉତ୍ସାରିତ କରି ନିଜର ଶିବିର ସ୍ଥାପନ କଲେ । ଶିବିର ମଧ୍ୟରେ ମୟ, ସୁମେରୁ ପ୍ରଭୃତି ଆଲୋଚନାରତ ଥିଲାବେଳେ ତ୍ରିକୂଟେଶ୍ୱର ଶ୍ରୁତଶର୍ମାଙ୍କ ଦୂତ ଆସି ସୂର୍ଯ୍ୟପ୍ରଭଙ୍କ ସମୀପରେ ଦଣ୍ଡାୟମାନ ହେଲା । ସେ ବିଦ୍ୟାଧରରାଜା ସୁମେରୁଙ୍କ ନିକଟକୁ ଶ୍ରୁତଶର୍ମାଙ୍କ ପିତା ପଠାଇଥିବା ସନ୍ଦେଶ ଆଣିଥାଏ । ସେ କହିଥାନ୍ତି ଯେ ଦୂରଦେଶାଗତ ଅତିଥିମାନଙ୍କର ସତ୍କାର କରିବା ପାଇଁ ସେ ସୁଯୋଗ ପାଇନାହାନ୍ତି । ଆଜି ସେମାନେ ଅଭ୍ୟାଗତମାନଙ୍କ ସହ ତାଙ୍କ ରାଜ୍ୟରେ ଆସି ପଦାର୍ପଣ କରିଥିବାରୁ ସେ ସମୁଚିତ ଅତିଥି-ସତ୍କାର କରିବା ପାଇଁ ଅଭିଳାଷ ପୋଷଣ କରୁଅଛନ୍ତି ।

ଶତ୍ରୁଠାରୁ ଏ ପ୍ରକାର ସନ୍ଦେଶ ଆସିଥିବା ଶୁଣି ସୁମେରୁ ଦୂତକୁ କହିଲେ, 'ଆମପରି ଦ୍ୱିତୀୟ ଅତିଥି ତୁମେ ପାଇପାରିବ ନାହିଁ । ଆମର ସତ୍କାର କରି ତୁମେ ଯେଉଁ ପୁଣ୍ୟ ଅର୍ଜନ କରିବ, ତା'ର ଫଳ ପରଲୋକରେ ନୁହେ, ଇହଲୋକରେ ହିଁ ପ୍ରାପ୍ତହେବ । ଆମ୍ଭେମାନେ ବର୍ତ୍ତମାନ ପ୍ରସ୍ତୁତ । ତୁମେ ଯାଇ ତୁମର୍ ପ୍ରଭୁଙ୍କୁ ଜଣାଇ ଦିଅ ଯେ ସେମାନେ ଆସି ଆମର ସତ୍କାର କରନ୍ତୁ ।' ଦୂତ ଏ ସମ୍ବାଦ ନେଇ ଅକ୍ଷରଶଃ ନିଜର ପ୍ରଭୁଙ୍କୁ ଜ୍ଞାପନ କଲା ।

ଏଣେ ସୂର୍ଯ୍ୟପ୍ରଭ ପ୍ରଭୃତି ଏକ ଉଚ୍ଚ ସ୍ଥାନରେ ଉପସ୍ଥିତ ହୋଇ ଭିନ୍ନ ଭିନ୍ନ ଭାବରେ ଏକତ୍ର ହୋଇଥିବା ନିଜର ସୈନ୍ୟବାହିନୀକୁ ନିରୀକ୍ଷଣ କଲେ । ଏ ସମୟରେ ସୁନୀଥ

ନିଜର ପିତା ମୟଙ୍କୁ ସେମାନଙ୍କ ସେନାବାହିନୀର ଅଶ୍ୱ, ଗଜ, ରଥ ଇତ୍ୟାଦିର ସଜ୍ଜୀକରଣ ସମ୍ପର୍କରେ କିଛି ଉପଦେଶ ପ୍ରଦାନ କରିବା ନିମିତ୍ତ ଅନୁରୋଧ କଲେ । ମୟ ପୁତ୍ରର ଅଭିଳାଷ କ୍ରମେ ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ କହିବା ଆରମ୍ଭ କଲେ—

'ଏହି ସୁବାହୁ, ନିଘାତ, ମୁଷ୍ଟିକ, ଗୋହର, ପ୍ରଳମ୍ବ, ପ୍ରମାଥ, କଂକଟ, ପିଙ୍ଗଳ, ବସୁଦର ଆଦି ରାଜା ଅର୍ଦ୍ଧରଥୀ; ଅଙ୍କୁରୀ, ସୁବିଶାଳ, ଦଣ୍ଡୀ, ଭୂଷଣ, ସୋମିଳ, ଉନ୍ମତ୍ତ, ଦେବଶର୍ମା, ପିତୃଶର୍ମା, କୁମାର ଓ ହରିଦତ୍ତ ପୂର୍ଣ୍ଣରଥୀ; ପ୍ରକମ୍ପନ, ଦର୍ପିତ, କୁମ୍ଭୀର, ମାତୃପାଳିତ, ମହାଭଟ୍ଟ, ଉଗ୍ରଭଟ୍ଟ, ବୀରସ୍ୱାମୀ, ସୁରାଧର, ଭଣ୍ଡୀର, ସିଂହଦର, ଗୁଣବର୍ମା, କୀଟକ, ଭୀମ ଓ ଭୟଙ୍କର—ଏ ସମସ୍ତେ ଦ୍ୱିରଥୀ; ବିରୋଚନ, ବୀରସେନ, ଯଜ୍ଞସେନ, ଖୁଜ୍ଜର, ଇନ୍ଦ୍ରବର୍ମା, ଶବରକ, କ୍ରୂରକର୍ମା ଓ ନିରାସକ—ଏ ସମସ୍ତ ରାଜକୁମାର ତ୍ରିଗୁଣ ରଥୀ; ସୁଶର୍ମା, ବାହୁଶାଳୀ, ବିଶାଖ, କ୍ରୋଧନ ଓ ପ୍ରଚଣ୍ଡ—ଏ ରାଜପୁତ୍ରମାନେ ଚତୁର୍ଗୁଣ ରଥୀ; କୁଂଜରୀ, ବୀରବର୍ମା, ପ୍ରବୀରବର, ସୁପ୍ରତିଜ୍ଞ, ଅମରାରାମ, ଚନ୍ଦ୍ରଦତ୍ତ, ଜାଲିକ ପ୍ରଭୃତି ରାଜକୁମାର ଏବଂ ରାଜା ବ୍ୟାଘ୍ରଭଟ, ସିଂହଭଟ ଓ ଶତ୍ରୁଭଟ ପଞ୍ଚଗୁଣ ରଥୀ; ଏହି ରାଜକୁମାର ଉଗ୍ରବର୍ମା ଷଡ୍‌ଗୁଣ ରଥୀ; ରାଜପୁତ୍ର ବିଶାଖ, ସୁତନ୍ତୁ, ସୁଗମ ଓ ନରେନ୍ଦ୍ର ଶର୍ମା ସପ୍ତଗୁଣରଥୀ ।

'ରାଜା ସହସ୍ରାୟୁଙ୍କ ପୁତ୍ର ମହାରଥୀ ଏବଂ ଏହି ଶତାନୀକ ମହାରଥୀମାନଙ୍କ ଯୂଥପତି । ସୂର୍ଯ୍ୟପ୍ରଭଙ୍କ ମିତ୍ର ସୁଭାଷ, ହର୍ଷ, ବିମଳ, ମହାବୁଦ୍ଧି, ଅଚଳ, ପ୍ରିୟଙ୍କର ଓ ଶୁଭଙ୍କର ମହାରଥୀମାନଙ୍କର ନାୟକ । ଧର୍ମରଚି ଓ ଯଜ୍ଞରଚି ମଧ୍ୟ ମହାରଥୀ । ଏହିପରି ବିଶ୍ୱରଚି, ଭାସ ଓ ସିଦ୍ଧାର୍ଥ—ଏହି ତିନିଜଣ ମନ୍ତ୍ରୀ ମହାରଥୀମାନଙ୍କର ନାୟକ, ପ୍ରହସ୍ତ ଓ ମହାର୍ଥ ଅତିରଥମାନଙ୍କର ଯୂଥପତି । ପ୍ରଜ୍ଞାଢ଼୍ୟ ଓ ସ୍ଥିରବୁଦ୍ଧି ରଥଯୂଥର ନାୟକ । ଦାନବ ସର୍ବଦମନ, ପ୍ରମଥନ, ଧୂମକେତୁ, ପ୍ରବହଣ, ବଜ୍ରପଞ୍ଜର, କାଳଚକ୍ର ଓ ମରୁଦ୍‌ବେଗ ରଥୀ ଓ ଅତିରଥୀମାନଙ୍କର ନାୟକ । ପ୍ରକମ୍ପନ ଓ ସିଂହନାଦ ରଥୀ ଓ ଅତିରଥୀମାନଙ୍କ ଯୂଥପତି । ମହାମାୟ, କାମ୍ବଳିକ, କାଳକମ୍ପନକ ଓ ହୃଷ୍ଟରୋମା—ଏହି ଅସୁରବୀରମାନେ ମହରାଥୀମାନଙ୍କ ଅଧିପତିଙ୍କ ଅଧିପତି । ସୂର୍ଯ୍ୟପ୍ରଭଙ୍କ ସମକକ୍ଷ ଯୋଦ୍ଧା ଓ ସମାନ ଶକ୍ତିଶାଳୀ ପ୍ରଭାସ ଓ ସୁମେରୁଙ୍କ ପୁତ୍ର ଶ୍ରୀ କୁଞ୍ଜରକୁମାର—ଏ ଉଭୟ ପ୍ରଧାନ ଯୋଦ୍ଧା ମହାରଥୀମାନଙ୍କର ନାୟକ । ଏହା ବ୍ୟତୀତ ଅନ୍ୟ ବହୁ ରାଜା ନିଜର ସେନାବାହିନୀ ସହ ଆମ ସୈନ୍ୟବାହିନୀରେ ଯୋଗଦାନ କରିଅଛନ୍ତି । ଯଦ୍ୟପି ଶତ୍ରୁମାନଙ୍କ ସୈନ୍ୟ ସଂଖ୍ୟା ଆମ ଅପେକ୍ଷା ଅଧିକ ତଥାପି ଭଗବାନ ଶଙ୍କରଙ୍କ ଅଖଣ୍ଡ କୃପାବଳରେ ଆମ୍ଭେମାନେ ତାଙ୍କ ଉପରେ ନିଶ୍ଚୟ ବିଜୟ ହାସଲ କରିପାରିବା ।'

ମୟ ନିଜର ଜ୍ୟେଷ୍ଠପୁତ୍ର ସୁନୀଥଙ୍କୁ ନିଜ ସେନା ସହ ଏପରି ଭାବରେ ପରିଚିତ କରାଇ ଦେଉଥିବା ସମୟରେ ଶ୍ରୁତଶର୍ମାଙ୍କ ପିତାଙ୍କଦ୍ୱାରା ପ୍ରେରିତ ଦୂତ ପୁଣି ଆସି ସେଠାରେ ଉପସ୍ଥିତ ହୋଇ କହିଲା, 'ତ୍ରିକୂଟାଧିପତି ଆପଣଙ୍କୁ ଏ ସନ୍ଦେଶ ପ୍ରେରଣ କରିଛନ୍ତି ଯେ ସଂଗ୍ରାମ ହେଉଛି ଶୂର ଓ ବୀରମାନଙ୍କର ମହୋତ୍ସବ । କିନ୍ତୁ ଏଥିପାଇଁ ଏହି ସ୍ଥାନ ପର୍ଯ୍ୟାପ୍ତ ନୁହେ, ଏଣୁ ଆମ୍ଭେମାନେ ବିସ୍ତୃତ ଯୁଦ୍ଧ ପ୍ରାଙ୍ଗଣ ଥିବା କଳାପଗ୍ରାମ ଅଭିମୁଖରେ ଯାତ୍ରା କରୁଛୁ । ଆପଣ ସେଠାରେ ଆସି ଆମର ସମ୍ମୁଖୀନ ହେବେ ।'

ବାର୍ତ୍ତା ଲାଭକରି ସୁନୀଥ ପ୍ରଭୃତି ଏଥିରେ ସମ୍ମତ ହୋଇ କଳାପ ଗ୍ରାମରେ ଯାଇ ପହଞ୍ଚିଲେ । ଯୁଦ୍ଧତତ୍ପର ଶ୍ରୁତଶର୍ମା ପ୍ରଭୃତି ନିଜ ନିଜର ସେନା ବାହିନୀ ସହ ସେଠାରେ ଉପସ୍ଥିତ ହେଲେ ।

ଶ୍ରୁତଶର୍ମାଙ୍କ ସହ ବହୁ ହସ୍ତୀ ସଜ୍ଜିତ ହୋଇ ରହିଥିବା ଦେଖି ସୂର୍ଯ୍ୟପ୍ରଭ ମଧ୍ୟ ବିମାନ ପ୍ରେରଣ କରି ନିଜର ହସ୍ତୀଗୁଡ଼ିକୁ ନେଇ ଆସିଲେ ।

ସାମରିକ ପ୍ରସ୍ତୁତି ଦୃଷ୍ଟିରୁ ଶ୍ରୁତଶର୍ମାଙ୍କ ସେନାପତି ଦାମୋଦର ନିଜର ସେନାବାହିନୀଦ୍ୱାରା ମହାସୂଚୀବ୍ୟୂହ ରଚନା କଲେ । ଏହାର ପାର୍ଶ୍ୱରେ ଶ୍ରୁତଶର୍ମା ନିଜର ସୈନ୍ୟ ସାମନ୍ତ ସହ ରହିଥାନ୍ତି । ଅଗ୍ରଭାଗ ରକ୍ଷାକଲେ ସେନାପତି ଦାମୋଦର ଏବଂ ଅନ୍ୟାନ୍ୟ ସ୍ଥାନରେ ଅନ୍ୟ ବିଦ୍ୟାଧର ରାଜାମାନେ ସଜ୍ଜିତ ହୋଇ ରହିଲେ ।

ଏଣେ ସୂର୍ଯ୍ୟପ୍ରଭଙ୍କ ସେନାପତି ପ୍ରଭାସ ନିଜ ସୈନ୍ୟଦ୍ୱାରା ଅର୍ଦ୍ଧଚନ୍ଦ୍ରାକାର ବ୍ୟୂହ ରଚନା କରି ନିଜେ ତାହା ମଧ୍ୟରେ ଅବସ୍ଥାନ କଲେ । ବ୍ୟୂହର ଉଭୟ ପ୍ରାନ୍ତକୁ କୁଞ୍ଜରକୁମାର ଏବଂ ପ୍ରହସ୍ତ ରକ୍ଷା କରୁଥାନ୍ତି । ସୂର୍ଯ୍ୟପ୍ରଭ ଓ ସୁନୀଥ ବ୍ୟୂହର ପୃଷ୍ଠଦେଶ ରକ୍ଷା କରିବାପାଇଁ ଜାଗ୍ରତ ରହିଲେ ।

ସୁମେରୁ ଓ ସୁବାସକୁମାର ବ୍ୟୂହର ସମ୍ମୁଖ ଭାଗରେ ଆସି ଦଣ୍ଡାୟମାନ ହୁଅନ୍ତେ ରଣଭେରୀ ନିନାଦିତ ହୋଇ ଉଠିଲା ।

ଏହି ମହାସମର ଦର୍ଶନ କରିବା ନିମନ୍ତେ ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ଦେବଗଣ, ଇନ୍ଦ୍ର ପ୍ରଭୃତି ଦଶଦିଗପାଳ ଏବଂ ଅପ୍ସରା ସମୂହ ଆସି ସେଠାରେ ରୁଣ୍ଡ ହେଲେ । ବିଶ୍ୱନାଥ ଶଙ୍କର ପାର୍ବତୀଙ୍କ ସହ ମଧ୍ୟ ଆସି ଉପସ୍ଥିତ ହେଲେ ଏବଂ ଏହାଙ୍କୁ ଅନୁସରଣ କରି ବହୁ ଦେବତା, ମାତୃକା, ଭୂତ, ପ୍ରେତ ପ୍ରଭୃତି ମଧ୍ୟ ଆସି ପହଞ୍ଚିଲେ । ସାବିତ୍ରୀଙ୍କ ସହ ବେଦମନ୍ତ୍ର ଏବଂ ତାଙ୍କ ସଙ୍ଗେ ମୂର୍ତ୍ତିମାନ୍ ସମସ୍ତ ବେଦ ଓ ମନ୍ତ୍ରଦ୍ରଷ୍ଟା ମହର୍ଷିମାନେ ମଧ୍ୟ ଆସି ଉପସ୍ଥିତ

ହେଲେ । ଲକ୍ଷ୍ମୀ, କୀର୍ତ୍ତି, ଜୟା ପ୍ରଭୃତିଙ୍କ ସହ ଚକ୍ରଧାରୀ ଭଗବାନ୍ ବିଷ୍ଣୁ ଗରୁଡ଼ ପୃଷ୍ଠରେ ଆସି ଆକାଶ ମଣ୍ଡଳ ମଣ୍ଡନ କଲେ । ପତ୍ନୀମାନଙ୍କ ସହ ମହର୍ଷି କଶ୍ୟପ, ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ, ଯକ୍ଷ, ରାକ୍ଷସ, ନାଗରାଜ ତଥା ଅସୁରାଧିପତି ପ୍ରହ୍ଲାଦ ମଧ୍ୟ ଆସି ଆକାଶ ମାର୍ଗରୁ ଯୁଦ୍ଧ ଦର୍ଶନ କରିବା ନିମନ୍ତେ ଅପେକ୍ଷା କରିବାକୁ ଲାଗିଲେ ।

ଉପରୋକ୍ତ ଦର୍ଶକମାନଙ୍କଦ୍ୱାରା ଗଗନ ମଣ୍ଡଳ ପରିପୂର୍ଣ୍ଣ ହୁଅନ୍ତେ ଉଭୟ ସେନା ବାହିନୀରେ ଭୀଷଣ କୋଳାହଳ ଓ ଅସ୍ତ୍ରଶସ୍ତ୍ରର ଝଣତ୍କାର ଶୁଣାଗଲା । ବାଣ ସମୂହ ଦ୍ୱାରା ଆକାଶ ଓ ଚତୁର୍ଦ୍ଦିଗ ମେଘାଚ୍ଛନ୍ନ ହେବାପରି ମନେହେଲା । ଉଭୟ ପକ୍ଷରୁ ଶରବୃଷ୍ଟି ହେବାରୁ ସେମାନଙ୍କ ମଧ୍ୟରୁ ଜାତ ହେଉଥିବା ଅଗ୍ନି ବିଜୁଳିର ଝଲକ ତୁଲ୍ୟ ଶୋଭା ପାଇବାକୁ ଲାଗିଲା । ହସ୍ତୀ, ଅଶ୍ୱ ଓ ବୀରମାନଙ୍କର ଛିନ୍ନ ଶରୀରରୁ ନିର୍ଗତ ରକ୍ତ ନଦୀ ଆକାରରେ ପ୍ରବାହିତ ହେବାକୁ ଲାଗିଲା । ମୃତ ଯୋଦ୍ଧାମାନଙ୍କର ଶରୀରଗୁଡ଼ିକ ମକରରୂପେ ଏଣେତେଣେ ଭାସି ବୁଲୁଥାଏ । କର୍କଶ ହାସ୍ୟ ପ୍ରକାଶ କରି ଏବଂ ବିଚିତ୍ର ବୀଭତ୍ସ ନୃତ୍ୟକରି ମୃତ ଶରୀରଗୁଡ଼ିକରୁ ପଳ ପଳ ମାଂସ ଭକ୍ଷଣ କରୁଥିବା ଭୂତ, ପ୍ରେତ ଓ ଶୃଗାଳମାନଙ୍କପାଇଁ ଏହି ସଂଗ୍ରାମ ମହୋତ୍ସବ ତୁଲ୍ୟ ଆନନ୍ଦଦାୟକ ହେଲା । ଅସଂଖ୍ୟ ସୈନିକ ମୃତ୍ୟୁବରଣ କରନ୍ତେ ଯୁଦ୍ଧ ପୁନଃ ପୁନଃ ଶାନ୍ତ ହେଉଥିବାରୁ ଉଭୟ ପକ୍ଷର ସୈନିକମାନେ ପରସ୍ପର ପରସ୍ପରକୁ ଚିହ୍ନିବା ପାଇଁ ସୁଯୋଗ ଲାଭ କଲେ । ସୁମେରୁଙ୍କଠାରୁ ଶୁଣି ସୂର୍ଯ୍ୟପ୍ରଭ ପ୍ରଭୃତି ଶ୍ରୁତଶର୍ମାଙ୍କ ସେନାବାହିନୀରେ ଥିବା ବୀରମାନଙ୍କର ପରିଚୟ ଲାଭକଲେ ।

ସର୍ବପ୍ରଥମେ ସୂର୍ଯ୍ୟପ୍ରଭଙ୍କ ପକ୍ଷରୁ ରାଜା ସୁବାହୁ ଏବଂ ବିଦ୍ୟାଧର ରାଜା ଅଟ୍ଟହାସଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା । ବହୁ ସମୟ ଯୁଦ୍ଧ କରି ଅଟ୍ଟହାସ ଅର୍ଦ୍ଧଚନ୍ଦ୍ର ବାଣଦ୍ୱାରା ସୁବାହୁଙ୍କ କ୍ଷତବିକ୍ଷତ ଶରୀରରୁ ତାଙ୍କ ମସ୍ତକକୁ ଛିନ୍ନକଲେ ।

ସୁବାହୁଙ୍କ ନିଧନରେ ରାଜା ମୁଷ୍ଟିକ କ୍ରୋଧାନ୍ୱିତ ହୋଇ ଅଟ୍ଟହାସକୁ ଆକ୍ରମଣ କଲେ । କିନ୍ତୁ ଅଳ୍ପ ସମୟ ମଧ୍ୟରେ ଅଟ୍ଟହାସ ତାଙ୍କର ବକ୍ଷଦେଶକୁ ଶର ସନ୍ଧାନ କରି ତାଙ୍କୁ ଧରାଶାୟୀ କରିଦେଲେ ।

ମୁଷ୍ଟିକଙ୍କ ମୃତ୍ୟୁରେ ରାଜା ପ୍ରଳମ୍ବ ଅଗ୍ରସର ହୋଇ ତାଙ୍କ ସ୍ଥାନ ଅଧିକାର କଲେ । ସେ ଶରଜାଳ ବୃଷ୍ଟି କରି ଅଟ୍ଟହାସକୁ ଆଚ୍ଛାଦିତ କରିଦେଲେ । କିନ୍ତୁ ପ୍ରବଳପରାକ୍ରମଶାଳୀ ଅଟ୍ଟହାସ ତାଙ୍କର ସମସ୍ତ ଅସ୍ତ୍ରକୁ ଛେଦନ କରି ପ୍ରଥମେ ତାଙ୍କ ସେନାମାନଙ୍କୁ ନିହତ କଲେ ଏବଂ ପରେ ତାଙ୍କୁ ରଥ ଉପରେ ହିଁ ହତ୍ୟାକଲେ ।

ଏହାପରେ ମୋହନ ନାମକ ରାଜା ସମ୍ମୁଖକୁ ଆସି ଅଟ୍ଟହାସଙ୍କ ପ୍ରତି ପ୍ରବଳ ଶରସନ୍ଧାନ କଲେ । କିନ୍ତୁ ଏଥିରେ କିଞ୍ଚିତ୍‌ମାତ୍ର ବିଚଳିତ ନ ହୋଇ ଅଟ୍ଟହାସ ତାଙ୍କର ଧନୁର୍ବାଣ କର୍ତ୍ତନ ପୂର୍ବକ ସାରଥିଙ୍କୁ ନିହତ କରି ତାଙ୍କୁ ଶେଷରେ ଯମଭୁବନକୁ ପ୍ରେରଣ କଲେ ।

ରଣକୁଶଳ ଅଟ୍ଟହାସ ଚାରୋଟି ବୀରପୁରୁଷଙ୍କୁ ଅବଲୀଳାକ୍ରମେ ନିହତ କରିବା ଦେଖି ଶ୍ରୁତଶର୍ମାଙ୍କ ସେନା ବାହିନୀରେ ଆନନ୍ଦର କଳରୋଳ ସୃଷ୍ଟି ହେଲା । ଏଥିରେ ସୂର୍ଯ୍ୟପ୍ରଭଙ୍କ ମିତ୍ର ହର୍ଷ କୋପାଗ୍ନିରେ ପ୍ରଜ୍ୱଳିତ ହୋଇ ନିଜର ସେନାସହ ଆସି ଅଟ୍ଟହାସଙ୍କ ସମ୍ମୁଖୀନ ହେଲେ । ସେ ପ୍ରଥମ ଶର ପ୍ରୟୋଗରେ ଅଟ୍ଟହାସଙ୍କଦ୍ୱାରା ପ୍ରୟୋଗ କରାଯାଇଥିବା ସମସ୍ତ ବାଣ କର୍ତ୍ତନ କରି ଦ୍ୱିତୀୟ ବାଣ ସନ୍ଧାନ ପୂର୍ବକ ତାଙ୍କର ସାରଥିକୁ ନିହତ କଲେ; ତୃତୀୟ ଶରଦ୍ୱାରା ତାଙ୍କର ଧନୁ ଓ ରଥଧ୍ୱଜକୁ ଛିନ୍ନକରି ସେ ଚତୁର୍ଥ ବାଣଦ୍ୱାରା ଅଟ୍ଟହାସଙ୍କର ଛିନ୍ନମସ୍ତକ ଓ ରକ୍ତାକ୍ତ ଶରୀରକୁ ରଥ ଉପରୁ ନିକ୍ଷିପ୍ତ କଲେ ।

ଅଟ୍ଟହାସଙ୍କ ମୃତ୍ୟୁରେ ଯୁଦ୍ଧ ଏପରି ଭୟଙ୍କର ଆକାର ଧାରଣ କଲା ଯେ ମୁହୂର୍ତ୍ତକ ମଧ୍ୟରେ ଉଭୟ ପକ୍ଷର ଅର୍ଦ୍ଧାଧିକ ସେନା ନିଃଶେଷ ହୋଇଗଲେ । ସମଗ୍ର ସଂଗ୍ରାମ ଭୂମି ହସ୍ତୀ, ଅଶ୍ୱ ଓ ସୈନିକମାନଙ୍କ ଶବରେ ଆଚ୍ଛାଦିତ ହୋଇଗଲା । ଚତୁର୍ଦ୍ଦିଗ କେବଳ କବନ୍ଧରେ ପରିପୂର୍ଣ୍ଣ ହେଲା ।

ଅଟ୍ଟହାସଙ୍କ ମୃତ୍ୟୁରେ କ୍ରୁଦ୍ଧ ହୋଇ ବିକୃତଦଂଷ୍ଟ୍ର ନାମକ ବିଦ୍ୟାଧରରାଜ ସମ୍ମୁଖକୁ ଆସି ହର୍ଷଙ୍କୁ ଶର ପ୍ରୟୋଗରେ ବ୍ୟାକୁଳିତ କରିଦେଲେ । ହର୍ଷ ମଧ୍ୟ ତାଙ୍କର ଶରଜାଳ ଛିନ୍ନ କରି ଧ୍ୱଜ ଓ ସାରଥିକୁ କାଟି ପକାଇଲେ । ରଥର ଅଶ୍ୱଗୁଡ଼ିକୁ ଶର ପ୍ରୟୋଗରେ ନିହତ କରି ସେ ବିକୃତଦଂଷ୍ଟ୍ରଙ୍କର କୁଣ୍ଡଳମଣ୍ଡିତ ମସ୍ତକକୁ ଭୂଲୁଣ୍ଠିତ କରିଦେଲେ ।

ବିକୃତଦଂଷ୍ଟ୍ରଙ୍କ ମୃତ୍ୟୁରେ ବିଦ୍ୟାଧର ଅଧିପତି ଚକ୍ରବାଳ କ୍ଷିପ୍ର ଗତିରେ ଆସି ବାରମ୍ୱାର ହର୍ଷଙ୍କର ଧନୁର୍ବାଣକୁ ଛିନ୍ନ କରିବାକୁ ଲାଗିଲେ । ଏବଂ ଶ୍ରାନ୍ତକ୍ଳାନ୍ତ ହର୍ଷ ଅନ୍ୟ ଶର ପ୍ରୟୋଗ କରିବା ପୂର୍ବରୁ ତାଙ୍କୁ ନିଧନ କଲେ ।

ଏହା ଦର୍ଶନ କରି ପ୍ରମଥ ନାମକ ରାଜା ଆସି ଚକ୍ରବାଳଙ୍କୁ ଆକ୍ରମଣ କଲେ । କିନ୍ତୁ ତେଜସ୍ୱୀ ଚକ୍ରବାଳ କ୍ରମାଗତଭାବେ ଆସିଥିବା କଂକଟ, ବିଶାଳ, ପ୍ରଚଣ୍ଡ ଓ ଅଙ୍କୁରଙ୍କୁ ହତ୍ୟା କଲେ ।

ଏଥିରେ କ୍ଷୁବ୍‌ଧ ହୋଇ ରାଜା ନିର୍ଘାତ ଚକ୍ରବାଳଙ୍କ ଉପରେ ବାଣବୃଷ୍ଟି ଆରମ୍ଭ କଲେ । ଉଭୟେ ଅବିରତ ଭୀଷଣ ଯୁଦ୍ଧରେ ପ୍ରବୃତ୍ତ ହୋଇ ପରସ୍ପରର ରଥ, ଅଶ୍ୱ,

ସାରଥି ପ୍ରଭୃତି କାଟିପକାଇଲେ । ଫଳରେ ଉଭୟେ ରଥହୀନ ହୋଇ ପାଦଚାରଣ ପୂର୍ବକ ଖଡ୍‌ଗ ଓ ଢାଲ ସାହାଯ୍ୟରେ ଦ୍ୱନ୍ଦ୍ୱଯୁଦ୍ଧରେ ଅବତୀର୍ଣ୍ଣ ହେଲେ । କିଛିକ୍ଷଣ ବିସ୍ମୟକର ସଂଗ୍ରାମ କଲାପରେ ଉଭୟେ ଉଭୟଙ୍କ ଖଡ୍‌ଗରେ ନିହତ ହେଲେ । ଦୁଇ ବୀରଙ୍କର ମୃତ୍ୟୁରେ ଉଭୟ ପକ୍ଷର ସେନା ନିରାଶ ହୋଇପଡ଼ିଲେ ଏବଂ କିଛି ସମୟ ପାଇଁ ଯୁଦ୍ଧ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ।

ଏହି ସଙ୍କଟରୁ ମୁକ୍ତିଦେବା ନିମିତ୍ତ ବିଦ୍ୟାଧର ଅଧିପତି କାଳକମ୍ପନ ଆସି ସମ୍ମୁଖରେ ଦଣ୍ଡାୟମାନ ହେଲେ । ତାଙ୍କୁ ଦେଖିବା ମାତ୍ରେ ସୂର୍ଯ୍ୟପ୍ରଭଙ୍କ ପକ୍ଷରୁ ପ୍ରକମ୍ପନ ନାମକ ରାଜକୁମାର ତାଙ୍କ ସହ ଲଢ଼ିବା ପାଇଁ ଅଗ୍ରସର ହେଲେ । କିନ୍ତୁ କ୍ଷଣକ ମଧ୍ୟରେ ସେ କାଳକମ୍ପନଙ୍କ ଅସ୍ତ୍ରାଘାତରେ ଶେଷ ନିଶ୍ୱାସ ପରିତ୍ୟାଗ କଲେ ।

ତାଙ୍କୁ ଭୂପତିତ ହେବା ଦେଖି ଜାଲିକ, ଚଣ୍ଡଦତ୍ତ, ଗୋପକ, ସୋମିକ ଓ ପିତୃଶର୍ମା ନାମକ ପାଞ୍ଚ ମହାରଥୀ ଆସି କାଳକମ୍ପନଙ୍କୁ ଆକ୍ରମଣ କଲେ । କିନ୍ତୁ ସେ ଶରପ୍ରୟୋଗ କରି ଏକ ସମୟରେ ସମସ୍ତଙ୍କୁ ରଥହୀନ କରି ହତ୍ୟା କଲେ । ଏଥିରେ ବିଦ୍ୟାଧରମାନେ ଆନନ୍ଦିତ ଏବଂ ମନୁଷ୍ୟ ଓ ରାକ୍ଷସମାନେ ବିଷଣ୍ଣ ହେଲେ । ଏହାପରେ ଉନ୍ମତ୍ତକ, ପ୍ରଶସ୍ତ, କଳଂବକ ଓ ଧୁରଂଧର କାଳକମ୍ପନଙ୍କୁ ଆକ୍ରମଣ କରି ନିହତ ହେଲେ ଏବଂ ପରେ ପରେ ଅନ୍ୟ ଛଅଜଣ ମହାରଥୀଙ୍କୁ ମଧ୍ୟ ସେ ଅନାୟାସରେ ବଧ କଲେ । ଏମାନେ ହେଲେ ତେଜିକ, ଶେୟିକ, ବେଶିକ, ଶାଖିକ, ଭଦ୍ରକର ଓ ଦଣ୍ଡୀ । ଏମାନଙ୍କ ପରେ ପରେ ଆଉ ପାଞ୍ଚଜଣ ମହାରଥୀ ନିଜର ସୈନ୍ୟସାମନ୍ତ ସହ ଆସି କାଳକମ୍ପନଙ୍କ ବୀରତ୍ୱ ଯୋଗୁଁ ଶମନଭୁବନ ଦର୍ଶନ କରିବାର ସୁଯୋଗ ଲାଭ କଲେ । ଏମାନେ ହେଉଛନ୍ତି ଭୀମ, ଭୀଷଣ, କୁମ୍ଭୀର, ବିକଟ ଓ ବିଲୋଚନ ।

କାଳକମ୍ପନଙ୍କ ଏ ପ୍ରକାର ବୀରତ୍ୱ ସନ୍ଦର୍ଶନ କରି ସୁଗଣ ନାମକ ରାଜପୁତ୍ର ଆସି ଏହାଙ୍କର ସମ୍ମୁଖୀନ ହେଲେ । ଉଭୟେ ଯୁଦ୍ଧ କରି କରି ରଥ ଓ ସାରଥି ବିହୀନ ହେଲେ । ପଦଚାରୀ ହୋଇ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେବାରେ ସୁଗଣ ନିଜର ସୁତୀକ୍ଷ୍ଣ ଖଡ୍‌ଗଦ୍ୱାରା ବିଜୟୀ କାଳକମ୍ପନଙ୍କୁ ଦ୍ୱିଧା ବିଭକ୍ତ କରିଦେଲେ ।

ଏ ସମୟରେ ମନୁଷ୍ୟମାନଙ୍କ ସହ ବିଦ୍ୟାଧରମାନଙ୍କର ଯୁଦ୍ଧ ଅସମ୍ଭବ ବୋଲି ମନେ କରି, ଅତଏବ ବୋଧହୁଏ ଦୁଃଖିତ ହୋଇ, ରବି ଅସ୍ତାଚଳଗାମୀ ହେଲେ । କେବଳ ରକ୍ତ ରୂପ ଜଳରେ ପରିପୂର୍ଣ୍ଣ ହୋଇ ଯୁଦ୍ଧଭୂମି ଯେ ରକ୍ତବର୍ଣ୍ଣ ଧାରଣ କଲା, ତା' ନୁହେ, ସନ୍ଧ୍ୟା ଆଗମନରେ ଆକାଶ ମଣ୍ଡଳ ମଧ୍ୟ ରକ୍ତରଞ୍ଜିତ ହେଲା । ଭୂତ, ପ୍ରେତ, କବନ୍ଧ

ପ୍ରଭୃତି ଆନନ୍ଦୋନ୍ମତ୍ତ ହୋଇ ନୃତ୍ୟ କରିବାକୁ ଲାଗିଲେ । ଏହା ଦେଖି ଉଭୟ ପକ୍ଷର ଯୋଦ୍ଧୃବୃନ୍ଦ ଯୁଦ୍ଧ ବିରତି ଘୋଷଣା କରି ନିଜ ନିଜ ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ଦିବସର ଯୁଦ୍ଧରେ ଶ୍ରୁତଶର୍ମାଙ୍କ ପକ୍ଷରୁ ତିନିଜଣ ଏବଂ ସୂର୍ଯ୍ୟପ୍ରଭଙ୍କ ପକ୍ଷରୁ ତେତିଶଜଣ ବୀର ପ୍ରାଣତ୍ୟାଗ କରିଥିଲେ । ବନ୍ଧୁ, ମିତ୍ର ଓ ବୀର ସୈନିକମାନଙ୍କ ମୃତ୍ୟୁରେ ବିଚଳିତ ଓ ଶୋକବିହ୍ୱଳ ହୋଇ ସୂର୍ଯ୍ୟପ୍ରଭ ରାଣୀମାନଙ୍କ ନିକଟକୁ ନଯାଇ ଏକାକୀ ଶୟନାଗାରରେ ପ୍ରବେଶ କଲେ । କିନ୍ତୁ ତାଙ୍କ ଚକ୍ଷୁକୁ ନିଦ୍ରା ଆସିଲା ନାହିଁ । ପରଦିନର ଯୁଦ୍ଧ ସମ୍ପର୍କରେ ଚିନ୍ତିତ ହୋଇ ସେ ବିନିଦ୍ର ରଜନୀ ଯାପନ କରିବାକୁ ଲାଗିଲେ ।

## ସ୍ତ୍ରୀମାନଙ୍କ ଯୁଦ୍ଧ ଚର୍ଚ୍ଚା

ଉକ୍ତ ରଜନୀରେ ମୃତ ବାନ୍ଧବମାନଙ୍କର ଦୁଃଖରେ ଅଭିଭୂତା ହୋଇ ସୂର୍ଯ୍ୟପ୍ରଭଙ୍କ ରାଣୀମାନେ ଗୋଟିଏ ସ୍ଥାନରେ ଆସି ପରସ୍ପରକୁ ଆଶ୍ୱାସନା ଦେବା ନିମିତ୍ତ ଋଣ୍ଡୀଭୂତ ହେଲେ । ଏହି ଗଭୀର ଦୁଃଖ ସମୟରେ ମଧ୍ୟ ସେମାନେ ବିଭିନ୍ନ ବିଷୟରେ ଆଲୋଚନା ଆରମ୍ଭ କରିଦେଲେ । ସ୍ତ୍ରୀମାନଙ୍କର ଏପରି ଏକ କ୍ଷଣ ନାହିଁ ଯେତେବେଳେ ସେମାନେ ନିଜର ବା ପରର ଚର୍ଚ୍ଚା ନ କରନ୍ତି ।

ଏହିପରି ଆଲୋଚନା ପ୍ରସଙ୍ଗରେ ଜଣେ ରାଜକୁମାରୀ କହିଲେ, 'ଆଶ୍ଚର୍ଯ୍ୟର କଥା ଯେ ଆଜି ଆର୍ଯ୍ୟପୁତ୍ର (ସୂର୍ଯ୍ୟପ୍ରଭ) କୌଣସି ରାଣୀଙ୍କ ବିନା ଏକାକୀ ଶୟନ କରିଅଛନ୍ତି ।' ଏହାଶୁଣି ଦ୍ୱିତୀୟା କହିଲେ, 'ଆତ୍ମୀୟମାନଙ୍କର ମୃତ୍ୟୁରେ ଦୁଃଖିତ ଆର୍ଯ୍ୟପୁତ୍ର ସ୍ତ୍ରୀମାନଙ୍କ ସହ କିପରି ବା ଆମୋଦ ପ୍ରମୋଦ କରନ୍ତେ ?' ଏଥିରେ ଅନ୍ୟ ଜଣେ ବ୍ୟଙ୍ଗ କରି କହିଲେ, 'ଆଜି ଯଦି ଗୋଟିଏ ନବୀନା ସୁନ୍ଦରୀ ମିଳିଯାଆନ୍ତା, ତାହାହେଲେ ସେ ସମସ୍ତ ସ୍ୱଜନଙ୍କ ଦୁଃଖ ସଙ୍ଗେ ସଙ୍ଗେ ବିସ୍ମୃତ ହୋଇଯାଆନ୍ତେ ।' କିନ୍ତୁ ଚତୁର୍ଥ ସୂର୍ଯ୍ୟପ୍ରଭଙ୍କ ସପକ୍ଷରେ କହିଲେ, 'ଯଦିଓ ଆର୍ଯ୍ୟପୁତ୍ର ସ୍ତ୍ରୀମାନଙ୍କ ପ୍ରତି ଅଧିକ ଆସକ୍ତ, ତଥାପି ଏପରି କଷ୍ଟ ସମୟରେ ସେ କିପରି ବା ଆମ୍ଭମାନଙ୍କ ସହ କାମକ୍ରୀଡ଼ା କରନ୍ତେ !'

ସେମାନେ ଏପରି ଆଲୋଚନା କରୁଥିବା ସମୟରେ ଜଣେ ରାଣୀ ଆଶ୍ଚର୍ଯ୍ୟ ପ୍ରକାଶ କରି ପ୍ରଶ୍ନକଲେ, 'ଆଚ୍ଛା, କହିଲ ଆମ୍ଭମାନଙ୍କର ଆର୍ଯ୍ୟପୁତ୍ର ଏପରି ସ୍ତ୍ରୀଲମ୍ପଟୀ କାହିଁକି ହୋଇପଡ଼ିଛନ୍ତି ? ତାଙ୍କର ଆମପରି ବହୁ ସ୍ତ୍ରୀ ଥିଲେ ହେଁ ସେ ପୁଣି ନୂତନ ନୂତନ

ସ୍ତ୍ରୀ ଗ୍ରହଣ କରିବା ପାଇଁ ଲାଳାୟିତ ହୋଇପଡୁଛନ୍ତି । ପୁଣି ଯେତେ ସ୍ତ୍ରୀ ଗ୍ରହଣ କଲେ ହେଁ ସେ ସନ୍ତୁଷ୍ଟ ହେଉନାହାନ୍ତି କାହିଁକି ?'

ଏମାନଙ୍କ ମଧ୍ୟରୁ ଚତୁରା ମନୋବତୀ ଉପରୋକ୍ତ ସନ୍ଦେହ ମୋଚନ କରିବାକୁ ଯାଇ କହିଲେ, 'ରାଜାମାନେ ବହୁପତ୍ନୀ କାହିଁକି ଗ୍ରହଣ କରନ୍ତି ତା'ର କାରଣ ମୁଁ କହୁଛି– ଶୁଣ ।'

'ଦେଶ, ରୂପ, ଅବସ୍ଥା, ଚେଷ୍ଟା, ବିଜ୍ଞାନ ପ୍ରଭୃତି ଭେଦରେ ଉତ୍କୃଷ୍ଟ ନାରୀମାନଙ୍କର ଭିନ୍ନ ଭିନ୍ନ ଗୁଣ ଓ ଲକ୍ଷଣ ରହିଥାଏ । ଗୋଟିଏ ସ୍ତ୍ରୀ କଦାପି ସର୍ବଗୁଣସମ୍ପନ୍ନା ହୋଇପାରିବ ନାହିଁ । କର୍ଣ୍ଣାଟ, ଲାଟ, ସୌରାଷ୍ଟ୍ର, ମଧ୍ୟଦେଶ ପ୍ରଭୃତିର ସ୍ତ୍ରୀମାନେ ନିଜ ନିଜର ବିଶେଷତ୍ୱ ଯୋଗୁଁ ପୁରୁଷମାନଙ୍କର ମନୋହରଣ କରିଥାଆନ୍ତି । କେହି ଶରତଚନ୍ଦ୍ର ତୁଲ୍ୟ ମୁଖସୁଷମାଦ୍ୱାରା, କେହି ସ୍ୱର୍ଣ୍ଣକୁମ୍ଭସମ ସ୍ତନମଣ୍ଡଳ ଦ୍ୱାରା, କେହି ସ୍ମର ସିଂହାସନ ସଦୃଶ୍ୟ ଜଘନସ୍ଥଳ ଦ୍ୱାରା ଏବଂ ଅନ୍ୟ କେହି କେହି ଅନ୍ୟାନ୍ୟ ଆଙ୍ଗିକ ସୌନ୍ଦର୍ଯ୍ୟ ସାହାଯ୍ୟରେ ପୁରୁଷମାନଙ୍କର ମନୋହରଣ କରିବା ପାଇଁ ସମର୍ଥ । କେହି ଶୁଦ୍ଧ ସୁବର୍ଣ୍ଣ ବର୍ଣ୍ଣା, କେହି ବା ପ୍ରିୟଙ୍ଗୁ ପୁଷ୍ପ ତୁଲ୍ୟ ଶ୍ୟାମଳବର୍ଣ୍ଣା ଏବଂ ଆଉ କେହି ବା ଈଷତ୍ ରକ୍ତବର୍ଣ୍ଣା ହୋଇ ପ୍ରଣୟୀର ଚିତ୍ତକୁ ମୋହିତ କରିଥାଆନ୍ତି ।

କେହି କେହି ନବଯୌବନ ପ୍ରାପ୍ତିରେ ଏବଂ ଆଉ କେହି କେହି ପୂର୍ଣ୍ଣ ଯୌବନ ପ୍ରାପ୍ତିରେ ସୁନ୍ଦରୀ ଦେଖାଯାଆନ୍ତି । କେତେକ ନାରୀ ପ୍ରୌଢ଼ତା ପ୍ରାପ୍ତ ହୋଇ ରସଜ୍ଞା ହୁଅନ୍ତି ଏବଂ ଆଉ କେତେକ ନିଜର ହାବ, ଭାବ, ବିଳାସଦ୍ୱାରା ଚିତ୍ତ ହରଣ କରନ୍ତି । କେହି ହାସ୍ୟ ପ୍ରକାଶରେ ଏବଂ ଅନ୍ୟ କେହି କ୍ରୁଦ୍ଧ ହୋଇ ପୁରୁଷକୁ ମୋହିତ କରନ୍ତି । କେହି ଗଜଗାମିନୀ ତ କେହି ମରାଳଗମନା; କାହାର ମଧୁର ଭାଷଣ କର୍ଣ୍ଣରେ ଅମୃତଧାରା ବୃଷ୍ଟିକରେ ତ କାହାର ଭ୍ରୂବିଳାସ ନୟନପ୍ରୀତି ସମ୍ପାଦନ କରେ । କେହି ନୃତ୍ୟନିପୁଣା ତ କେହି ସୁଗାୟିକା ଏବଂ ଅନ୍ୟ କେହି ବାଦ୍ୟବିଳାସିନୀ । କେହି ନାରୀ ବାହ୍ୟରତି ନିପୁଣା ତ କେହି ଅନ୍ତରଙ୍ଗ ରତି ଚତୁରା । କିଏ ଶୃଙ୍ଗାର କରିବାରେ ଧୁରୀଣା ତ କିଏ ମିଷ୍ଟାଳାପ କରିବାରେ ସୁନିପୁଣା । ଏହିପରି ସ୍ତ୍ରୀମାନଙ୍କର ବିଭିନ୍ନ ଗୁଣ ସମ୍ପର୍କରେ କହି ବସିଲେ, ତାହା ଶେଷ ହେବାର ନୁହେ । ଏହି ଗୁଣାବଳୀ ମଧ୍ୟରୁ ଜଣେ ଗୋଟିଏ ଗୁଣର ଅଧିକାରିଣୀ । କିଏ ବିଭିନ୍ନ ଗୁଣର ମଧ୍ୟ । କାହାଠାରେ କେଉଁଗୁଣ ବିଶେଷ ପରିମାଣରେ ପରିପୂର୍ଣ୍ଣ ହୋଇ ରହିଥାଏ କିନ୍ତୁ ତିନି ଭୁବନରେ ସର୍ବଗୁଣସମ୍ପନ୍ନା ସ୍ତ୍ରୀ ବିରଳା ।

ଏଣୁ ଭିନ୍ନ ଭିନ୍ନ ରସ ଆସ୍ୱାଦନ କରିବା ପାଇଁ ରାଜାମାନେ ବହୁ ପତ୍ନୀ ବିବାହ କରିଥାଆନ୍ତି । ଉନ୍ନତ ଲୋକମାନେ ପରସ୍ତ୍ରୀ ପ୍ରତି ଦୃଷ୍ଟିପାତ ସୁଦ୍ଧା କରନ୍ତି ନାହିଁ ।

**ଉତ୍ତମାସ୍ତୁ ନ ବାଞ୍ଛନ୍ତି ପରଦାରାନ୍ କଥଞ୍ଚନ ।**

ତେଣୁ ଆମର ଆର୍ଯ୍ୟପୁତ୍ର ବହୁନାରୀ ବିବାହ କରି ସେ ଦୋଷରୁ ମୁକ୍ତ ଅଛନ୍ତି । ଆମ୍ଭେମାନେ ତେଣୁକରି ପରସ୍ପର ପ୍ରତି ଈର୍ଷାନ୍ୱିତ ହେବା ଅନୁଚିତ ।'

ମନୋବତୀଙ୍କଠାରୁ ଏହାଶୁଣି ମଦନସେନା ପ୍ରଭୃତି ରାଣୀମାନେ ସେ ସମ୍ପର୍କରେ ଚର୍ଚ୍ଚା ଆରମ୍ଭ କରିଦେଲେ । ଏ ସମୟରେ ସେମାନେ ଦ୍ୱିଧାହୀନ ଭାବରେ ସମସ୍ତ ଗୁପ୍ତ ସୁରତ ରହସ୍ୟ ପ୍ରକାଶ କରିବା ପାଇଁ ମଧ୍ୟ ଲଜ୍ଜା କଲେନାହିଁ । ସାଧାରଣତଃ ଏକତ୍ର ଭାବରେ ଆଲୋଚନା କରୁଥିବା ସମୟରେ ସ୍ତ୍ରୀମାନେ, ଏପରି କିଛି କଥାନାହିଁ ଯାହା ପ୍ରକାଶ ନ କରନ୍ତି !

**ପ୍ରସଙ୍ଗମିଳିତାଃ କଥାପ୍ରସରସକ୍ତଚିତ୍ତା ମିଥ–**
**ସ୍ତଦସ୍ତି ନ କିମପ୍ୟହୋ ଯଦିହ ନୋଦ୍ଦମନ୍ତି ସ୍ତ୍ରିୟଃ ।**

ଶୀଘ୍ର ଦିବାଲୋକ ଦର୍ଶନର ପ୍ରତୀକ୍ଷା ଏବଂ ଶତ୍ରୁମାନଙ୍କ ପରାଜୟ କାମନା କରି ସୂର୍ଯ୍ୟପ୍ରଭ ସେହି ଦୀର୍ଘୀଭୂତା ରଜନୀ ଯାପନ କଲେ ଏବଂ ମହିଷୀମାନେ ମଧ୍ୟ ଉପରୋକ୍ତ ଭାବେ କଥୋପକଥନ କରି ରାତିଟି ବିତାଇ ଦେଲେ ।



# ପଞ୍ଚମ ତରଙ୍ଗ

ପ୍ରଭାତର ସୂଚନା ପାଇବା ମାତ୍ରେ ଶ୍ରୁତଶର୍ମା ଓ ସୂର୍ଯ୍ୟପ୍ରଭ ନିଜ ନିଜର ସେନାବାହିନୀ ସହ ଆସି ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଲେ । ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର ପ୍ରଭୃତି ଦେବତା ତଥା ଅସୁର, ଯକ୍ଷ, ଗନ୍ଧର୍ବ, ରାକ୍ଷସ ପ୍ରଭୃତି ମଧ୍ୟ ଯୁଦ୍ଧ ଦର୍ଶନ କରିବା ନିମିତ୍ତ ଆସି ଆକାଶ ମାର୍ଗରେ ପୁଣି ଏକତ୍ର ହେବାକୁ ଲାଗିଲେ ।

ଶ୍ରୁତଶର୍ମାଙ୍କ ସେନାପତି ଦାମୋଦର ଚକ୍ରବ୍ୟୂହ ରଚନା କରନ୍ତେ ସୂର୍ଯ୍ୟପ୍ରଭଙ୍କ ସେନାପତି ପ୍ରଭାସ ବଜ୍ରବ୍ୟୂହ ରଚନା କରି ରହିଲେ । ବ୍ୟୂହ ରଚନା ଶେଷ ହେବାରୁ ଯୁଦ୍ଧ ଆରମ୍ଭ ହେଲା । ରଣଭେରୀ, ସୈନିକମାନଙ୍କର ରେରେକାର ତଥା ଅସ୍ତ୍ରଶସ୍ତ୍ରର ଝଣତ୍କାରରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇ ଉଠିଲା । ଯୁଦ୍ଧ ଭୂମିରେ ନିହତ ଶୂରବୀରମାନେ ସୂର୍ଯ୍ୟମଣ୍ଡଳ ଭେଦକରି ସତ୍ୟଲୋକକୁ ଯିବାପାଇଁ ଉଦ୍ୟମ କରିବେ ବୋଲି ଭାବି ସୂର୍ଯ୍ୟଦେବ ରଶ୍ମି ରୂପକ ଶରଜାଳରେ ନିଜକୁ ଆବୃତ କରି ରଖିଥିଲାପରି ମନେହେଲା ।

ଦାମୋଦରଙ୍କ ରଚିତ ଚକ୍ରବ୍ୟୂହ ଅନ୍ୟଦ୍ୱାରା ଅଭେଦ୍ୟ ଭାବି ସୂର୍ଯ୍ୟପ୍ରଭ ସ୍ୱୟଂ ପ୍ରଭାସଙ୍କୁ ତାହା ଭେଦ କରିବାପାଇଁ ନିର୍ଦ୍ଦେଶ ଦେଲେ । ପ୍ରଭାସ ମଧ୍ୟ ଆଦେଶ ପ୍ରାପ୍ତ ହେବାମାତ୍ରେ ଅନାୟାସରେ ଏକାକୀ ଯାଇ ତା' ମଧ୍ୟରେ ପ୍ରବେଶ କଲେ । ପ୍ରଭାସ ଯେଉଁ ମାର୍ଗ ଦେଇ ତା ମଧ୍ୟରେ ପ୍ରବେଶ କଲେ, ସେହି ମାର୍ଗରେ ତତ୍କ୍ଷଣାତ୍ ଦାମୋଦର ଆସି ଦଣ୍ଡାୟମାନ ହୋଇ ତାଙ୍କସହ ଭୀଷଣ ଯୁଦ୍ଧ ଆରମ୍ଭ କରିଦେଲେ । ପ୍ରଭାସ ମଧ୍ୟ ଏକାକୀ ଏକମାତ୍ର ରଥ ସାହାଯ୍ୟରେ ଅବିଚଳିତ ଭାବେ ତାଙ୍କର ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଲାଗିଲେ ।

ସୂର୍ଯ୍ୟପ୍ରଭ ତାଙ୍କୁ ଏକାକୀ ଯୁଦ୍ଧ କରୁଥିବା ଦେଖି ଆଉ ପନ୍ଦରଜଣ ମହାରଥୀଙ୍କୁ ତାଙ୍କର ସହାୟତା ନିମିତ୍ତ ପ୍ରେରଣ କଲେ । ଏମାନେ ହେଉଛନ୍ତି ପ୍ରକମ୍ପନ, ଧୂମକେତୁ, କାଳକମ୍ପନ, ମହାମାୟ, ମରୁଦ୍‌ବେଗ, ପ୍ରହସ୍ତ, ବଜ୍ରପଞ୍ଜର, କାଳଚକ୍ର, ପ୍ରମଥନ, ସିଂହନାଦ, କମ୍ବଳ, ବିକଟାକ୍ଷ, ପ୍ରବହଣ, କୁଞ୍ଜରକୁମାର ଓ ଅସୁରରାଜ ପ୍ରହୃଷ୍ଟରୋମା ।

ଏହି ମହାରଥୀମାନେ ରଥ ସହ ଯାଇ ବ୍ୟୂହଦ୍ୱାରରେ ଉପସ୍ଥିତ ହେଲେ । ଏଠାରେ ଦାମୋଦର ନିଜର ଅପୂର୍ବ ରଣଚାତୁରୀର ପରିଚୟ ଦେଇ ଏହି ପନ୍ଦର ଜଣ ଯୋଦ୍ଧାଙ୍କୁ ଅଟକାଇ ଦେଲେ ।

ଏହାଦେଖି ଦେବରାଜ ଇନ୍ଦ୍ର ନିକଟରେ ଥିବା ମହର୍ଷି ନାରଦଙ୍କୁ କହିଲେ, 'ଏହି ସୂର୍ଯ୍ୟପ୍ରଭ, ପ୍ରହସ୍ତ ପ୍ରଭୃତି ଅସୁରମାନଙ୍କର ଅବତାର । ଶ୍ରୁତଶର୍ମା ମୋର ଅଂଶରେ ସଂଭୂତ ଏବଂ ସମସ୍ତ ବିଦ୍ୟାଧର ଦେବ ଅଂଶରେ ଜନ୍ମ ଗ୍ରହଣ କରିଥିଛନ୍ତି । ତେଣୁ ଏହା ଏକପ୍ରକାର ଦେବାସୁର ସଂଗ୍ରାମ । ଦେବାସୁର ଯୁଦ୍ଧରେ ଭଗବାନ୍ ବିଷ୍ଣୁ ସର୍ବଦା ଦେବତାମାନଙ୍କର ସହାୟତା କରିଥାଆନ୍ତି । ଏହି ଦାମୋଦର ବିଷ୍ଣୁ ଅଂଶରୁ ଜାତ । ତେଣୁ ଦେଖ ସେ କିପରି ଅଦ୍ଭୁତ କୁଶଳତାର ସହ ଯୁଦ୍ଧ କରୁଅଛି ।'

ଇନ୍ଦ୍ର ଏ ପ୍ରକାର କହୁଥିବା ବେଳେ ବ୍ରହ୍ମଗୁପ୍ତ, ବାୟୁବଳ, ଯମଦଂଷ୍ଟ୍ର, ସୁରୋଷଣ, ରୋଷାବରୋହ, ଅତିବଳ, ତେଜଃପୁର, ଧୁରନ୍ଧର, କୁବେରଦତ୍ତ, ବରୁଣ ଶର୍ମା, କମ୍ବଳିକ, ଦୁଷ୍ଟଦମନ, ଦୋହନ ଓ ଆରୋହଣ ଏହି ଚତୁର୍ଦ୍ଦଶ ବୀର ଦାମୋଦରଙ୍କ ସାହାଯ୍ୟାର୍ଥେ ଆସି ପହଞ୍ଚିଗଲେ । ଦାମୋଦରଙ୍କ ସହ ଏମାନେ ପ୍ରଥମ ଯୁଦ୍ଧରେ ପ୍ରଭାସ ପ୍ରଭୃତି ପନ୍ଦର ଜଣ ବିପକ୍ଷ ବୀରଙ୍କୁ ବ୍ୟୂହଦ୍ୱାରରେ ପ୍ରତିରୋଧ କଲେ ।

ଏହାପରେ ଦାମୋଦରଙ୍କ ସହ ପ୍ରକମ୍ପନ, ତେଜଃପ୍ରଭଙ୍କ ସହ ଦାନବ କାଳକମ୍ପନ, ବାୟୁବଳ ସହ ଅସୁର ଶ୍ରେଷ୍ଠ ମରୁଦ୍‌ବେଗ, ଯମଦଂଷ୍ଟ୍ର ସହ ବଜ୍ରପଞ୍ଜର, ସୁରୋଷଣ ସହ ଅସୁର କାଳଚକ୍ର, କୁବେରଦତ୍ତଙ୍କ ସହ ପ୍ରମଥନ, ବରୁଣଶର୍ମାଙ୍କ ସହ ଦୈତ୍ୟରାଜ ସିଂହନାଦ, ଦୁଷ୍ଟଦମନ ସହ ପ୍ରବହଣ, ରୋଷାବରୋହ ସହ ପ୍ରହୃଷ୍ଟରୋମା, ବିକଟାକ୍ଷ ସହ ଧୁରନ୍ଧର, କମ୍ବଳକ ସହ କମ୍ବଳ, ଆରୋହଣ ସହ କୁଞ୍ଜରକୁମାର ଏବଂ ଦୋହନଙ୍କ ସହ ପ୍ରହସ୍ତଙ୍କର ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା । ଏହି ମହାରଥୀମାନେ ବ୍ୟୂହଦ୍ୱାରରେ ଯୁଦ୍ଧ କରୁଥିବା ବେଳେ ସୁନୀଥ ମୟଙ୍କୁ କହିଲେ, 'ଆମ୍ଭମାନଙ୍କର ମହାରଥୀମାନେ ଅସ୍ତ୍ରଶସ୍ତ୍ରରେ ଧୁରୀଣ ହେଲେ ହେଁ ସେମାନଙ୍କୁ ବ୍ୟୂହଦ୍ୱାରରେ ହିଁ ପ୍ରତିହତ କରାଗଲା । କେବଳ ପ୍ରଭାସ ହିଁ ଏକାକୀ ବ୍ୟୂହ ମଧ୍ୟରେ ପ୍ରବେଶ କରିଯାଇଛନ୍ତି । କ'ଣ ହେବ ଜଣାଯାଉନାହିଁ !'

ଏହାଶୁଣି ସୁବାସକୁମାର ମଝିରୁ ଉତ୍ତର ଦେଇ କହିଲେ, 'ପ୍ରଭାସକୁ ଜୟ କରିବା ପାଇଁ ତିନିଭୁବନରେ କେହି ସମର୍ଥ ନୁହନ୍ତି । ଏହି ବିଦ୍ୟାଧରମାନେ ତାଙ୍କ ସମ୍ମୁଖରେ କେତେ ? ଏହା ଜାଣି ସୁଦ୍ଧା ଆପଣମାନେ ଏପରି ବ୍ୟର୍ଥ ଆଶଙ୍କା କାହିଁକି କରୁଛନ୍ତି, ମୁଁ ଜାଣିପାରୁନାହିଁ ?'

ମୁନିକୁମାର ଏହା କହୁଥିବା ସମୟରେ ବିଦ୍ୟାଧର କାଳକମ୍ପନ ପ୍ରଭାସଙ୍କ ସମ୍ମୁଖକୁ ଆସିଗଲା । ତାକୁ ଦେଖିବା ମାତ୍ରେ ପ୍ରଭାସ 'ରେ ରେ କାଳକମ୍ପନ, ତୁ ଆମ୍ଭମାନଙ୍କର ବହୁ କ୍ଷତି କରିଛୁ । ଆଜି ତୋର ପରାକ୍ରମ ଜଣାଯିବ' ବୋଲି କହି ତା ଉପରକୁ ଶରଧାରା ବୁହାଇଦେଲେ । କିନ୍ତୁ କାଳକମ୍ପନ ସେଗୁଡ଼ିକୁ ନିଜର ତୀକ୍ଷ୍ଣ ଅସ୍ତ୍ରଦ୍ୱାରା କର୍ତ୍ତନକଲା । ଅସ୍ତ୍ର ଓ ପ୍ରତ୍ୟସ୍ତ୍ରଦ୍ୱାରା ଭୀଷଣ ଯୁଦ୍ଧରେ ପ୍ରବୃତ୍ତ ହୋଇ ଏହି ମନୁଷ୍ୟ ଓ ବିଦ୍ୟାଧର ସମଗ୍ର ସଂସାରକୁ ବିସ୍ମୟାଭିଭୂତ କରିପକାଇଲେ । କିଛି ସମୟପରେ ପ୍ରଭାସ ଗୋଟିଏ ବାଣଦ୍ୱାରା କାଳକମ୍ପନର ରଥ ଧ୍ୱଜକୁ କର୍ତ୍ତନ କରି ସାରଥିକୁ ନିଧନ କଲେ । ଏହାପରେ ଚାରୋଟି ବାଣରେ ତା'ର ଚାରୋଟି ଅଶ୍ୱକୁ ହତ୍ୟାକରି ଗୋଟିକରେ ତାର ଧନୁ ଛିନ୍ନ କଲେ । ଶେଷରେ ଦୁଇ ଦୁଇଟି ଶର ପ୍ରୟୋଗ କରି ସେ ତାର ଉଭୟ ବାହୁ ଓ ଉଭୟ କର୍ଣ୍ଣ କର୍ତ୍ତନ ପୂର୍ବକ ଏକ ତୀକ୍ଷ୍ଣ ଅସ୍ତ୍ରରେ ତାର ମସ୍ତକ ଛେଦନ କଲେ । ଏହିପରି ପ୍ରଭାସ ନିଜର ହସ୍ତଚାପଲ୍ୟ ପ୍ରୟୋଗ କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ପକାଇଲେ । ମନେହେଲା ସତେ ଯେପରି ପ୍ରଭାସ ପ୍ରଥମ ଦିନ ଯୁଦ୍ଧର ପ୍ରତିଶୋଧ ନେଉ ଅଛନ୍ତି । ଏହିପରି ମନୁଷ୍ୟ ଓ ରାକ୍ଷସମାନଙ୍କଦ୍ୱାରା ବିଦ୍ୟାଧର ଅଧିପତି ନିହତ ହେବାରୁ ସମଗ୍ର ବିଦ୍ୟାଧର ସେନାରେ ଦୁଃଖ ଓ ନୈରାଶ୍ୟର ଛାୟା ଖେଳିଗଲା ।

ଏହା ଦେଖି କାଳଂଜରର ରାଜା ବିଦ୍ୟୁତ୍‌ପ୍ରଭ ପ୍ରଭାସ ପ୍ରତି ଧାବମାନ ହେଲେ । ପ୍ରଭାସ ତାଙ୍କ ସହ ଯୁଦ୍ଧକରି ତାଙ୍କର ମହାନ୍ ଧ୍ୱଜା ଓ ଧନୁକୁ ବାରମ୍ବାର କର୍ତ୍ତନ କରିବାକୁ ଲାଗିଲେ । ଏଥିରେ ବିବଶ ହୋଇ ବିଦ୍ୟୁତ୍‌ପ୍ରଭ ମାୟା ବଳରେ ଆକାଶ ମାର୍ଗରେ ଯାଇ ଆତ୍ମଗୋପନ କଲେ ଏବଂ ଲଜ୍ଜିତ ହୋଇ ସେଠାରୁ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବା ଆରମ୍ଭ କଲେ । କିନ୍ତୁ ପ୍ରଭାସ ତାଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ନିବାରଣ କରି ପ୍ରକାଶନାସ୍ତ୍ର ପ୍ରୟୋଗ ପୂର୍ବକ ମାୟାଜାଲ ଛେଦନ କଲେ ଏବଂ ଆଗ୍ନେୟାସ୍ତ୍ର ସାହାଯ୍ୟରେ ତାଙ୍କୁ ଭସ୍ମୀଭୂତ କଲେ ।

ଏହାଦେଖି ଶ୍ରୁତଶର୍ମା କ୍ରୋଧାନ୍ୱିତ ହୋଇ ନିଜର ସୈନ୍ୟମାନଙ୍କୁ କହିଲେ, 'ଦେଖ, ଏହି ପ୍ରଭାସ ଆମର ଦୁଇଜଣ ବିଶିଷ୍ଟ ଯୋଦ୍ଧାଙ୍କୁ ହତ୍ୟା କଲାଣି । ବର୍ତ୍ତମାନ ତୁମେ ସମସ୍ତେ ମିଳିତ ଭାବେ ତାକୁ ଆକ୍ରମଣ କର ।' ଏଥିରେ ଅଷ୍ଟ ବିଦ୍ୟାଧର ମହାରଥୀ ପ୍ରଭାସଙ୍କ ପ୍ରତି ଧାବମାନ ହେଲେ । ଏମାନଙ୍କ ମଧ୍ୟରେ କଂକଟକ ପର୍ବତ ନିବାସୀ ବିଦ୍ୟାଧରରାଜ ଊର୍ଦ୍ଧ୍ୱରୋମା ପ୍ରଥମ,ଦ୍ୱିତୀୟ ଧରଣୀଧର ପର୍ବତାଧିପତି ବିକ୍ରୋଶନ, ତୃତୀୟ ଲୀଳାପର୍ବତ ନିବାସୀ ଅତିରଥମାନଙ୍କର ନାୟକ ଇନ୍ଦୁମାଳୀ ନାମକ

ବିଦ୍ୟାଧରମାନଙ୍କର ରାଜା, ଚତୁର୍ଥ ଖେଚର ଶ୍ରେଷ୍ଠ ଓ ରଥଯୂଥପତି ମଳୟ ପର୍ବତ ନିବାସୀ କାକାଣ୍ଡକ; ପଞ୍ଚମ ନିକେତ ପର୍ବତ ଅଧିପତି ଦର୍ପବାହ, ଷଷ୍ଠ ଅଞ୍ଜନଗିରୀଶ୍ୱର ଧୂର୍ତ୍ତବହନ, ସପ୍ତମ କୁମୁଦପର୍ବତାଧିପତି ଗର୍ଦ୍ଦଭରଥ ବରାହସ୍ୱାମୀ ଯେ କି ମହାରଥୀମାନଙ୍କର ଯୂଥପତି ଏବଂ ଅଷ୍ଟମ ଦୁଂଦୁଭିପର୍ବତର ରାଜା ମେଘାବର । ଏମାନେ ଆସି ଏକ ସମୟରେ ପ୍ରଭାସଙ୍କୁ ଆକ୍ରମଣ କଲେ । କିନ୍ତୁ ସେ ସମସ୍ତଙ୍କ ଶରସମୂହକୁ କର୍ତ୍ତନ କରି ପ୍ରତ୍ୟେକଙ୍କ ପ୍ରତି ଗୋଟିଏ ଗୋଟିଏ ଶର ପ୍ରୟୋଗ କଲେ । ଏହାଦ୍ୱାରା କାହାର ଅଶ୍ୱ, କାହାର ରଥ, କାହାର ଧ୍ୱଜା ଏବଂ ଆଉ କାହାର ବା ଧନୁ ଛିନ୍ନଭିନ୍ନ ହେଲା । ତାପରେ ସେ ଏକସଙ୍ଗେ ଚାରୋଟି ବାଣ ପ୍ରୟୋଗ କରି ମେଘାବରଙ୍କୁ ପ୍ରଥମେ ଭୂମିଶାୟୀ କଲେ । ମେଘାବରଙ୍କ ପରେ ପରେ ଉର୍ଦ୍ଧ୍ୱରୋମାଙ୍କୁ ଆଞ୍ଜଳିକ ବାଣଦ୍ୱାରା ବିଦ୍ଧକରି ତାଙ୍କର ଶିରଚ୍ଛେଦ କଲେ । ଏହିପରି ଅବଶିଷ୍ଟ ଛ' ଜଣ ମହାରଥୀଙ୍କି ମଧ୍ୟ ଅବଲୀଳା କ୍ରମେ ହତ୍ୟାକରି ସେମାନଙ୍କର ଅଶ୍ୱ ଓ ସାରଥିଙ୍କୁ ମଧ୍ୟ ଭୂପତିତ କଲେ । ଏଥିରେ ପ୍ରଭାସଙ୍କ ମସ୍ତକରେ ଆକାଶରୁ ପୁଷ୍ପବୃଷ୍ଟି ହେଲା । ମନୁଷ୍ୟ ଓ ଅସୁରମାନେ ଆନନ୍ଦିତ ହେଲେ କିନ୍ତୁ ବିଦ୍ୟାଧର ସେନାରେ ନୈରାଶ୍ୟ ଖେଳିଗଲା ।

ଏ ସମୟରେ ଶ୍ରୁତଶର୍ମାଙ୍କଦ୍ୱାରା ପ୍ରେରିତ ଚାରିଜଣ ମହାରଥୀ ଆସି ପ୍ରଭାସଙ୍କୁ ଘେରିଗଲେ । ସେମାନଙ୍କ ମଧ୍ୟରେ ଥିଲେ କୁରଣ୍ଡକ ନାମକ ପର୍ବତର ଅଧିପତି କାଚରକ, ପଞ୍ଚକପର୍ବତ ନିବାସୀ ଡିଣ୍ଡିମାଳୀ ନାମକ ବିଦ୍ୟାଧରରାଜ, ଜୟପୁର ପର୍ବତ ନିବାସୀ ଅତିରଥୀ ବିଦ୍ୟାଧର ବିଭାବସୁ ଏବଂ ଭୂମିତୁଣ୍ଡକ ପର୍ବତର ଅଧିପତି ଧବଳ । ଏମାନେ ଏକ ସଙ୍ଗରେ ପାଞ୍ଚପାଞ୍ଚଶତ ବାଣ ପ୍ରଭାସଙ୍କ ଉପରକୁ ନିକ୍ଷେପ କଲେ । କିନ୍ତୁ ପ୍ରଭାସ ଗୋଟିଏ ଗୋଟିଏ ବାଣରେ ସେମାନଙ୍କର ବାଣଗୁଡ଼ିକୁ ସଂହାର ପୂର୍ବକ ଗୋଟିଏ ଗୋଟିଏ ବାଣରେ ଧ୍ୱଜ, ଗୋଟିଗୋଟିକରେ ସାରଥି, ଚାରିଚାରୋଟିରେ ଅଶ୍ୱଗୁଡ଼ିକୁ ନଷ୍ଟକରି ଆଉ ଗୋଟିଏ ଗୋଟିଏ ବାଣରେ ସେମାନଙ୍କୁ ଇହଲୋକରୁ ବିଦାୟ ଦେଲେ । ଏହିପରି ଜଣଜଣକ ପ୍ରତି ଅଷ୍ଟସଂଖ୍ୟକ ଶର ପ୍ରୟୋଗ ପୂର୍ବକ ନିହତ କରି ପ୍ରଭାସ ଭୟଙ୍କର ହୁଂକାର କରିବାକୁ ଲାଗିଲେ ।

ତାଙ୍କର ଏ ରଣହୁଂକାର ଶ୍ରବଣ କରି ଶ୍ରୁତଶର୍ମା ଅନ୍ୟ ଚାରିଜଣ ବିଦ୍ୟାଧର ଅଧିପତିଙ୍କୁ ପ୍ରଭାସଙ୍କ ସମ୍ମୁଖୀନ ହେବା ନିମିତ୍ତ ନିର୍ଦ୍ଦେଶ ଦେଲେ । ଏମାନଙ୍କ ମଧ୍ୟରେ ନୀଳୋତ୍ପଳଦଳଶ୍ୟାମ ଭଦ୍ରଙ୍କର ପ୍ରଥମ । ସେ ବିଶ୍ୱାବସୁଙ୍କ ପତ୍ନୀ ଗର୍ଭରୁ ବୁଧଙ୍କ ଔରସରେ ଜନ୍ମଗ୍ରହଣ କରିଥିଲେ । ଦ୍ୱିତୀୟ, ରକ୍ତବର୍ଣ୍ଣ ବିଶିଷ୍ଟ ନୟନକ ଜମ୍ଭକପତ୍ନୀ ଓ

ମଙ୍ଗଳଙ୍କଠାରୁ ଉତ୍ପନ୍ନ ହୋଇଥିଲେ । ତୃତୀୟ ଦାମୋଦରଙ୍କ ପତ୍ନୀଙ୍କଠାରୁ ଶନିଙ୍କଦ୍ୱାରା ଉତ୍ପନ୍ନ କୃଷ୍ଣବର୍ଣ୍ଣ ଓ ପୀତକେଶପାଶ ବିଶିଷ୍ଟ କାଳକୋପ ନାମକ ବିଦ୍ୟାଧର, ଚତୁର୍ଥ ବିକ୍ରମଶକ୍ତି ଚନ୍ଦ୍ରମାଙ୍କ ପତ୍ନୀ ଗର୍ଭରୁ ଇନ୍ଦ୍ରଙ୍କଦ୍ୱାରା ଜାତ । ପ୍ରଥମ ବିଦ୍ୟାଧରତ୍ରୟ ଅତିରଥମାନଙ୍କର ଅଧିନାୟକ ଥିଲେ ଏବଂ ଚତୁର୍ଥ ସମସ୍ତଙ୍କ ଅପେକ୍ଷା ଅଧିକ ବଳଶାଳୀ ଓ ମହାବୀର ଥିଲେ । ଏମାନେ ଉନ୍ମତ୍ତପ୍ରାୟ ରଣଭୂମିରେ ପ୍ରବେଶ କରି ବିଭିନ୍ନ ଦିବ୍ୟାସ୍ତ୍ର ସାହାଯ୍ୟରେ ଯୁଦ୍ଧ କରିବାକୁ ଲାଗିଲେ । କିନ୍ତୁ ପ୍ରଭାସ ଏକମାତ୍ର ନାରାୟଣଅସ୍ତ୍ର ପ୍ରୟୋଗ କରି ସେମାନଙ୍କ ବାଣସମୂହକୁ ସଂହାର କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକଙ୍କ ଧନୁକୁ ଅଷ୍ଟବାର କର୍ତ୍ତନ କଲେ । ତଥାପି ସେମାନେ ବାଣ ପ୍ରୟୋଗରୁ କ୍ଷାନ୍ତ ନ ହେବାରୁ ସେ ପୁଣି ପ୍ରଚଣ୍ଡଶରଜାଳ ବୃଷ୍ଟି ପୂର୍ବକ ସେମାନଙ୍କର ଅଶ୍ୱ, ରଥ, ସାରଥି, ଧ୍ୱଜ ସମସ୍ତ ଛେଦନ କରି ସେମାନଙ୍କୁ ରଥହୀନ କରିଦେଲେ ।

ଏହାଦେଖି ଶ୍ରୁତଶର୍ମା ଅନ୍ୟ ଦଶଜଣ ରଥଯୂଥାଧିପତିଙ୍କୁ ପ୍ରଭାସଙ୍କ ସହ ଯୁଦ୍ଧ କରିବା ପାଇଁ ପ୍ରେରଣ କଲେ । ଏମାନଙ୍କ ମଧ୍ୟରୁ ଦମ ଓ ନିୟମ କେତୁମାଳେଶ୍ୱରଙ୍କ ପତ୍ନୀ ଗର୍ଭରୁ ଅଶ୍ୱିନୀକୁମାରଙ୍କ ଔରସରୁ ଜନ୍ମ ହୋଇଥିଲେ ଏବଂ ବିକ୍ରମ, ସଂଯମ, ପରାକ୍ରମ, ଅକ୍ରମ, ସଂମର୍ଦନ, ମର୍ଦନ, ପ୍ରମର୍ଦନ ଓ ବିମର୍ଦନ ଅଷ୍ଟବସୁଙ୍କ ଔରସରୁ ଓ ମକରନ୍ଦଙ୍କ ପତ୍ନୀଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ଏମାନେ ଆସି ଉପସ୍ଥିତ ହୁଅନ୍ତେ ପୂର୍ବ ପରାଜିତ ଓ ରଥହୀନ ବିଦ୍ୟାଧରମାନେ ଏମାନଙ୍କ ସହ ସମ୍ମିଳିତ ହେଲେ ।

କିନ୍ତୁ ଅତି ଆଶ୍ଚର୍ଯ୍ୟଜନକ ଭାବରେ ପ୍ରଭାସ ଏହି ସମସ୍ତ ବିଦ୍ୟାଧରଙ୍କ ସହ ଉନ୍ମତ୍ତ ଓ ଅବିଚଳିତ ଭାବରେ ଯୁଦ୍ଧ କରିବାକୁ ଲାଗିଲେ । ଏହା ଦେଖି ସୂର୍ଯ୍ୟପ୍ରଭଙ୍କ ନିର୍ଦ୍ଦେଶରେ କୁଞ୍ଜରକୁମାର ଓ ପ୍ରହସ୍ତ ବ୍ୟୂହର ଅଗ୍ରଭାଗରେ ଯୁଦ୍ଧ ପରିତ୍ୟାଗ ପୂର୍ବକ ଆକାଶ ମାର୍ଗରେ ଯାଇ ରାମ ଓ କୃଷ୍ଣ ତୁଲ୍ୟ ପ୍ରଭାସଙ୍କ ସହାୟତା ନିମିତ୍ତ ଉପସ୍ଥିତ ହେଲେ । ଉଭୟ ପାଦଚାରୀ ବୀର ରଥସ୍ଥ ଦମ ଓ ନିୟମଙ୍କ ସାରଥିମାନଙ୍କୁ ନିହତ କରି ସେମାନଙ୍କ ଧନୁର୍ବାଣ କାଟି ପକାଇଲେ । ବ୍ୟାକୁଳିତ ଚିତ୍ତରେ ସେମାନେ ଆକାଶମଣ୍ଡଳକୁ ପଳାୟନ କରନ୍ତେ ଏ ଉଭୟେ ମଧ୍ୟ ତାଙ୍କର ଅନୁସରଣ କଲେ । ସୂର୍ଯ୍ୟପ୍ରଭ ମଧ୍ୟ ଶୀଘ୍ର ମହାବୁଦ୍ଧି ଓ ଅଚଳବୁଦ୍ଧି ନାମକ ମହାରଥୀମାନଙ୍କୁ ରଥ ସହିତ ଏମାନଙ୍କର ସାହାଯ୍ୟ ପାଇଁ ପ୍ରେରଣ କଲେ । ପ୍ରହସ୍ତ ଓ କୁଞ୍ଜରକୁମାର ମାୟାରେ ଅଦୃଶ୍ୟ ହୋଇ ରହିଥିବା ଦମ ଓ ନିୟମଙ୍କୁ ସିଦ୍ଧାଂଜନ ବ୍ୟବହାର ଫଳରେ ଦର୍ଶନ କରି ସେମାନଙ୍କ ଉପରକୁ ଶର ବର୍ଷଣ କଲେ । ଏଥିରେ ଉଭୟ ବିଦ୍ୟାଧର ଭୟରେ ସେଠାରୁ ପଳାୟନ କରିବାପାଇଁ ବାଧ୍ୟ ହେଲେ ।

ଏଣେ ପ୍ରଭାସ ଅବଶିଷ୍ଟ ଦ୍ୱାଦଶ ବିଦ୍ୟାଧର ବୀରଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ଥାଆନ୍ତି । ସେ ଏମାନଙ୍କ ଧନୁର୍ବାଣ ବାରମ୍ବାର ଛେଦନ କରି ଏମାନଙ୍କୁ ବ୍ୟାକୁଳ କରୁଥାଆନ୍ତି । ଆସି ପହଞ୍ଚିବା ମାତ୍ରେ ପ୍ରହସ୍ତ ଏହି ଦ୍ୱାଦଶ ବୀରଙ୍କର ସାରଥିମାନଙ୍କୁ ଏବଂ କୁଞ୍ଜରକୁମାର ଅଶ୍ୱଗୁଡ଼ିକୁ ନିହତ କଲେ । ରଥହୀନ ହୋଇ ଏହି ଅତିରଥ ଯୂଥପତି ବିଦ୍ୟାଧରବୃନ୍ଦ ଭୟରେ ସଂଗ୍ରାମ ଭୂମି ପରିତ୍ୟାଗପୂର୍ବକ ପଳାୟନ କଲେ ।

ଏଥିରେ ମର୍ମାହତ ଓ ଲଜ୍ଜିତ ହୋଇ ଶ୍ରୁତଶର୍ମା ଅନ୍ୟ ଦୁଇଜଣ ରଥାତିରଥ ଯୂଥାଧିପତିଙ୍କୁ ପ୍ରେରଣ କଲେ । ଜଣେ ଚନ୍ଦ୍ରମାଙ୍କ ଔରସରୁ ଏବଂ ଚନ୍ଦ୍ରକୁଳଗିରିର ଅଧିପତିଙ୍କ ସ୍ତ୍ରୀଗର୍ଭରୁ ଜନ୍ମଗ୍ରହଣ କରିଥିବା ଚନ୍ଦ୍ରତୁଲ୍ୟ ମନୋରମ ଚନ୍ଦ୍ରଗୁପ୍ତ ଏବଂ ଅନ୍ୟଜଣକ ଧୁରଂଧରାଚଳାଧୀଶଙ୍କଠାରୁ ଜାତ ନଗରଂଗମ ନାମକ ଅତ୍ୟନ୍ତ ପରାକ୍ରମଶାଳୀ ବିଦ୍ୟାଧର—ଉଭୟ ଶ୍ରୁତଶର୍ମାଙ୍କ ସଚିବ । ସେମାନେ ମଧ୍ୟ ପ୍ରଥମେ ପ୍ରବଳ ବାଣବୃଷ୍ଟି କଲେ କିନ୍ତୁ ପରେ ପ୍ରଭାସଙ୍କଦ୍ୱାରା ରଥହୀନ ହୋଇ ପଳାୟନ କଲେ ।

ଏହାପରେ ମାନବ ଓ ଅସୁରମାନଙ୍କର ବିଜୟହୁଂକାର ଶ୍ରବଣରେ ନିଜେ ଶ୍ରୁତଶର୍ମା ଚାରିଜଣ ମହାରଥୀଙ୍କସହ ଯୁଦ୍ଧଭୂମିରେ ଆସି ଦଣ୍ଡାୟମାନ ହେଲେ । ଉକ୍ତ ଚାରିଜଣ ବିଦ୍ୟାଧରବୀର ତ୍ୱଷ୍ଟା, ଭର୍ଗ, ଅର୍ଯମା ଓ ପୂଷାଙ୍କ ଅଂଶରେ ମଳୟ ପ୍ରଭୃତି ଚାରୋଟି ପର୍ବତର ଅଧିପତିଙ୍କ ପତ୍ନୀଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ ଏବଂ ଅତ୍ୟନ୍ତ ପରାକ୍ରମୀ ଥିଲେ ।

ଏମାନଙ୍କୁ ଦର୍ଶନ କରି ପ୍ରଭାସ ପ୍ରଭୃତି ତିନିଜଣ ବୀର ଅନ୍ୟ ଚାରିଜଣ ସହଯୋଗୀଙ୍କ ସହ ଆସି ସେମାନଙ୍କର ସମ୍ମୁଖୀନ ହେଲେ । ଏମାନଙ୍କ ଶରଜାଳରେ ଆକାଶମଣ୍ଡଳ ଆଚ୍ଛାଦିତ ହେଲା । ରଣଲକ୍ଷ୍ମୀଙ୍କୁ ସୂର୍ଯ୍ୟତାପରୁ ରକ୍ଷା କରିବା ପାଇଁ ଆକାଶ ବିତାନଯୁକ୍ତ ହେଲାପରି ପ୍ରତୀତ ହେଲା । ଏ ସମୟରେ ପୂର୍ବରୁ ରଥହୀନ ହୋଇ ପଳାୟନ କରିଥିବା ବିଦ୍ୟାଧରମାନେ ଆସି ଶ୍ରୁତଶର୍ମାଙ୍କ ସହ ଯୋଗଦାନ କଲେ । ସୂର୍ଯ୍ୟପ୍ରଭ ମଧ୍ୟ ଶ୍ରୁତଶର୍ମା ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହେବା ଦେଖି ପ୍ରଭାସଙ୍କ ସହାୟତା ନିମିତ୍ତ ପ୍ରଜ୍ଞାଢ୍ୟ ପ୍ରଭୃତି ମନ୍ତ୍ରୀ ତଥା ବୀରସେନ, ଶତାନୀକ ପ୍ରଭୃତି ରାଜପୁତ୍ରମାନଙ୍କୁ ପ୍ରେରଣ କଲେ । ଏମାନେ ଆକାଶମାର୍ଗରେ ଯାଇ ସେଠାରେ ଉପସ୍ଥିତ ହୁଅନ୍ତେ ସୂର୍ଯ୍ୟପ୍ରଭ ଭୂତାସନ ବିମାନ ସାହାଯ୍ୟରେ ସେମାନଙ୍କର ରଥଗୁଡ଼ିକୁ ମଧ୍ୟ ପଠାଇଦେଲେ । ଏହି ଧନୁର୍ଦ୍ଧାରୀ ବୀରମାନେ ନିଜ ନିଜ ରଥ ଉପରେ ଆସୀନ ହୁଅନ୍ତେ ଶ୍ରୁତଶର୍ମାଙ୍କ ଅନ୍ୟାନ୍ୟ ବନ୍ଧୁ ଓ ସହାୟକମାନେ ଆସି ଶ୍ରୁତଶର୍ମାଙ୍କ ସହ ସମ୍ମିଳିତ ହେଲେ ।

ସମସ୍ତେ ଆସି ଏକତ୍ର ହେବା ପରେ ବିଦ୍ୟାଧରମାନଙ୍କ ସହ ପ୍ରଭାସ ପ୍ରଭୃତିଙ୍କର ବିନାଶକାରୀ ସଂଗ୍ରାମ ଆରମ୍ଭ ହେଲା । ଦ୍ୱନ୍ଦ୍ୱଯୁଦ୍ଧରେ ବହୁ ବିଦ୍ୟାଧର, ମନୁଷ୍ୟ ଓ ରାକ୍ଷସ ପ୍ରାଣତ୍ୟାଗ କଲେ । ରାଜା ବୀରସେନ ବିଦ୍ୟାଧର ଧୂମ୍ରଲୋଚନଙ୍କୁ ତାଙ୍କର ସେନାବାହିନୀ ସହ ନିହତ କରି ହରିଶର୍ମାଙ୍କଦ୍ୱାରା ପଞ୍ଚତ୍ୱ ପ୍ରାପ୍ତ ହେଲେ । ଅଭିମନ୍ୟୁ ବିଦ୍ୟାଧରରାଜ ହିରଣ୍ୟାକ୍ଷଙ୍କୁ ବଧ କରି ସୁନେତ୍ରଙ୍କଦ୍ୱାରା ପରାସ୍ତ ଓ ମୃତ ହେଲେ । ସୁନେତ୍ର ଓ ହରିଭଟ ମଧ୍ୟ ପ୍ରଭାସଙ୍କ ଶରଦ୍ୱାରା ପ୍ରାଣବିସର୍ଜନ କଲେ । ଜ୍ୱାଳାମାଳୀ ଓ ହତାୟୁ ଉଭୟେ ଦ୍ୱନ୍ଦ୍ୱ ଯୁଦ୍ଧରେ ପରସ୍ପରର ପ୍ରାଣ ହରଣ କଲେ । କୁମ୍ଭୀରକ ଓ ନୀରସିକ ଦନ୍ତପ୍ରହାରଦ୍ୱାରା ମୃତ୍ୟୁ ବରଣ କଲେ । ସୁଶର୍ମା ଛିନ୍ନବାହୁ ହୋଇ ନିହତ ହେଲେ । ବ୍ୟାଘ୍ରଭଟ, ଶତ୍ରୁଭଟ ଓ ସିଂହଭଟ, ଏହି ତିନି ବିଦ୍ୟାଧରରାଜ ପ୍ରବହଣଙ୍କଦ୍ୱାରା ମୃତ୍ୟୁଲାଭ କଲେ; ପ୍ରବହଣଙ୍କୁ ସ୍ଥରୋହ ଓ ବିରୋହ ଏବଂ ଏ ଉଭୟଙ୍କୁ ଶ୍ମଶାନବାସୀ ସିଂହବଳ ନିହତ କଲେ । ରାଜପୁତ୍ର ଶତାନୀକ ଏକାକୀ ପ୍ରେତବାହନ, ସିଂହବଳ, କପିଳକ, ଚିତ୍ରାପୀଡ଼, ଜଗଜ୍ଜ୍ୱର, ଶୂର କାନ୍ତାପତି, ମହାବଳ, ସୁବର୍ଣ୍ଣ, କାମଧନ ଏବଂ କ୍ରୋଧପତିନାମକ ଦଶଜଣ ବିଦ୍ୟାଧରଙ୍କୁ ନିହତ କରିବା ସହିତ ବଳଦେବ ଓ ବିଚିତ୍ରାପୀଡ଼ ନାମକ ବିଦ୍ୟାଧରଅଧିପତିମାନଙ୍କୁ ପରାଜିତ କଲେ ।

ଉକ୍ତ ବିଦ୍ୟାଧରମାନଙ୍କ ନିଧନ ଦର୍ଶନ କରି ସ୍ୱୟଂ ଶ୍ରୁତଶର୍ମା କ୍ରୋଧ ଓ ଲଜ୍ଜାରେ ଉନ୍ମତ୍ତପ୍ରାୟହୋଇ ଶତାନୀକଙ୍କୁ ଆକ୍ରମଣ କଲେ । ଏମାନଙ୍କର ପ୍ରଳୟଙ୍କରୀ ସଂଗ୍ରାମରେ ଦେବଗଣ ମଧ୍ୟ ଆଶ୍ଚର୍ଯ୍ୟ ଚକିତ ହୋଇପଡ଼ିଲେ ।

ଏ ସମୟରେ ସୂର୍ଯ୍ୟଦେବ ଅସ୍ତାଚଳଗାମୀ ହୁଅନ୍ତେ ମସ୍ତକହୀନ କବନ୍ଧଗୁଡ଼ିକ ଭୂତ ପ୍ରେତାଦିଦ୍ୱାରା ଆବିଷ୍ଟ ହୋଇ ସାୟଂକାଳୀନ ନୃତ୍ୟୋତ୍ସବ ଆରମ୍ଭ କରିଦେଲେ । ରାତ୍ରି ଆଗମନରେ ବହୁ ବନ୍ଧୁ ଓ ମିତ୍ରଙ୍କ ମୃତ୍ୟୁରେ ମ୍ରିୟମାଣ ବିଦ୍ୟାଧର ସେନା ଓ ବିଜୟୋନ୍ମତ୍ତ ମାନବ ଓ ଅସୁରସେନା ସ୍ୱ ସ୍ୱ ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ ।

ଏ ସମୟରେ ବିଦ୍ୟାଧରମାନଙ୍କ ପକ୍ଷରୁ ଦୁଇଜଣ ବୀର ଶ୍ରୁତଶର୍ମାଙ୍କୁ ପରିତ୍ୟାଗ କରି ସୁମେରୁଙ୍କ ଅନୁମତି କ୍ରମେ ସୂର୍ଯ୍ୟପ୍ରଭଙ୍କ ସମ୍ମୁଖରେ ଆସି ଉପସ୍ଥିତ ହୋଇ କହିଲେ, ମହାଯାନ ଓ ସୁମାୟନାମକ ଆମେ ଦୁଇଜଣ ବିଦ୍ୟାଧରବୀର ଏବଂ ତୃତୀୟ ସିଂହବଳ (ଯେ ଯୁଦ୍ଧରେ ନିହତ ହୋଇଛନ୍ତି) ମହାଶ୍ମଶାନରେ ସିଦ୍ଧିଲାଭ କରିଅଛୁ । ଫଳରେ ଅନ୍ୟ ବିଦ୍ୟାଧର ରାଜାଙ୍କ ଦ୍ୱାରା ଆମେ କଦାପି ପରାସ୍ତ ହେବୁ ନାହିଁ । ଏକଦା ଆମ୍ଭେମାନେ ଶ୍ମଶାନ ମଧ୍ୟରେ ବସିଥାଉ । ଏ ସମୟରେ ସଦା ସୁପ୍ରସନ୍ନା ଏବଂ ଦିବ୍ୟ ପ୍ରଭାବଶାଳିନୀ

ଶରଭାନନା ନାମ୍ନୀ ଜଣେ ଯୋଗିନୀ ଆସି ସେଠାରେ ଉପସ୍ଥିତ ହେଲେ । ତାଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରି କୌତୂହଳବଶତଃ ଆମ୍ଭେମାନେ ଦୁଇଟି ପ୍ରଶ୍ନ କଲୁ 'ଆପଣ କେଉଁଠି ରହନ୍ତି ? ଏବଂ ସେଠାରେ ଆପଣ କି ଅପୂର୍ବ ବସ୍ତୁ ଦେଖି ଅଛନ୍ତି ?' ଏହାର ଉତ୍ତରରେ ସେ କହିଲେ—

## ଶରଭାନନା ଯୋଗିନୀ କଥା

ମୁଁ ଏକଦା ପ୍ରଭୁ ମହାକାଳେଶ୍ୱରଙ୍କୁ ଦର୍ଶନ କରିବା ନିମିତ୍ତ ସହଚରୀମାନଙ୍କ ସହ ଯାଇଥିଲି । ସେଠାରେ ଥିବା ବେଳେ ଜଣେ ବେତାଳପତି ଆସି ମହାକାଳେଶ୍ୱରଙ୍କୁ ନିବେଦନ କଲା, 'ମହାପ୍ରଭୁ, ବିଦ୍ୟାଧରମାନଙ୍କର ପ୍ରଧାନ ସେନାପତି ଅଗ୍ନିକଙ୍କର ଅପୂର୍ବ ସୁନ୍ଦରୀକନ୍ୟାଙ୍କୁ ତେଜଃପ୍ରଭ ବଳପୂର୍ବକ ଅପହରଣ କରି ନେଇଯାଇ ଅଛନ୍ତି । କିନ୍ତୁ ସିଦ୍ଧମାନଙ୍କୁ ଆଦେଶ ଦିଆଯାଇଛି ଯେ ଏ କନ୍ୟା ଯେପରି ବିଦ୍ୟାଧରମାନଙ୍କର ଭାବୀ ଚକ୍ରବର୍ତ୍ତୀଙ୍କୁ ବିବାହ କରନ୍ତି । ତେଣୁ ଆପଣ ତାଙ୍କୁ ତେଜଃପ୍ରଭଙ୍କ କବଳରୁ ମୁକ୍ତ କରନ୍ତୁ ।'

ଉଦ୍‌ବିଗ୍ନ ବେତାଳର କଥା ଶୁଣି ମହାକାଳ ଉକ୍ତ କନ୍ୟାକୁ ରକ୍ଷା କରିବା ନିମିତ୍ତ ଆମ୍ଭମାନଙ୍କୁ ଆଦେଶ ପ୍ରଦାନ କଲେ । ଆମ୍ଭେମାନେ ତାଙ୍କ ଆଦେଶ କ୍ରମେ ଆକାଶ ମାର୍ଗରେ ଯାଇ ଉକ୍ତ କନ୍ୟା ନିକଟରେ ପହଞ୍ଚିଲୁ । ଆମକୁ ଦେଖି ତେଜଃପ୍ରଭ କହିଲା ଯେ ସେ ଏହାକୁ ବିଦ୍ୟାଧର ଚକ୍ରବର୍ତ୍ତୀ ଶ୍ରୁତଶର୍ମାଙ୍କ ପାଇଁ ନେଉଅଛି । କିନ୍ତୁ ତାର କଥାରେ କର୍ଣ୍ଣପାତ ନ କରି ଆମ୍ଭେମାନେ ନିଜ ଶକ୍ତି ବଳରେ ତାକୁ ସ୍ତମ୍ଭିତ କରି ଉକ୍ତ କନ୍ୟାଟିକୁ ନେଇ ଆସିଲୁ । କିନ୍ତୁ ଆଶ୍ଚର୍ଯ୍ୟର କଥା ପ୍ରଭୁ ମହାକାଳ ଏହାକୁ ତାର ବନ୍ଧୁମାନଙ୍କ ହସ୍ତରେ ସମର୍ପଣ କରିଦେଲେ । ସେଠାରେ ଆଉ କିଛି ଦିନ ଅପେକ୍ଷା କରି ମୁଁ ଫେରିଆସିଲି ।'

ଯୋଗିନୀ ଏହା କହୁଥିବା ସମୟରେ ଆମ୍ଭେମାନେ ପୁଣି ତାଙ୍କୁ ପଚାରିଲୁ, 'ଆପଣ ତ ସମସ୍ତ ଭବିଷ୍ୟତ କଥା ଜାଣନ୍ତି, ତାହାହେଲେ ଦୟାକରି ଭବିଷ୍ୟତରେ ବିଦ୍ୟାଧର ଚକ୍ରବର୍ତ୍ତୀ କିଏ ହେବେ ପ୍ରକାଶ କରନ୍ତୁ ।' ସେ ସୂର୍ଯ୍ୟପ୍ରଭଙ୍କ ନାମ ଉଚ୍ଚାରଣ କରନ୍ତେ ସିଂହବଳ ଆମ୍ଭମାନଙ୍କୁ କହିଲେ ଯେ ଯୋଗିନୀ ଯାହା କହୁଛନ୍ତି ତାହା ଆଦୌ ସତ୍ୟ ନୁହେ, କାରଣ ଶ୍ରୁତଶର୍ମା ଇନ୍ଦ୍ରଙ୍କଠାରୁ ପ୍ରତିଶ୍ରୁତି ଓ ଦେବତାମାନଙ୍କର ସାହାଯ୍ୟ ପାଇ ନିଜକୁ ଚକ୍ରବର୍ତ୍ତୀ ବୋଲି ଘୋଷଣା କରି ସାରିଲେଣି । ସିଂହବଳଙ୍କ କଥାରେ ପ୍ରତିବାଦ କରି ଯୋଗିନୀ କହିଲେ, 'ତୁମ୍ଭମାନଙ୍କର ଯଦି ମୋ କଥାରେ ବିଶ୍ୱାସ ହେଉନାହିଁ, ତାହାହେଲେ ଶୁଣ । ଅତିଶୀଘ୍ର ସୂର୍ଯ୍ୟପ୍ରଭ ଓ ଶ୍ରୁତଶର୍ମାଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ସଂଘଟିତ

ହେବ । ଏହି ଯୁଦ୍ଧରେ ତୁମ ସମ୍ମୁଖରେ ହିଁ ସିଂହବଳ ମନୁଷ୍ୟମାନଙ୍କ ହସ୍ତରେ ନିହତ ହେବ । ସେତେବେଳେ ମୋ କଥା ତୁମେ ବିଶ୍ୱାସ କରିବ ।'

ଏହା କହି ଯୋଗିନୀ ଚାଲିଗଲେ ଏବଂ ଦିନ ବିତିବାକୁ ଲାଗିଲା । ଆଜି ଆମ୍ଭେମାନେ ପ୍ରତ୍ୟକ୍ଷ ଭାବେ ଦେଖିଲୁ ଯେ ସିଂହବଳ ମନୁଷ୍ୟ ହସ୍ତରେ ପ୍ରାଣତ୍ୟାଗ କରିଛନ୍ତି । ଏଥିରେ ଆମେ ଦୃଢ଼ ନିଶ୍ଚିତ ହେଲୁ ଯେ ଆପଣ ହିଁ ଆମ୍ଭ ବିଦ୍ୟାଧର କୁଳର ଚକ୍ରବର୍ତ୍ତୀ ହେବେ । ଏଣୁ ଆପଣଙ୍କୁ ଆମର ପ୍ରଣତି ଜ୍ଞାପନ କରିବାପାଇଁ ଆସି ପହଞ୍ଚିଛୁ । ବର୍ତ୍ତମାନଠାରୁ ଆମ୍ଭେମାନେ ଆପଣଙ୍କର ଆଜ୍ଞାବହ ହୋଇ ରହିଲୁ ।

ଏହା ଶୁଣି ସୂର୍ଯ୍ୟପ୍ରଭ, ମୟ ଓ ସୁନୀଥଙ୍କ ସହ ଆଲୋଚନା କରି ସେ ଉଭୟଙ୍କୁ ତାଙ୍କ ସହ ରହିବାପାଇଁ ଅନୁମତି ଦେଲେ ।

ଶ୍ରୁତଶର୍ମାଙ୍କୁ ଭାଙ୍ଗିପଡୁଥିବା ଦେଖି ତାଙ୍କୁ ଆଶ୍ୱାସନା ପ୍ରଦାନ କରିବା ନିମିତ୍ତ ଦେବରାଜ ଇନ୍ଦ୍ର ବିଶ୍ୱାବସୁଙ୍କୁ ଦୂତ ରୂପେ ପ୍ରେରଣ କରି ତାଙ୍କଦ୍ୱାରା ସନ୍ଦେଶ ଦେଲେ ଯେ ସେ ସାହସର ସହ ସଂଗ୍ରାମ ଭୂମିରେ ଅବତୀର୍ଣ୍ଣ ହୁଅନ୍ତୁ । କାଲି ଦେବତାମାନଙ୍କ ସହ ତାଙ୍କର ସହାୟତା ନିମିତ୍ତ ସେ ନିଜେ ଉପସ୍ଥିତ ହେବେ ।

ଶତ୍ରୁ ପକ୍ଷରେ ଏପରି ବିଭେଦ ଏବଂ ରଣ ଭୂମିରେ ସେମାନଙ୍କର କରୁଣ ପରାଜୟ ଦର୍ଶନ କରି ସୂର୍ଯ୍ୟପ୍ରଭ ଉକ୍ତ ରଜନୀରେ ମଧ୍ୟ ପତ୍ନୀମାନଙ୍କ ନିକଟକୁ ନ ଯାଇ ମନ୍ତ୍ରୀମାନଙ୍କ ସହ ଶୟନ କକ୍ଷରେ ପ୍ରବେଶ କଲେ ।



## ଷଷ୍ଠ ତରଙ୍ଗ

ରଣୋନ୍ମୁଖ ସୂର୍ଯ୍ୟପ୍ରଭ ପତ୍ନୀମାନଙ୍କ ବ୍ୟତୀତ ଶଯ୍ୟାଗତ ହେଲେ ହେଁ ନିଦ୍ରାଦେବୀଙ୍କର ଅନୁକମ୍ପା ଲାଭ କରିପାରିଲେ ନାହିଁ । ବହୁ ସମୟ ବିନିଦ୍ର ରହି ଶେଷରେ ସେ ମନ୍ତ୍ରୀ ବୀତଭୀତିଙ୍କୁ ଏକ ସାତ୍ତ୍ୱିକ ଓ ବୀରତ୍ୱପୂର୍ଣ୍ଣ ଗଳ୍ପ କହିବାପାଇଁ ଅନୁରୋଧ କଲେ । ବୀତଭୀତି ସୂର୍ଯ୍ୟପ୍ରଭଙ୍କ ଆଦେଶ ପାଳନ କରି ଗଳ୍ପଟିଏ ଆରମ୍ଭ କଲେ–

### ବ୍ରାହ୍ମଣ ଗୁଣଶର୍ମା କଥା

ଯୁଗ ଯୁଗ ଧରି ଉଜ୍ଜୟିନୀ ନଗରୀ ପୃଥିବୀ ରାଣୀର ଅଳଙ୍କାର ରୂପେ ପ୍ରସିଦ୍ଧି ଲାଭ କରିଆସିଚି । ଏକଦା ଏଥିରେ ଗୁଣୀପ୍ରିୟ ରାଜା ମହାସେନ ରାଜତ୍ୱ କରୁଥାନ୍ତି । ସେ ଥିଲେ କଳାପ୍ରେମୀମାନଙ୍କର ପୃଷ୍ଠପୋଷକ । ପ୍ରତାପରେ ସୂର୍ଯ୍ୟ ଓ ଆହ୍ଲାଦରେ ଚନ୍ଦ୍ରମାଙ୍କୁ ମଧ୍ୟ ସେ ପରାଭୂତ କରୁଥିଲେ । ଅଶୋକବତୀ ତାଙ୍କର ପ୍ରାଣପ୍ରିୟା ପଟ୍ଟମହିଷୀ । ତାଙ୍କ ତୁଲ୍ୟ ସୁନ୍ଦରୀ ତିନିଭୁବନରେ ବିରଳ ।

ଏହି ମହାରାଣୀଙ୍କ ସହ ଆନନ୍ଦରେ ରାଜ୍ୟ ଶାସନ କରୁଥିବା ମହାରାଜା ମହାସେନଙ୍କର ଗୁଣଶର୍ମା ନାମରେ ଜଣେ ଆଦରଣୀୟ ଓ ଘନିଷ୍ଠ ମିତ୍ର ଥିଲେ । ସେ ଏକାଧାରରେ ଶୂର, ବୀର ଓ ରୂପବାନ୍, ବେଦବିଦ୍ୟା ପାରଗାମୀ, ଯୁବକ, କଳାମର୍ମଜ୍ଞ ଏବଂ ଶସ୍ତ୍ରବିଦ୍ୟାଧୁରୀଣ ।

ଏକଦା ଅନ୍ତଃପୁର ମଧ୍ୟରେ ସଙ୍ଗୀତ ଶାସ୍ତ୍ର ଆଲୋଚିତ ହେଉଥିବା ସମୟରେ ରାଜା ଓ ରାଣୀ ନିକଟରେ ବସିଥିବା ଗୁଣଶର୍ମାଙ୍କୁ କହିଲେ, 'ତୁମେ ସର୍ବଜ୍ଞ; ଏଥିରେ ସନ୍ଦେହ ନାହିଁ । କିନ୍ତୁ ଆମ୍ଭମାନଙ୍କ ମନରେ ଏକ କୌତୂହଳ ସୃଷ୍ଟି ହୋଇଛି । ତେଣୁ ତୁମେ ଯଦି ନୃତ୍ୟ ବିଦ୍ୟା ଜାଣିଥାଅ, ତାହାହେଲେ ଦୟାପୂର୍ବକ ନୃତ୍ୟଟିଏ ପରିବେଷଣ କରି ଆମ୍ଭମାନଙ୍କର କୌତୂହଳ ଦମନ କର ।'

ଏହାଶୁଣି ମୃଦୁହାସ୍ୟ ପ୍ରକାଶ ପୂର୍ବକ ଗୁଣଶର୍ମା କହିଲେ, 'ମୁଁ ନୃତ୍ୟ ଜାଣେ, କିନ୍ତୁ ରାଜସଭାରେ ନୃତ୍ୟ କରିବା ଅନୁଚିତ । ଏହା ମୂର୍ଖତାର ପରିଚାୟକ ଓ ଉପହାସର କାରଣ ମାତ୍ର ହୋଇଥାଏ । ଶାସ୍ତ୍ରକାରମାନେ ମଧ୍ୟ ଏହାକୁ ଗର୍ହିତ ବୋଲି କହିଅଛନ୍ତି । ପୁଣି ରାଜା ଓ ରାଣୀଙ୍କ ସମ୍ମୁଖରେ ନୃତ୍ୟ କରିବା ଲଜ୍ଜାର ବିଷୟ ।' ଏହା ଶୁଣି ରାଣୀଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ରାଜା ପୁଣି ତାଙ୍କୁ କହିଲେ, 'ରଙ୍ଗମଞ୍ଚରେ ନୃତ୍ୟ ପ୍ରଦର୍ଶନ କରିବା ପୁରୁଷମାନଙ୍କ ପକ୍ଷରେ ଲଜ୍ଜାର ବିଷୟ ହୋଇପାରେ, କିନ୍ତୁ ଏହା ଏକ ଗୁପ୍ତ ନୃତ୍ୟ ମଣ୍ଡଳୀ । ଏଠାରେ କେବଳ ନିଜ ବିଦ୍‌ବତ୍ତାର ପରିଚୟ ହିଁ ଦିଆଯିବ । ପୁଣି ମୁଁ ତୁମର ରାଜା ନୁହେଁ, ମିତ୍ର । ଆଜି ମିତ୍ରଙ୍କର ନୃତ୍ୟ ଦର୍ଶନ ନ କରି ଜଳ ସ୍ପର୍ଶ ମଧ୍ୟ କରିବି ନାହିଁ ।'

ରାଜାଙ୍କର ଏହି ପ୍ରକାର ଆଗ୍ରହ ଦେଖି ଗୁଣଶର୍ମା ନୃତ୍ୟ ପ୍ରଦର୍ଶନ ପାଇଁ ସ୍ୱୀକୃତ ହେଲେ । ଖିଆଲି ରାଜାମାନଙ୍କର ଆଦେଶକୁ ଅନୁଜୀବୀମାନେ ଲଂଘନ କରିବା ଆଦୌ ସମ୍ଭବପର ନୁହେଁ ।

ଏହାପରେ ଗୁଣଶର୍ମା ଏପରି ସୁନ୍ଦର ଆଙ୍ଗିକ ଅଭିନୟ ପ୍ରଦର୍ଶନ କଲେ ଯେ ସେଥିରେ ରାଜା ଓ ରାଣୀ ଉଭୟଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା । ନୃତ୍ୟ ଶେଷରେ ରାଜା ତାଙ୍କୁ ବୀଣାଟିଏ ପ୍ରଦାନ କରି ବାଦନ କରିବା ପାଇଁ କହିଲେ । ଏଥିରେ ପ୍ରଥମ ଝଙ୍କାର ସୃଷ୍ଟି କରି ହିଁ ସେ କହିଲେ, 'ମହାରାଜ, ବୀଣାଟି ଉତ୍ତମ ନୁହେ, ଅନ୍ୟ ଏକ ବୀଣାର ବ୍ୟବସ୍ଥା କରନ୍ତୁ । ଏହା ମଧ୍ୟରେ କେଉଁଠାରେ କୁକୁରର ବାଳଟିଏ ରହି ଯାଇଅଛି । ତାର ଝଙ୍କାରରୁ ଏହା ଜାଣିହେଉଛି ।' ଏହା କହି ଗୁଣଶର୍ମା ବୀଣାଟିକୁ କୋଳରୁ ଉଠାଇ ଭୂମିରେ ସ୍ଥାପନ କରନ୍ତେ ରାଜା ତାର ତନ୍ତ୍ରୀଗୁଡ଼ିକୁ ତନ୍ନତନ୍ନ କରି ପରୀକ୍ଷା କଲେ । ତା ମଧ୍ୟରେ ପ୍ରକୃତରେ ଏକ କୁକୁର ବାଳ ରହିଥିଲା । ଗୁଣଶର୍ମାଙ୍କ ସର୍ବଜ୍ଞତାରେ ବିସ୍ମିତ ହୋଇ ରାଜା ଅନ୍ୟ ଏକ ବୀଣା ମଗାଇ ଆଣିଲେ । ଗୁଣଶର୍ମା ଗଙ୍ଗା ପ୍ରବାହ ତୁଲ୍ୟ ସୁନ୍ଦର, ତ୍ରିମାର୍ଗଗାମୀ ଓ କର୍ଣ୍ଣପାବନ ମଧୁର ଝଙ୍କାର ସୃଷ୍ଟି କରି ରାଜା ଓ ରାଣୀଙ୍କୁ ମୁଗ୍‌ଧ କରିଦେଲେ ।

ବୀଣାବାଦନ ପରେ ସେ ରାଜା ଓ ରାଣୀଙ୍କୁ ଅଦ୍ଭୁତ ଶସ୍ତ୍ରାସ୍ତ୍ରବିଦ୍ୟା ମଧ୍ୟ ଦେଖାଇଲେ । ଏହା ଦେଖି ରାଜା କହିଲେ, 'ତୁମେ ଯଦି ଯୁଦ୍ଧବିଦ୍ୟାରେ ପାରଙ୍ଗମ, ତାହାହେଲେ ତୁମେ ବିନା ଅସ୍ତ୍ରରେ ଅସ୍ତ୍ର ଧାରଣ କରିଥିବା ମୋତେ ପରାସ୍ତ କର ।' ଏଥିରେ ଗୁଣଶର୍ମା ରାଜାଙ୍କୁ କହିଲେ, 'ତାହାହେଲେ ଆପଣ ଶସ୍ତ୍ର ନେଇ ମୋତେ ଆକ୍ରମଣ କରନ୍ତୁ, ମୁଁ ମୋର ଅସ୍ତ୍ର କୌଶଳ ଆପଣଙ୍କୁ ପ୍ରଦର୍ଶନ କରାଇବି ।' ଏହା ଶୁଣି

ରାଜା ତରବାରି ପ୍ରଭୃତି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ତାଙ୍କୁ ଆକ୍ରମଣ କଲେ । ରାଜା ତାଙ୍କୁ ଯେଉଁ ଯେଉଁ ଶସ୍ତ୍ରଦ୍ୱାରା ପ୍ରହାର କରିବାପାଇଁ ଚେଷ୍ଟା କଲେ, ସେ ସେଗୁଡ଼ିକୁ ନିଜର ଅଦ୍ଭୁତ କୌଶଳରେ ତାଙ୍କଠାରୁ ହସ୍ତଗତ କରିନେଲେ । ଶେଷରେ ରାଜାଙ୍କ ହସ୍ତରୁ ସମସ୍ତ ଶସ୍ତ୍ର ନେଇଯାଇ ଅକ୍ଷତ ଶରୀର ଗୁଣଶର୍ମା ରାଜାଙ୍କୁ ବନ୍ଧନ କଲେ । ଏଥିରେ ରାଜା ପ୍ରୀତ ହୋଇ ଏବଂ ତାଙ୍କୁ ରାଜ୍ୟଶାସନର ପ୍ରଧାନ ସହାୟକ ମନେ କରି ସମସ୍ତଙ୍କ ଅପେକ୍ଷା ଅଧିକ ସମ୍ମାନ ପ୍ରଦର୍ଶନ କରିବାକୁ ଲାଗିଲେ ।

ଏଣେ ରାଣୀ ଅଶୋକବତୀ ମଧ୍ୟ ବ୍ରାହ୍ମଣ ଗୁଣଶର୍ମାଙ୍କ ଯୌବନ, ରୂପଲାବଣ୍ୟ ଏବଂ କଳାଜ୍ଞାନ ଦର୍ଶନରେ ତାଙ୍କ ପ୍ରତି ଆସକ୍ତ ହୋଇ ପଡ଼ିଲେ; ଗୁଣଶର୍ମାଙ୍କୁ ଲାଭ ନ କଲେ ତାଙ୍କ ଜୀବନ ନିଷ୍ଫଳ ହେବ ବୋଲି ମନେ କଲେ । ଏଥିପାଇଁ ସେ ଏକ କୌଶଳ ଚିନ୍ତାକରି ଗୁଣଶର୍ମାଙ୍କଠାରୁ ବୀଣାବାଦନ ଶିକ୍ଷା କରିବାର ଅଭିପ୍ରାୟ ରାଜାଙ୍କ ନିକଟରେ ପ୍ରକାଶ କଲେ । ଏହାଶୁଣି ରାଜା ଗୁଣଶର୍ମାଙ୍କୁ ଅନୁରୋଧ କଲେ ଯେ ସେ ରାଣୀ ଅଶୋକବତୀଙ୍କୁ ଉତ୍ତମ ବୀଣାବାଦନ କୌଶଳ ଶିକ୍ଷା ଦିଅନ୍ତୁ । ଏଥିରେ ସମ୍ମତ ହୋଇ ଏବଂ କୌଣସି ଏକ ଶୁଭ ଦିନରେ ଏହା ଆରମ୍ଭ କରାଯିବ ବୋଲି କହି ଗୁଣଶର୍ମା ସ୍ୱ ବାସଭବନକୁ ପ୍ରସ୍ଥାନ କଲେ ଏବଂ ରାଣୀଙ୍କ ଅଭିଳାଷ ପବିତ୍ର ନୁହେ ଜାଣିପାରି ସେ ଏହି ଶୁଭଦିନକୁ ବିଳମ୍ବିତ କରିବାକୁ ଲାଗିଲେ ।

ଦିନେ ଗୁଣଶର୍ମା ରାଜାଙ୍କ ଭୋଜନ ସମୟରେ ନିକଟରେ ବସିଥାଆନ୍ତି । ଏ ସମୟରେ ଖାଦ୍ୟ ପରିବେଷଣ କରୁଥିବା ବ୍ରାହ୍ମଣକୁ ସେ 'ଦିଅନାହିଁ ଦିଅନାହିଁ' ବୋଲି କହି ବାରଣ କଲେ । ରାଜା ଏହାର କାରଣ ଜିଜ୍ଞାସା କରନ୍ତେ ସେ ଉତ୍ତରରେ କହିଲେ, 'ଏହି ବ୍ୟଞ୍ଜନ ବିଷାକ୍ତ ବୋଲି ମୁଁ ପରିବେଷକର ଅଙ୍ଗଭଙ୍ଗୀରୁ ଜାଣିପାରୁଛି । ଅନ୍ନ ପରିବେଷଣ କରିବା ବେଳେ ଭୟରେ ତାର ହାତ କମ୍ପି ଉଠୁଛି ଏବଂ ସେ ଚଞ୍ଚଳ ଦୃଷ୍ଟିରେ ମୋ ମୁଖକୁ ବାରମ୍ବାର ଚାହୁଁଛି । ବର୍ତ୍ତମାନ ଏହା ପରୀକ୍ଷା କରିବା ପାଇଁ ଏହି ବ୍ୟଞ୍ଜନ ଅନ୍ୟ କାହାରିକି ଦିଆଯାଉ । ସେ ବିଷଜ୍ୱାଳାରେ ପ୍ରାଣତ୍ୟାଗ କଲେ ମୁଁ ତାର ଉପାୟ କରିବି ।

ଗୁଣଶର୍ମାଙ୍କଠାରୁ ଏହାଶୁଣି ରାଜା ସେହି ବ୍ରାହ୍ମଣକୁ ହିଁ ଏହି ଖାଦ୍ୟ ସାମଗ୍ରୀ ଭୋଜନ କରାଇଲେ । ମୁଖରେ ଦେବାମାତ୍ରେ ସେ ମୂର୍ଚ୍ଛିତ ହୋଇ ପଡ଼ନ୍ତେ ବିଜ୍ଞ ବ୍ରାହ୍ମଣକୁମାର ନିଜର ବିଦ୍ୟା ବଳରେ ତାର ଶରୀରରୁ ବିଷତକ ଝାଡ଼ିଦେଲେ । ସୁସ୍ଥ ହୋଇ ଉଠିବାରୁ ରାଜାଙ୍କ ଜିଜ୍ଞାସା କ୍ରମେ ପ୍ରକୃତ ସତ୍ୟକଥା ପ୍ରକାଶ କରିବାକୁ ଯାଇ

ସେ କହିଲା, 'ମହାରାଜ, ଆପଣଙ୍କ ଶତ୍ରୁ ଗୌଡ଼େଶ୍ୱର ବିକ୍ରମଶକ୍ତି ବିଷ ପ୍ରୟୋଗଦ୍ୱାରା ଆପଣଙ୍କୁ ହତ୍ୟା କରିବାପାଇଁ ମୋତେ ପ୍ରେରଣ କରିଥିଲେ । ତେଣୁ ବିଦେଶୀ ଭାବରେ ଆସି ଏବଂ ରନ୍ଧନ ବିଦ୍ୟାରେ ଦକ୍ଷ ବୋଲି ପରିଚୟ ଦେଇ ମୁଁ ଆପଣଙ୍କ ପାଚକ ରୂପେ ନିଯୁକ୍ତ ହେଲି । ଆଜି ପୂର୍ବନିର୍ଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ କରିବାକୁ ଯାଉଥିବା ବେଳେ ଏହି ସର୍ବଜ୍ଞ ମହାପୁରୁଷ ତାହା ଜାଣିପାରିଲେ । ଏହାପରେ ଯାହା ଯାହା ଘଟିଲା, ସେ ସମସ୍ତ ଆପଣଙ୍କ ଅଜ୍ଞାତ ନୁହେ ।' ଏହାଶୁଣି ରାଜା ଉକ୍ତ ପାଚକକୁ ଦଣ୍ଡିତ କରି ପ୍ରାଣରକ୍ଷାକାରୀ ଗୁଣଶର୍ମାଙ୍କୁ ଏକ ସହସ୍ର ଗ୍ରାମ ପୁରସ୍କାର ସ୍ୱରୂପ ପ୍ରଦାନ କଲେ ।

ରାଣୀଙ୍କ ବାରମ୍ବାର ଆଗ୍ରହ ପ୍ରକାଶ ଫଳରେ ରାଜାଙ୍କ ଅନୁରୋଧ କ୍ରମେ ଗୁଣଶର୍ମା ରାଣୀ ଅଶୋକବତୀଙ୍କୁ ବୀଣାବାଦନ ଶିକ୍ଷା ଦେବା ଆରମ୍ଭ କଲେ । ବୀଣାବାଦନ ଶିକ୍ଷା ଦେବା ସମୟରେ ରାଣୀ ସର୍ବଦା ତାଙ୍କ ସମ୍ମୁଖରେ ବିବିଧ କାମ ବିକାର ପ୍ରଦର୍ଶନ କରୁଥାଆନ୍ତି । ଏକଦା ରାଣୀ ଏକାନ୍ତରେ ନଖଦ୍ୱାରା ଭୂମି ଉପରେ ରେଖାପାତ କରୁ କରୁ ଗୁଣଶର୍ମାଙ୍କୁ କହିଲେ, 'ହେ ସୁନ୍ଦର, ତୁମକୁ ନିକଟରେ ପାଇବା ପାଇଁ ବୀଣାବାଦନ ଶିକ୍ଷା ଏକ କୌଶଳ ମାତ୍ର । ମୁଁ ପ୍ରକୃତରେ ତୁମପ୍ରତି ବିଶେଷ ଭାବେ ଆସକ୍ତ ହୋଇପଡ଼ିଛି । ମୋତେ ଗ୍ରହଣ କରି ମୋର ଅଭିଳାଷ ପୂରଣ କର ।'

ରାଣୀଙ୍କ ଏ ପ୍ରକାର ବ୍ୟବହାରର ସମ୍ମୁଖୀନ ହେବା ପାଇଁ ପୂର୍ବରୁ ପ୍ରସ୍ତୁତ ଥିବା ଗୁଣଶର୍ମା ଶାନ୍ତ ଭାବରେ କହିଲେ, 'ଆପଣ ଏପରି କହନ୍ତୁ ନାହିଁ, ଆପଣ ମୋର ପ୍ରଭୁପତ୍ନୀ । ମୋ ପରି ଲୋକ ପ୍ରଭୁଦ୍ରୋହ କରିପାରିବ ନାହିଁ ।' କିନ୍ତୁ ରାଣୀ ଏଥିରେ ସନ୍ତୁଷ୍ଟ ନ ହୋଇ ପୁଣି ନିବେଦନ କଲେ, 'ହେ ନୀରସ, ତୁମେ ମୋ ପରି ସୁନ୍ଦରୀ ପ୍ରେୟସୀକୁ ଯେତେବେଳେ ଉପେକ୍ଷା କରୁଅଛ, ତା ହେଲେ ତୁମର ଏପ୍ରକାର ରୂପ ଓ ଗୁଣ ନିରର୍ଥକ ।' ଏଥିରେ ଗୁଣଶର୍ମା ହାସ୍ୟ ପ୍ରକାଶ ପୂର୍ବକ ଉତ୍ତର ଦେଲେ, 'ଆପଣ ଠିକ୍ କହିଅଛନ୍ତି । କିନ୍ତୁ ସେ ଚାତୁର୍ଯ୍ୟରେ କି ଫଳ, ଯାହାଦ୍ୱାରା ମନୁଷ୍ୟ ପରଦାରା ହରଣ କରି ଇହଲୋକ ଓ ପରଲୋକ ଉଭୟତ୍ର ନରକଗାମୀ ହେବ ।' ଗୁଣଶର୍ମା ତାଙ୍କରି କଥାରେ ସମ୍ମତ ନ ହେବା ଦେଖି ରାଣୀ ରୁଷ୍ଟ କଣ୍ଠରେ କହିଲେ, 'ତୁମେ ଯଦି ମୋତେ ଉପଭୋଗ ନ କର, ତା' ହେଲେ ମୋର ନିଶ୍ଚିତ ଭାବରେ ମୃତ୍ୟୁ ହେବ । କିନ୍ତୁ ମୋତେ ଅପମାନିତ କରିଥିବା ହେତୁ ତୁମକୁ ମଧ୍ୟ ମୁଁ ତା ପୂର୍ବରୁ ହତ୍ୟା କରିବି । ମୋର ବାକ୍ୟ ଅବଜ୍ଞା କରିଥିବା ଯୋଗୁଁ ତୁମର ମୃତ୍ୟୁ ମଧ୍ୟ ସୁନିଶ୍ଚିତ ବୋଲି ଜାଣ ।'

କିନ୍ତୁ ଗୁଣଶର୍ମା ଏଥିରେ ମଧ୍ୟ ଅବିଚଳିତ ଭାବରେ କହିଲେ, 'ମୃତ୍ୟୁ ପାଇଁ ମୋର ଆଦୌ ଭୟ ନାହିଁ । ଧର୍ମବନ୍ଧନରେ ଆବଦ୍ଧ ହୋଇ କ୍ଷଣକ ପାଇଁ ଜୀବନ ଧାରଣ କରିବା ଶ୍ରେୟସ୍କର କିନ୍ତୁ ଅଧର୍ମ ଆଚରଣ କରି ପ୍ରଳୟକାଳ ପର୍ଯ୍ୟନ୍ତ ଜୀବିତ ରହିବା ବାଞ୍ଛନୀୟ ନୁହେ ।

ବରଂ ଯଦ୍ଧର୍ମପାଶେନ କ୍ଷଣମେକଂ ହି ଜୀବିତମ୍
ପରଂ ନ ଯଦଧର୍ମେଣ କଳ୍ପକୋଟିଶତାନ୍ୟପି ।

ପାପ କରିବା ପୂର୍ବରୁ ମୋର ମୃତ୍ୟୁ ଶ୍ରେୟସ୍କର । କିନ୍ତୁ ପାପାଚରଣ କରି ନିନ୍ଦିତ ରାଜ୍ୟଶାସନ କରିବା ମଧ୍ୟ ଉତ୍କୃଷ୍ଟ ବୋଲି ମୋ ମତରେ ବିବେଚିତ ହେଉନାହିଁ ।' ରାଣୀ ଅଶୋକବତୀ ଏହା ଶୁଣି ପୁଣି ତାଙ୍କୁ ପ୍ରଲୋଭିତ କଲେ, 'ତୁମେ ମୋର ଆତ୍ମା ସହିତ ବିଦ୍ରୋହ କରନାହିଁ । ରାଜା ମୋର ଅସମ୍ଭବ ଅଭିଳାଷକୁ ମଧ୍ୟ ଅତିକ୍ରମ କରିଯିବେ ନାହିଁ । ତେଣୁ ମୁଁ ତାଙ୍କୁ ଅନୁରୋଧ କରି ତୁମକୁ କୌଣସି ରାଜ୍ୟର ଶାସକ ରୂପେ ନିଯୁକ୍ତ କରିଦେବି ଏବଂ ସମସ୍ତ ସାମନ୍ତ ରାଜାମାନଙ୍କୁ ତୁମପ୍ରତି ଆକୃଷ୍ଟ କରାଇ ଦେବି । ଫଳରେ ତୁମେ ନିର୍ବିଘ୍ନରେ ରାଜ୍ୟଭୋଗ କରି ଆନନ୍ଦରେ କାଳଯାପନ କରିପାରିବ । ତାହାହେଲେ ତୁମର୍ ଆଉ ଭୟ କାହାକୁ ? ତୁମକୁ ବା ଆଉ କିଏ କିପରି ନିନ୍ଦିତ କରିବ ? ତେଣୁ ତୁମେ ନିଃଶଙ୍କ ଚିତ୍ତରେ ମୋତେ ଉପଭୋଗ କର, ନୋଚେତ୍ ଜୀବନ ଧାରଣ କରିବା ତୁମ ପକ୍ଷରେ ସମ୍ଭବ ହେବନାହିଁ ।'

ଗୁଣଶର୍ମା ରାଣୀଙ୍କର ଏ ପ୍ରକାର ଆଗ୍ରହ ଓ ଅଳି ଦେଖି ସମୟ ବିତାଇବା ନିମିତ୍ତ ତାଙ୍କୁ ଆଶ୍ୱାସନା ଦେଲେ, 'ଯଦି ଆପଣଙ୍କର ଏ ପ୍ରକାର ଆଗ୍ରହ ଜାତ ହୋଇଅଛି, ତାହାହେଲେ ମୁଁ କଦାପି ତାହା ବିଫଳ କରିବି ନାହିଁ । କିନ୍ତୁ ହଠାତ୍ ଏପରି କିଛି କରି ବସିଲେ ସମସ୍ତ ରହସ୍ୟ ପଦାରେ ପଡ଼ିଯିବ । ତେଣୁ ଆଉ କିଛିଦିନ ଅପେକ୍ଷା କରନ୍ତୁ । ସତ୍ୟ କରି କହୁଛି ଯେ ଆପଣଙ୍କର ବିରୁଦ୍ଧାଚରଣ କରି ନିଜର ଅନିଷ୍ଟ କରିବା ପାଇଁ ମୁଁ କଦାପି ଚାହେଁ ନାହିଁ ।' ତାଙ୍କୁ ଏପରି ଆଶ୍ୱାସନା ଏବଂ ପୁନର୍ମିଳନର ପ୍ରତିଶ୍ରୁତି ପ୍ରଦାନ କରି ଗୁଣଶର୍ମା ଦୀର୍ଘଶ୍ୱାସ ପରିତ୍ୟାଗ ପୂର୍ବକ ସେଠାରୁ କଥଞ୍ଚିତ୍ ନିର୍ଗତ ହେଲେ ।

କିଛିଦିନ ପରେ ରାଜା ମହାସେନ ସୋମକେଶ୍ୱରଙ୍କ ଦୁର୍ଗ ଆକ୍ରମଣ କରି ତାହା ଅବରୋଧ କଲେ । ଏହାକୁ ଉପଯୁକ୍ତ ସମୟ ବୋଲି ମନେ କରି ଗୌଡ଼େଶ୍ୱର ବିକ୍ରମଶକ୍ତି ମହାସେନଙ୍କୁ ପ୍ରତିଆକ୍ରମଣ କରି ତାଙ୍କୁ ପରିବେଷ୍ଟନ କଲେ । ଏହା ଦେଖି ମହାସେନ ଗୁଣଶର୍ମାଙ୍କୁ କହିଲେ, 'ଆମେ ଜଣେ ରାଜାଙ୍କୁ ଆକ୍ରମଣ କରି ତାଙ୍କ ଦୁର୍ଗକୁ ପରିବେଷ୍ଟନ

କରି ରହିଥିବା ସମୟରେ ଅନ୍ୟ ଏକ ରାଜାଦ୍ୱାରା କବଳିତ ହେଲେ । ଉଭୟଙ୍କ ସହ ଏକ ସଙ୍ଗେ ଯୁଦ୍ଧ କରିବା ଆମ ପକ୍ଷରେ ସମ୍ଭବପର ନୁହେ । ଏହା ବ୍ୟତୀତ ଏହି ଅବରୋଧ ଅବସ୍ଥାରେ ରହିବା ବା କେତେଦିନ ? ତେଣୁ ଏହି ସଙ୍କଟାପନ୍ନ ଅବସ୍ଥାରେ କ'ଣ କରାଯିବ ମୁଁ ଚିନ୍ତା କରିପାରୁ ନାହିଁ ।'

ରାଜାଙ୍କଠାରୁ ଏହାଶୁଣି ଗୁଣଶର୍ମା ଧୈର୍ଯ୍ୟ ଓ ସାହସ ପ୍ରଦାନପୂର୍ବକ କହିଲେ, 'ମହାରାଜ, ଧୈର୍ଯ୍ୟ ଧାରଣ କରନ୍ତୁ । ମୁଁ ଏପରି କିଛି ଉପାୟ କରୁଛି, ଯା' ଫଳରେ ଆପଣ ଏହି ସଙ୍କଟରୁ ଅନାୟାସରେ ଉଦ୍ଧାର ପାଇଯିବେ ।'

ରାଜାଙ୍କୁ ଏହିପରି ଆଶ୍ୱାସନା ଦେଇ ଗୁଣଶର୍ମା ଚକ୍ଷୁରେ ଅଦୃଶ୍ୟ ହେବା ନିମିତ୍ତ କୌଣସି ଅଞ୍ଜନ ଲେପନ କରି ଉକ୍ତ ରଜନୀରେ ଅଦୃଶ୍ୟ ଭାବରେ ଯାଇ ବିକ୍ରମଶକ୍ତିଙ୍କ ଶିବିର ମଧ୍ୟରେ ଉପସ୍ଥିତ ହେଲେ । ସେ ତାଙ୍କର ଶୟନାଗାରରେ ଉପସ୍ଥିତ ହୋଇ ରାଜାଙ୍କ ନିଦ୍ରାଭଙ୍ଗ ପୂର୍ବକ ତାଙ୍କୁ କହିଲେ, 'ମୁଁ ଜଣେ ଦେବଦୂତ, ତୁମେ ଭଗବାନ୍ ବିଷ୍ଣୁଙ୍କୁ ଅଖଣ୍ଡ ଭକ୍ତି କରୁଥିବା ଯୋଗୁଁ ଭକ୍ତପ୍ରିୟ ମୋତେ ତୁମ ନିକଟକୁ ପ୍ରେରଣ କରିଅଛନ୍ତି । ତୁମେ ମହାସେନଙ୍କ ସହ ସନ୍ଧି ସ୍ଥାପନ କରି ଶୀଘ୍ର ଏଠାରୁ ପ୍ରତ୍ୟାବର୍ତ୍ତନ କରିଯାଅ ନୋଚେତ୍ ତୁମର ବିନାଶ ଘଟିବାର ସମ୍ଭାବନା ଅଛି । ତୁମେ ଦୂତଦ୍ୱାରା ତାଙ୍କ ନିକଟକୁ ସନ୍ଧି ପ୍ରସ୍ତାବ ପଠାଇଲେ, ସେ ଏଥିରେ ସମ୍ମତ ହେବେ । ଏହାଶୁଣି ବିକ୍ରମଶକ୍ତି ଚିନ୍ତାକଲେ, 'ଏହି ଦେବଦୂତର ବାକ୍ୟ ପ୍ରକୃତରେ ସତ୍ୟ । ଏଠାରେ ପ୍ରବେଶ କରିବା ସାଧାରଣ ବ୍ୟକ୍ତି ପକ୍ଷରେ ଅସମ୍ଭବ । ପୁଣି ଏହାର ରୂପ ମଧ୍ୟ ସାଧାରଣ ମାନବର ରୂପ ତୁଲ୍ୟ ପ୍ରତୀତ ହେଉନାହିଁ ।' ଏହା ଚିନ୍ତାକରି ସେ ଦେବଦୂତକୁ କହିଲେ ଯେ ବିଷ୍ଣୁଙ୍କ କୃପାଲାଭ କରି ସେ ଧନ୍ୟ ହୋଇଛନ୍ତି ଏବଂ ନିଶ୍ଚିତ ଭାବରେ ସେ ପ୍ରଭୁଙ୍କ ଆଦେଶ ପାଳନ କରିବେ ।

ରାଜାଙ୍କର ମନୋଗତ ଭାବ ଜ୍ଞାତ ହୋଇ ଗୁଣଶର୍ମା ସେଠାରୁ ଅନ୍ତର୍ହିତ ହୋଇ ଆସି ସମସ୍ତ ବିଷୟ ମହାସେନଙ୍କଠାରେ ବ୍ୟକ୍ତକଲେ । ମହାସେନ ପ୍ରାଣ ଓ ରାଜ୍ୟ ପ୍ରଦାନକାରୀ ପ୍ରିୟ ସୁହୃତ୍‌ଙ୍କୁ ଆନନ୍ଦ ଗଦ୍‌ଗଦ ହୋଇ ଆଲିଙ୍ଗନ ପୂର୍ବକ ଅଭିନନ୍ଦନ କଲେ ।

ପରଦିନ ପ୍ରଭାତରୁ ବିକ୍ରମଶକ୍ତି ଦୂତଦ୍ୱାରା ସନ୍ଧିସ୍ଥାପନ କରି ସୈନ୍ୟ ସାମନ୍ତ ସହ ସ୍ୱ ରାଜଧାନୀ ଅଭିମୁଖରେ ଅଗ୍ରସର ହେଲେ । ମହାସେନ ମଧ୍ୟ ଗୁଣଶର୍ମାଙ୍କ ସାହାଯ୍ୟରେ ରାଜା ସୋମକେଶ୍ୱରଙ୍କୁ ପରାସ୍ତ କରି ବହୁ ହସ୍ତୀ ଓ ଅଶ୍ୱ ସହିତ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଆସିଲେ । ଉଜ୍ଜୟିନୀରେ ବାସ କରୁଥିବା ସମୟରେ ଏକଦା ମହାସେନ ସ୍ନାନ ଅବସରରେ କୁମ୍ଭୀର ଦ୍ୱାରା ଏବଂ ଉଦ୍ୟାନ ଭ୍ରମଣ ସମୟରେ ସର୍ପଦ୍ୱାରା

ଆକ୍ରାନ୍ତ ହୋଇଥିଲେ, କିନ୍ତୁ ଗୁଣଶର୍ମାଙ୍କ ସାହାଯ୍ୟରେ ସେଇ ଉଭୟ ବିପଦରୁ ମଧ୍ୟ ସେ ରକ୍ଷା ପାଇ ପାରିଥିଲେ ।

କିଛିକାଳ ସୁଖରେ ରାଜ୍ୟଶାସନ କରି ମହାସେନ ନିଜର ସୈନ୍ୟବାହିନୀକୁ ସୁସଙ୍ଗଠନ କରି ବିକ୍ରମଶକ୍ତିଙ୍କୁ ଆକ୍ରମଣ କଲେ । ବିକ୍ରମଶକ୍ତି ମଧ୍ୟ ଏହାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିବା ନିମିତ୍ତ ପ୍ରସ୍ତୁତ ହେଲେ । ଉଭୟଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ ସଂଘଟିତ ହେଲା । ଯୁଦ୍ଧରେ ଉଭୟେ ରଥହୀନ ଓ ପାଦଚାରୀ ହୋଇ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । କ୍ରୋଧରେ ଅନ୍ଧୀଭୂତ ହୋଇ ମହାସେନ ବିକ୍ରମଶକ୍ତିଙ୍କୁ ଖଡ୍‌ଗ ପ୍ରହାର କରିବା ନିମିତ୍ତ ଅଗ୍ରସର ହେବା ସମୟରେ ଭୂପତିତ ହେଲେ । ଏହାଦେଖି ବିକ୍ରମଶକ୍ତି ତାଙ୍କୁ ଆକ୍ରମଣ ଓ ନିହତ କରିବା ପାଇଁ ଉଦ୍ୟତ ହେଉଥିବା ସମୟରେ ଗୁଣଶର୍ମା ନିଜର ଚକ୍ର ସାହାଯ୍ୟରେ ତାଙ୍କର ହସ୍ତ ଓ ଖଡ୍‌ଗକୁ କର୍ତ୍ତନ କରି ଲୌହଦଣ୍ଡଦ୍ୱାରା ତାଙ୍କୁ ହତ୍ୟାକଲେ । ଏଥିରେ ମହାସେନ ପରମ ପ୍ରୀତ ହୋଇ ଗୁଣଶର୍ମାଙ୍କୁ କହିଲେ, 'ବନ୍ଧୁବର, ତୁମେ ପଞ୍ଚମବାର ମୋର ପ୍ରାଣରକ୍ଷା କରିଅଛ ।'

ବିକ୍ରମଶକ୍ତିଙ୍କ ମୃତ୍ୟୁପରେ ଉଭୟେ ତାଙ୍କର ରାଜ୍ୟ ଓ ସେନାବାହିନୀକୁ ଧ୍ୱସ୍ତବିଧ୍ୱସ୍ତ କରି ବିଜୟ ଲାଭ କଲେ । ଏହାପରେ ସେ ଅନ୍ୟାନ୍ୟ ରାଜାମାନଙ୍କୁ ଆକ୍ରମଣ କରି ଏବଂ ଗୁଣଶର୍ମାଙ୍କ ସହାୟତାରେ ସେମାନଙ୍କୁ ପରାସ୍ତ କରି ସ୍ୱ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ କାମବିହ୍ୱଳା ଅଶୋକବତୀ ବାରମ୍ବାର ଗୁଣଶର୍ମାଙ୍କଠାରେ ଆଗ୍ରହପୂର୍ବକ ତାଙ୍କୁ ଉପଭୋଗ କରିବା ନିମିତ୍ତ ପ୍ରାର୍ଥନା କରୁଥାଆନ୍ତି । କିନ୍ତୁ ଗୁଣଶର୍ମା କୌଣସିମତେ ତାଙ୍କର ପ୍ରାର୍ଥନା ସ୍ୱୀକାର କରୁନଥାନ୍ତି । ପ୍ରକୃତରେ ସଜ୍ଜନ ବ୍ୟକ୍ତିମାନେ ପାପାଚରଣ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ବୋଲି ମନେ କରିଥାଆନ୍ତି ।

ଗୁଣଶର୍ମାଙ୍କ ଏ ପ୍ରକାର ଆଚରଣରେ କ୍ଷୁଣ୍ଣ ହୋଇ ଅଶୋକବତୀ ତାଙ୍କ ସହ ଶତ୍ରୁତା ଆଚରଣ କରିବା ଆରମ୍ଭ କଲେ । ଏକଦା ସେ ଦୁଃଖର ଛଳନା କରି ଗମ୍ଭୀର ଭାବରେ ଶୟନ କରିଥାଆନ୍ତି । ଏ ସମୟରେ ମହାସେନ ସେଠାରେ ଉପସ୍ଥିତ ହୋଇ ରାଣୀଙ୍କ ଏ ପ୍ରକାର ମନୋବେଦନାର କାରଣ ଜିଜ୍ଞାସା ପୂର୍ବକ ପ୍ରଶ୍ନକଲେ, 'ପ୍ରିୟେ, ତୁମର ଏ ପ୍ରକାର ମନୋବେଦନାର କାରଣ କ'ଣ ? କିଏ ତୁମର ବିରୁଦ୍ଧାଚରଣ କରିଅଛି ଜାଣିଲେ ମୁଁ ତାର ଧନ ଓ ଜୀବନ ନଷ୍ଟ କରିବା ପାଇଁ ତିଳେମାତ୍ର କୁଣ୍ଠାବୋଧ କରିବି ନାହିଁ ।'

ରାଜାଙ୍କ ଏ ପ୍ରକାର ଜିଜ୍ଞାସାର ଉତ୍ତର ଦେବାକୁ ଯାଇ ରାଣୀ ଅଶୋକବତୀ କଷ୍ଟ କଷ୍ଟରେ କହିଲେ, 'ମହାରାଜ, ଏହା ପ୍ରକାଶ କରି ମୋର ବିଶେଷ କିଛି ଲାଭ ହେବ ବୋଲି ମୁଁ ମନେ କରୁନାହିଁ । ଯେ ମୋର ଅପକାର କରିଛି, ଆପଣ ତାକୁ ଦଣ୍ଡ ପ୍ରଦାନ କରିବା ପାଇଁ ସମର୍ଥ ନୁହନ୍ତି । ତଥାପି, ଆର୍ଯ୍ୟପୁତ୍ର, ଆପଣ ଯେତେବେଳେ ଆଗ୍ରହ ପ୍ରକାଶ କରୁଛନ୍ତି, ସେତେବେଳେ ବାଧ୍ୟ ହୋଇ ମୁଁ ତାହା ପ୍ରକାଶ କରୁଅଛି ।

'ଗୁଣଶର୍ମା ଗୌଡ଼େଶ୍ୱରଙ୍କଠାରୁ ପ୍ରଭୂତ ଧନଲାଭ ଆଶାରେ ଗୁପ୍ତ ଷଡ଼ଯନ୍ତ୍ରରେ ଲିପ୍ତ ରହି ତୁମସହ ଶତ୍ରୁତା ଆଚରଣ କରୁଛନ୍ତି । ଏହି ନୀଚ ବ୍ରାହ୍ମଣ ଗୌଡ଼େଶ୍ୱରଙ୍କୁ ରାଜସିଂହାସନ ପ୍ରଦାନ କରିବ ବୋଲି ତାଙ୍କ ନିକଟକୁ ଦୂତ ପ୍ରେରଣ କରିଥିଲା । ଏହା ଜାଣିପାରି ରାଜାଙ୍କର ବିଶ୍ୱସ୍ତ ପାଚକ ତାଙ୍କୁ କହିଲା ଯେ ସେ ଏ କର୍ମ ସମ୍ପାଦନ କରିବା ପାଇଁ ସମର୍ଥ । ତେଣୁ ରାଜା ବୃଥା ଅର୍ଥବ୍ୟୟରୁ ନିବୃତ୍ତ ହୁଅନ୍ତୁ । ପାଚକଠାରୁ ଏହାଶୁଣି ଗୌଡ଼େଶ୍ୱର ଗୁଣଶର୍ମାଙ୍କ ଦୂତକୁ ବନ୍ଦିଶାଳାରେ ଆବଦ୍ଧ କରି ରଖିଲେ ଏବଂ ପାଚକକୁ କାର୍ଯ୍ୟସିଦ୍ଧି ନିମିତ୍ତ ଏଠାକୁ ପ୍ରେରଣ କଲେ । ସେ ଆପଣଙ୍କୁ ଖାଦ୍ୟ ସାମଗ୍ରୀ ସହ ବିଷ ପ୍ରଦାନ କରି ତାର କାର୍ଯ୍ୟ ସିଦ୍ଧକରି ଥାଆନ୍ତା, କିନ୍ତୁ କୌଶଳରେ ଗୁଣଶର୍ମାର ଦୂତ ବନ୍ଦିଶାଳାରୁ ମୁକ୍ତିଲାଭ କରି ଏଠାକୁ ଫେରିଆସି ସମସ୍ତ ବୃତ୍ତାନ୍ତ ଗୁଣଶର୍ମା ନିକଟରେ ପ୍ରକାଶ କଲା । ଏହି ସମୟରେ ଉକ୍ତ ପାଚକ ଆମର ରନ୍ଧନଶାଳାରେ ଥାଏ । ତେଣୁ ସେ ଆପଣଙ୍କୁ ବିଷ ପ୍ରଦାନ କରୁଛି ବୋଲି କହି ଗୁଣଶର୍ମା ତାକୁ ହତ୍ୟା କରିବା ପାଇଁ ସମର୍ଥ ହେଲା ।

ଆଜି ଉକ୍ତ ପାଚକର ମାତା, ସ୍ତ୍ରୀ ଓ ଭ୍ରାତାମାନେ ତାର ସମାଚାର ଜାଣିବା ପାଇଁ ଏଠାକୁ ଆସିଥିଲେ, କିନ୍ତୁ ବୁଦ୍ଧିମାନ ଗୁଣଶର୍ମା ସେମାନଙ୍କର ସନ୍ଧାନ ପାଇ ସେମାନଙ୍କୁ ନିର୍ମମ ଭାବରେ ହତ୍ୟା କରିଅଛି । କିନ୍ତୁ ସୌଭାଗ୍ୟବଶତଃ ତାର ଭ୍ରାତା କୌଶଳରେ ମୋର ବାସଭବନକୁ ଚାଲି ଆସିଅଛି । ସେ ମୋ ନିକଟରେ ସମସ୍ତ ବୃତ୍ତାନ୍ତ ପ୍ରକାଶ କରୁଥିବା ସମୟରେ ଗୁଣଶର୍ମା ଏଠାରେ ଆସି ଉପସ୍ଥିତ ହେଲା । ତାକୁ ଦେଖି ଏବଂ ମୋଠାରୁ ତା'ର ପରିଚୟ ଲାଭକରି ପାଚକର ଭ୍ରାତା ସେଠାରୁ କେଉଁଆଡ଼େ ପଳାୟନ କଲା ।

'ଗୁଣଶର୍ମା ମଧ୍ୟ ନିଜର ଭୃତ୍ୟମାନଙ୍କଠାରୁ ଏ ସମ୍ବାଦ ଲାଭକରି ଏବଂ ତାକୁ ମୋ ନିକଟରେ ଦେଖି କିଛି ସମୟ ଚିନ୍ତାନ୍ୱିତ ହୋଇ ରହିଲା । ମୁଁ ତା'ର ଏପ୍ରକାର ମନୋବେଦନାର କାରଣ ଜିଜ୍ଞାସା କରନ୍ତେ ସେ ରହସ୍ୟ ଉଦ୍‌ଘାଟିତ ହୋଇପଡ଼ିବା

ଭୟରେ ମୋତେ କହିଲା, 'ରାଣୀ, ମୁଁ ତୁମର ପ୍ରେମାଗ୍ନିରେ ଦଗ୍ଧୀଭୂତ ହୋଇପଡ଼ିଛି, ତେଣୁ ତୁମେ ମୋତେ ସ୍ୱୀକାର କର । ତା' ନହେଲେ ମୁଁ ଜୀବନଧାରଣ କରିବା ସମ୍ଭବପର ନୁହ । ମୋତେ ପ୍ରାଣଭିକ୍ଷା ପ୍ରଦାନ କର ।' ଏହା କହି ସେ ମୋର ଚରଣତଳେ ପଡ଼ିଗଲା । ମୁଁ ତାଠାରୁ ମୁକ୍ତିଲାଭ କରିବାପାଇଁ ଚିନ୍ତା କରୁଥିବା ସମୟରେ ଗୃହକୁ ନିର୍ଜନ ଦେଖି ସେ ମୋତେ ଆଲିଙ୍ଗନ ପୂର୍ବକ ତାର ଶରୀରରେ ଜଡ଼ାଇ ନେଲା । ଏ ସମୟରେ ମୋର ପରିଚାରିକା ପଲ୍ଲବିକା ସେଠାରେ ଆସି ଉପସ୍ଥିତ ହୁଅନ୍ତେ ଗୁଣଶର୍ମା ଭୟରେ ସେଠାରୁ ପଳାୟନ କଲା । ମୋର ପରିଚାରିକା ଆସି ସେଠାରେ ଯଥାସମୟରେ ଉପସ୍ଥିତ ନ ହୋଇଥିଲେ ପାପିଷ୍ଠ ନିଶ୍ଚୟ ମୋର ଚରିତ୍ର ନଷ୍ଟ କରିଥାଆନ୍ତା ।'

ଏହା କହି ରାଣୀ କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲେ । ପ୍ରକୃତରେ ବିଧାତା ପ୍ରଥମେ ମିଥ୍ୟା ଓ ପରେ କଳଙ୍କିନୀ ସ୍ତ୍ରୀମାନଙ୍କୁ ସୃଷ୍ଟି କରିଥିଲେ ।

**ଆଦାବସତ୍ୟବଚ୍ନଂ ପଶ୍ଚାଜ୍ଜାତା ହି କୁସ୍ତ୍ରିୟଃ ।**

ରାଣୀଙ୍କଠାରୁ ଏହା ଶୁଣିବା ମାତ୍ରେ ରାଜା କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲେ । ସ୍ତ୍ରୀମାନଙ୍କର ବାକ୍ୟରେ ବିଶ୍ୱାସ କଲେ ଅନେକ ସମୟରେ ଉତ୍ତମ ବିବେକଶାଳୀ ବ୍ୟକ୍ତିମାନେ ମଧ ବିବେକହୀନ ହୋଇପଡ଼ିଥାଆନ୍ତି ।

**ସ୍ତ୍ରୀବଚଃ ପ୍ରତ୍ୟୟୋ ହନ୍ତି ବିଚାରଂ ମହତାମପି ।**

ରାଜା ମହାସେନ ରାଣୀ ଅଶୋକବତୀଙ୍କ କଥାରେ ବିଶ୍ୱାସ ସ୍ଥାପନ କରି ତାଙ୍କୁ ଆଶ୍ୱାସନା ପ୍ରଦାନପୂର୍ବକ କହିଲେ, 'ସୁନ୍ଦରି, ଧୈର୍ଯ୍ୟଧର । ମୁଁ ଏହି ରାଜଦ୍ରୋହୀକୁ ଅବଶ୍ୟ ହତ୍ୟା କରିବି । କିନ୍ତୁ କୌଶଳର ସହିତ ଏହାକୁ ହତ୍ୟା ନ କଲେ ଆମର ନିନ୍ଦାହେବ, କାରଣ ସମସ୍ତେ ଜାଣନ୍ତି ଯେ ଏ ପାପିଷ୍ଠ ପାଞ୍ଚଥର ମୋର ଜୀବନ ରକ୍ଷା କରିଅଛି । ପୁଣି ଏହାର ତୁମପ୍ରତି ଏହି ପ୍ରକାର ଆଚରଣ ଜନସମାଜରେ ଘୋଷଣା କରିବା ଅନୁଚିତ ।' ରାଜାଙ୍କ କଥାରେ ରାଣୀ ପୁଣି କହିନ୍ତେ, 'ଯଦି ଏହା ପ୍ରକାଶଯୋଗ୍ୟ ନୁହେ, ତା' ହେଲେ ସେ ଗୌଡ଼େଶ୍ୱରଙ୍କ ସହ ଚକ୍ରାନ୍ତ କରି ରାଜଦ୍ରୋହ କରୁଥିଲା ବୋଲି ଘୋଷଣା କରାଯାଇପାରେ ।' ରାଣୀଙ୍କ କଥାରେ ସମ୍ମତ ହୋଇ ରାଜା ତତ୍‌କ୍ଷଣାତ୍ ଦରବାର ଗୃହରେ ଯାଇ ଉପସ୍ଥିତ ହେଲେ ।

ରାଜା ମହାସେନ ଆସି ଦରବାରରେ ଉପସ୍ଥିତ୍ ହେବାମାତ୍ରେ ତାଙ୍କର ଦର୍ଶନ ନିମିତ୍ତ ସମସ୍ତ ସାମନ୍ତରାଜା, ରାଜକୁମାର, ମନ୍ତ୍ରୀ ତଥା ପାରିଷଦ ବୃନ୍ଦ ଆସି ସେଠାରେ ଏକତ୍ର ହେଲେ । ଏଣେ ଗୁଣଶର୍ମା ମଧ ରାଜସଭା ଅଭିମୁଖରେ ଅଗ୍ରସର ହେଲେ । କିନ୍ତୁ

ପଥ ମଧ୍ୟରେ ବହୁ ଅପଶକୁନ ତାଙ୍କର ଦୃଷ୍ଟିଗୋଚର ହେଲା । ବାମ ପାର୍ଶ୍ୱରେ କାକମାନେ ଉଡ଼ିବାକୁ ଲାଗିଲେ । ଶ୍ୱାନସମୂହ ବାମରୁ ଦକ୍ଷିଣକୁ ଗମନ କରୁଥିଲେ, ସର୍ପଗୁଡ଼ିକ ଦକ୍ଷିଣରୁ ବାମକୁ ଗତି କରୁଥିଲେ । ବାମବାହୁ ଓ ସ୍କନ୍ଧ ସ୍ପନ୍ଦିତ ହେଲା । ଏ ସବୁ ଦର୍ଶନରେ ଗୁଣଶର୍ମା ଯାହା ଅମଙ୍ଗଳ ହେବା କଥା ତାହା ତାଙ୍କର ହେଉ କିନ୍ତୁ ରାଜାଙ୍କର କିଛି ନ ହେଉ ବୋଲି ଚିନ୍ତା କରି କରି ଯାଇ ଦରବାର ଗୃହରେ ପହଞ୍ଚିଲେ । ସର୍ବଦା ତାଙ୍କର ଆଶଙ୍କା ହେଉଥିଲା ଯେ ରାଜଗୃହରେ କିଛି ଅନିଷ୍ଟ ଘଟିଅଛି ।

ପ୍ରଣାମ ପୂର୍ବକ ଗୁଣଶର୍ମା ଆସନଗ୍ରହଣ କରନ୍ତେ ରାଜା ତାଙ୍କପ୍ରତି ଶୁଭଦୃଷ୍ଟିପାତ କଲେନାହିଁ କି ମୌଖିକ ସତ୍କାର ମଧ୍ୟ କଲେନାହିଁ । ବରଂ କ୍ରୋଧପୂର୍ଣ୍ଣ ଭାବରେ କଟାକ୍ଷପାତ କରିବାକୁ ଲାଗିଲେ । ଗୁଣଶର୍ମା ରାଜାଙ୍କର ଏ ପ୍ରକାର ବ୍ୟବହାରରେ ଚିନ୍ତିତ ଥିବା ସମୟରେ ରାଜା ନିଜେ ସିଂହାସନ ଉପରୁ ଉଠି ଆସି ତାଙ୍କ ନିକଟରେ ଆସନ ଗ୍ରହଣ କଲେ । ଏଠାରେ ବସି ରାଜା ସଭାସଦ୍‌ମାନଙ୍କୁ କହିଲେ, 'ଗୁଣଶର୍ମାଙ୍କ ସମ୍ପର୍କରେ ମୋର ରାୟ ଶୁଣନ୍ତୁ ।' ଏହାଶୁଣି ଗୁଣଶର୍ମା ବିନମ୍ର ଭାବରେ କହିଲେ, 'ମୁଁ ସେବକ ଏବଂ ଆପଣ ମୋର୍ ପ୍ରଭୁ, ତେଣୁ ଆପଣ ମୋ ନିକଟରେ ସମାନ ଆସନରେ ବସିବା ଉଚିତ ହେଉ ନାହିଁ । ତେଣୁ ପ୍ରଥମେ ଆପଣ ସିଂହାସନ ଉପରେ ବସନ୍ତୁ, ତାହା ପରେ ଯାହା କିଛି ଆଜ୍ଞା ପ୍ରଦାନ କରିବେ ।'

ଧୈର୍ଯ୍ୟଶୀଳ ଗୁଣଶର୍ମାଙ୍କ ଏହି ପ୍ରକାର ବାକ୍ୟ ଏବଂ ସଭାସଦମାନଙ୍କର ପ୍ରବୋଧନା ଫଳରେ ରାଜା ଯାଇ ନିଜର ଆସନ ଗ୍ରହଣ କଲେ ଏବଂ ସଭାସଦ୍‌ମାନଙ୍କୁ ଲକ୍ଷ୍ୟ କରି କହିଲେ, 'ଆପଣମାନେ ଜାଣନ୍ତି ଯେ ମୁଁ ପରମ୍ପରା କ୍ରମେ ରହିଥିବା ମନ୍ତ୍ରୀମାନଙ୍କୁ ପରିତ୍ୟାଗ କରି ଗୁଣଶର୍ମାଙ୍କୁ ମୋର ସମାନ ଆସନ ପ୍ରଦାନ କରିଥିଲି । ବର୍ତ୍ତମାନ ଆପଣମାନେ ଶୁଣି ବିସ୍ମିତ ହେବେ ଯେ ସେ ଗୌଡ଼େଶ୍ୱରଙ୍କ ନିକଟକୁ ଦୂତ ପ୍ରେରଣ କରି ମୋ ବିରୋଧରେ ଚକ୍ରାନ୍ତ କରୁଅଛନ୍ତି ।' ଏହା କହି ସେ ରାଣୀ ଅଶୋକବତୀଙ୍କଠାରୁ ଶୁଣିଥିବା ସମସ୍ତ କଳ୍ପିତ କଥା ସେମାନଙ୍କୁ କହି ଶୁଣାଇଲେ । ଏତଦ୍‌ବ୍ୟତୀତ ସେ କେତେକ ବିଶ୍ୱସ୍ତବ୍ୟକ୍ତିଙ୍କ ନିକଟରେ ଗୁଣଶର୍ମା ରାଣୀଙ୍କ ସତୀତ୍ୱ ନଷ୍ଟ କରିବା ପାଇଁ ଉଦ୍ୟମ କରୁଥିବା କଥା ମଧ୍ୟ ପ୍ରକାଶ କଲେ ।

ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଗୁଣଶର୍ମା ରାଜାଙ୍କୁ କହିଲେ, 'ଆପଣଙ୍କୁ ଏ ମିଥ୍ୟା ସମ୍ବାଦ କିଏ ପ୍ରଦାନ କଲା ଏବଂ ଏ ପ୍ରକାର ଆକାଶଚିତ୍ର ଆପଣ କାହାଠାରୁ ପ୍ରାପ୍ତ ହେଲେ' । କିନ୍ତୁ ରାଜା ଏଥିପ୍ରତି କର୍ଣ୍ଣପାତ ନ କରି ତାଙ୍କୁ ପ୍ରଶ୍ନ କଲେ, 'ପାପିଷ୍ଠ, ଏହା ଯଦି ସତ୍ୟ ନୁହେ, ତାହାହେଲେ ଭୋଜନ ସାମଗ୍ରୀରେ ବିଷମିଶ୍ରଣ କଥା ତୁ ଜାଣିଲୁ

କିପରି ?' ବୁଦ୍ଧିଦ୍ୱାରା ସବୁକିଛି ଜ୍ଞାତ ହୋଇପାରେ ବୋଲି ଗୁଣଶର୍ମା ଉତ୍ତର ଦେଲେ ହେଁ ରାଜା ଏହା ଅନ୍ୟ ଜଣେ ପ୍ରତିଦ୍ୱନ୍ଦ୍ୱୀ ସଚିବଦ୍ୱାରା ସମର୍ଥିତ ହେବା ଦେଖି ଅତ୍ୟନ୍ତ କ୍ରୁଦ୍ଧ ହୋଇ ଉଠିଲେ ଏବଂ ତାଙ୍କୁ ଧୃଷ୍ଟ ବୋଲି କହି ଛୁରିକାଦ୍ୱାରା ଆଘାତ କଲେ । କିନ୍ତୁ ଗୁଣଶର୍ମା ନିଜର ବିଦ୍ୟା କୌଶଳରେ ଉକ୍ତ ଛୁରିକାଟିକୁ ଆୟତ୍ତ କରିନେଲେ । ଏହା ଦେଖି ଅନ୍ୟ ସଭାସଦ୍‌ମାନେ ମଧ୍ୟ ଛୁରିକାଦ୍ୱାରା ତାଙ୍କୁ ଆକ୍ରମଣ କଲେ; କିନ୍ତୁ ବ୍ରାହ୍ମଣ ସେମାନଙ୍କ ସମସ୍ତ ଛୁରିକା କରାୟତ୍ତ କରି ସେମାନଙ୍କୁ ସେମାନଙ୍କ କେଶ ପାଶଦ୍ୱାରା ପରସ୍ପରକୁ ବନ୍ଧନ କଲେ । ଏହାପରେ ଗୁଣଶର୍ମା ସେଠାରୁ ଦ୍ରୁତଗତିରେ ପ୍ରସ୍ଥାନ କରି ତାଙ୍କର ପଶ୍ଚାତ୍‌ଧାବନ କରୁଥିବା ଏକଶତ ସୈନିକଙ୍କୁ ନିହତ କଲେ ଏବଂ ପାଖରେ ସୁରକ୍ଷିତ ଥିବା ଅଦୃଶାଞ୍ଜନ ଚକ୍ଷୁରେ ଲେପନ ପୂର୍ବକ ଅନ୍ତର୍ହିତ ହୋଇ ଅନ୍ୟ ଏକ ଦେଶରେ ଯାଇ ଉପସ୍ଥିତ ହେଲେ ।

ଦକ୍ଷିଣାପଥ ଦିଗରେ ଅଗ୍ରସର ହେଉଥିବା ବେଳେ ସେ ମନେ ମନେ ଚିନ୍ତାକଲେ ଯେ ରାଣୀ ଅଶୋକବତୀହିଁ ରାଜାଙ୍କୁ ମୋ ବିରୋଧରେ କିଛି କହିଅଛନ୍ତି । ପ୍ରେମିକଦ୍ୱାରା ପରିତ୍ୟକ୍ତା ଓ ଅପମାନିତା ସ୍ତ୍ରୀମାନେ ବିଷ ଅପେକ୍ଷା ଅଧିକ ଭୟଙ୍କର ହୋଇଥାଆନ୍ତି । ପୁଣି ଅବିବେକୀ ରାଜାମାନଙ୍କୁ ମଧ୍ୟ ସଜ୍ଜନମାନେ ସେବା କରିବା ଅନୁଚିତ ବୋଲି କହିଛନ୍ତି ।

ଅହୋ ବିଷାଦପ୍ୟଧିକାଃ ସ୍ତ୍ରିୟୋ ରକ୍ତ ବିମାନିତାଃ
ଅହୋ ଅସେବ୍ୟାଃ ସାଧୂନାଂ ରାଜାନୋଽତତ୍ତ୍ୱ ଦର୍ଶିନଃ ।

ଏହିପରି ଚିନ୍ତା କରି ଗୁଣଶର୍ମା ଏକ କ୍ଷୁଦ୍ର ପଲ୍ଲୀ ନିକଟରେ ଆସି ପହଞ୍ଚିଲେ । ସେଠାରେ କୌଣସି ବଟବୃକ୍ଷର ଛାୟାରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିବା ଜଣେ ବ୍ରାହ୍ମଣଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଉକ୍ତ ବ୍ରାହ୍ମଣଙ୍କ ନିକଟକୁ ଯାଇ ପ୍ରଣାମ କରନ୍ତେ ସେ ଗୁଣଶର୍ମାଙ୍କର ସତ୍କାର କରି ସେ ବେଦର କେଉଁ ଶାଖା ଅଧ୍ୟୟନ କରନ୍ତି ବୋଲି ଜିଜ୍ଞାସା କଲେ । ସାମବେଦର ଦୁଇ, ଋକ୍‌ବେଦର ଦୁଇ, ଯଜୁର୍ବେଦର ସାତ ଏବଂ ଅଥର୍ବ ବେଦର ଗୋଟିଏ ଏହିପରି ବାରଟି ଶାଖା ଅଧ୍ୟୟନ କରୁଥିବା ବ୍ୟକ୍ତ କରନ୍ତେ ବ୍ରାହ୍ମଣ ତାଙ୍କୁ ଦେବତା ସ୍ୱରୂପ ଓ ପ୍ରଭାବଶାଳୀ ବୋଲି ମନେକଲେ । ଆକୃତି ଓ ରୂପରୁ ତାଙ୍କ ମହତ୍ତ୍ୱ ଅନୁମାନ କରି ବ୍ରାହ୍ମଣ ପୁଣି ପ୍ରଶ୍ନ କଲେ, 'ଆପଣ ନିଜର ଜନ୍ମଦ୍ୱାରା କେଉଁ ବଂଶ ଓ କେଉଁ ଦେଶ ଉଜ୍ଜ୍ୱଳ କରିଅଛନ୍ତି ? ଆପଣଙ୍କର ପବିତ୍ର ନାମ କଣ ? ଏବଂ ଆପଣ କେଉଁ ଗୁରୁଙ୍କ ନିକଟରୁ ବିଦ୍ୟା ଅଧ୍ୟୟନ କରିଅଛନ୍ତି ?'

ଗୁଣଶର୍ମା ଉତ୍ତର ଦେବାକୁ ଯାଇ କହିଲେ–

## ଗୁଣଶର୍ମାଙ୍କ ଜନ୍ମ ବୃତ୍ତାନ୍ତ

ଉଜ୍ଜୟିନୀ ନଗରୀରେ ଆଦିତ୍ୟଶର୍ମା ନାମରେ ଜଣେ ବ୍ରାହ୍ମଣକୁମାର ବାସ କରୁଥିଲେ । ଶୈଶବରେ ତାଙ୍କ ପିତା ଇହଲୀଳା ସମ୍ବରଣ କଲେ । ଫଳରେ ତାଙ୍କ ମାତା ମଧ୍ୟ ପତିଙ୍କର ସହଗମନ କଲେ । ଆଦିତ୍ୟଶର୍ମା ଏହିପରି ପିତୃମାତୃହୀନ ହୋଇ ସେହି ନଗରୀରେ ଥିବା ନିଜର ମାତୁଳାଳୟରେ ରହି ବିଭିନ୍ନ ବେଦ ଓ କଳାଶାସ୍ତ୍ର ଅଧ୍ୟୟନ କରିବାକୁ ଲାଗିଲେ । ବିଦ୍ୟାଧ୍ୟୟନ ଶେଷ ହେବା ପରେ ଜପରୂପ ବ୍ରତାଚରଣ କରୁଥିବା ଆଦିତ୍ୟଶର୍ମାଙ୍କ ସହ କୌଣସି ସନ୍ନ୍ୟାସୀଙ୍କ ମିତ୍ରତା ହେଲା । ଉକ୍ତ ସନ୍ନ୍ୟାସୀ ମିତ୍ରଙ୍କ ସହ ଯାଇ ସେ ଯକ୍ଷିଣୀ ସିଦ୍ଧି ନିମିତ୍ତ ଶ୍ମଶାନରେ ବସି ହୋମ କରୁଥାଆନ୍ତି ।

ଦିନେ ଶ୍ମଶାନଭୂମିରେ ସୁବର୍ଣ୍ଣ ବିମାନ ଆରୋହଣ କରି ଏବଂ ସୁନ୍ଦରୀ କୁମାରୀମାନଙ୍କଦ୍ୱାରା ପରିବେଷ୍ଟିତା ହୋଇ ଏକ ଦିବ୍ୟ କନ୍ୟାଙ୍କର ଆବିର୍ଭବା ହେଲା । ଉକ୍ତ କନ୍ୟା କୋମଳ ଓ ମଧୁର ସ୍ୱରରେ ସନ୍ନ୍ୟାସୀଙ୍କୁ କହିଲେ; 'ହେ ସନ୍ନ୍ୟାସି, ମୁଁ ବିଦ୍ୟୁନ୍ମାଳାନାମ୍ନୀ ଯକ୍ଷିଣୀ ଏବଂ ଏମାନେ ମୋର ସହଚରୀ ଏବଂ ଯକ୍ଷିଣୀ ମଧ୍ୟ । ତେଣୁ ତୁମେ ମୋର ପରିବାର ମଧ୍ୟରୁ ଗୋଟିଏ ଯକ୍ଷିଣୀକୁ ଗ୍ରହଣ କର । ତୁମର ମନ୍ତ୍ରସାଧନାଦ୍ୱାରା ଏତିକି ମାତ୍ର ସିଦ୍ଧ ହୋଇପାରିଛି । ତୁମକୁ ମୋର ମନ୍ତ୍ରସିଦ୍ଧିର କୌଶଳ ସମ୍ପୂର୍ଣ୍ଣ ରୂପେ ଜ୍ଞାତ ନ ଥିବାରୁ ମୁଁ ତୁମର ସିଦ୍ଧ ହୋଇପାରିଲି ନାହିଁ । ତେଣୁ ତୁମେ ଆଉ ଅଧିକ କଷ୍ଟ ସ୍ୱୀକାର ନକରି ଏଥିରୁ କ୍ଷାନ୍ତ ହୁଅ ।'

ଯକ୍ଷିଣୀ ବିଦ୍ୟୁନ୍ମାଳାଠାରୁ ଏହା ଶ୍ରବଣ କରି ସନ୍ନ୍ୟାସୀ ସେହି ଯକ୍ଷିଣୀମାନଙ୍କ ମଧ୍ୟରୁ ଜଣକୁ ଗ୍ରହଣ କରିନେଲେ ଏବଂ ବିଦ୍ୟୁନ୍ମାଳା ଅଦୃଶ୍ୟ ହୋଇଗଲେ ।

ଆଦିତ୍ୟଶର୍ମା କୌତୂହଳବଶତଃ ସନ୍ନ୍ୟାସୀଙ୍କ ସିଦ୍ଧ ହୋଇଥିବା ଯକ୍ଷିଣୀକୁ ଜିଜ୍ଞାସା କଲେ, 'ବିଦ୍ୟୁନ୍ମାଳାଙ୍କଠାରୁ ବଳି ଆଉ କ'ଣ କେହି ଯକ୍ଷିଣୀ ଅଛନ୍ତି ?' ଉତ୍ତରରେ ସେ କହିଲା, 'ସୁନ୍ଦର ! ଉତ୍ତମ ଯକ୍ଷିଣୀମାନଙ୍କ ମଧ୍ୟରେ ବିଦ୍ୟୁନ୍ମାଳା, ଚନ୍ଦ୍ରଲେଖା ଏବଂ ସୁଲୋଚନା ପ୍ରଧାନ । ଏମାନଙ୍କ ମଧ୍ୟରେ ସୁଲୋଚନା ଅତ୍ୟୁତ୍ତମ ।' ଏହା କହି ଯକ୍ଷିଣୀ ଯଥାସମୟରେ ଆସି ଉପସ୍ଥିତ ହେବ ବୋଲି ଜଣାଇ ପ୍ରତ୍ୟାବର୍ତ୍ତନ କରନ୍ତେ ସନ୍ନ୍ୟାସୀ ଆଦିତ୍ୟଶର୍ମାଙ୍କ ସହ ସ୍ୱଗୃହ ଅଭିମୁଖରେ ଅଗ୍ରସର ହେଲେ ।

ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ ଆସି ଉକ୍ତ ଯକ୍ଷିଣୀ ସନ୍ନ୍ୟାସୀଙ୍କୁ ପ୍ରସନ୍ନ ଚିତ୍ତରେ ବିଭିନ୍ନ ଭୋଗ ବିଳାସପ୍ରଦ ସାମଗ୍ରୀ ପ୍ରଦାନ କରୁଥାଏ । ଏକଦା ଆଦିତ୍ୟଶର୍ମା

ସନ୍ନ୍ୟାସୀଙ୍କଦ୍ୱାରା ଉକ୍ତ ଯକ୍ଷିଣୀଙ୍କୁ ସୁଲୋଚନାଙ୍କ ସିଦ୍ଧିପାଇଁ ଉପଯୁକ୍ତ ମନ୍ତ୍ରବିଧି କିଏ ଜାଣନ୍ତି ବୋଲି ଜିଜ୍ଞାସା କଲେ । ଉତ୍ତରରେ ସେ ତାଙ୍କ ସମ୍ମୁଖରେ ହିଁ ସନ୍ନ୍ୟାସୀଙ୍କୁ କହିଲା, 'ଦକ୍ଷିଣ ଦିଗରେ ତୁମ୍ବବନ ନାମକ ଏକ ସ୍ଥାନ ଅଛି । ସେଠାରେ ବେଣାନଦୀ ପ୍ରବାହିତ । ତାର ତଟରେ ଆଶ୍ରମ ସ୍ଥାପନ କରି ବିଷ୍ଣୁଗୁପ୍ତ ନାମକ ଜଣେ ବୌଦ୍ଧସନ୍ନ୍ୟାସୀ ବାସ କରନ୍ତି । ସେ ଏହି ମନ୍ତ୍ରସିଦ୍ଧି ସମ୍ପର୍କରେ ସମ୍ପୂର୍ଣ୍ଣ ଭାବେ ଅବଗତ ।

ଯକ୍ଷିଣୀମୁଖରୁ ଏ ରହସ୍ୟ ଶ୍ରବଣ କରି ସମୁତ୍ସୁକ ଆଦିତ୍ୟଶର୍ମା ସନ୍ନ୍ୟାସୀ ସହ ଯାଇ ବେଣାନଦୀ ତଟରେ ଉପସ୍ଥିତ ହେଲେ ଏବଂ ଅନୁସନ୍ଧାନଦ୍ୱାରା ଉକ୍ତ ବୌଦ୍ଧ ସନ୍ନ୍ୟାସୀଙ୍କ ସନ୍ଧାନ ଲାଭ କରି ତାଙ୍କ ନିକଟରେ ବାସ କଲେ । ତାଙ୍କର ଚରଣ ସେବାରେ ଆଦିତ୍ୟଶର୍ମାଙ୍କର ତିନିବର୍ଷ କଟିଗଲା । ଏହା ପୂର୍ବରୁ ସନ୍ନ୍ୟାସୀଦ୍ୱାରା ସିଦ୍ଧ ଯକ୍ଷିଣୀ ଉକ୍ତ ବୌଦ୍ଧସନ୍ନ୍ୟାସୀଙ୍କର ସେବା କରୁଥିଲା । ଆଦିତ୍ୟଶର୍ମାଙ୍କ ସେବାଶୁଶ୍ରୂଷାରେ ସନ୍ତୁଷ୍ଟ ହୋଇ ବୌଦ୍ଧ ସନ୍ନ୍ୟାସୀ ସୁଲୋଚନା ସିଦ୍ଧିର ମନ୍ତ୍ର ଓ ବିଧାନ ଶିକ୍ଷା ଦେଲେ । ଆଦିତ୍ୟଶର୍ମା ମଧ ତାଙ୍କର ଉପଦେଶ କ୍ରମେ ପ୍ରତ୍ୟହ ଏକାନ୍ତ ସ୍ଥାନକୁ ଯାଇ ନିୟମିତ ଜପ ପୂର୍ବକ ଯଜ୍ଞାନୁଷ୍ଠାନ କରିବାକୁ ଲାଗିଲେ । କିଛିଦିନ ଏହି ପ୍ରକାର ଉପାସନା କରନ୍ତେ ଜଗଜ୍ଜନ-ନୟନ-ମୋହିନୀ ସୁଲୋଚନା ବିମାନ ଆରୋହଣ କରି ସେଠାରେ ଆବିର୍ଭୂତା ହେଲେ । ସେ ସାଧକକୁ ଲକ୍ଷ୍ୟ କରି କହିଲେ, 'ଆସ, ମୁଁ ବର୍ତ୍ତମାନ ତୁମର ସିଦ୍ଧ । କିନ୍ତୁ ଛ ମାସ ପର୍ଯ୍ୟନ୍ତ ତୁମେ ମୋର କୁମାରୀତ୍ୱ ନଷ୍ଟ କରିବ ନାହିଁ । ଯଦି ମୋର ଏହି ଅଭିଳାଷ ପୂର୍ଣ୍ଣ କରିବାରେ ଅସମର୍ଥ ହୁଅ, ତା' ହେଲେ ମୋ ଗର୍ଭରୁ ମହାବୀର, ସର୍ବସୁଲକ୍ଷଣଯୁକ୍ତ, ସର୍ବଜ୍ଞ ଓ ଅଜେୟ ପୁତ୍ର ଲାଭ କରିବା ତୁମ ପକ୍ଷରେ ସମ୍ଭବ ହେବ ନାହିଁ ।'

ଆଦିତ୍ୟଶର୍ମା ଏଥିରେ ସମ୍ମତ ହୁଅନ୍ତେ ସୁଲୋଚନା ତାଙ୍କୁ ନିଜର ବିମାନଦ୍ୱାରା ଅଳକା ନଗରୀକୁ ନେଇ ଚାଲିଗଲେ । ଏଠାରେ ସଂଯମୀ ଆଦିତ୍ୟଶର୍ମା ସର୍ବଦା ସୁଲୋଚନାଙ୍କ ନିକଟରେ ବସି ରହି କଠୋର ଅସିଧାର ବ୍ରତ ନିୟମାନୁଯାୟୀ ପାଳନ କରିବାକୁ ଲାଗିଲେ । ଏହାଙ୍କର ବ୍ରହ୍ମଚର୍ଯ୍ୟ ବ୍ରତରେ ସନ୍ତୁଷ୍ଟ ହୋଇ ଧନପତି କୁବେର ସୁଲୋଚନାଙ୍କୁ ବିଧିପୂର୍ବକ ଆଦିତ୍ୟଶର୍ମାଙ୍କ ହସ୍ତରେ ସମର୍ପଣ କଲେ ।

ଏହି ସୁଲୋଚନା ଏବଂ ଆଦିତ୍ୟଶର୍ମାଙ୍କଠାରୁ ମୋର ଜନ୍ମ । ମୋର ଶରୀରରେ ସମସ୍ତ ସଦ୍‌ଗୁଣାବଳୀର ସଙ୍କେତ ସନ୍ଦର୍ଶନ କରି ପିତା ମୋର ନାମକରଣ କରିଥିଲେ ଗୁଣଶର୍ମା । ମୁଁ ଅଳକାପୁରୀରେ କ୍ରମଶଃ ବୃଦ୍ଧିପ୍ରାପ୍ତ ହେଲି । ଯକ୍ଷାଧିପତି ମୋର ଗୁଣାବଳୀରେ ସନ୍ତୁଷ୍ଟ ହୋଇ ମୋତେ ବେଦ ବେଦାଙ୍ଗ ସହିତ ସମସ୍ତ ବିଦ୍ୟା ଓ କଳାଶାସ୍ତ୍ର ଶିକ୍ଷା ଦେଲେ ।

ଏକଦା କୌଣସି କାର୍ଯ୍ୟ ଉପଲକ୍ଷ୍ୟରେ ଦେବରାଜ ଇନ୍ଦ୍ର ଆସି କୁବେରଙ୍କ ବାସ ଭବନରେ ପଦାର୍ପଣ କରିଥାଆନ୍ତି । ଏହାଙ୍କୁ ଦେଖି ବସିଥିବା ସମସ୍ତ ବ୍ୟକ୍ତି ସମ୍ମାନ ପ୍ରଦର୍ଶନ ନିମିତ୍ତ ଉଠି ଦଣ୍ଡାୟମାନ ହେଲେ । କିନ୍ତୁ ସେଠାରେ ଉପସ୍ଥିତଥିବା ମୋର ପିତା ଅନ୍ୟମନସ୍କତା ହେତୁ ଯଥାସମୟରେ ସମ୍ମାନ ପ୍ରଦର୍ଶନ କରିପାରିଲେ ନାହିଁ । ଏଥିରେ ଅପମାନିତ ବୋଧ କରି ଇନ୍ଦ୍ର କ୍ରୋଧପ୍ରକାଶ ପୂର୍ବକ କହିଲେ, 'ମୂର୍ଖ, ତୁ ଏଠାରେ ରହିବାପାଇଁ ଅଯୋଗ୍ୟ, ତେଣୁ ପୁଣି ମର୍ତ୍ତ୍ୟଲୋକକୁ ଫେରିଯାଅ ।' କିନ୍ତୁ ମୋର ମାତା ସୁଲୋଚନା ଇନ୍ଦ୍ରଙ୍କୁ ବହୁ କରୁଣ ପ୍ରାର୍ଥନା କରନ୍ତେ ସେ ସନ୍ତୁଷ୍ଟ ହୋଇ କହିଲେ, 'ତା' ହେଲେ ତୋର ପୁତ୍ର ମର୍ତ୍ତ୍ୟଲୋକକୁ ଚାଲିଯାଉ, ତୋର ଯିବା ଆବଶ୍ୟକ ନାହିଁ । କାରଣ ପୁତ୍ର ହିଁ ବ୍ୟକ୍ତିର ଆତ୍ମା ।'

ଇନ୍ଦ୍ରଙ୍କ ଶାପ ବ୍ୟର୍ଥ ନ ହେବା ଜାଣି ପିତା ମୋତେ ଆଣି ଉଜ୍ଜୟିନୀରେ ଥିବା ମାତୁଳାଳୟରେ ଛାଡ଼ିଦେଲେ । ଯାହା ଭବିତବ୍ୟ ତାକୁ ଲଂଘନ କରିବା କାହାରି ପକ୍ଷରେ ସମ୍ଭବପର ନୁହେ । ଉଜ୍ଜୟିନୀରେ ରହୁଥିବା ସମୟରେ ରାଜାଙ୍କ ସହ ଦୈବଯୋଗରୁ ମୋର ମିତ୍ରତା ହେଲା । ଏହା କହି ସେ ରାଣୀ ଅଶୋକବତୀ ଓ ରାଜାଙ୍କଦ୍ୱାରା ରାଜ୍ୟରୁ ବିତାଡ଼ିତ ହେବା ପର୍ଯ୍ୟନ୍ତ ନିଜର ସମଗ୍ର ବୃତ୍ତାନ୍ତ ତାଙ୍କୁ କହି ଶୁଣାଇଲେ । ଶେଷରେ କହିଲେ, 'ବ୍ରାହ୍ମଣ ଦେବ ! ଏହିପରି ମୁଁ ଉଜ୍ଜୟିନୀରୁ ବିତାଡ଼ିତ ହୋଇ ପଳାୟନ କରୁଥିବା ସମୟରେ ଏଠାରେ ଆପଣଙ୍କସହ ସାକ୍ଷାତ ହେଲା ।'

ଗୁଣଶର୍ମାଙ୍କଠାରୁ ତାଙ୍କର ଜୀବନ କଥା ଶ୍ରବଣ କରି ବ୍ରାହ୍ମଣ କହିଲେ, 'ପ୍ରଭୋ, ଯଦି ଏହା ହୋଇଥାଏ, ତା' ହେଲେ ଆପଣଙ୍କ ଦର୍ଶନ ଲାଭକରି ମୁଁ ଧନ୍ୟ ହେଲି । ଆପଣ ମୋର ଗୃହରେ ପଦାର୍ପଣ କରନ୍ତୁ । ମୋର ନାମ ଅଗ୍ନିଦତ୍ତ । ଏହି ଗ୍ରାମର ନାମ ମଧ ମୋର ନାମାନୁଯାୟୀ ହୋଇଅଛି । ବର୍ତ୍ତମାନ ଆପଣ ନିଶ୍ଚିନ୍ତ ମନରେ ଏଠାରେ ବାସ କରନ୍ତୁ ।' ଏହାକହି ତାଙ୍କୁ ଅଗ୍ନିଦତ୍ତ ଧନଧାନ୍ୟ, ଗୋ ମହିଷ ପ୍ରଭୃତିଦ୍ୱାରା ପରିପୂର୍ଣ୍ଣ ନିଜର ଗୃହକୁ ନେଇଗଲେ ଏବଂ ସ୍ନାନ, ଅଙ୍ଗରାଗ, ଆଭୂଷଣ, ଦିବ୍ୟ ଭୋଜନ ପ୍ରଭୃତି ଦ୍ୱାରା ତାଙ୍କର ସତ୍କାର କଲେ । ଏହାପରେ ନିଜର ଅପ୍ସରାବିନିନ୍ଦିତା ସୁନ୍ଦରୀକନ୍ୟାର ଲକ୍ଷଣ ନିର୍ଣ୍ଣୟ କରିବା ଛଳରେ ସେ ତାକୁ ଆଣି ଗୁଣଶର୍ମାଙ୍କୁ ଦେଖାଇଲେ । ଏହି ଅପୂର୍ବ ସୁନ୍ଦରୀ କନ୍ୟାଟିର ରୂପଲାବଣ୍ୟ ଦର୍ଶନ କରି ଗୁଣଶର୍ମା କହିଲେ, 'ଏହାର ନାସିକା ଉପରେ ଏକ ତିଳଚିହ୍ନ ଥିବାରୁ ଜଣାଯାଉଛି ଯେ ଏହାର ବହୁ ସପତ୍ନୀ ରହିବେ । ଏହାର ବକ୍ଷ ଦେଶରେ ମଧ ଅନ୍ୟ ଏକ ତିଳଚିହ୍ନ ଥିବ ।'

ଗୁଣଶର୍ମାଙ୍କଠାରୁ ଏହା ଶ୍ରବଣ କରି ବ୍ରାହ୍ମଣ ତାଙ୍କ ପୁତ୍ରକୁ ନିର୍ଦ୍ଦେଶ ଦେବାରୁ ସେ ନିଜ ଭଗିନୀର ବକ୍ଷଦେଶରେ ଏକ ତିଳଚିହ୍ନ ଥିବା ପ୍ରକାଶ କଲା । ଏଥିରେ ବିସ୍ମିତ ହୋଇ ଅଗ୍ନିଦତ୍ତ ଗୁଣଶର୍ମାଙ୍କୁ କହିଲେ, 'ଆପଣ ପ୍ରକୃତରେ ସର୍ବଜ୍ଞ । କିନ୍ତୁ କନ୍ୟାଟିର ଏହି ଉଭୟ ତିଳଚିହ୍ନ ଅଶୁଭଫଳଦାୟକ ନୁହନ୍ତି । ପତି ଧନବାନ୍ ହେଲେ ହେଁ ସପତ୍ନୀଲାଭ ସମ୍ଭବପର । ଦରିଦ୍ରବ୍ୟକ୍ତି ଗୋଟିଏ ସ୍ତ୍ରୀର ଭରଣପୋଷଣ କରିବା କଷ୍ଟସାଧ୍ୟ, ବହୁସ୍ତ୍ରୀ ଗ୍ରହଣ କରିବାର ସାମର୍ଥ୍ୟ ତା'ର କାହିଁ ?' ଏଥିରେ ଗୁଣଶର୍ମା ଏକମତ ହୋଇ ପ୍ରକାଶ କଲେ, ଆପଣ ଯାହା କହିଛନ୍ତି ତାହା ଯଥାର୍ଥ । ଏପ୍ରକାର ଶୁଭ ଲକ୍ଷଣସମନ୍ୱିତା କୁମାରୀର ଅଶୁଭ କାହିଁକି ହେବ ।'

ଏହି ପ୍ରସଙ୍ଗରେ ଅଗ୍ନିଦତ୍ତଙ୍କ ଅନୁରୋଧ କ୍ରମେ ଗୁଣଶର୍ମା ନାରୀ ଓ ପୁରୁଷମାନଙ୍କର ବିଭିନ୍ନ ଅଙ୍ଗରେ ଦେଖାଯାଉଥିବା ତିଳ ପ୍ରଭୃତି ଚିହ୍ନଗୁଡ଼ିକର ଶୁଭାଶୁଭ ଫଳ ସମ୍ପର୍କରେ ବହୁ ରହସ୍ୟାତ୍ମକ ତଥ୍ୟ ପ୍ରକାଶ କଲେ । ଏଣେ ଏହି ସୁନ୍ଦରୀ କନ୍ୟାଟି ମଧ୍ୟ ଗୁଣଶର୍ମାଙ୍କ ରୂପ ଓ ଗୁଣରେ ମୁଗ୍ଧ ହୋଇ ଚକୋରୀ ଚନ୍ଦ୍ରମାକୁ ଦର୍ଶନ କରିବା ତୁଲ୍ୟ ତାଙ୍କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥାଏ ।

ଏକଦା ଅଗ୍ନିଦତ୍ତ ଏକାନ୍ତରେ ଗୁଣଶର୍ମାଙ୍କୁ କହିଲେ, 'ମହାଭାଗ, ମୁଁ ମୋର କନ୍ୟା ସୁନ୍ଦରୀକୁ ଆପଣଙ୍କ ହସ୍ତରେ ସମର୍ପଣ କରୁଅଛି । ତେଣୁ ଆପଣ ଅନ୍ୟତ୍ର ନଯାଇ ଏଠାରେ ହିଁ ସ୍ୱାଧୀନ ଭାବରେ ମୋର ଗୃହରେ ବାସ କରନ୍ତୁ ।' ଉତ୍ତରରେ ଗୁଣଶର୍ମା କହିଲେ, 'ପ୍ରକୃତରେ ଏହାଦ୍ୱାରା ମୁଁ ସମସ୍ତ ସୁଖସୌଭାଗ୍ୟ ଲାଭ କରିପାରିବି । କିନ୍ତୁ ରାଜାଙ୍କଦ୍ୱାରା ପାଇଥିବା ବୃଥା ଅପମାନ ରୂପକ ଅଗ୍ନିଦ୍ୱାରା ସନ୍ତାପିତ ହେଉଥିବା ଯୋଗୁଁ ମୋତେ ଏସବୁ ସୁଖପ୍ରଦ ମନେ ହେଉନାହିଁ । ସୁନ୍ଦରୀ ପତ୍ନୀ, ଚନ୍ଦ୍ରଜ୍ୟୋତ୍ସ୍ନା ଏବଂ ବୀଣାର ପଞ୍ଚମ ସ୍ୱର ସୁଖୀଲୋକମାନଙ୍କୁ ଆନନ୍ଦ ଓ ଦୁଃଖୀଲୋକମାନଙ୍କୁ ଦୁଃଖ ପ୍ରଦାନ କରିଥାଆନ୍ତି । ସ୍ୱୟଂ ଆସକ୍ତା ତଥା ଅନୁରାଗିଣୀ ସ୍ତ୍ରୀ କଦାପି ଅଶୋକବତୀଙ୍କ ତୁଲ୍ୟ ବ୍ୟଭିଚାରିଣୀ ହୋଇପାରିବ ନାହିଁ । କିନ୍ତୁ ଉଜ୍ଜୟିନୀ ନଗରୀ ଏଠାରୁ ଅତି ଅଳ୍ପ ଦୂର, ରାଜା ଯଦି ମୋର ସନ୍ଧାନ ଲାଭ କରନ୍ତି ତାହାହେଲେ ଏଠାକୁ ଆସି ବିଭିନ୍ନ ଉପଦ୍ରବ ସୃଷ୍ଟି କରିବେ । ତେଣୁ ତୀର୍ଥ ଭ୍ରମଣ କରି ନିଜର ଶରୀରରୁ ସମସ୍ତ ପାପ ପ୍ରକ୍ଷାଳନ ପୂର୍ବକ ଶରୀର ତ୍ୟାଗ କଲେ ହିଁ ମୁଁ ଆନନ୍ଦ ଲାଭ କରିପାରିବି ।'

ଗୁଣଶର୍ମାଙ୍କଠାରୁ ଏହା ଶ୍ରବଣ କରି ଅଗ୍ନିଦତ୍ତ ହାସ୍ୟ ପ୍ରକାଶ ପୂର୍ବକ କହିଲେ, 'ଆପଣଙ୍କ ହୃଦୟ ବିଶୁଦ୍ଧ । ତେଣୁ ଏକ ମୂର୍ଖ ବ୍ୟକ୍ତିଦ୍ୱାରା ଅପମାନିତ ହେଲେ ବୋଲି

ବିଶେଷ ଚିନ୍ତା କରିବା ଅନୁଚିତ । ଆକାଶକୁ ପଙ୍କ ନିକ୍ଷେପ କଲେ ତାହା ନିକ୍ଷେପକର୍ତ୍ତାର ମସ୍ତକରେ ହିଁ ଆସି ପଡ଼ିଥାଏ ।

**ପଙ୍କୋ ହି ନଭସି କ୍ଷିପ୍ତଃ କ୍ଷେପ୍ତୁଃ ପତତି ମୂର୍ଧନି ।**

ଏଇ ରାଜା ନିଜ ମୂର୍ଖତାର ଫଳ ଶୀଘ୍ର ଲାଭ କରିବ । ମୋହାନ୍ଧ ତଥା ଅବିବେକୀ ବ୍ୟକ୍ତି ନିକଟରେ ଲକ୍ଷ୍ମୀ ବହୁ ଦିନ ସ୍ଥାୟୀ ହୋଇ ରହିପାରନ୍ତି ନାହିଁ । ଆପଣ ଅଶୋକବତୀଙ୍କୁ ଦେଖି ଯଦି ସ୍ତ୍ରୀଜାତି ପ୍ରତି ବିରକ୍ତ ହୋଇପଡ଼ିଛନ୍ତି, ତାହାହେଲେ ସତୀସାଧ୍ୱୀ ସ୍ତ୍ରୀର ଦର୍ଶନରେ ତାପ୍ରତି ଶ୍ରଦ୍ଧାଯୁକ୍ତ ହେବେ ନାହିଁ କାହିଁକି ? ଆପଣ ତ ସତୀ ଓ ଅସତୀ ନାରୀର ଲକ୍ଷଣ ଜାଣନ୍ତି । ତେଣୁ ଉତ୍ତମ ଲକ୍ଷଣାଯୁକ୍ତା କୌଣସି ନାରୀକୁ ଗ୍ରହଣ କରିବାରେ ଆପଣଙ୍କର କୌଣସି ଅସୁବିଧା ନାହିଁ । ଉଜ୍ଜୟିନୀ ନିକଟବର୍ତ୍ତୀ ବୋଲି ଯଦି ଚିନ୍ତା କରୁଥାଆନ୍ତି ତାହାହେଲେ ମୁଁ ଏ ପ୍ରକାର କୌଶଳ କରିବି ଯେ ଆପଣ ଏଠାରେ ରହୁଥିବା କଥା କେହି ଜାଣିପାରିବେ ନାହିଁ ।

'ଆପଣ ତୀର୍ଥଯାତ୍ରାରେ ଯିବାପାଇଁ ଅଭିଳାଷ ପୋଷଣ କରୁଅଛନ୍ତି । କିନ୍ତୁ ପଣ୍ଡିତମାନେ କହନ୍ତି ବୈଦିକ କର୍ମ ସମ୍ପାଦନ କରିବା ନିମିତ୍ତ ଯାହା ନିକଟରେ ପ୍ରଚୁର ଧନ ସମ୍ପତ୍ତି ନାହିଁ, ସେମାନେ ହିଁ ତୀର୍ଥ ପର୍ଯ୍ୟଟନ ପାଇଁ ଇଚ୍ଛାକରି ଥାଆନ୍ତି । ଅନ୍ୟଥା ଦେବତା, ପିତୃପୁରୁଷ ଓ ଅଗ୍ନିଙ୍କର ସେବା, ବ୍ରତ ଓ ଜପ ପ୍ରଭୃତିଦ୍ୱାରା ଗୃହରେ ବସି ଯେଉଁ ପୁଣ୍ୟ ଅର୍ଜିତ ହୁଏ, ତାହା ପଥ ପରିକ୍ରମାରେ ହୋଇପାରେ ନାହିଁ । ବାହୁକୁ ଉପଧାନ କରି, ଭୂମିକୁ ଶଯ୍ୟା କରି ଏବଂ ଭିକ୍ଷାବୃତ୍ତିକୁ ଉଦର ପୋଷଣର ଏକମାତ୍ର ପନ୍ଥା ଭାବରେ ଗ୍ରହଣ କରି ଏକାକୀ ପଥଚାରୀ ବ୍ୟକ୍ତି ମୁନିମାନଙ୍କ ତୁଲ୍ୟ ଜୀବନଯାପନ କଲେ ହେଁ ଦୁଃଖରୁ ଅବ୍ୟାହତି ପାଇ ନଥାଏ । ଶରୀରତ୍ୟାଗଦ୍ୱାରା ଯେଉଁ ସୁଖ ଲାଭର ଆଶା ଆପଣ କରୁଛନ୍ତି ତାହା ଭ୍ରାନ୍ତ । ଆତ୍ମଘାତୀ ବ୍ୟକ୍ତିକୁ ପରଲୋକରେ ମଧ୍ୟ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥାଏ ।

**ଇତଃ କଷ୍ଟତରଂ ଦୁଃଖମମୁତ୍ର ହ୍ୟାତ୍ମଘାତିନାମ୍ ।**

ଆପଣ ଯୁବକ ଓ ବିଦ୍ୱାନ୍ । ତେଣୁ ଆପଣଙ୍କ ପକ୍ଷରେ ଏ ପ୍ରକାର ମୋହ ଅନୁଚିତ । ମୁଁ ଯାହା କହିଲି ସେ ସମ୍ପର୍କରେ ଟିକିଏ ବିଚାର କରନ୍ତୁ । ମୁଁ ଆପଣଙ୍କ ନିମିତ୍ତ ଏକ ଭୂଗର୍ଭ-ଗୃହ ନିର୍ମାଣ କରିଦେଉଛି । ସୁନ୍ଦରୀକୁ ବିବାହ କରି ଆପଣ ତା ମଧ୍ୟରେ ସ୍ୱାଧୀନ ଭାବରେ ବାସ କରନ୍ତୁ ।'

ଅଗ୍ନିଦତ୍ତଙ୍କଠାରୁ ଏ ପ୍ରକାର ଆଶ୍ୱାସନା ପାଇ ଗୁଣଶର୍ମା ତାଙ୍କ ପ୍ରସ୍ତାବରେ ସମ୍ମତ ହେଲେ । କିନ୍ତୁ ତାଙ୍କର ମନୋରଥ ସିଦ୍ଧ ହେବା ପର୍ଯ୍ୟନ୍ତ ସେ ବ୍ରହ୍ମଚର୍ଯ୍ୟ ଆଚରଣ ପୂର୍ବକ କୌଣସି ଦେବତାର ଆରାଧନା କରିବେ ଏବଂ ଏହି ଦେବତାଙ୍କ ସହାୟତାରେ ସେହି କୃତଘ୍ନ ରାଜାଙ୍କର ବଧ ସାଧନ କରି ସୁନ୍ଦରୀକୁ ବିବାହ କରିବେ ବୋଲି ପ୍ରକାଶ କଲେ ।

ପ୍ରସନ୍ନଚିତ୍ତ ଅଗ୍ନିଦତ୍ତ ଏଥିରେ ଏକମତ ହୁଅନ୍ତେ ଗୁଣଶର୍ମା ଆନନ୍ଦମନରେ ତାଙ୍କ ଗୃହରେ ବିଶ୍ରାମ କଲେ । ପରଦିନ ହିଁ ଅଗ୍ନିଦତ୍ତ ବ୍ରାହ୍ମଣଙ୍କର ସୁବିଧା ପାଇଁ ଦୃଢ଼ ପ୍ରହରିଯୁକ୍ତ ଏବଂ ସମସ୍ତ ଆବଶ୍ୟକୀୟ ପଦାର୍ଥ ପରିପୂର୍ଣ୍ଣ 'ପାତାଳ-ବସତି' ନାମକ ଭୂଗୃହ ନିର୍ମାଣ କରାଇଦେଲେ । ଏହି ଗୃହରେ ଅବସ୍ଥାନ କରୁଥିବା ସମୟରେ ଦିନେ ଅଗ୍ନିଦତ୍ତ ଏକାନ୍ତରେ ଗୁଣଶର୍ମାଙ୍କୁ ଜିଜ୍ଞାସା କଲେ ଯେ ସେ ନିଜର ମନୋରଥ ସିଦ୍ଧି ପାଇଁ କେଉଁ ଦେବତାଙ୍କୁ କି ପ୍ରକାର ଭାବରେ ଆରାଧନା କରିବେ ? ଧୈର୍ଯ୍ୟଶାଳୀ ଗୁଣଶର୍ମା ତାଙ୍କରି ସାହାଯ୍ୟ ଭିକ୍ଷା କରନ୍ତେ ଅଗ୍ନିଦତ୍ତ କହିଲେ, 'ମୁଁ ଗୁରୁଙ୍କଠାରୁ ଦୀକ୍ଷାଗ୍ରହଣ ପୂର୍ବକ କାର୍ତ୍ତିକେୟଙ୍କ ମନ୍ତ୍ର ଶିକ୍ଷା କରିଛି । ଏହି ମନ୍ତ୍ରଦ୍ୱାରା ଆପଣ ତାରକାସୁର ନିହନ୍ତା ଦେବସେନାପତି କୁମାରଙ୍କର ଆରାଧନା କରନ୍ତୁ । ଏହି କାର୍ତ୍ତିକେୟଙ୍କ ଜନ୍ମପାଇଁ ଦେବତାମାନଙ୍କଦ୍ୱାରା ପ୍ରେରିତ କାମଦେବ ମହାଦେବଙ୍କ ତୃତୀୟ ନେତ୍ରଜାତ ଅଗ୍ନିଦ୍ୱାରା ଭସ୍ମୀଭୂତ ହୋଇଯାଇଥିଲେ । ଦେବଦେବ ମହାଦେବଙ୍କ ଔରସରୁ ଅଗ୍ନି, ଅଗ୍ନିକୁଣ୍ଡରୁ ଶରବଣ ଏବଂ ଏଠାରୁ କୃତ୍ତିକାମାନଙ୍କଦ୍ୱାରା ବିଚିତ୍ର ଭାବରେ ଯେଉଁ କାର୍ତ୍ତିକେୟଙ୍କ ଜନ୍ମ ହୋଇଥିଲା, ସେ ଭୂମିଷ୍ଠ ହେବାମାତ୍ରେ ନିଜର ପ୍ରଚଣ୍ଡ ତେଜୋରାଶିଦ୍ୱାରା ସମଗ୍ର ସଂସାରକୁ ଆନନ୍ଦିତ କରି ଦୁର୍ଜୟ ତାରକାସୁରର ବଧସାଧନ କରିଥିଲେ । ମୁଁ ସେହି କାର୍ତ୍ତିକେୟଙ୍କ ମନ୍ତ୍ର ଆପଣଙ୍କୁ ପ୍ରଦାନ କରୁଅଛି, ଗ୍ରହଣ କରନ୍ତୁ ।'

ଏହା କହି ଅଗ୍ନିଦତ୍ତ ଗୁଣଶର୍ମାଙ୍କୁ କାର୍ତ୍ତିକେୟ ମନ୍ତ୍ର ପ୍ରଦାନ କଲେ । ଗୁଣଶର୍ମା ମଧ୍ୟ ସୁନ୍ଦରୀଦ୍ୱାରା ଭୂଗୃହ ମଧ୍ୟରେ ଉପଯୁକ୍ତ ଭାବରେ ଶୁଶ୍ରୂଷିତ ହୋଇ ଏହି ମନ୍ତ୍ରଦ୍ୱାରା ଭଗବାନ କାର୍ତ୍ତିକେୟଙ୍କ ଆରାଧନା କରିବାକୁ ଲାଗିଲେ । କିଛିଦିନ ଉପାସନା କରିବା ପରେ ଦିନେ କାର୍ତ୍ତିକେୟ ସେଠାରେ ସାକ୍ଷାତ୍ ଆବିର୍ଭୂତ ହୋଇ କହିଲେ, 'ବତ୍ସ, ତୋର ଆରାଧନାରେ ମୁଁ ପ୍ରୀତ । ବର୍ତ୍ତମାନ ତୋର ଅଭୀଷ୍ଟ ବର ପ୍ରାର୍ଥନା କର ।' ଗୁଣଶର୍ମା ନିଜର ଅଭିଳଷିତ ବର ପ୍ରାର୍ଥନା କରନ୍ତେ ସେ କହିଲେ,

'ବତ୍ସ, ତୁ ଅନନ୍ତ ଧନରତ୍ନର ଅଧିକାରୀ ହୋଇ ଏବଂ ମହାସେନଙ୍କୁ ଜୟକରି ନିଃଶଙ୍କ ଭାବରେ ରାଜ୍ୟପାଳନା କରିବୁ ।' ସ୍ୱ ଅଭିଳାଷଠାରୁ ଅଧିକ ବର ପ୍ରଦାନ କରି କାର୍ତ୍ତିକେୟ ଅନ୍ତର୍ହିତ ହୁଅନ୍ତେ ଗୁଣଶର୍ମା ତତ୍‌କ୍ଷଣାତ୍ ବହୁ ଧନରତ୍ନର ଅଧିକାରୀ ହୋଇଉଠିଲେ ।

ମନୋରଥ ସିଦ୍ଧ ହେବାରୁ ଗୁଣଶର୍ମା ନିଜର ମହତ୍ତ୍ୱ ଓ ପ୍ରଭାବ ବୃଦ୍ଧିର ଅନୁକୂଳ ଜାଣି, ଦୀର୍ଘକାଳ ସେବା ଶୁଶ୍ରୂଷା କରିଆସୁଥିବା ଅଗ୍ନିଦତ୍ତଙ୍କର ଅପୂର୍ବ ସୁନ୍ଦରୀ ଓ ଗୁଣବତୀ କନ୍ୟା ସୁନ୍ଦରୀଙ୍କୁ ସାକ୍ଷାତ୍ ଭାବୀ କାର୍ଯ୍ୟସିଦ୍ଧି ତୁଲ୍ୟ ବିଧିପୂର୍ବକ ଗ୍ରହଣ କଲେ । ଅକ୍ଷୟ ଧନଭଣ୍ଡାର ପ୍ରାପ୍ତି ହେତୁ ସେ ପ୍ରଚୁର ହସ୍ତୀ, ଅଶ୍ୱାରୋହୀ ଓ ପଦାତିକ ସେନା ସଂଗ୍ରହ କରି ଏବଂ ସ୍ୱକୀୟ ପ୍ରଭାବରେ ଅନ୍ୟାନ୍ୟ ରାଜନ୍ୟବୃନ୍ଦଙ୍କୁ ବଶୀଭୂତ କରି ସେମାନଙ୍କ ସେନାବାହିନୀସହ ଉଜ୍ଜୟିନୀ ନଗରୀ ଆକ୍ରମଣ କଲେ । ଫଳରେ ରାଜା ମହାସେନ ପରାସ୍ତ ହେଲେ । ଗୁଣଶର୍ମା ରାଣୀ ଅଶୋକବତୀଙ୍କ ଦୁରଭିସନ୍ଧି ପ୍ରଚାରିତ କରି ଉଜ୍ଜୟିନୀର ରାଜସିଂହାସନ ଆରୋହଣ କଲେ । ବିଶାଳ ରାଜ୍ୟ ଲାଭକରି ଏବଂ ଯୁଦ୍ଧରେ ଅନ୍ୟ ଶତ୍ରୁରାଜାମାନଙ୍କୁ ପରାଜୟ କରି ସେ ନିଜ ରାଜ୍ୟର ସୀମାକୁ ସମୁଦ୍ରତଟ ପର୍ଯ୍ୟନ୍ତ ବିସ୍ତୃତ କଲେ ଏବଂ ବହୁ ରାଜକନ୍ୟାଙ୍କ ପାଣିଗ୍ରହଣ ପୂର୍ବକ ସୁନ୍ଦରୀଙ୍କ ସହ ବିବିଧ ସାଂସାରିକ ଭୋଗ ବିଳାସରେ ଜୀବନ ଉପଭୋଗ କରିବାକୁ ଲାଗିଲେ ।

ଏହିପରି ଅଜ୍ଞାନତାବଶତଃ ମୂର୍ଖବୁଦ୍ଧି ମହାସେନ ବିପଦର ସମ୍ମୁଖୀନ ହୋଇଥିଲେ ଏବଂ ଅସୀମ ଧୈର୍ଯ୍ୟର ସହ ବିପଦର ନିରାକରଣ କରି ଗୁଣଶର୍ମା ଅସୀମ ଧନରତ୍ନ ଓ ରାଜ୍ୟ ଲାଭ କରିବା ପାଇଁ ସମର୍ଥ ହୋଇଥିଲେ ।

ମନ୍ତ୍ରୀ ବୀତଭୀତିଙ୍କଠାରୁ ଏପ୍ରକାର ଉଦାର କଥାରସ ଆସ୍ୱାଦନରେ ସମରରୂପୀ ମହାସାଗରକୁ ଲଂଘନ କରିବା ନିମିତ୍ତ ଅଭିଳାଷ ପୋଷଣ କରୁଥିବା ସୂର୍ଯ୍ୟପ୍ରଭ ଯଥେଷ୍ଟ ଉତ୍ସାହ ଓ ପ୍ରେରଣା ଲାଭ କରି ଧୀରେ ଧୀରେ ନିଦ୍ରାଗତ ହେଲେ ।



# ସପ୍ତମ ତରଙ୍ଗ

## ସୂର୍ଯ୍ୟପ୍ରଭଙ୍କ ଅନ୍ତିମ ଯୁଦ୍ଧ

ପରଦିନ ପ୍ରଭାତରୁ ମନ୍ତ୍ରୀମାନଙ୍କ ସହ ସୂର୍ଯ୍ୟପ୍ରଭ ନିତ୍ୟନୈମିତ୍ତିକ କର୍ମ ଶେଷ କରି ନିଜର ମାନବ ଓ ଦାନବ ସେନା ସହିତ ରଣଭୂମିରେ ଯାଇ ଉପସ୍ଥିତ ହେଲେ । ଏଣେ ବିଦ୍ୟାଧର ସେନାବାହିନୀ ସହ ଶ୍ରୁତଶର୍ମା ମଧ୍ୟ ଆସି ଯୁଦ୍ଧଭୂମିରେ ପହଞ୍ଚିଥାନ୍ତି । ଦେବତା, ଅସୁର ପ୍ରଭୃତି ମଧ୍ୟ ପ୍ରତିଦିନପରି ଯୁଦ୍ଧ ଦର୍ଶନ କରିବା ନିମିତ୍ତ ଆସି ଆକାଶ ମାର୍ଗରେ ଅବସ୍ଥାନ କରୁଥାଆନ୍ତି । ଉଭୟ ସେନାବାହିନୀ ଅର୍ଦ୍ଧଚନ୍ଦ୍ର ବ୍ୟୂହ ରଚନା କରି ପ୍ରସ୍ତୁତ ହୁଅନ୍ତେ ଯୁଦ୍ଧ ଆରମ୍ଭ ହେଲା । ସଶବ୍ଦରେ ଉଭୟ ଦିଗକୁ ଗତି କରୁଥିବା ଏବଂ ପରସ୍ପର ପରସ୍ପରକୁ ଛେଦ କରୁଥିବା ଶରାସନମୁକ୍ତ ଶରଜାଳ ହିଁ ପରସ୍ପର ଯୁଦ୍ଧରେ ପ୍ରବୃତ୍ତ ହେବାପରି ମନେହେଲା । କୋଷମୁକ୍ତ ଦୀର୍ଘ ଓ ରକ୍ତପିପାସୁ ତରବାରିସମୂହ ମହାକାଳର ଜିହ୍ୱାତୁଲ୍ୟ ରଣଭୂମିରେ ଲୀଳାୟିତ ହେବାକୁ ଲାଗିଲା । ଯୋଦ୍ଧାମାନଙ୍କ ମୁଖକମଳ ଉପରେ ନିପତିତ ଚକ୍ରସମୂହକୁ ଲକ୍ଷ୍ୟ କଲେ ମନେହେଉଥିଲା ଯେପରି ମହାସମରରୂପୀ ସରୋବର ମଧ୍ୟରେ ରାଜହଂସାବଳୀ କ୍ରୀଡ଼ା କରୁଅଛନ୍ତି । କର୍ତ୍ତିତ, ଉତ୍ପତିତ ଏବଂ ନିପତିତ ବୀରମୁକୁଟ ବିଭୂଷିତ ମସ୍ତକଗୁଡ଼ିକ ଦର୍ଶକ ମନରେ ମୃତ୍ୟୁଦେବତାଙ୍କ କ୍ରୀଡ଼ାଭୂମିର ଭ୍ରମ ଜାତ କରୁଥିଲା । ରକ୍ତରଞ୍ଜିତ ହୋଇ ଯୁଦ୍ଧଭୂମି ଯେତେବେଳେ ଧୂଳି ରହିତ ହେଲା, ସେତେବେଳେ ଯୋଦ୍ଧାମାନେ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ ।

ସୂର୍ଯ୍ୟପ୍ରଭଙ୍କ ସହ ଶ୍ରୁତଶର୍ମାଙ୍କ ଏବଂ ପ୍ରଭାସଙ୍କ ସହ ଦାମୋଦରଙ୍କ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା । ଏହିପରି ମହୋତ୍ପାତଙ୍କ ସହ ସିଦ୍ଧାର୍ଥ, ବ୍ରହ୍ମଗୁପ୍ତଙ୍କ ସହ ପ୍ରହସ୍ତ, ସଙ୍ଗମଙ୍କ ସହ ବୀତଭୀତି, ଚନ୍ଦ୍ରଗୁପ୍ତଙ୍କ ସହ ପ୍ରଜ୍ଞାଢ୍ୟ, ଅକ୍ରମଙ୍କ ସହ ପ୍ରିୟଙ୍କର ଏବଂ ଅତିବଳଙ୍କ ସହ ସର୍ବଦମନ ଦ୍ୱନ୍ଦ୍ୱ ଯୁଦ୍ଧରେ ମାତି ଉଠିଲେ । ଏହା ଦେଖି ଧୁରନ୍ଧରଙ୍କ ସହ କୁଞ୍ଜରକୁମାର

ଏବଂ ଅନ୍ୟାନ୍ୟ ମହାରଥୀଙ୍କ ସହ ଅପରପକ୍ଷର ମହାରଥୀମାନେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କରିଦେଲେ ।

ପ୍ରଥମେ ମହୋତ୍ପାତ ଶର ପ୍ରୟୋଗ ପୂର୍ବକ ସିଦ୍ଧାର୍ଥଙ୍କ ଧନୁ ଓ ଶର ଛିନ୍ନ କରି ତାଙ୍କର ଅଶ୍ୱ ଓ ସାରଥିକୁ ନିହତ କଲେ । ରଥହୀନ କ୍ରୁଦ୍ଧ ସିଦ୍ଧାର୍ଥ ମଧ୍ୟ ରଥ ଉପରୁ ଲମ୍ଫ ପ୍ରଦାନ କରି ଲୌହଦଣ୍ଡ ସାହାଯ୍ୟରେ ମହୋତ୍ପାତଙ୍କର ରଥକୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲେ । ଏହାପରେ ସିଦ୍ଧାର୍ଥ ମହୋତ୍ପାତଙ୍କ ସହ ବାହୁ ଯୁଦ୍ଧରେ ପ୍ରବୃତ୍ତ ହୋଇ ତାଙ୍କୁ ଧରାଶାୟୀ କରିଦେଲେ କିନ୍ତୁ ଏହି ଅବସ୍ଥାରେ ସେ ତାଙ୍କୁ ହତ୍ୟା କରିବାପାଇଁ ଉଦ୍ୟମ କଲାବେଳେ ତାଙ୍କ ପିତା ଭର୍ଗ ତାଙ୍କୁ ରକ୍ଷାକଲେ । ଫଳରେ ସେ ଲଜ୍ଜିତ ହୋଇ ଯୁଦ୍ଧଭୂମିରୁ ପଳାୟନ କଲେ ।

ପ୍ରହସ୍ତ ଓ ବ୍ରହ୍ମଗୁପ୍ତ ପରସ୍ପର ରଥହୀନ ହୋଇ ଖଡ୍‌ଗ ଯୁଦ୍ଧରେ ପ୍ରବୃତ୍ତ ହେଲେ । ପ୍ରହସ୍ତ କୌଶଳ କ୍ରମେ ବ୍ରହ୍ମଗୁପ୍ତଙ୍କ ଢାଲକୁ ଛେଦନ କରି ତାଙ୍କୁ ଅଧଃପତିତ କଲେ । କିନ୍ତୁ ପ୍ରହସ୍ତ ତାଙ୍କ ମସ୍ତକକୁ ଶରୀରରୁ ବିଚ୍ଛିନ୍ନ କରିବା ପାଇଁ ତରବାରି ଉତ୍ତୋଳନ କରିବା ସମୟରେ ତାଙ୍କର ପିତା ବ୍ରହ୍ମା ତାଙ୍କୁ ସେଥିରୁ ନିବୃତ୍ତ କଲେ । ଫଳରେ ଯୁଦ୍ଧ ଦର୍ଶନ ପରିବର୍ତ୍ତେ ନିଜ ନିଜର ପୁତ୍ରମାନଙ୍କର ସୁରକ୍ଷା ପାଇଁ ଏଠାରେ ଆସି ଉପସ୍ଥିତ ହୋଇଛନ୍ତି କହି ଦାନବମାନେ ଦେବତାମାନଙ୍କୁ ଉପହାସ କରିବାକୁ ଲାଗିଲେ ।

ଏହି ସମୟରେ ବୀତଭୀତି ଶର ପ୍ରୟୋଗଦ୍ୱାରା ଧନୁଶର ଛେଦନ ଏବଂ ସାରଥିକୁ ନିହତ କରି ପ୍ରଦ୍ୟୁମ୍ନାସ୍ତ୍ର ପ୍ରୟୋଗଦ୍ୱାରା ସଂକ୍ରମକୁ ହତ୍ୟା କଲେ । ରଥୀ ଓ ପଦାତିମାନଙ୍କଠାରୁ ଦୂରେଇ ନେଇ ପ୍ରଜ୍ଞାଢ଼୍ୟ ରଥହୀନ ଚନ୍ଦ୍ରଗୁପ୍ତଙ୍କ ଶିରଚ୍ଛେଦ କଲେ । ପୁତ୍ରହତ୍ୟାଜନିତ କ୍ରୋଧ ସମ୍ବରଣ କରିନପାରି ସ୍ୱୟଂ ଚନ୍ଦ୍ର ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୋଇ ପ୍ରଜ୍ଞାଢ଼୍ୟଙ୍କ ସହ୍ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଉଭୟଙ୍କ ମଧ୍ୟରେ ଅନୁପମ ସମର ସଂଘଟିତ ହେ୍ଲା ।

ରଥହୀନ ପ୍ରିୟଙ୍କର ସ୍ୱୀୟ ତରବାରିର ଏକମାତ୍ର ପ୍ରହାରରେ ରଥସ୍ଥ ଅକ୍ରମଙ୍କ ଶରୀରକୁ ଦ୍ୱିଧା ବିଭକ୍ତ କରିଦେଲେ । ଅଙ୍କୁଶ ନିକ୍ଷେପରେ ଅତିବଳଙ୍କର ଧନୁଟି ଛିନ୍ନ ହେବାରୁ ସର୍ବଦମନ ତାଙ୍କୁ ଅନାୟାସରେ ହତ୍ୟା କଲେ ।

ଏଣେ କୁଞ୍ଜରକୁମାର ଅସ୍ତ୍ରପ୍ରତ୍ୟସ୍ତ୍ର ଯୁଦ୍ଧରେ ରଥହୀନ ଧୁରନ୍ଧରଙ୍କ ପ୍ରତି ବାରମ୍ବାର ଶର ପ୍ରୟୋଗ କରିବାକୁ ଲାଗିଲେ । ବିକ୍ରମଶକ୍ତି ବାରମ୍ବାର ଧୁରନ୍ଧରଙ୍କପାଇଁ ନୂତନ ନୂତନ ରଥର ବ୍ୟବସ୍ଥା କରୁଥିବା ଏବଂ ପ୍ରତ୍ୟସ୍ତ୍ରଦ୍ୱାରା ନିଜର ସୁରକ୍ଷା କରୁଥିବା ଦେଖି

କ୍ରୁଦ୍ଧ କୁଞ୍ଜରକୁମାର ରଥ ଉପରୁ ଅବତରଣ କରି ବୃହତ୍ ପ୍ରସ୍ତର ଖଣ୍ଡ ଦ୍ୱାରା ବିକ୍ରମଶକ୍ତିଙ୍କର ରଥ ସମୂହକୁ ବିଚୂର୍ଣ୍ଣ କଲେ । ଏଥିରେ ବିବ୍ରତ ହୋଇ ବିକ୍ରମଶକ୍ତି ପଳାୟନ କରନ୍ତେ ସେ ପୁଣି ପ୍ରସ୍ତରଖଣ୍ଡ ସାହାଯ୍ୟରେ ଧୁରନ୍ଧରଙ୍କୁ ହତ୍ୟାକଲେ ।

ଏହି ସମୟରେ ସୂର୍ଯ୍ୟପ୍ରଭ ଶ୍ରୁତଶର୍ମାଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ଥିଲେ ହେଁ ବିରୋଚନଙ୍କ ମୃତ୍ୟୁରେ କ୍ରୋଧାନ୍ୱିତ ହୋଇ ଏକମାତ୍ର ବାଣରେ ଜମଙ୍କୁ ହତ୍ୟା କଲେ । ପୁତ୍ର ବଧରେ କ୍ରୁଦ୍ଧ ଅଶ୍ୱିନୀକୁମାର ଏ ସମୟରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବା ନିମନ୍ତେ ଉନ୍ମୁଖ ହେବାରୁ ସୁନୀଥ ତାଙ୍କର ପଥରୋଧ କଲେ । ଫଳରେ ଉଭୟଙ୍କ ମଧ୍ୟରେ ଭୀଷଣ ସଂଗ୍ରାମ ସଂଘଟିତ ହେଲା ।

ସ୍ଥିରବୁଦ୍ଧି ଅସ୍ତ୍ର ପ୍ରୟୋଗ କରି ପରାକ୍ରମଙ୍କୁ ହତ୍ୟା କରନ୍ତେ ତାଙ୍କ ମୃତ୍ୟୁରେ ଈର୍ଷାନ୍ୱିତ ଅଷ୍ଟବସୁ ସ୍ଥିରବୁଦ୍ଧିଙ୍କୁ ଆକ୍ରମଣ କଲେ । ଦାମୋଦରଙ୍କ ସହ ଯୁଦ୍ଧରତ ପ୍ରଭାସ, ଭାସଙ୍କୁ ରଥହୀନ କରିଥିବା ମର୍ଦ୍ଦନଙ୍କୁ ଏକମାତ୍ର ଶରାଘାତରେ ନିହତ କଲେ । ପ୍ରକମ୍ପନ ନାମକ ଦାନବ ଅସ୍ତ୍ରଯୁଦ୍ଧରେ ତେଜଃ ପ୍ରଭଙ୍କୁ ପରାସ୍ତ ଓ ନିହତ କରନ୍ତେ କ୍ରୁଦ୍ଧ ଅଗ୍ନିଦେବ ତାଙ୍କ ସହ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଯମପୁତ୍ର ଯମଦଂଷ୍ଟ୍ରଙ୍କୁ ମାରିଥିବା ଦାନବଶ୍ରେଷ୍ଠ ଧୂମକେତୁ ସହ ଯମରାଜାଙ୍କ ପ୍ରବଳ ସଂଗ୍ରାମର ସୂତ୍ରପାତ ହେଲା । ସିଂହଦଂଷ୍ଟ୍ର ପ୍ରସ୍ତର ପ୍ରହାର ଦ୍ୱାରା ସୁରୋଷଣଙ୍କୁ ହତ୍ୟା କରି ନିର୍ଋତ ଦେବତାଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । କାଳଚକ୍ର ଦାନବ ବିଦ୍ୟାଧର ବାୟୁବଳଙ୍କୁ ଚକ୍ର ସାହାଯ୍ୟରେ ଦ୍ୱିଖଣ୍ଡିତ କରନ୍ତେ ବାୟୁଦେବ କ୍ରୋଧାନ୍ୱିତ ହୋଇ ତାଙ୍କସହ ଯୁଦ୍ଧ ଆରମ୍ଭ କରିଦେଲେ । ସର୍ପ, ପର୍ବତ, ବୃକ୍ଷ ପ୍ରଭୃତି ରୂପ ଧାରଣ କରି ଯୁଦ୍ଧ କରୁଥିବା କୁବେରଦତ୍ତ ନାମକ ବିଦ୍ୟାଧରଙ୍କୁ ମହାମାୟ ଦାନବ ଗରୁଡ଼, ବଜ୍ର ଓ ଅଗ୍ନିରୂପ ଧାରଣ କରି ନିହତ କଲେ । ଏହି କାରଣରୁ କୁବେର କ୍ରୋଧବଶତଃ ମହାମାୟଙ୍କ ସହ ଯୁଦ୍ଧ କରିବାକୁ ଲାଗିଲେ । ଏହିପରି ଅନେକ ଦେବତା ନିଜ ନିଜର ଅଂଶଭୂତ ପୁତ୍ର ବିଦ୍ୟାଧରମାନଙ୍କର ମୃତ୍ୟୁରେ କ୍ରୁଦ୍ଧ ହୋଇ ଦାନବ ଓ ମାନବମାନଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଭୟଙ୍କର ସଂଗ୍ରାମରେ ଉନ୍ମତ୍ତ ହୋଇ ମାନବ ଓ ଦାନବ ସେନା ଅନେକ ପ୍ରସିଦ୍ଧ ବିଦ୍ୟାଧର ରାଜା ଓ ବିଦ୍ୟାଧର ସେନାପତିଙ୍କୁ ହତ୍ୟା କଲେ ।

ଏଣେ ପ୍ରଭାସଙ୍କ ସହିତ ଦାମୋଦରଙ୍କ ଶସ୍ତ୍ରାସ୍ତ୍ର ଯୁଦ୍ଧ ଭୀଷଣ ଆକାର ଧାରଣ କରି ଉଠୁଥିଲା । କିଛି ସମୟ ମଧ୍ୟରେ ଦାମୋଦର ଧନୁ, ବାଣ ଓ ସାରଥି ବିହୀନ ହୋଇ ଦ୍ୱିତୀୟ ଧନୁ ଏବଂ ସ୍ୱୟଂ ଅଶ୍ୱରଜ୍ଜୁ ଗ୍ରହଣ ପୂର୍ବକ ଯୁଦ୍ଧ କରିବାରେ ଲାଗିଲେ ।

ଦାମୋଦରଙ୍କ ବୀରତ୍ୱ ସଂଦର୍ଶନ କରି ବ୍ରହ୍ମା ତାଙ୍କର ପ୍ରଶଂସା କରନ୍ତେ ଇନ୍ଦ୍ର କହିଲେ, 'ଭଗବାନ୍, ପରାଜିତ ହେଉଥିବା ଦାମୋଦରଙ୍କୁ ଆପଣ ଏପରି ପ୍ରଶଂସା କିପରି କରୁଅଛନ୍ତି ?' ଉତ୍ତରରେ ବ୍ରହ୍ମା କହିଲେ, 'ତା'ର ଯଥେଷ୍ଟ କାରଣ ଅଛି । ଦାମୋଦର ଏତେ ସମୟ ଧରି ପ୍ରଭାସଙ୍କ ସହ ଯୁଦ୍ଧ କରୁଅଛନ୍ତି; ଏହା ସାଧାରଣ କଥା ନୁହେ । ଭଗବାନ୍ ବିଷ୍ଣୁଙ୍କ ଅଂଶରେ ଜନ୍ମଗ୍ରହଣ କରିଥିବା ଦାମୋଦରଙ୍କ ବ୍ୟତୀତ ଅନ୍ୟ କାହାରି ପକ୍ଷରେ ଏହା ସମ୍ଭବପର ନୁହେ । କାରଣ ସମସ୍ତ ଦେବତା ସମ୍ମିଳିତ ଭାବେ କେବଳ ପ୍ରଭାସଙ୍କ ସହିତ ଯୁଦ୍ଧ କଲେ ସୁଦ୍ଧା ପରାଜିତ ହେବାର ଯଥେଷ୍ଟ ସମ୍ଭାବନା ରହିଅଛି ।

ପୂର୍ବକାଳରେ ସଂଘଟିତ ହୋଇଥିବା ଦେବାସୁର ଯୁଦ୍ଧରେ ଦେବତାମାନଙ୍କୁ ଯେଉଁ ନମୁଚି ନାମକ ରାକ୍ଷସ ପରାଜିତ କରିଥିଲା, ସେ ଦ୍ୱିତୀୟ ଜନ୍ମରେ ସର୍ବରତ୍ନମୟ ପ୍ରବଳ ରୂପରେ ଜନ୍ମ ନେଇଥିଲା । ବର୍ତ୍ତମାନ ଜନ୍ମରେ ସେ ଭାସଙ୍କ ପୁତ୍ର ପ୍ରଭାସ । ଭାସ ମଧ୍ୟ ପୂର୍ବ ଜନ୍ମରେ କାଳନେମୀ ନାମକ ମହାନ୍ ଅସୁର ଥିଲା । ଦ୍ୱିତୀୟ ଜନ୍ମରେ ସେ ହେଲା ହିରଣ୍ୟକଶିପୁ ନାମକ ଦୈତ୍ୟରାଜ । ତାପରେ ସେ କପିଞ୍ଜଳ ରୂପରେ ଅବତୀର୍ଣ୍ଣ ହୋଇଥିଲା । ପୂର୍ବେ ସୁମୁଣ୍ଡିକ ନାମରେ ଯେଉଁ ଅସୁର ଥିଲା ସେ ବର୍ତ୍ତମାନର ସୂର୍ଯ୍ୟପ୍ରଭ । ପୂର୍ବ ଜନ୍ମରେ ଯେ ହିରଣାକ୍ଷ୍ୟ ନାମ ଧାରଣ କରିଥିଲା, ସେ ବର୍ତ୍ତମାନ ସୁନୀଥ ରୂପରେ ଦେଖା ଦେଇଛି । ପ୍ରହସ୍ତ ପ୍ରଭୃତି ଏ ସମସ୍ତ ପୂର୍ବ ଜନ୍ମରେ ଦୈତ୍ୟ ଓ ଦାନବ ହିଁ ଥିଲେ । ତୁମ୍ଭେମାନେ ପୂର୍ବେ ଯେଉଁ ଅସୁରମାନଙ୍କୁ ହତ୍ୟା କରିଥିଲା, ସେମାନେ ସମସ୍ତେ ବର୍ତ୍ତମାନ ମାନବ ଓ ଦାନବ ରୂପରେ ଜନ୍ମ ଗ୍ରହଣ କରିଅଛନ୍ତି । ତେଣୁ ମୟ ପ୍ରଭୃତି ଅସୁରମାନେ ଏମାନଙ୍କର ସମସ୍ତ  ସହାୟତା କରୁଅଛନ୍ତି ।

ସୂର୍ଯ୍ୟପ୍ରଭ ଏବଂ ଦାନବମାନେ ବିଧିପୂର୍ବକ ସ୍ୱିଷ୍ଟକୃତ୍ ଯଜ୍ଞ ସମାହିତ କରନ୍ତେ ଭଗବାନ୍ ରୁଦ୍ର ପ୍ରୀତ ହୋଇ ବଳିଙ୍କୁ ବନ୍ଧନମୁକ୍ତ କରି ଅଛନ୍ତି । ତା' ନହେଲେ ସେ ଆଜି ଏ ସଂଗ୍ରାମ ସଂଦର୍ଶନ କରିପାରି ନ ଥାନ୍ତେ । ସତ୍ୟନିଷ୍ଠ ବଳି ନିଜର ସତ୍ୟରକ୍ଷା ପାଇଁ ସର୍ବଦା ପାତାଳପୁରରେ ହିଁ ବାସ କରନ୍ତି । ତୁମ୍ଭମାନଙ୍କର ରାଜତ୍ୱକାଳ ସମାପ୍ତ ହେଲେ ସେ ଇନ୍ଦ୍ରପଦ ଲାଭ କରିବେ ।

'ବର୍ତ୍ତମାନ ଏହି ଦାନବ ଓ ମାନବମାନେ ଭଗବାନ ଶିବଙ୍କର କୃପାଲାଭ କରିଅଛନ୍ତି । ତେଣୁ ଏଠାରେ ଦେବତାମାନଙ୍କର ବିଜୟ ସମ୍ଭାବନା ଆଦୌ ନାହିଁ । ସନ୍ଧି ସ୍ଥାପନ ନକରି ହଠ ପୂର୍ବକ ସେମାନଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେବା ମୂର୍ଖତାର ପରିଚାୟକ ମାତ୍ର ।'

ବ୍ରହ୍ମା ଇନ୍ଦ୍ରଙ୍କ ନିକଟରେ ଏପରି ଭାବରେ ଯୁଦ୍ଧ ବୃତ୍ତାନ୍ତ ବର୍ଣ୍ଣନା କରୁଥିବାବେଳେ ପ୍ରଭାସ ମହାନ୍ ପାଶୁପତ ଅସ୍ତ୍ର ପ୍ରୟୋଗ କଲେ । ସର୍ବ ସଂହାରକାରୀ ଏହି ଅସ୍ତ୍ରର ଭୀଷଣ ସଂହାରରୂପ ସଂଦର୍ଶନ କରି ଭଗବାନ ବିଷ୍ଣୁ ପୁତ୍ର ସ୍ନେହରେ ନିଜ ଅଂଶଜାତ ଦାମୋଦରଙ୍କ ଜୀବନରକ୍ଷା ନିମିତ୍ତ ସୁଦର୍ଶନ ଚକ୍ର ନିକ୍ଷେପ କଲେ । ଏ ଉଭୟ ଅସ୍ତ୍ରର ପ୍ରୟୋଗ ଫଳରେ ଯୁଦ୍ଧଭୂମି ଭୀଷଣ ଆକାର ଧାରଣ କଲା, ତ୍ରିଭୁବନ ବ୍ୟାକୁଳିତ ଏବଂ ଚତୁର୍ଦ୍ଦିଗ ଉଦ୍ଭାସିତ ହୋଇ ଉଠିଲା । ଏହା ଦେଖି ଭଗବାନ ବିଷ୍ଣୁ ପ୍ରଭାସଙ୍କୁ କହିଲେ, 'ତୁମେ ଯଦି ତୁମର ପାଶୁପତ ଅସ୍ତ୍ରକୁ ସଂହାର କରି ନେବ, ତା'ହେଲେ ମୁଁ ମୋର ଚକ୍ରକୁ ମଧ୍ୟ ଫେରାଇ ନେବି ।' କିନ୍ତୁ ଏହାର ଉତ୍ତରରେ ପ୍ରଭାସ କହିଲେ, 'ମୋ ପ୍ରେରିତ ଅସ୍ତ୍ର କଦାପି ବ୍ୟର୍ଥ ହେବାର ନୁହେ । ଯଦି ଦାମୋଦର ଯୁଦ୍ଧଭୂମି ପରିତ୍ୟାଗ ପୂର୍ବକ ପଳାୟନ କରନ୍ତି, ତା ହେଲେ ମୁଁ ମୋର ଅସ୍ତ୍ର ସଂହାର କରିପାରେ ।' ପ୍ରଭାସଙ୍କଠାରୁ ଏହା ଶ୍ରବଣ କରି ବିଷ୍ଣୁ ପୁଣି କହିଲେ, 'ତାହାହେଲେ ତୁମେ ମଧ୍ୟ ମୋ ଚକ୍ରର ସମ୍ମାନ ରକ୍ଷା କର । ଫଳରେ ଉଭୟଙ୍କର ସମ୍ମାନ ରକ୍ଷା ହେବ ।' ବିଷ୍ଣୁଙ୍କ କଥାରେ କାଳବିତ୍ ପ୍ରଭାସ କହିଲେ ଯେ ଚକ୍ରଟି ଆସି ତାଙ୍କ ରଥ ଉପରେ ଆଘାତ କରୁ । ବିଷ୍ଣୁଙ୍କ ନିର୍ଦ୍ଦେଶ କ୍ରମେ ଦାମୋଦର ଯୁଦ୍ଧ ଭୂମିରୁ ପ୍ରତ୍ୟାବର୍ତ୍ତନ କରିଗଲେ ଏବଂ ପ୍ରଭାସ ମଧ୍ୟ ନିଜର ପାଶୁପତଅସ୍ତ୍ରକୁ ପ୍ରତିସଂହାର କରିନେଲେ । ଏଣେ ସୁଦର୍ଶନ ଚକ୍ର ପ୍ରଭାସଙ୍କ ରଥକୁ ନଷ୍ଟବିନଷ୍ଟ କରିଦିଅନ୍ତେ ସେ ଅନ୍ୟ ଏକ ରଥ ଆରୋହଣ କରି ସୂର୍ଯ୍ୟପ୍ରଭଙ୍କ ନିକଟକୁ ଫେରିଗଲେ; ଏବଂ ଦାମୋଦର ମଧ୍ୟ ଶ୍ରୁତଶର୍ମାଙ୍କ ନିକଟକୁ ଗମନ କଲେ ।

ଏ ମଧ୍ୟରେ ଇନ୍ଦ୍ରଙ୍କ ଅଂଶରୁ ଜାତ ଗର୍ବୋନ୍ମତ୍ତ ଶ୍ରୁତଶର୍ମା ଏବଂ ପ୍ରବଳ ପରାକ୍ରମଶାଳୀ ସୂର୍ଯ୍ୟପ୍ରଭଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ପ୍ରବଳ ଆକାର ଧାରଣ କଲା । ଶ୍ରୁତଶର୍ମା ବହୁ ଯତ୍ନପୂର୍ବକ ଯେଉଁ ଅସ୍ତ୍ର ପ୍ରୟୋଗ କରୁଥିଲେ, ସୂର୍ଯ୍ୟପ୍ରଭ ଅନାୟାସରେ ପ୍ରତ୍ୟସ୍ତ୍ର ଦ୍ୱାରା ତାକୁ ନଷ୍ଟ କରିଦେଉଥିଲେ । ଏଥିରେ ବିବ୍ରତ ହୋଇ ଶ୍ରୁତଶର୍ମା ଯେଉଁ ଇନ୍ଦ୍ରଜାଲ ସୃଷ୍ଟି କରୁଥାଆନ୍ତି ସୂର୍ଯ୍ୟପ୍ରଭ ତାକୁ ବିରୋଧୀ ମାୟା ବଳରେ ନିଷ୍ଫଳ କରିଦେଉଥାନ୍ତି । ଶ୍ରୁତଶର୍ମା ଶେଷରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବ୍ରହ୍ମାସ୍ତ୍ର ପ୍ରୟୋଗ କରିବା ଦେଖି ସୂର୍ଯ୍ୟପ୍ରଭ ମଧ୍ୟ ପାଶୁପତାସ୍ତ୍ର ସନ୍ଧାନ କଲେ । ପାଶୁପତାସ୍ତ୍ର ବ୍ରହ୍ମାସ୍ତ୍ରକୁ ଦୂର କରି ଯେତେବେଳେ ଶ୍ରୁତଶର୍ମାଙ୍କ ପ୍ରତି ଅଗ୍ରସର ହେଲା ସେତେବେଳେ ଇନ୍ଦ୍ର ପ୍ରଭୃତି ଦେବତାମାନେ କ୍ରୁଦ୍ଧ ହୋଇ ସୂର୍ଯ୍ୟପ୍ରଭଙ୍କୁ ଚତୁର୍ଦ୍ଦିଗରୁ ବଜ୍ରାଦି ଅସ୍ତ୍ର ଦ୍ୱାରା ଆକ୍ରମଣ କଲେ । କିନ୍ତୁ ମନୋଜବ ପାଶୁପତାସ୍ତ୍ର ଯେତେବେଳେ ସମସ୍ତ ଅସ୍ତ୍ରଶସ୍ତ୍ରକୁ ଛିନ୍ନଭିନ୍ନ କରି ଶ୍ରୁତଶର୍ମାଙ୍କ ନିକଟବର୍ତ୍ତୀ ହେବାକୁ ଲାଗିଲା ସେତେବେଳେ ସୂର୍ଯ୍ୟପ୍ରଭ ଉକ୍ତ ଅସ୍ତ୍ରକୁ ସ୍ତୁତି

ପାଠ ପୂର୍ବକ ସନ୍ତୁଷ୍ଟ କରି ପ୍ରାର୍ଥନା କଲେ ଯେ ସେ ଶ୍ରୁତଶର୍ମାଙ୍କୁ ବଧ ନକରି ବନ୍ଧନ କରି ଆଣୁ । ଏଥିରେ ସମସ୍ତ ଦେବତା କ୍ରୋଧାନ୍ଧ ହୋଇ ଭୀଷଣ ସଂଗ୍ରାମରେ ପ୍ରବୃତ୍ତ ହେଲେ । ଏଣେ ଅସୁରମାନେ ମଧ୍ୟ ବିଜୟ ଲକ୍ଷ୍ମୀକୁ ବରଣ କରିବା ପାଇଁ ପ୍ରସ୍ତୁତ ହୋଇ ଉଠିଲେ ।

ଏ ସମୟରେ ଶିବପ୍ରେରିତ ବୀରଭଦ୍ର ନାମକ ଗଣ ସେଠାରେ ଉପସ୍ଥିତ ହୋଇ ଇନ୍ଦ୍ର ପ୍ରଭୃତି ଦେବତାଙ୍କୁ ଶିବଙ୍କ ଆଦେଶ ଶୁଣାଇ କହିଲା, 'ତୁମ୍ଭେମାନେ ଯୁଦ୍ଧ ଦର୍ଶନ କରିବାପାଇଁ ଏଠାରେ ଉପସ୍ଥିତ ହୋଇଅଛ, ତେଣୁ ଯୁଦ୍ଧ କରିବାରେ ତୁମ୍ଭମାନଙ୍କର କୌଣସି ଯାଥାର୍ଥ୍ୟ ନାହିଁ । ଏପରି ମର୍ଯ୍ୟାଦା ଲଂଘନ କଲେ, ତା'ର ଫଳ ଆହୁରି ଭୟଙ୍କର ହେବ ।' ଏହାର ଉତ୍ତରରେ ଦେବତାମାନେ କହିଲେ, 'ଏହି ଯୁଦ୍ଧରେ ଆମ୍ଭମାନଙ୍କର ପୁତ୍ରମାନେ ନିହତ ହୋଇଛନ୍ତି ଏବଂ ହେବାକୁ ଯାଉଛନ୍ତି । ତେଣୁ ଯୁଦ୍ଧ କରିବାରେ ଆମ୍ଭମାନଙ୍କର କୌଣସି ଅଯଥାର୍ଥତା ନାହିଁ । ପୁତ୍ରସ୍ନେହ କଦାପି ଛାଡ଼ିବାର ନୁହେ । ନିଶ୍ଚିତ ଭାବେ ପୁତ୍ରହନ୍ତାମାନଙ୍କର ପ୍ରତିଶୋଧ ନିଆଯିବ ।' ଦେବତାମାନଙ୍କଠାରୁ ଏହା ଶ୍ରବଣ କରି ବୀରଭଦ୍ର ସେଠାରୁ ପ୍ରତ୍ୟାବର୍ତ୍ତନ କରିଯିବା ପରେ ଦେବତା ଓ ଦାନବଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ ଆରମ୍ଭ ହେଲା । ସୁନୀଥଙ୍କ ସହ ଅଶ୍ୱିନୀ କୁମାର, ପ୍ରଜ୍ଞାଢ଼୍ୟଙ୍କ ସହ ଚନ୍ଦ୍ରମା, ସ୍ଥିରବୁଦ୍ଧିଙ୍କ ସହ ଅଷ୍ଟବସୁ, କାଳଚକ୍ରଙ୍କ ସହ ବାୟୁ, ପ୍ରକମ୍ପନଙ୍କ ସହ ଅଗ୍ନି, ସିଂହଦଂଷ୍ଟ୍ରଙ୍କ ସହ ନିର୍ଋତ, ପ୍ରମଥନଙ୍କ ସହ ବରୁଣ, ଧୂମକେତୁଙ୍କ ସହ ଯମ ଏବଂ ମହାମାୟଙ୍କ ସହ ଧନାଧିପ କୁବେର ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଏହିପରି ଅନ୍ୟ ଦେବତାମାନଙ୍କ ସହ ଅନ୍ୟାନ୍ୟ ଅସୁରମାନେ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧ କରିବା ଆରମ୍ଭ କରିଦେଲେ ।

ଶେଷରେ ମହାଦେବ ମଧ୍ୟ ଆସି ସୂର୍ଯ୍ୟପ୍ରଭଙ୍କ ସପକ୍ଷତା କରିବାକୁ ଲାଗିଲେ । ଦେବତାମାନେ ଯେଉଁ ଅବ୍ୟର୍ଥ ଶସ୍ତ୍ରସବୁ ନିକ୍ଷେପ କରୁଥିଲେ, ମହାଦେବ ସେଗୁଡ଼ିକୁ ହୁଂକାର ମାତ୍ର ଦ୍ୱାରା ନଷ୍ଟ କରିଦେଉଥିଲେ । କୁବେର ନିଜର ଗଦା ଧାରଣ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବାପାଇଁ ଉଦ୍ୟତ ହୁଅନ୍ତେ ଭଗବାନ୍ ଶଙ୍କର ଶାନ୍ତିପୂର୍ଣ୍ଣ ଭାବରେ ତାଙ୍କୁ ସେଥିରୁ ନିବୃତ୍ତ କଲେ । ନିଜ ନିଜର ଅସ୍ତ୍ରଶସ୍ତ୍ର ବିଫଳ ହେଉଥିବା ଦେଖି ଦେବତାମାନେ କ୍ରମେ କ୍ରମେ ଯୁଦ୍ଧରୁ ବିରତ ହେବାକୁ ଲାଗିଲେ । କିନ୍ତୁ ଇନ୍ଦ୍ରଦେବ ଆହୁରି କ୍ରୋଧପରବଶ ହୋଇ ସ୍ୱୟଂ ସୂର୍ଯ୍ୟପ୍ରଭଙ୍କ ସହ ଯୁଦ୍ଧ କରିବାକୁ ଲାଗିଲେ ଏବଂ ତାଙ୍କ ଉପରେ ଅଜସ୍ର ବାଣବୃଷ୍ଟି କଲେ । ସୂର୍ଯ୍ୟପ୍ରଭ ଅନାୟାସରେ ସେ ସମସ୍ତକୁ ନିସ୍ତ୍ରଭ କରି ଇନ୍ଦ୍ରଙ୍କୁ ଏକଶତ ନାରାଚଦ୍ୱାରା ବିଦ୍ଧକଲେ । ଏଥିରେ ବିବ୍ରତ ହୋଇ ଇନ୍ଦ୍ର ଶେଷରେ

ସୂର୍ଯ୍ୟପ୍ରଭଙ୍କୁ ବଜ୍ରଦ୍ୱାରା ପ୍ରହାର କଲେ । କିନ୍ତୁ ହଠାତ୍ ଏହି ସମୟରେ ଶିବଙ୍କ ହୁଂକାର ନାଦ ଫଳରେ ବଜ୍ରର ସମସ୍ତ ପ୍ରଭାବ ନଷ୍ଟ ହୋଇଗଲା ।

ଇନ୍ଦ୍ର ପରେ ପରେ ଯୁଦ୍ଧଭୂମିରୁ ନିଷ୍କ୍ରାନ୍ତ ହେବାରୁ ସ୍ୱୟଂ ନାରାୟଣ କ୍ରୋଧରେ ଉନ୍ମତ୍ତ ହୋଇ ପ୍ରଭାସଙ୍କ ପ୍ରତି ତୀକ୍ଷ୍ଣ ଶରଜାଳ ପ୍ରକ୍ଷେପ କରିବାକୁ ଲାଗିଲେ । ନାରାୟଣ-ଅସ୍ତ୍ରଗୁଡ଼ିକର ନିରାକରଣ କରି ପ୍ରଭାସ ସାଧାରଣ ବ୍ୟକ୍ତି ସହ ଯୁଦ୍ଧ କରିବାପରି ତାଙ୍କ ସହ ଯୁଦ୍ଧ କରୁଥାଆନ୍ତି । ସେ ପ୍ରଥମେ ରଥର ଅଶ୍ୱଗୁଡ଼ିକୁ ନିହତ କରି ପରେ ରଥଟିକୁ ଚୂର୍ଣ୍ଣୀଭୂତ କରିଦେଲେ । ଅନ୍ୟ ଏକ ରଥ ଆରୋହଣ ପୂର୍ବକ ଭଗବାନ୍ ନାରାୟଣ ନିଜର ଜାଜ୍ୱଲ୍ୟମାନ ଚକ୍ରଦ୍ୱାରା ପ୍ରଭାସଙ୍କୁ ଆକ୍ରମଣ କରନ୍ତେ ସେ ତୁରନ୍ତ ଏକ ଅଭିମନ୍ତ୍ରିତ ଖଡ୍‌ଗ ପ୍ରୟୋଗ କଲେ । ଏହି ଉଭୟ ଅସ୍ତ୍ର ପରସ୍ପର ମଧ୍ୟରେ ଯୁଦ୍ଧ କରୁଥିବା ବେଳେ ଚକ୍ର ଧୀରେ ଧୀରେ ଖଡ୍‌ଗକୁ ନିର୍ବଳ କରୁଥିବା ଲକ୍ଷ୍ୟ କରି ମହାଦେବ ପୁଣି ଏକ ଭୟଙ୍କର ହୁଙ୍କାର ଛାଡ଼ିଲେ । ଏହି ହୁଙ୍କାର ନାଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଲା ଏବଂ ଉଭୟ ଚକ୍ର ଓ ଖଡ୍‌ଗ ଅନ୍ତର୍ହିତ ହୋଇଗଲେ ।

ଏହାପରେ ସୂର୍ଯ୍ୟପ୍ରଭ ବିଜୟଲାଭ କରି ଶ୍ରୁତଶର୍ମାଙ୍କୁ ବନ୍ଧନ କରନ୍ତେ ଅସୁରମାନେ ଆନନ୍ଦିତ ଓ ଦେବତାମାନେ କ୍ଷୁଣ୍ଣ ହେଲେ । କିଛି ସମୟ ପରେ ଦେବତାମାନେ ପ୍ରକୃତିସ୍ଥ ହୋଇ ଭଗବାନ ଶଙ୍କରଙ୍କୁ ସ୍ତୁତିପାଠ ସହ ଆରାଧନା କରନ୍ତେ ସେ ପ୍ରସନ୍ନ ହୋଇ ଦେବତାମାନଙ୍କୁ କହିଲେ, 'ମୁଁ ସୂର୍ଯ୍ୟପ୍ରଭଙ୍କଠାରେ ଯେଉଁ ପ୍ରତିଜ୍ଞା କରିଛି, ତା' ବ୍ୟତୀତ ତୁମ୍ଭେମାନେ ଅନ୍ୟ ଯେକୌଣସି ବର ପ୍ରାର୍ଥନା କରିପାର' । ଏଥିରେ ଦେବତାମାନେ କହିଲେ, 'ଭଗବନ୍, ଆପଣ ଯେଉଁ ପ୍ରତିଜ୍ଞା କରିଛନ୍ତି, ତାକୁ ଅନ୍ୟଥା କରିବାର ଶକ୍ତି କାହାର ଅଛି ? କିନ୍ତୁ ଆମ୍ଭେମାନେ ମଧ୍ୟ ଶ୍ରୁତଶର୍ମାଙ୍କୁ ବଚନ ପ୍ରଦାନ କରିଅଛୁ । ତାହା ମଧ୍ୟ ସତ୍ୟ ହେବା ଆବଶ୍ୟକ; ନୋଚେତ୍ ଆମ୍ଭମାନଙ୍କର ଅପମାନ ହେବ ।'

ଦେବତାମାନଙ୍କର ଏ ପ୍ରକାର ବିନମ୍ର ବଚନରେ ପ୍ରୀତ ହୋଇ ଭଗବାନ୍ ଶଙ୍କର କହିଲେ, 'ପରସ୍ପର ମଧ୍ୟରେ ସନ୍ଧି ସ୍ଥାପିତ ହେଲେ ହିଁ ଏହା ସମ୍ଭବପର ହୋଇପାରେ । ପ୍ରଥମେ ଶ୍ରୁତଶର୍ମା ନିଜର ଅନୁଚର ବର୍ଗଙ୍କ ସହ ସୂର୍ଯ୍ୟପ୍ରଭଙ୍କୁ ପ୍ରଣାମ କରନ୍ତୁ । ତାହାହେଲେ ମୁଁ ତାଙ୍କର ମଙ୍ଗଳପାଇଁ ଚେଷ୍ଟା କରିବି ।' ଏଥିରେ ସମ୍ମତ ହୋଇ ଦେବତାମାନେ ଶ୍ରୁତଶର୍ମାଙ୍କୁ ନେଇ ସୂର୍ଯ୍ୟପ୍ରଭଙ୍କ ନିକଟରେ ପ୍ରଣତ କରାଇଲେ । ଉଭୟେ ପରସ୍ପରକୁ ଆଲିଙ୍ଗନ କରି ଶତ୍ରୁତା ପରିତ୍ୟାଗ କରିବା ଫଳରେ ଉଭୟଙ୍କ ମଧ୍ୟରେ ମିତ୍ରତା ସ୍ଥାପିତ ହେଲା ।

ଏହାଦେଖି ଭଗବାନ୍ ଗିରିଜାପତି ସୁର ଓ ଅସୁରମାନଙ୍କ ଉପସ୍ଥିତିରେ ସୂର୍ଯ୍ୟପ୍ରଭଙ୍କୁ କହିଲେ, 'ତୁମେ ବିଦ୍ୟାଧରମାନଙ୍କର ଦକ୍ଷିଣ ଦିଗରେ ଥିବା ଅର୍ଦ୍ଧ ବେଦୀରେ ଚକ୍ରବର୍ତ୍ତିତ୍ୱ କରି ଉତ୍ତର ଦିଗର ଅର୍ଦ୍ଧବେଦୀ ଶ୍ରୁତଶର୍ମାଙ୍କୁ ପ୍ରଦାନ କର । ସେ ସେଠାରେ ରାଜତ୍ୱ କରନ୍ତୁ । ବତ୍ସ, ତୁମେ କିଛିଦିନ ପରେ ଏହାର ଚତୁର୍ଗୁଣ ସୀମା ପରିମିତ କିନ୍ନର ପ୍ରଭୃତି ଆକାଶଚାରୀମାନଙ୍କ ରାଜ୍ୟଲାଭ କରିବ । ଯେତେବେଳେ ତୁମ ରାଜ୍ୟର ସୀମା ବିସ୍ତୃତି ଲାଭ କରିବ ସେତେବେଳେ ଦକ୍ଷିଣ ଦିଗସ୍ଥ ଅର୍ଦ୍ଧବେଦୀ କୁଞ୍ଜରକୁମାରଙ୍କୁ ପ୍ରଦାନ କରିଦେବ ।' ସୂର୍ଯ୍ୟପ୍ରଭଙ୍କୁ ଏ ପ୍ରକାର ଉପଦେଶ ପ୍ରଦାନ କରି ମହାଦେବ ଶେଷରେ ପୁଣି ଆଶିଷବାଣୀ ଶୁଣାଇଲେ, 'ଏହି ଯୁଦ୍ଧରେ ଯେଉଁମାନେ ନିହତ ହୋଇଛନ୍ତି ସେମାନେ ପୁଣି ପୁନର୍ଜୀବନ ଲାଭ କରିବେ । ସେମାନଙ୍କ ଶରୀର ଅକ୍ଷତ ହେବ ।' ଏହା କହି ସେ ଅନ୍ତର୍ହିତ ହେବା ସଙ୍ଗେ ସଙ୍ଗେ ସମଗ୍ର ମୃତ ସେନାବାହିନୀ ନିଦ୍ରାରୁ ଉତ୍ଥିତ ହେଲାପରି ଉଠି ଠିଆହେଲେ ।

ଏହାପରେ ବିଜୟୀ ସୂର୍ଯ୍ୟପ୍ରଭ ପାର୍ବତୀପତିଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଏକାନ୍ତରେ ଯାଇ ଏକ ବିସ୍ତୃତ ଭୂଭାଗ ମଧ୍ୟରେ ଆସନ ଗ୍ରହଣ କଲେ । ସେଠାରେ ରାଜସଭା ଆହୂତ ହେଲା । ଏ ସମୟରେ ଶ୍ରୁତଶର୍ମା ସେଠାରେ ଆସି ଉପସ୍ଥିତ ହୁଅନ୍ତେ ସୂର୍ଯ୍ୟପ୍ରଭ ତାଙ୍କୁ ନିଜ ସିଂହାସନର ଏକ ଅଂଶରେ ଆଣି ସ୍ୱୟଂ ଆସୀନ କରାଇଲେ । ପ୍ରଭାସ ପ୍ରଭୃତି ସୂର୍ଯ୍ୟପ୍ରଭଙ୍କ ମିତ୍ରବୃନ୍ଦ ଏବଂ ଦାମୋଦର ପ୍ରଭୃତି ଶ୍ରୁତଶର୍ମାଙ୍କ ମିତ୍ରମାନେ ଯୋଡ଼ି ଯୋଡ଼ି ହୋଇ ଆସନ ଗ୍ରହଣ କଲେ । ସୁନୀଥ, ମୟ ଏବଂ ଅନ୍ୟାନ୍ୟ ବିଦ୍ୟାଧର ରାଜନ୍ୟ ବୃନ୍ଦ ସମୁଚିତ ଆସନ ଗ୍ରହଣ କରି ସେଠାରେ ଉପବିଷ୍ଟ ହେଲେ । ଏ ସମୟରେ ପ୍ରହ୍ଲାଦ ପ୍ରଭୃତି ସପ୍ତପାତାଳର ଦୈତ୍ୟ ଓ ଦାନବ ରାଜାମାନେ ମଧ୍ୟ ଆନନ୍ଦ ଉତ୍ସବ ପାଳନ କରିବାପାଇଁ ସେଠାରେ ଆସି ପହଞ୍ଚିଲେ ।

ଗୁରୁ ବୃହସ୍ପତିଙ୍କୁ ଅନୁସରଣ କରି ଦିକ୍‌ପାଳମାନଙ୍କ ସହ ଦେବରାଜ ଇନ୍ଦ୍ର, ସୁମେରୁ, ସୁବାସକୁମାର, କଶ୍ୟପ ଏବଂ ସମସ୍ତ ମୁନି ପତ୍ନୀଙ୍କ ଆଗମନରେ ସଭା ସ୍ଥଳ ପୁରି ଉଠିଲା । ଭୂତାସନ ବିମାନ ଆରୋହଣ ପୂର୍ବକ ସୂର୍ଯ୍ୟପ୍ରଭଙ୍କ ସମସ୍ତ ପତ୍ନୀ ମଧ୍ୟ ସେଠାରେ ଆସି ଉପସ୍ଥିତ ହେଲେ । ସେମାନେ ପରସ୍ପରପ୍ରତି ପ୍ରେମପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ ପୂର୍ବକ ନିଜ ନିଜର ଆସନ ଗ୍ରହଣ କରନ୍ତେ କାଶ୍ୟପପତ୍ନୀ ଦନୁଙ୍କ ନିର୍ଦ୍ଦେଶରେ ତାଙ୍କ ସଖୀ ସିଦ୍ଧି ଆରମ୍ଭ କଲେ, 'ହେ ସୁରାସୁର ବୃନ୍ଦ, ଦେବୀ ଦନୁ ତୁମ୍ଭମାନଙ୍କୁ ଜିଜ୍ଞାସା କରୁଅଛନ୍ତି ଯେ ଆଜି ତୁମ୍ଭେମାନେ ଏହି ଅପୂର୍ବ ମିଳନ ଯୋଗୁଁ ଯେଉଁ ଅନାବିଳ ଆନନ୍ଦ

ଅନୁଭବ କରୁଅଛ, ତାହା କ'ଣ ପୂର୍ବରୁ କେବେ ସମ୍ଭବ ହୋଇଥିଲା ? ତେଣୁ ଦୁଃଖର କାରଣ ଯେଉଁ ବିରୁଦ୍ଧ ମନୋଭାବ, ତାହା ତୁମ୍ଭେମାନେ ପରିତ୍ୟାଗ କର । ତୁମ୍ଭମାନଙ୍କର ଜ୍ୟେଷ୍ଠ ଭ୍ରାତା ହିରଣ୍ୟାକ୍ଷ ପ୍ରଭୃତି ସ୍ୱର୍ଗ ରାଜ୍ୟ ଜୟ କରିବା ନିମିତ୍ତ ପ୍ରବଳ ଆନ୍ଦୋଳନ କରୁଥିଲେ । କିନ୍ତୁ ସେମାନଙ୍କ ମୃତ୍ୟୁ ପରେ ବର୍ତ୍ତମାନ ଇନ୍ଦ୍ର ହିଁ ତୁମ୍ଭମାନଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ । ତେଣୁ ଅଯଥା ବିବାଦ ଉଚିତ ନୁହେ । ଶତ୍ରୁତା ପରିତ୍ୟାଗ ପୂର୍ବକ ତୁମ୍ଭେମାନେ ପରସ୍ପର ପ୍ରତି ପ୍ରୀତିପୂର୍ଣ୍ଣ ବ୍ୟବହାର କର । ଏହାଦ୍ୱାରା ଆମ ସମସ୍ତଙ୍କୁ ମାନସିକ ଶାନ୍ତି ମିଳିବା ସଙ୍ଗେସଙ୍ଗେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିଲୋକର ମଙ୍ଗଳ ହେବ ।'

ସିଦ୍ଧିଙ୍କ ମୁଖରୁ ଦନୁଙ୍କ ନିବେଦନ ଶ୍ରବଣ କରି ଦେବରାଜ ଇନ୍ଦ୍ର ଗୁରୁ ବୃହସ୍ପତିଙ୍କ ପ୍ରତି ଦୃଷ୍ଟିପାତ କରନ୍ତେ ସେ କହିଲେ, 'ଦେବାତାମାନଙ୍କର ଅସୁରମାନଙ୍କ ପ୍ରତି କୌଣସି ବୈର ମନୋଭାବ ନାହିଁ । ତେଣୁ ଦେବତାମାନେ ଏମାନଙ୍କର ଅନିଷ୍ଟ କରିବା ପାଇଁ କଦାପି ଚେଷ୍ଟା କରନ୍ତି ନାହିଁ ।'

ବୃହସ୍ପତିଙ୍କ ବକ୍ତବ୍ୟ ଶେଷ ହେବାରୁ ଦାନବରାଜ ମୟ କହିଲେ, 'ଯଦି ଅସୁରମାନେ ଦେବତାମାନଙ୍କର ଅନିଷ୍ଟ ଚିନ୍ତା କରୁଥାଆନ୍ତେ ତାହାହେଲେ ଦାନବଶ୍ରେଷ୍ଠ ନମୁଚି କିପରି ମୃତସଞ୍ଜୀବନୀ ଶକ୍ତିଧାରୀ ଉଚ୍ଚୈଃଶ୍ରବା ଅଶ୍ୱକୁ ଇନ୍ଦ୍ରଙ୍କ ହସ୍ତରେ ସମର୍ପଣ କରିଥାଆନ୍ତେ ? ଅସୁରରାଜ ପ୍ରବଳ ଦେବତାମାନଙ୍କର ହିତସାଧନ ପାଇଁ ନିଜର ଶରୀର କିପରି ଦାନ କଲେ ? ବଳି ବିଷ୍ଣୁଙ୍କ ନିକଟରେ ଆତ୍ମସମର୍ପଣ କରି ଆଜୀବନ କାରାଗାର ମଧ୍ୟରେ କାହିଁକି ଆବଦ୍ଧ ହୋଇ ରହନ୍ତେ ? ବିଶ୍ୱକର୍ମାଙ୍କ ପାଇଁ ଅସୁର ଅୟୋଦେହ ନିଜର ଶରୀର କାହିଁକି ସମର୍ପଣ କରନ୍ତେ ? ଆଉ ଅଧିକ କ'ଣ କହିବି ? ପ୍ରତ୍ୟହ ଅସୁରମାନେ ଯଦି ଦେବତାମାନଙ୍କ କୂଟ ଛଳନାପୂର୍ଣ୍ଣ ଆଚରଣଦ୍ୱାରା ବିବ୍ରତ ଓ ଭୀତତ୍ରସ୍ତ ନ ହେଉଥାଆନ୍ତେ, ତାହାହେଲେ ସେମାନଙ୍କ ମନରେ ଦେବତାମାନଙ୍କ ପ୍ରତି କୌଣସି ବିରୁଦ୍ଧ ମନୋଭାବ ଜାଗ୍ରତ ହୁଅନ୍ତା ନାହିଁ ।' ମୟାସୁରଙ୍କ ବାକ୍ୟକୁ ସିଦ୍ଧି ସମର୍ଥନ ଜଣାଇ ଉଭୟ ପକ୍ଷକୁ ଆଶ୍ୱାସନା ପ୍ରଦାନ ପୂର୍ବକ ସେମାନଙ୍କ ମଧ୍ୟରେ ମିତ୍ରତା ଓ ସୌହାର୍ଦ୍ଦ୍ୟ ସ୍ଥାପନ କଲା ।

ଏ ସମୟରେ ପାର୍ବତୀଙ୍କଦ୍ୱାରା ପ୍ରେରିତ ତାଙ୍କର ପ୍ରତିହାରିଣୀ ଜୟା ମଧ୍ୟ ସେଠାରେ ଆସି ଉପସ୍ଥିତ ହେଲା । ସେ ଅନ୍ୟମାନଙ୍କଠାରୁ ଯଥୋଚିତ ସମ୍ମାନ ଲାଭକରି ସୁମେରୁଙ୍କୁ କହିଲା, 'ମୋତେ ଦେବୀ ପାର୍ବତୀ ପଠାଇଛନ୍ତି ଏବଂ ସେ ତୁମକୁ ନିର୍ଦ୍ଦେଶ ଦେଇଛନ୍ତି ଯେ ତୁମେ ତୁମର କନ୍ୟା କାମଚୂଡ଼ାମଣିଙ୍କୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ଯଥାବିଧି

ଅର୍ପଣ କରିବ । ସେ ପାର୍ବତୀଙ୍କ ଏକନିଷ୍ଠ ଉପାସିକା ।' ଜୟାଠାରୁ ଏହା ଶ୍ରବଣ କରି ସୁମେରୁ ନମ୍ରତାର ସହିତ ସମ୍ମତି ଜଣାଇଲେ, 'ଭଗବତୀ ଯାହା ନିର୍ଦ୍ଦେଶ ପ୍ରଦାନ କରିଛନ୍ତି, ତାହା ମୋ ପ୍ରତି ତାଙ୍କର ପ୍ରଗାଢ଼ ଅନୁଗ୍ରହ ମାତ୍ର । ଭଗବାନ୍ ମହାଦେବ ମଧ୍ୟ ପୂର୍ବେ ଏ କଥା ମୋତେ କହିଥିଲେ ।' ସୁମେରୁଙ୍କ ସମ୍ମତି ଦେଖି ଜୟା ସୂର୍ଯ୍ୟପ୍ରଭଙ୍କୁ ଲକ୍ଷ୍ୟ କରି କହିଲା, 'କାମଚୂଡ଼ାମଣୀ ତୁମର ପଟ୍ଟମହିଷୀ ହେବେ । ସମସ୍ତ ପ୍ରିୟତମା ପତ୍ନୀମାନଙ୍କ ଅପେକ୍ଷା ଏ ତୁମର ଅଧିକ ପ୍ରିୟପାତ୍ରୀ ହେବେ । ତୁମପ୍ରତି ଏହାହିଁ ଦେବୀ ଭବାନୀଙ୍କ ନିର୍ଦ୍ଦେଶ ।'

ଜୟା ଭଗବତୀଙ୍କ ଏ ପ୍ରକାର ନିର୍ଦ୍ଦେଶ ପ୍ରକାଶ କରି ସୂର୍ଯ୍ୟପ୍ରଭଙ୍କଠାରୁ ଉପଯୁକ୍ତ ସମ୍ମାନ ଲାଭ ପୂର୍ବକ ଅନ୍ତର୍ହିତା ହେଲା । ସୁମେରୁ ଉକ୍ତ ଦିନ ହିଁ ବିବାହ ଲଗ୍ନ ନିର୍ଣ୍ଣୟ କରି ସେହି ସ୍ଥାନରେ ବିବିଧ ମହାମୂଲ୍ୟ ରତ୍ନାଳଙ୍କାର ଖଚିତ ବିବାହ ମଣ୍ଡପ ନିର୍ମାଣ କଲେ । ମଣିମୁକ୍ତା ବିମଣ୍ଡିତ ମଣ୍ଡପଟି ଚର୍ତୁର୍ଦ୍ଦିଗରୁ ଅଗ୍ନିଦ୍ୱାରା ସୁରକ୍ଷିତ ହେବାପରି ମନେହେଉଥିଲା । ସୁମେରୁ ନିଜର ଅପୂର୍ବ ସୁନ୍ଦରୀ କନ୍ୟା କାମଚୂଡ଼ାମଣିଙ୍କୁ ଆଣି ସେଠାରେ ପ୍ରବେଶ କରାଇବାରୁ ଉପସ୍ଥିତ ସମସ୍ତ ଦେବ ଓ ଦାନବ ତାଙ୍କର ରୂପରାଶି ନିଜନିଜର ନେତ୍ର ସାହାଯ୍ୟରେ ପାନ କରିବାକୁ ଲାଗିଲେ । ଉମା ହିମାଳୟ ଔରସରୁ ଜନ୍ମଲାଭ କରିଥିଲେ ଏବଂ କାମଚୂଡ଼ାମଣି ସୁମେରୁଙ୍କ ଔରସରୁ । ତେଣୁ ବୋଧହୁଏ ସେ ପାର୍ବତୀଙ୍କ ତୁଲ୍ୟ ସୁନ୍ଦରୀ ଥିଲେ ।

ଏହାପରେ ସୁମେରୁ ବଧୂବେଶରେ ବିଭୂଷିତା କନ୍ୟାକୁ ସୂର୍ଯ୍ୟପ୍ରଭଙ୍କ ହସ୍ତରେ ବିଧିପୂର୍ବକ ପ୍ରଦାନ କଲେ । ଦନୁ ପ୍ରଭୃତିଙ୍କଦ୍ୱାରା ହସ୍ତଗ୍ରନ୍ଥି ବନ୍ଧନ କରାଗଲା । ସୂର୍ଯ୍ୟପ୍ରଭ ତାଙ୍କୁ ଆଦରର ସହିତ ଗ୍ରହଣ କଲେ । ପ୍ରଥମ ଲାଜାହୋମ ସମୟରେ ଜୟା ପୁଣି ଆସି ପାର୍ବତୀ ପ୍ରେରିତ ଅନଶ୍ୱରୀ ନାମକ ଦିବ୍ୟମାଳା ପ୍ରଦାନ କଲା । ସୁମେରୁ ମଧ୍ୟ ଏହି ଅବସରରେ ଅନନ୍ତ ଓ ଅମୂଲ୍ୟ ରତ୍ନାଳଙ୍କାର ଏବଂ ଐରାବତ ଔରସରୁ ଜାତ ଦିବ୍ୟହସ୍ତୀ ସୂର୍ଯ୍ୟପ୍ରଭଙ୍କୁ ଦକ୍ଷିଣାସ୍ୱରୂପ ଅର୍ପଣ କଲେ । ଦ୍ୱିତୀୟ ଲାଜାହୋମ ସମୟରେ ଜୟା ପୁଣି ଏକ ରତ୍ନମାଳା ପ୍ରଦାନ କଲେ, ଯାହା ଧାରଣ କଲେ, ମୃତ୍ୟୁ, କ୍ଷୁଧା ଓ ତୃଷାରୁ ବ୍ୟକ୍ତି ମୁକ୍ତି ଲାଭ କରିବ । ସୁମେରୁ ମଧ୍ୟ ପ୍ରଥମଥର ଅପେକ୍ଷା ଅଧିକ ରତ୍ନରାଶି ଏବଂ ଉଚ୍ଚୈଃଶ୍ରବାଠାରୁ ଜାତ ଅଶ୍ୱପୋତକ ପ୍ରଦାନ କଲେ । ତୃତୀୟ ଲାଜାହୋମ ସମୟରେ ଜୟା ଏକ ମୁକ୍ତାମାଳା ସୂର୍ଯ୍ୟପ୍ରଭଙ୍କ ହସ୍ତରେ ଅର୍ପଣ କଲା ଯାହା ଧାରଣ କଲେ ବ୍ୟକ୍ତି ଅକ୍ଷୟ ଯୌବନର ଅଧିକାରୀ

ହେବ ଏବଂ ସୁମେରୁ ମଧ୍ୟ ତିନିଗୁଣ ରତ୍ନରାଶି ଏବଂ ସମସ୍ତ ସିଦ୍ଧିର ଉପଯୋଗୀ ଏକ ମୁଦ୍ରିକା କନ୍ୟାଦାନର ଦକ୍ଷିଣା ସ୍ୱରୂପ ପ୍ରଦାନ କଲେ ।

ଏହିପରି ବିବାହ ସଂସ୍କାର ପୂର୍ଣ୍ଣ ହୁଅନ୍ତେ ସୁମେରୁ ସୁର, ଅସୁର, ବିଦ୍ୟାଧରଏବଂ ଦେବମାତାମାନଙ୍କୁ ନିବେଦନ ଜଣାଇଲେ, 'ଆପଣମାନେ ମୋ ପ୍ରତି ସଦୟ ହୋଇ ଆଜି ମୋରି ଗୃହରେ ଭୋଜନ କରିବେ ବୋଲି ବଦ୍ଧାଞ୍ଜଳିପୁଟରେ ମୁଁ ଆପଣମାନଙ୍କୁ ନିବେଦନ କରୁଅଛି ।' ଏଥିରେ ସେମାନେ କୁଣ୍ଠା ପ୍ରକାଶ କରୁଥିବା ବେଳେ ନନ୍ଦୀ ଆସି ସେଠାରେ ଉପସ୍ଥିତ ହେଲେ । ଉପସ୍ଥିତ ସମସ୍ତେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ପରେ ସେ କହିଲେ, 'ଭଗବାନ ଗୌରୀପତି ଆପଣମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଯେ ଆପଣମାନେ ଆଜି ସୁମେରୁଙ୍କ ଗୃହରେ ହିଁ ଭୋଜନ କରିବେ । ସେ ଆମର ଅତ୍ୟନ୍ତ ଆପଣାର । ତାଙ୍କର ଭୋଜନ ସାମଗ୍ରୀ ଆପଣମାନଙ୍କୁ ନିଶ୍ଚୟ ଶାଶ୍ୱତ ତୃପ୍ତି ପ୍ରଦାନ କରିବ ।' ନନ୍ଦୀଙ୍କ ମୁଖରୁ ଏହା ଶ୍ରବଣ କରି ସେମାନେ ସେଠାରେ ଭୋଜନ କରିବା ନିମନ୍ତେ ସମ୍ମତ ହେଲେ ।

ଏ ସମୟରେ ବିନାୟକ, ମହାକାଳ ଏବଂ ବୀରଭଦ୍ରଙ୍କ ଗହଣରେ ଅନନ୍ତଗଣ ଆସି ସେଠାରେ ଉପସ୍ଥିତ ହେଲେ । ଏମାନେ ଭୋଜନ ସାମଗ୍ରୀ ପ୍ରସ୍ତୁତ କରି ଦେବ, ଦୈତ୍ୟ, ବିଦ୍ୟାଧର ଓ ମନୁଷ୍ୟ ପ୍ରମୁଖ ସମସ୍ତ ଅତିଥିଙ୍କୁ ସମ୍ମାନର ସହିତ କ୍ରମଶଃ ଯଥାଯୋଗ୍ୟ ଆସନରେ ଆସୀନ କରାଇଲେ । ସୁମେରୁଙ୍କ ବିଦ୍ୟା ପ୍ରଭାବରେ ଏବଂ ମହାଦେବଙ୍କର ନିର୍ଦ୍ଦେଶ କ୍ରମେ କାମଧେନୁଠାରୁ ଉତ୍ପନ୍ନ ବିବିଧ ଖାଦ୍ୟ ପରଷା ଗଲା । ବୀରଭଦ୍ର, ମହାକାଳ, ଭୃଙ୍ଗୀ ପ୍ରଭୃତି ଅତିଥିମାନଙ୍କର ପ୍ରତିଷ୍ଠା ଅନୁଯାୟୀ ସେମାନଙ୍କ ସେବାରେ ନିଯୁକ୍ତ ରହିଲେ । ମଧ୍ୟେ ମଧ୍ୟେ ସ୍ୱତଃ ଉପସ୍ଥିତ ହେଉଥିବା ଆକାଶଚାରୀ ଚାରଣମାନଙ୍କର ସଙ୍ଗୀତ ଏବଂ ଦିବ୍ୟାଙ୍ଗନାମାନଙ୍କର ନୃତ୍ୟ ଅତିଥିମାନଙ୍କର ମନୋରଞ୍ଜନ କରୁଥାଏ ।

ଖାଦ୍ୟପାନ ଶେଷ ହେଲାପରେ ନନ୍ଦୀଶ୍ୱର ପ୍ରଭୃତି ଶିବଗଣ ଦିବ୍ୟମାଲ୍ୟ, ବସ୍ତ୍ର, ଆଭୂଷଣ ଇତ୍ୟାଦି ପ୍ରଦାନ କରି ଦେବତାମାନଙ୍କୁ ସମ୍ମାନିତ କଲେ । ଦେବତାମାନେ ଯଥୋଚିତ ଭାବରେ ସତ୍କୃତ ହୋଇ ନିଜ ନିଜର ବାହନ ଆରୋହଣ ପୂର୍ବକ ସ୍ୱର୍ଗଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ପରେ ପରେ ଅସୁର ଓ ବିଦ୍ୟାଧରମାନେ ମଧ୍ୟ ସୂର୍ଯ୍ୟପ୍ରଭଙ୍କଠାରୁ ବିଦାୟ ଗ୍ରହଣ ପୂର୍ବକ ତାଙ୍କର ଅନୁମତି କ୍ରମେ ନିଜ ନିଜ ଲୋକକୁ ଫେରିଗଲେ ।

ସମସ୍ତେ ଚାଲିଗଲା ପରେ ସୂର୍ଯ୍ୟପ୍ରଭ ନିଜର ମିତ୍ର ତଥା ନବବଧୂଙ୍କ ସହ ସୁମେରୁଙ୍କ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ। ସେଠାରେ ଉପସ୍ଥିତ ହୋଇ ସେ ଭ୍ରାତା ରତ୍ନପ୍ରଭ ଏବଂ ଅନ୍ୟାନ୍ୟ ସ୍ୱପକ୍ଷୀୟ ରାଜାମାନଙ୍କୁ ନିଜର କୁଶଳ ସମାଚାର ଜ୍ଞାପନ କରିବା ନିମିତ୍ତ ମିତ୍ର ହର୍ଷଙ୍କୁ ପ୍ରେରଣ କଲେ। ଏ ସମୟରେ ସନ୍ଧ୍ୟା ଉପଗତ ହୁଅନ୍ତେ ସେ ସୁସଜ୍ଜିତ ତଥା ସମଲଙ୍କୃତ କାମଚୂଡ଼ାମଣିଙ୍କ ବାସଭବନରେ ଯାଇ ପ୍ରବେଶ କଲେ। ସେଠାରେ ନିବିଡ଼ ଆଲିଙ୍ଗନ, ଦନ୍ତକ୍ଷତ, ନଖକ୍ଷତ ଇତ୍ୟାଦି ଦ୍ୱାରା କାମଚୂଡ଼ାମଣିଙ୍କ ହୃଦୟରୁ ଲଜ୍ଜା ଦେବୀଙ୍କୁ ବହିଷ୍କାର କରି ସୂର୍ଯ୍ୟପ୍ରଭ ତାଙ୍କ ସହ ବିବିଧ କାମକ୍ରୀଡ଼ାରେ ଉନ୍ମତ୍ତ ହୋଇ ଉଠିଲେ। ନବୋଢ଼ା କାମଚୂଡ଼ାମଣିଙ୍କ ସହ ସହବାସ କରି ସେ ଯେଉଁ ନବୀନ ଏବଂ ଅନିର୍ବଚନୀୟ ଆନନ୍ଦ ଲାଭ କଲେ ତାହା ଅନ୍ୟ କୌଣସି ରାଣୀ ତାଙ୍କୁ ପ୍ରଦାନ କରିବା ପାଇଁ ସମର୍ଥା ହୋଇ ନଥିଲେ। 'ବର୍ତ୍ତମାନ ଅନ୍ୟ ରାଣୀମାନଙ୍କର ସ୍ଥାନ ମୋର ହୃଦୟର ବାହାରେ ଏବଂ ଭିତରେ କେବଳ ତୁମେ ହିଁ ବାସ କରିବାର ଯୋଗ୍ୟ' ପ୍ରଭୃତି ଚାଟୁବାକ୍ୟଦ୍ୱାରା ତାଙ୍କୁ ପ୍ରସନ୍ନ କରି ସୂର୍ଯ୍ୟପ୍ରଭ କ୍ରୀଡ଼ା କୌତୁକରେ ରାତ୍ରି ଯାପନ କଲେ।

ପରଦିନ ପ୍ରଭାତରୁ ନବୀନ ବିଦ୍ୟାଧର ଚକ୍ରବର୍ତ୍ତୀ ସୂର୍ଯ୍ୟପ୍ରଭ ଅନ୍ୟାନ୍ୟ ରାଣୀମାନଙ୍କ ଗହଣରେ ଯାଇ ଉପସ୍ଥିତ ହେଲେ। ସେତେବେଳେ ସେମାନେ ନବବଧୂଙ୍କ ସମ୍ପର୍କରେ ଚର୍ଚ୍ଚା କରୁଥାଆନ୍ତି। ରାଣୀମାନେ କାମଚୂଡ଼ାମଣିଙ୍କୁ ନେଇ ଯେତେବେଳେ ବିବିଧ ବ୍ୟଙ୍ଗୋକ୍ତି, ବକ୍ରୋକ୍ତି ଓ ହାସ୍ୟ ବିନୋଦପୂର୍ଣ୍ଣ ଉକ୍ତିଦ୍ୱାରା ସୂର୍ଯ୍ୟପ୍ରଭଙ୍କୁ ବିବ୍ରତ କରି ପକାଉଥିଲେ ସେତେବେଳେ ଦ୍ୱାରପାଳ ଆସି ଜ୍ଞାପନ କଲା ଯେ ଦୂତ ସୁଷେଣ ଆସି ଦ୍ୱାର ଦେଶରେ ଅପେକ୍ଷା କରୁଅଛନ୍ତି। ଏଥିରେ ସୂର୍ଯ୍ୟପ୍ରଭ ସଙ୍ଗେ ସଙ୍ଗେ ଆସିବାପାଇଁ ନିର୍ଦ୍ଦେଶ ପ୍ରଦାନ କରନ୍ତେ ସୁଷେଣ ସେଠାରେ ଉପସ୍ଥିତ ହୋଇ କହିଲା, 'ମହାରାଜ, ତ୍ରିକୂଟନାଥ ପ୍ରମୁଖ ସମସ୍ତ ବିଦ୍ୟାଧରାଧିପତି ମୋତେ ଆପଣଙ୍କ ନିକଟକୁ ପ୍ରେରଣ କରି ଅଛନ୍ତି। ସେମାନେ ଆପଣଙ୍କୁ ନିବେଦନ କରିଅଛନ୍ତି ଯେ ଆଜିଠାରୁ ତୃତୀୟ ଦିନରେ ଆପଣଙ୍କ ଅଭିଷେକ ଉତ୍ସବ ଋଷଭ ପର୍ବତରେ ସମ୍ପାଦିତ ହେଲେ ଶୁଭପ୍ରଦ ହେବ। ଏଣୁ ଆପଣ ଏଥିପାଇଁ ଆୟୋଜନ କରି ସମସ୍ତଙ୍କୁ ଏ ସମ୍ପର୍କରେ ସୂଚନା ଦେବା ପାଇଁ ଚେଷ୍ଟା କରନ୍ତୁ।' ଏହାଶୁଣି ସୂର୍ଯ୍ୟପ୍ରଭ ଦୂତକୁ କହିଲେ, 'ତୁମେ ଯାଇ ତ୍ରିକୂଟେଶ୍ୱରଙ୍କୁ ମୋ ପକ୍ଷରୁ ଜଣାଇଦିଅ ଯେ ଏ ଉତ୍ସବର ଆୟୋଜନଭାର ସମ୍ପୂର୍ଣ୍ଣରୂପେ ସେମାନଙ୍କ ଉପରେ ନ୍ୟସ୍ତ ରହିଲା।

ଯେଉଁମାନଙ୍କୁ ସୂଚନା ଦେବା କଥା ସେମାନଙ୍କୁ ଜଣାଇ ଦେବାପାଇଁ ସେ ଏବଂ ଅନ୍ୟାନ୍ୟମାନେ ଚେଷ୍ଟା କରନ୍ତୁ । ମୁଁ ନିଜେ ଏଥିପାଇଁ ପ୍ରସ୍ତୁତ ହୋଇ ରହିଛି । ଅବସର କ୍ରମେ ମୁଁ ମଧ୍ୟ ଅନ୍ୟମାନଙ୍କୁ ନିମନ୍ତ୍ରଣ ଜଣାଇବି ।'

ସୂର୍ଯ୍ୟପ୍ରଭଙ୍କଠାରୁ ଏ ପ୍ରକାର ପ୍ରତି ସନ୍ଦେଶ ନେଇ ଦୂତ ସେଠାରୁ ବିଦାୟ ନେଲା । ସୂର୍ଯ୍ୟପ୍ରଭ ମଧ୍ୟ ପ୍ରଭାସ ପ୍ରଭୃତି ମିତ୍ରମାନଙ୍କ ଦ୍ୱାରା ଦେବତା, ରାଜା, ବିଦ୍ୟାଧର, ଅସୁର, ମୁନି ଯାଜ୍ଞବଲ୍‌କ୍ୟ ପ୍ରଭୃତିଙ୍କୁ ଅଭିଷେକ ମହୋତ୍ସବରେ ଯୋଗଦାନ କରିବା ନିମିତ୍ତ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରଣ ପ୍ରେରଣ କଲେ । କିନ୍ତୁ ଶିବ ଓ ପାର୍ବତୀଙ୍କୁ ନିମନ୍ତ୍ରଣ କରିବାପାଇଁ ସେ ନିଜେ ଏକାକୀ କୈଳାସ ପର୍ବତ ଅଭିମୁଖରେ ଅଗ୍ରସର ହେଲେ ।

ଦେବତା, ଋଷି, ସିଦ୍ଧ, ଗନ୍ଧର୍ବ ପ୍ରଭୃତିଙ୍କ ବାସସ୍ଥଳୀ ସ୍ୱଚ୍ଛ ଓ ଶୁଭ୍ର ତୁଷାରାବୃତ କୈଳାଶ ଶିଖରୀ ଦର୍ଶନରେ ସୂର୍ଯ୍ୟପ୍ରଭ ତାକୁ ସ୍ୱୟଂ ମହାଦେବ ବୋଲି ମନେକଲେ । ଅର୍ଦ୍ଧପଥ ଆରୋହଣ କରିବା ପରେ ଏ ପର୍ବତ ଦୁରାରୋହ ବୋଲି ତାଙ୍କର ମନେ ହେଲା । ଏ ସମୟରେ ବିଦ୍ରୁମ ନିର୍ମିତ ଏକ ସୁଶୋଭିତ ଦ୍ୱାର ତାଙ୍କର ଦୃଷ୍ଟି ଆକର୍ଷଣ କଲା । କିନ୍ତୁ ସିଦ୍ଧିସମ୍ପନ୍ନ ସୂର୍ଯ୍ୟପ୍ରଭ ତା' ମଧ୍ୟରେ ପ୍ରବେଶ କରିବା ପାଇଁ ସମର୍ଥ ହୋଇ ପାରିଲେ ନାହିଁ । ତେଣୁ ସେ ସେଠାରେ ବସି ଏକାଗ୍ର ଚିତ୍ତରେ ଭଗବାନ୍ ଶଙ୍କରଙ୍କର ସ୍ତୁତିପାଠ କରିବାକୁ ଲାଗିଲେ ।

କିଛି ସମୟ ବିତିଯିବା ପରେ ଦ୍ୱାର ଉନ୍ମୁକ୍ତ କରି ହସ୍ତୀମୁଖ ଧାରଣ କରିଥିବା ଏକ ପୁରୁଷ ତନ୍ମଧ୍ୟରୁ ନିର୍ଗତ ହୋଇ ତାଙ୍କୁ କହିଲେ, 'ଆସ, ଏହା ମଧ୍ୟରେ ପ୍ରବେଶ କର । ଭଗବାନ୍ ହେରମ୍ବ ତୁମ ଉପରେ ପ୍ରସନ୍ନ ।' ତା' ମଧ୍ୟରେ ପ୍ରବେଶ କରି ଆଶ୍ଚର୍ଯ୍ୟ ଚକିତ ସୂର୍ଯ୍ୟପ୍ରଭ ଦେଖିଲେ ଯେ ଏକ ଅତିବିସ୍ତୃତ ଜ୍ୟୋତିର୍ମୟ ଶିଳାପୀଠ ଉପରେ ଦ୍ୱାଦଶ ସୂର୍ଯ୍ୟର ଜ୍ୟୋତି ଧାରଣ କରିଥିବା ଏକଦନ୍ତ ଲମ୍ବୋଦର ଏବଂ ତ୍ରିନେତ୍ର ଗଣପତି ବିନାୟକ ହସ୍ତରେ ପରଶୁ ଓ ମୁଦ୍‌ଗର ଧାରଣ ପୂର୍ବକ ଉପବେଶନ କରିଅଛନ୍ତି । ଭିନ୍ନ ଭିନ୍ନ ଆକୃତି ବିଶିଷ୍ଟ ମୁଖଶ୍ରୀ ଧାରଣ କରିଥିବା ଗଣମୁଖ୍ୟମାନେ ତାଙ୍କୁ ପରିବେଷ୍ଟନ କରି ରହିଛନ୍ତି । ସୂର୍ଯ୍ୟପ୍ରଭ ଏଠାରେ ପ୍ରବେଶ କରିବା ମାତ୍ରେ ବିନମ୍ର ଭାବେ ଗଣପତିଙ୍କ ଚରଣ ପ୍ରାନ୍ତରେ ପ୍ରଣିପାତ ଜଣାଇଲେ । ବିନାୟକ ସନ୍ତୁଷ୍ଟ ହୋଇ ସୂର୍ଯ୍ୟପ୍ରଭଙ୍କ ଆଗମନର କାରଣ ଜିଜ୍ଞାସା କରିବା ସଙ୍ଗେ ସଙ୍ଗେ ଶିବଲୋକକୁ ଯିବା ପାଇଁ ଉପଯୁକ୍ତ ମାର୍ଗର ମଧ୍ୟ ନିର୍ଦ୍ଦେଶ ଦେଲେ ।

ସୂର୍ଯ୍ୟପ୍ରଭ ବିନାୟକ ପ୍ରଦର୍ଶିତ ମାର୍ଗରେ ପାଞ୍ଚ ଯୋଜନ ଉପରକୁ ଆରୋହଣ କରି ପଦ୍ମରାଗମଣି ନିର୍ମିତ ଅନ୍ୟ ଏକ ଦ୍ୱାର ନିକଟରେ ଆସି ଉପସ୍ଥିତ ହେଲେ । ସେଠାରେ ମଧ୍ୟ ସେ ପ୍ରବେଶ କରିବା ପାଇଁ ଅସମର୍ଥ ହୋଇ ଏକାଗ୍ର ଚିତ୍ତ ଓ ଅନନ୍ୟ ଭକ୍ତି ଭାବରେ ପିନାକପାଣି ମହାଦେବଙ୍କର ସନ୍ତୁଷ୍ଟି ପାଇଁ ଶିବ ସହସ୍ର ନାମ ପାଠ କଲେ । କିଛି ସମୟ ପରେ କୁମାର କାର୍ତ୍ତିକେୟଙ୍କର ବିଶାଖ ନାମକ ପୁତ୍ର ସ୍ୱୟଂ ଆସି ଦ୍ୱାର ଉନ୍ମୁକ୍ତ କଲେ ଏବଂ ନିଜର ପରିଚୟ ପ୍ରଦାନ ପୂର୍ବକ ତା ମଧ୍ୟରେ ପ୍ରବେଶ କରାଇଲେ । ଭିତରକୁ ଯାଇ ସେ ଦେଖିଲେ ଯେ ଅଗ୍ନିତୁଲ୍ୟ ଜାଜ୍ୱଲ୍ୟମାନ ବିଶାଖ, ଶାଖି ପ୍ରଭୃତି ପଞ୍ଚପୁତ୍ର ଏବଂ ପ୍ରଣତ ଶତ ଶତ ଗଣମୁଖ୍ୟଙ୍କଦ୍ୱାରା ପରିବେଷ୍ଟିତ ସ୍ୱାମୀକୁମାର କାର୍ତ୍ତିକେୟ ଆସନ ଉପରେ ସମାସୀନ । ସୂର୍ଯ୍ୟପ୍ରଭ ତାଙ୍କୁ ଭୂମିଷ୍ଠ ପ୍ରଣିପାତ କରନ୍ତେ ସେ ଆଶୀର୍ବାଦ ପ୍ରଦାନ ପୂର୍ବକ ତାଙ୍କୁ ଶିବ ଲୋକକୁ ଯିବା ନିମନ୍ତେ ମାର୍ଗ ନିର୍ଦ୍ଦେଶ କଲେ ।

ଏହିପରି ମହାକାଳ, ବୀରଭଦ୍ର, ନନ୍ଦୀ ଓ ଭୃଙ୍ଗୀଙ୍କଦ୍ୱାରା ସୁରକ୍ଷିତ ଅନ୍ୟ ପଞ୍ଚରତ୍ନ ନିର୍ମିତ ଦ୍ୱାର ଅତିକ୍ରମ କରି ସୂର୍ଯ୍ୟପ୍ରଭ ସ୍ଫଟିକମଣି ନିର୍ମିତ ଏକ ବିରାଟ ଦ୍ୱାର ନିକଟରେ ଆସି ଉପସ୍ଥିତ ହେଲେ । ଦ୍ୱାର ମୁଖରେ ଦଣ୍ଡାୟମାନ ହୋଇ ମହାଦେବଙ୍କର ସ୍ତୁତିପାଠ କରନ୍ତେ ଏକାଦଶ ରୁଦ୍ରଙ୍କ ମଧ୍ୟରୁ ଜଣେ ଦ୍ୱାର ଉନ୍ମୁକ୍ତ କରି ସୂର୍ଯ୍ୟପ୍ରଭଙ୍କୁ ଆଦରର ସହ ଭିତରକୁ ନେଇଗଲା । ସେ ସ୍ୱର୍ଗଲୋକ ଅପେକ୍ଷା ଅଧିକ ସୁନ୍ଦର ଶିବଲୋକ ଦର୍ଶନ କରି ଅତ୍ୟନ୍ତ ପ୍ରୀତିଲାଭ କଲେ । ଏହି ଲୋକ ଦିବ୍ୟଗନ୍ଧଯୁକ୍ତ ବାୟୁ ପ୍ରବାହରେ ସୁରଭିତ, ଏହାର ବୃକ୍ଷଲତା ଫଳ ପୁଷ୍ପରେ ନମ୍ରୀଭୂତ, ଏହା ଗନ୍ଧର୍ବମାନଙ୍କ ସଙ୍ଗୀତ ଗାନରେ ସର୍ବଦା ମୁଖରିତ ଏବଂ ନୃତ୍ୟରତା ଅପ୍‌ସରାମାନଙ୍କର ନୂପୁର ଧ୍ୱନିରେ ନିକ୍ୱଣିତ ହୋଇ ଉଠୁଥିଲା ।

ଏହାର ଏକ ଅଂଶରେ ସୁଶୋଭିତ ସ୍ଫଟିକମଣିମୟ ସିଂହାସନ ଉପରେ ତ୍ରିଲୋଚନ, ଶୂଳପାଣି, ସ୍ୱଚ୍ଛ ସ୍ଫଟିକ ସନ୍ନିଭ, ବଦ୍ଧପିଙ୍ଗଳ ଜଟାଜୁଟ, ଚନ୍ଦ୍ରାର୍ଦ୍ଧ ଶେଖର, ଶିବ ଅର୍ଦ୍ଧନାରୀଶ୍ୱର ରୂପରେ ବିରାଜମାନ କରୁଥିଲେ । ସୂର୍ଯ୍ୟପ୍ରଭ ନିକଟକୁ ଯାଇ ଗୌରୀ ଓ ଗୌରୀପତିଙ୍କ ଚରଣରେ ପ୍ରଣିପାତ କରନ୍ତେ ମହାଦେବ ତାଙ୍କୁ ସସ୍ନେହରେ ଉଠାଇ ଆଗମନର କାରଣ ଜିଜ୍ଞାସା କଲେ । ସୂର୍ଯ୍ୟପ୍ରଭ ଉତ୍ତରରେ କହିଲେ, "ଭଗବନ୍, ମୋର ଅଭିଷେକ ଉତ୍ସବ ଶୀଘ୍ର ପରିପାଳିତ ହେବାକୁ ଯାଉଛି । ଆପଣ ଏଥିରେ ଉପସ୍ଥିତ ରହିଲେ ମୁଁ ଧନ୍ୟ ହେବି ।" ଭଗବାନ୍ ଭକ୍ତ ଉପରେ

ପ୍ରୀତ ହୋଇ କହିଲେ, 'ବତ୍ସ, ତୁମେ ଏତେ କଷ୍ଟ କାହିଁକି ସ୍ୱୀକାର କଲ ? ସେଠାରେ ରହି ମୋତେ ସ୍ମରଣ କରିଥିଲେ ତ ଚାଲିଥାଆନ୍ତା । ହଉ, ମୁଁ ନିଶ୍ଚୟ ଯିବି ।' ଏହା କହି ଭକ୍ତବତ୍ସଳ ଭଗବାନ୍ ନିକଟରେ ଥିବା ଜଣେ ଗଣଙ୍କୁ ଡାକି ଆଦେଶ ଦେଲେ ଯେ ସେ ଅଭିଷେକ ଉତ୍ସବ ପାଇଁ ସୂର୍ଯ୍ୟପ୍ରଭଙ୍କୁ ନେଇ ଋଷଭ ପର୍ବତ ଉପରେ ପହଞ୍ଚାଇ ଦେବ । ଋଷଭ ପର୍ବତ ବିଦ୍ୟାଧର ଚକ୍ରବର୍ତ୍ତୀମାନଙ୍କର ଅଭିଷେକ ସ୍ଥଳ ଥିବାରୁ ଉକ୍ତ ଗଣ ପ୍ରଦକ୍ଷିଣ ଓ ପ୍ରଣାମ ପୂର୍ବକ ସ୍ନେହପୂର୍ଣ୍ଣ ଭାବରେ ଭାବୀ ବିଦ୍ୟାଧର ଚକ୍ରବର୍ତ୍ତୀଙ୍କୁ କୋଳରେ ଧରି ଗନ୍ତବ୍ୟ ପଥରେ ଯଥାଶୀଘ୍ର ଅଗ୍ରସର ହେଲା ଏବଂ ସେଠାରେ ତାଙ୍କୁ ପହଞ୍ଚାଇ ଦେଇ ସ୍ୱୀୟ ସିଦ୍ଧି ପ୍ରଭାବରେ ଅନ୍ତର୍ହିତ ହେଲା ।

ଋଷଭ ପର୍ବତରେ ରହୁଥିବା ସମୟରେ ସୂର୍ଯ୍ୟପ୍ରଭଙ୍କ ସମସ୍ତ ମନ୍ତ୍ରୀ ଓ ମିତ୍ର, କାମଚୂଡ଼ାମଣି ପ୍ରମୁଖ ସମସ୍ତ ପତ୍ନୀ, ସମସ୍ତ ବିଦ୍ୟାଧର ପତି, ଇନ୍ଦ୍ରଙ୍କ ସହ ସମସ୍ତ ଦେବତା, ମୟ ପ୍ରଭୃତି ସମସ୍ତ ଅସୁର, ଯାଜ୍ଞ୍ୟବଲ୍କ୍ୟ ଆଦି ସମସ୍ତ ମହର୍ଷି ଏବଂ ସୁମେରୁ ଓ ସୁବାସକୁମାର ଆସି ସେଠାରେ ଉପସ୍ଥିତ ହେଲେ । ସେ ସମସ୍ତଙ୍କୁ ସ୍ୱାଗତ କରି ଏବଂ ଯଥୋଚିତ ସମ୍ମାନ ପ୍ରଦର୍ଶନ କରି ମହାଦେବଙ୍କର ନିମନ୍ତ୍ରଣ ବୃତ୍ତାନ୍ତ କଥନ ପୂର୍ବକ ପ୍ରସନ୍ନ କଲେ ।

ଅଭିଷେକ ଉତ୍ସବ ଆୟୋଜିତ ହେଲା । ବିବିଧ ମଣି-ମୁକ୍ତା ଖଚିତ ସ୍ୱର୍ଣ୍ଣ କଳଶମାନଙ୍କରେ ପ୍ରଭାସ ପ୍ରଭୃତି ମିତ୍ର ତଥା ମନ୍ତ୍ରୀମାନେ ସମସ୍ତ ନଦନଦୀ, ତୀର୍ଥ ଓ ସମୁଦ୍ରରୁ ଔଷଧି ମିଶ୍ରିତ ଜଳ ଆନୟନ କଲେ । ଏ ଅବସରରେ ଭଗବତୀ ଭବାନୀଙ୍କ ସହ ଭବାନୀପତି ଆସି ସେଠାରେ ଉପସ୍ଥିତ ହୁଅନ୍ତେ ଦେବ, ଦାନବ, ଅସୁର, ବିଦ୍ୟାଧର ସମସ୍ତେ ତାଙ୍କ ଚରଣରେ ଭକ୍ତିପୂତ ବିନମ୍ର ପ୍ରଣତି ଜ୍ଞାପନ କଲେ ।

ଏହାପରେ ଦେବ, ଦାନବ, ବିଦ୍ୟାଧରମାନେ ପୁଣ୍ୟାହବାଚନ ଉଚ୍ଚାରଣ କରନ୍ତେ ସମସ୍ତ ମହର୍ଷି ଆନୀତ ଜଳଦ୍ୱାରା ସିଂହାସନ ଉପବିଷ୍ଟ ସୂର୍ଯ୍ୟପ୍ରଭଙ୍କୁ ବିଦ୍ୟାଧରଚକ୍ରବର୍ତ୍ତୀ ପଦରେ ଅଭିଷେକ କଲେ । ତାଙ୍କ ମସ୍ତକ ମଣିମୟ ମୁକୁଟଦ୍ୱାରା ସୁଶୋଭିତ ହେଲା । ସ୍ୱର୍ଗୀୟ ବାଦ୍ୟ ସହ ଦେବତାମାନଙ୍କର ଦୁନ୍ଦୁଭି ନିନାଦିତ ହୋଇ ଉଠିଲା । ଅପ୍ସରାମାନେ ନୃତ୍ୟ କରିବାକୁ ଲାଗିଲେ । ଏ ସମୟରେ ଋଷିବୃନ୍ଦ

କାମଚୂଡ଼ାମଣିଙ୍କର ମଧ୍ଯ ଅଭିଷେକ କରି ତାଙ୍କୁ ପଟ୍ଟମହିଷୀ ରୂପେ ସୂର୍ଯ୍ୟପ୍ରଭଙ୍କ ନିକଟରେ ଆସୀନ କରାଇଲେ ।

ଏହିପରି ଭାବରେ ଅଭିଷେକ ମହୋତ୍ସବ ପରିସମାପ୍ତ ହେଲା । ଦେବତା ଓ ଅସୁରମାନେ ନିଜ ନିଜ ଆସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଗଲେ । ସୂର୍ଯ୍ୟପ୍ରଭ ସେଠାରେ ଆଉ କିଛିଦିନ ଅବସ୍ଥାନ କରି ମନ୍ତ୍ରୀ ଓ ମିତ୍ରମାନଙ୍କ ସହ ଏହି ଉତ୍ସବ ପାଳନ କଲେ ।

କିଛିଦିନ ଅଖଣ୍ଡ ରାଜ୍ୟସୁଖ ଭୋଗକରି ସୂର୍ଯ୍ୟପ୍ରଭ ଈଶ୍ୱରଙ୍କ ଆଦେଶ ଅନୁଯାୟୀ ବିଦ୍ୟାଧରମାନଙ୍କର ଉତ୍ତରବେଦୀର ଅର୍ଦ୍ଧାଂଶ ଶ୍ରୁତଶର୍ମାଙ୍କୁ ପ୍ରଦାନ କଲେ । ଏହାପରେ ପତ୍ନୀ ଓ ମିତ୍ରମାନଙ୍କ ସହ ସେ ଆନନ୍ଦରେ ଚିରକାଳ ବିଦ୍ୟାଧର ରାଜଲକ୍ଷ୍ମୀ ଉପଭୋଗ କରି କାଳଯାପନ କରିବାକୁ ଲାଗିଲେ ।

ଏହିପରି ଭଗବାନ୍ ଗୌରିପତିଙ୍କ କୃପାଲାଭ କରି ସୂର୍ଯ୍ୟପ୍ରଭ ମନୁଷ୍ୟ ହେଲେ ହେଁ ବିଦ୍ୟାଧର-ରାଜଲକ୍ଷ୍ମୀଙ୍କୁ ଲାଭ କରିପାରିଥିଲେ ।''

ବିଦ୍ୟାଧରଶ୍ରେଷ୍ଠ ବଜ୍ରପ୍ରଭ ସୂର୍ଯ୍ୟପ୍ରଭଙ୍କର ଏହି ମନୋହର ବୃତ୍ତାନ୍ତ ବତ୍ସରାଜ ଉଦୟନଙ୍କ ନିକଟରେ ପ୍ରକାଶ କରି ନରବାହନଦତ୍ତଙ୍କୁ ପ୍ରଣାମ ପୂର୍ବକ ଆକାଶ ମାର୍ଗରେ ପ୍ରସ୍ଥାନ କଲେ । ସେ ଚାଲିଯିବା ପରେ ବିଦ୍ୟାଧର ଚକ୍ରବର୍ତ୍ତିତ୍ୱ ଲାଭ କରିବା ପାଇଁ ଉତ୍କଣ୍ଠିତ ହୋଇ ଉଠୁଥିବା ନରବାହନଦତ୍ତ ରାଣୀ ମଦନମଞ୍ଚୁକାଙ୍କ ସହ ପିତା ଉଦୟନଙ୍କ ବାସଭବନରେ ସୌଭାଗ୍ୟର ଅପେକ୍ଷା କରିବାକୁ ଲାଗିଲେ ।





## ଡଃ. ସୁଦର୍ଶନ ଆଚାର୍ଯ୍ୟ

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଜରଡ଼ା ସୁବର୍ଣ୍ଣପୁରର ପ୍ରସିଦ୍ଧ ପଣ୍ଡିତ ରାୟ ବଂଶର ଉତ୍ତର ଦାୟାଦ।

ପ୍ରଖ୍ୟାତଯଶା ସମାଲୋଚକ ତଥା ଗବେଷକ ନଟବର ସାମନ୍ତରାୟ, ଅଧ୍ୟାପକ ଚିନ୍ତାମଣି ବେହେରା, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କଠାରୁ ସାହିତ୍ୟ ବିଦ୍ୟା ଆହରଣ।

ଶ୍ରୀକାକୁଲମ୍ କଳା ମହାବିଦ୍ୟାଳୟ, ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଅବସର ଗ୍ରହଣ।

ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, ଓଡ଼ିଆ କାବ୍ୟ କୌଶଳ ପରି ମୌଳିକ ସମାଲୋଚନା ଗ୍ରନ୍ଥ ସହିତ ବିଶାଳ କଥାଗ୍ରନ୍ଥ 'କଥା ସରିତ ସାଗର'ର ଓଡ଼ିଆ ଅନୁବାଦ ଏବଂ ରାମଚନ୍ଦ୍ର ଗ୍ରନ୍ଥାବଳୀ (ଚାରିଖଣ୍ଡ), ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ, ଊନବିଂଶ ଶତାବ୍ଦୀର ବିସ୍ମୃତ ପତ୍ରିକା 'ଇନ୍ଦ୍ରଧନୁ', ଉପେନ୍ଦ୍ର ଭଞ୍ଜଙ୍କ ପ୍ରଥମ କାବ୍ୟକୃତି 'ଚିତ୍ରଲେଖା' ପରି ଦୁଷ୍ପ୍ରାପ୍ୟ ଓ ଦୁର୍ଲ୍ଲଭ ଗ୍ରନ୍ଥଗୁଡ଼ିକ ସମ୍ପାଦିତ ହୋଇ ପ୍ରକାଶିତ।

